# କୋଣାର୍କ

୰ପଣ୍ଡିତ କୃପାସିନ୍ଧୁ ମିଶ୍ର

ଲାର୍କ ବୁକ୍ସ

କୋଣାର୍କ
ପଣ୍ଡିତ କୃପାସିନ୍ଧୁ ମିଶ୍ର

ପ୍ରକାଶକ
ଲାର୍କ ବୁକ୍ସ
ସୁବର୍ଣ୍ଣରେଖା ଚ୍ୟାମ୍ବର୍ସ
ଭୌମ ନଗର, ଭୁବନେଶ୍ୱର

ପ୍ରଥମ ପ୍ରକାଶ ୧୯୧୯

ଚତୁର୍ଥ ମୁଦ୍ରଣ ୧୯୯୯

ପ୍ରଚ୍ଛଦ
ଅସୀତ ମୁଖାର୍ଜୀ

ଟାଇପ୍ ସେଟିଙ୍ଗ
ମୀନାକ୍ଷୀ ଡ଼ାଟାକେୟାର୍
୧୮୨ ଧର୍ମ ବିହାର, ଭୁବନେଶ୍ୱର

ମୁଦ୍ରଣ
ଡୁଡୁଲି ପ୍ରସେସ୍ ଆଣ୍ଡ ଅଫ୍‌ସେଟ୍
୨୩୧ ବାପୁଜୀ ନଗର, ଭୁବନେଶ୍ୱର

ଶହେ କୋଡ଼ିଏ ଟଙ୍କା ମାତ୍ର

**Konarka**
**Pandit Krupasindhu Mishra**

Publisher
**Lark Books**
Subernarekha Chambers
Bhouma Nagar, Bhubaneswar

First Edition 1919

Fourth Edition 1999

Cover
**Asit Mukherjee**

Type Setting
**Meenakshi DataCare**
182 Dharma Vihar, Bhubaneswar

Printed at
**Duduly Process & Offset**
231, Bapuji Nagar, Bhubaneswar

One hundred Twenty Rupees only

ISBN - 81 - 7375 - 068 - 8

# ଏ ଗ୍ରନ୍ଥର ପୁନର୍ମୁଦ୍ରଣ ପ୍ରସଙ୍ଗରେ

''ପ୍ରାଚୀନ ଯୁଗରେ ଭାରତରେ ଛାତ୍ରମାନେ ଶିକ୍ଷା କରୁଥିଲେ କେବଳ ଶିକ୍ଷାଲାଭ ନିମନ୍ତେ । ପାଣ୍ଡିତ୍ୟ ଓ ଜ୍ଞାନ ବ୍ୟତୀତ ଅଧ୍ୟୟନର ଆଉ କିଛି ସ୍ୱର୍ଣସୁଲଭ ଲକ୍ଷ୍ୟ ନ ଥିଲା । ବହୁ ଶ୍ରମରେ ଉପାର୍ଜିତ ବିଦ୍ୟାକୁ ଲୋକେ ଅର୍ଥ ସଙ୍ଗରେ ବିନିମୟ ବା ବିକ୍ରୟ କରୁ ନ ଥିଲେ ।''

ପଣ୍ଡିତ ଗୋପବନ୍ଧୁଙ୍କ ସମ୍ପାଦକତ୍ୱରେ ମାସିକ ପତ୍ର 'ସତ୍ୟବାଦୀ'ର ପ୍ରଥମ ସଂଖ୍ୟାରେ 'ଗୁରୁକୁଳ' ଶୀର୍ଷକ ପ୍ରବନ୍ଧରେ ପଣ୍ଡିତ କୃପାସିନ୍ଧୁଙ୍କର ଏହା ଥିଲା ବକ୍ତବ୍ୟ । ଏହାକୁ ସେ ଯେ କେବଳ ପ୍ରାବନ୍ଧିକ ଭାବରେ ପ୍ରବନ୍ଧ ଲେଖିବା ଛଳରେ ବ୍ୟକ୍ତ କରିଥିଲେ, ତା' ନୁହେଁ; ତାକୁ ସେ ନିଜ ଜୀବନରେ ଅକ୍ଷରେ ଅକ୍ଷରେ ପାଳନ କରିଥିଲେ । ୧୯୧୪ ମସିହାରେ ଏମ୍.ଏ. ପାଶ କରି ସାରିଲା ପରେ ଇଚ୍ଛା କରିଥିଲେ ହୁଏତ ସେ ଆଇନ ବ୍ୟବସାୟରେ ପଶି ପାରିଥାଆନ୍ତେ, ଅଥବା ରେଭେନ୍ସା କଲେଜରେ ଦର୍ଶନ ଅଧ୍ୟାପକ ହୋଇ ପାରିଥାଆନ୍ତେ । ମାତ୍ର ଏ ସମସ୍ତ ପ୍ରଲୋଭନ ତ୍ୟାଗ କରି ମାସିକ ମାତ୍ର ୫୦ ଟଙ୍କା ଦରମାରେ ସେ ଶିକ୍ଷକରୂପେ ଯୋଗଦେଲେ ସତ୍ୟବାଦୀର ବନବିଦ୍ୟାଳୟରେ । ଶିକ୍ଷାଦାନ ସହିତ ସେ ନିଜକୁ ଉତ୍ସର୍ଗ କରିଦେଲେ ଉତ୍କଳର ଲୁପ୍ତ ଗୌରବ ଓ ଇତିହାସ ସମ୍ବନ୍ଧରେ ବୈଜ୍ଞାନିକ ସମ୍ମତ ଗବେଷଣାରେ ।

ସେହି ନିଷ୍ଠାପର ସାଧନା ଓ ଗବେଷଣାର ଫଳ ସ୍ୱରୂପ 'କୋଣାର୍କ' ଗ୍ରନ୍ଥଟି ପ୍ରଥମେ ପ୍ରକାଶ ପାଇଥିଲା ୧୯୧୯ ମସିହାରେ ଏବଂ ଏହାର ଦ୍ୱିତୀୟ ସଂସ୍କରଣଟି ପ୍ରକାଶିତ ହେଲା ୧୯୪୨ ମସିହାରେ । ଏବେ ଏହାର ପୁନର୍ମୁଦ୍ରଣ । ଭାବିଲେ ଦୁଃଖ ଲାଗେ ଯେ ଏଇ ୬୦ ବର୍ଷ ମଧ୍ୟରେ ଏପରି ଏକ ଉଚ୍ଚକୋଟୀର ଗ୍ରନ୍ଥର ମୁଦ୍ରଣ ମାତ୍ର ଦୁଇଥର ହୋଇଛି । କହିବା ବାହୁଲ୍ୟ ଯେ ଆଜିପର୍ଯ୍ୟନ୍ତ ଏ ପୁସ୍ତକଟି ଓଡ଼ିଆ ଭାଷାରେ ଏକମାତ୍ର ପ୍ରାମାଣିକ ଗ୍ରନ୍ଥ । ପଣ୍ଡିତ ମିଶ୍ରଙ୍କର ଏ ପୁସ୍ତକ ପ୍ରଣୟନର ଏକ ମୁଖ୍ୟ ଉଦ୍ଦେଶ୍ୟ ଥିଲା ହୀନମନ୍ୟତା ଗ୍ରାସ କରିଥିବା ଏ ଓଡ଼ିଆ ଜାତିକୁ ନିଜର ପ୍ରାଚୀନ ଐତିହ୍ୟ ସମ୍ପର୍କରେ ସଚେତନ କରାଇ ତା' ଭିତରେ ଆତ୍ମପ୍ରତ୍ୟୟ ଜଗାଇବା ।

ଏବେ ଏହି ତୃତୀୟଥର ପାଇଁ ଏ ପୁସ୍ତକକୁ ପ୍ରକାଶ କରିବାରେ ମଧ୍ୟ ଆମେ ସେଇ ଭାବନା ପୋଷଣ କରୁଚୁ ।

ମହେନ୍ଦ୍ର ମିଶ୍ର

ପ୍ରକାଶକ

କୋଣାର୍କ
ପଣ୍ଡିତ କୃପାସିନ୍ଧୁ ମିଶ୍ର

ପ୍ରକାଶକ
ଲାର୍କ ବୁକ୍ସ
ସୁବର୍ଣ୍ଣରେଖା ଚ୍ୟାମ୍ବର୍ସ
ଭୌମ ନଗର, ଭୁବନେଶ୍ୱର

ପ୍ରଥମ ପ୍ରକାଶ ୧୯୧୯

ଚତୁର୍ଥ ମୁଦ୍ରଣ ୧୯୯୯

ପ୍ରଚ୍ଛଦ
ଅସୀତ ମୁଖାର୍ଜୀ

ଟାଇପ୍ ସେଟିଙ୍ଗ
ମୀନାକ୍ଷୀ ଡ଼ାଟାକେୟାର୍
୧୮୨ ଧର୍ମ ବିହାର, ଭୁବନେଶ୍ୱର

ମୁଦ୍ରଣ
ଡୁଡୁଲି ପ୍ରସେସ୍ ଆଣ୍ଡ ଅଫ୍‌ସେଟ୍
୨୩୧ ବାପୁଜୀ ନଗର, ଭୁବନେଶ୍ୱର

ଶହେ କୋଡ଼ିଏ ଟଙ୍କା ମାତ୍ର

**Konarka**
**Pandit Krupasindhu Mishra**

Publisher
**Lark Books**
Subernarekha Chambers
Bhouma Nagar, Bhubaneswar

First Edition 1919

Fourth Edition 1999

Cover
**Asit Mukherjee**

Type Setting
**Meenakshi DataCare**
182 Dharma Vihar, Bhubaneswar

Printed at
**Duduly Process & Offset**
231, Bapuji Nagar, Bhubaneswar

One hundred Twenty Rupees only

ISBN - 81 - 7375 - 068 - 8

# ଏ ଗ୍ରନ୍ଥର ପୁନର୍ମୁଦ୍ରଣ ପ୍ରସଙ୍ଗରେ

''ପ୍ରାଚୀନ ଯୁଗରେ ଭାରତରେ ଛାତ୍ରମାନେ ଶିକ୍ଷା କରୁଥିଲେ କେବଳ ଶିକ୍ଷାଲାଭ ନିମନ୍ତେ । ପାଣ୍ଡିତ୍ୟ ଓ ଜ୍ଞାନ ବ୍ୟତୀତ ଅଧ୍ୟୟନର ଆଉ କିଛି ସ୍ୱର୍ଣ୍ଣସୁଲଭ ଲକ୍ଷ୍ୟ ନ ଥିଲା । ବହୁ ଶ୍ରମରେ ଉପାର୍ଜିତ ବିଦ୍ୟାକୁ ଲୋକେ ଅର୍ଥ ସଙ୍ଗରେ ବିନିମୟ ବା ବିକ୍ରୟ କରୁ ନ ଥିଲେ ।''

ପଣ୍ଡିତ ଗୋପବନ୍ଧୁଙ୍କ ସମ୍ପାଦକତ୍ୱରେ ମାସିକ ପତ୍ର 'ସତ୍ୟବାଦୀ'ର ପ୍ରଥମ ସଂଖ୍ୟାରେ 'ଗୁରୁକୁଳ' ଶୀର୍ଷକ ପ୍ରବନ୍ଧରେ ପଣ୍ଡିତ କୃପାସିନ୍ଧୁଙ୍କର ଏହା ଥିଲା ବକ୍ତବ୍ୟ । ଏହାକୁ ସେ ଯେ କେବଳ ପ୍ରାବନ୍ଧିକ ଭାବରେ ପ୍ରବନ୍ଧ ଲେଖିବା ଛଳରେ ବ୍ୟକ୍ତ କରିଥିଲେ, ତା' ନୁହେଁ; ତାକୁ ସେ ନିଜ ଜୀବନରେ ଅକ୍ଷରେ ଅକ୍ଷରେ ପାଳନ କରିଥିଲେ । ୧୯୧୪ ମସିହାରେ ଏମ୍.ଏ. ପାଶ କରି ସାରିଲା ପରେ ଇଚ୍ଛା କରିଥିଲେ ହୁଏତ ସେ ଆଇନ ବ୍ୟବସାୟରେ ପଶି ପାରିଥାଆନ୍ତେ, ଅଥବା ରେଭେନ୍‌ସା କଲେଜରେ ଦର୍ଶନ ଅଧ୍ୟାପକ ହୋଇ ପାରିଥାଆନ୍ତେ । ମାତ୍ର ଏ ସମସ୍ତ ପ୍ରଲୋଭନ ତ୍ୟାଗ କରି ମାସିକ ମାତ୍ର ୫୦ ଟଙ୍କା ଦରମାରେ ସେ ଶିକ୍ଷକରୂପେ ଯୋଗଦେଲେ ସତ୍ୟବାଦୀର ବନବିଦ୍ୟାଳୟରେ । ଶିକ୍ଷାଦାନ ସହିତ ସେ ନିଜକୁ ଉତ୍ସର୍ଗ କରିଦେଲେ ଉତ୍କଳର ଲୁପ୍ତ ଗୌରବ ଓ ଇତିହାସ ସମ୍ବନ୍ଧରେ ବୈଜ୍ଞାନିକ ସମ୍ମତ ଗବେଷଣାରେ ।

ସେହି ନିଷ୍ପାପର ସାଧନା ଓ ଗବେଷଣାର ଫଳ ସ୍ୱରୂପ 'କୋଣାର୍କ' ଗ୍ରନ୍ଥଟି ପ୍ରଥମେ ପ୍ରକାଶ ପାଇଥିଲା ୧୯୧୯ ମସିହାରେ ଏବଂ ଏହାର ଦ୍ୱିତୀୟ ସଂସ୍କରଣଟି ପ୍ରକାଶିତ ହେଲା ୧୯୪୨ ମସିହାରେ । ଏବେ ଏହାର ପୁନର୍ମୁଦ୍ରଣ । ଭାବିଲେ ଦୁଃଖ ଲାଗେ ଯେ ଏଇ ୬୦ ବର୍ଷ ମଧ୍ୟରେ ଏପରି ଏକ ଉଚ୍ଚକୋଟୀର ଗ୍ରନ୍ଥର ମୁଦ୍ରଣ ମାତ୍ର ଦୁଇଥର ହୋଇଛି । କହିବା ବାହୁଲ୍ୟ ଯେ ଆଜିପର୍ଯ୍ୟନ୍ତ ଏ ପୁସ୍ତକଟି ଓଡ଼ିଆ ଭାଷାରେ ଏକମାତ୍ର ପ୍ରାମାଣିକ ଗ୍ରନ୍ଥ । ପଣ୍ଡିତ ମିଶ୍ରଙ୍କର ଏ ପୁସ୍ତକ ପ୍ରଣୟନର ଏକ ମୁଖ୍ୟ ଉଦ୍ଦେଶ୍ୟ ଥିଲା ହୀନମନ୍ୟତା ଗ୍ରାସ କରିଥିବା ଏ ଓଡ଼ିଆ ଜାତିକୁ ନିଜର ପ୍ରାଚୀନ ଐତିହ୍ୟ ସମ୍ପର୍କରେ ସଚେତନ କରାଇ ତା' ଭିତରେ ଆତ୍ମପ୍ରତ୍ୟୟ ଜଗାଇବା ।

ଏବେ ଏହି ତୃତୀୟଥର ପାଇଁ ଏ ପୁସ୍ତକକୁ ପ୍ରକାଶ କରିବାରେ ମଧ୍ୟ ଆମେ ସେଇ ଭାବନା ପୋଷଣ କରୁଚୁ ।

**ମହେନ୍ଦ୍ର ମିଶ୍ର**

**ପ୍ରକାଶକ**

# ଚ଼ତୁର୍ଥ ମୁଦ୍ରଣ ଅବସରରେ

ଯେଉଁ ପ୍ରକାର ଗବେଷଣା ଓ ଅନୁସନ୍ଧାନ ଚ଼ଳାଇ ପଣ୍ଡିତ କୃପାସିନ୍ଧୁ ମିଶ୍ର ଯାହା ୧୯୧୯ ମସିହାରେ ଲେଖି ଯାଇ ଅଛନ୍ତି, ତାହା ଆଜି ପର୍ଯ୍ୟନ୍ତ ସୁଦ୍ଧା ତାହାର ପ୍ରାମାଣିକତା ହରାଇ ନାହିଁ । ଓଡ଼ିଆ ଭାଷାରେ ଗବେଷଣାଭିତ୍ତିକ ଗ୍ରନ୍ଥ ଏ ଶତାବ୍ଦୀର ଏଇଟି ପ୍ରଥମ ଥିଲା ଏବଂ ଏଇ ପ୍ରାୟ ଶହେ ବର୍ଷ ଭିତରେ ଆଉ କିଛି ନୂତନ ତଥ୍ୟଦ୍ୱାରା ପଣ୍ଡିତ ମିଶ୍ରଙ୍କର ମୌଳିକ ତଥା ଯୁକ୍ତିସିଦ୍ଧ ମତକୁ ଏ ପର୍ଯ୍ୟନ୍ତ ଖଣ୍ଡନ କରାଯାଇ ପାରିନାହିଁ ।

କୋଣାର୍କ ଯେପରି ଏକ ବିସ୍ମୟ, ବିଂଶ ଶତାବ୍ଦୀର ପ୍ରାକ୍‌କାଳରେ ଏହାର ଉଦ୍ଧାର ସହିତ ତା'ର ଇତିହାସର ଉଦ୍ଧାର ମଧ୍ୟ ଆଉରି ବିସ୍ମୟକର ।

ଆଗାମୀ ଶତାବ୍ଦୀରେ ମଧ୍ୟ ଏହି ପୁସ୍ତକଟି ଗବେଷକ ଓ ପାଠକମାନଙ୍କର ଏକ ପ୍ରିୟ ପୁସ୍ତକ ହୋଇ ରହିବ ବୋଲି ଆମେ ଆଶା କରୁଚୁ ।

ତା ୧୨/୮/୯୯

ମହେନ୍ଦ୍ର ମିଶ୍ର
ପ୍ରକାଶକ

# ସୂଚୀପତ୍ର

# ନିବେଦନ

ଓଡିଶାର ଜନସାଧାରଣଙ୍କ ନିକଟରେ କୋଣାର୍କ ତୀର୍ଥ ନାମରେ ପରିଚିତ । ଦୁଃଖର କଥା, କ୍ରମେ ଲୋକଙ୍କର ଧର୍ମଭାବ ଯେଉଁ ପରିମାଣରେ ଉଣା ହୋଇ ଆସୁଅଛି, କୋଣାର୍କର ଏହି ପରିଚୟ ଲୋକମନରୁ ସେହି ପରିମାଣରେ ଲିଭି ଯାଉଅଛି । କୋଣାର୍କ ଯେ ଓଡ଼ିଆ ଜାତିର ଗୌରବ-ସ୍ତମ୍ଭ, ଓଡ଼ିଆ ଶିଳ୍ପ-ପ୍ରତିଭାର ଅକ୍ଷୟ ପ୍ରମାଣ, ଓଡ଼ିଆ ମାନସିକ ଉନ୍ନତି ଓ ଜାତୀୟ ଗାରିମାର ଉଜ୍ଜ୍ୱଳ ନିଦର୍ଶନ, ଅତି ଅଳ୍ପ ଉତ୍କଳ ସନ୍ତାନ ଏପର୍ଯ୍ୟନ୍ତ ଏହା ଉପଲବ୍ଧି କରିଅଛନ୍ତି । ଦେଶ ଦେଶାନ୍ତରରୁ ପଣ୍ଡିତ, ଭାବୁକ ଓ ଅନୁସନ୍ଧିତ୍ସୁ ବ୍ୟକ୍ତିମାନେ ବହୁ ଶ୍ରମ ସ୍ୱୀକାର କରି ଅଦ୍ୟାପି କୋଣାର୍କ ଦେଖିବାକୁ ଯାଇଥାନ୍ତି ଏବଂ ବିଜନ ସିକତା ପ୍ରାନ୍ତରରେ ବିରାଟ ବପୁ ବିକଳାଙ୍ଗ ଅଥଚ ଧ୍ୱଂସାବଶେଷରେ ସୁଦ୍ଧା ବିପୁଳ ଓ ସୁମହତ୍ ସେହି ଅଭାବନୀୟ ଶିଳ୍ପର ଦର୍ଶନରେ କୃତାର୍ଥ ହୋଇଥାନ୍ତି । ଓଡ଼ିଆ ଜାତିର ବର୍ତ୍ତମାନ ଅବସ୍ଥା ଦୃଷ୍ଟିରେ କୋଣାର୍କ ଯେ ଓଡ଼ିଆ ମସ୍ତିଷ୍କର ଉଦ୍ଭାବନ, ଏଥିରେ କାହାରି କାହାରି ସନ୍ଦେହ ହେବା ଆଶ୍ଚର୍ଯ୍ୟର କଥା ନୁହେଁ । ନିଜେ ଓଡ଼ିଆ ଜନସାଧାରଣ ମଧ ଏହି ଆତ୍ମପ୍ରତ୍ୟୟ ଏକାବେଳକେ ହରାଇ ଏହା ବିଶ୍ୱକର୍ମାଙ୍କ ସୃଷ୍ଟି ବୋଲି ବୁଝି ବସିଲେଣି । କେବଳ 'ଶିବାଇ ସାନ୍ତରା', 'ବାର ଶହ ବଢ଼େଇରେ ଦାୟୀ କି ଏକା ପୁଅରେ ଦାୟୀ' ପ୍ରଭୃତି ଜନଶ୍ରୁତିମାନ ଏହାର ମାନବୀୟ ସୃଷ୍ଟିକୁ ଏବେ ସାମାନ୍ୟ ମାତ୍ର ରକ୍ଷା କରିଅଛି । ଏହି କ୍ଷୀଣ ସ୍ମୃତିକୁ ଜାଗ୍ରତ କରି ଓଡ଼ିଆ ଜାତିର ଆପଣା ଶିଳ୍ପ ଶକ୍ତିରେ ଆତ୍ମପ୍ରତ୍ୟୟ ଜନ୍ମାଇବା ଏହି କ୍ଷୁଦ୍ର ପୁସ୍ତକର ଉଦ୍ଦେଶ୍ୟ । ବିଶାଳ କୋଣାର୍କ ସମ୍ବନ୍ଧେ ଯେ କୌଣସି ଗ୍ରନ୍ଥ କ୍ଷୁଦ୍ର ଓ ଅସମ୍ପୂର୍ଣ୍ଣ ହେବ । ଅନ୍ତତଃ ଏ କ୍ଷେତ୍ରରେ ଲେଖକ ପରି ବ୍ୟକ୍ତିର ପ୍ରଥମ ଉଦ୍ୟମ ଏହାହିଁ ହେବ ।

କୋଣାର୍କ ସମ୍ବନ୍ଧେ ଇଂରେଜୀ ଭାଷାରେ କେତେକ ସୁପଣ୍ଡିତ ଓ ଚିନ୍ତାଶୀଳ ବ୍ୟକ୍ତି ଗ୍ରନ୍ଥ ପ୍ରଣୟନ କରିଅଛନ୍ତି । ମାତ୍ର ଏ ପୁସ୍ତକ ଯେ ଉଦ୍ଦେଶ୍ୟରେ ଲିଖିତ, ଓଡ଼ିଆ ଭାଷାର ବିନା ସାହାଯ୍ୟରେ ସେ ଉଦ୍ଦେଶ୍ୟ ପୂରଣ ଅସମ୍ଭବ । ଏହି ଓଡ଼ିଆ ପୁସ୍ତକରେ ପୂର୍ବବର୍ତ୍ତୀ ଲେଖକମାନଙ୍କ ଇଂରେଜୀ ଗ୍ରନ୍ଥର ବହୁ ସାହାଯ୍ୟ ନିଆ ଯାଇଅଛି; ସେମାନଙ୍କ ମତର ଆଲୋଚନା କରାଯାଇ ସ୍ଥଳବିଶେଷରେ ତାହା ଖଣ୍ଡନ ବା ମଣ୍ଡନ କରାଯାଇଅଛି । କୋଣାର୍କ ସମ୍ବନ୍ଧୀୟ ଅନୁସନ୍ଧାନରେ ସେହି ପୂର୍ବବର୍ତ୍ତୀ ସୂରିମାନଙ୍କ ନିକଟରେ ଲେଖକ ଯେ କେତେ

କୃତଜ୍ଞ ବୋଲିବା ବାହୁଲ୍ୟ । କୋଣାର୍କର ଉତ୍କୃଷ୍ଟ ଶିଳ୍ପ ସଙ୍ଗେ ସଙ୍ଗେ ତାହାର ତୀର୍ଥମାହାତ୍ମ୍ୟ ଏହି ପୁସ୍ତକରେ ଆଲୋଚିତ ହୋଇଅଛି ।

ଉପରଲିଖିତ ଇଂରେଜୀ ଗ୍ରନ୍ଥମାନଙ୍କ ବ୍ୟତୀତ ଏହି ପୁସ୍ତକ ସଙ୍କଳନ ବିଷୟରେ ମୁଁ ଅନ୍ୟାନ୍ୟଙ୍କଠାରୁ ପ୍ରଭୂତ ସାହାଯ୍ୟ ପାଇଅଛି । ଅଧ୍ୟାପକ ରାୟ ଶ୍ରୀ ଯୋଗେଶ ଚନ୍ଦ୍ର ରାୟ ବାହାଦୁର ବିଦ୍ୟାନିଧି ଏବଂ ସୁପ୍ରସିଦ୍ଧ ପ୍ରତ୍ନତତ୍ତ୍ୱବିଦ୍ ଶ୍ରୀଯୁକ୍ତ ରାଖାଲ ଦାସ ବାନର୍ଜି ସେମାନଙ୍କର ସ୍ୱୀୟ ସ୍ୱୀୟ ପତ୍ରଦ୍ୱାରା ମୋର ସଂଶୟ ବହୁତ ଦୂର କରିଅଛନ୍ତି । ଭକ୍ତିଭାଜନ ବାବୁ ଶ୍ରୀ ମଧୁସୂଦନ ଦାଶ ଏହି ପୁସ୍ତକର ପ୍ରଥମ ପାଣ୍ଡୁଲିପି ବହୁଶ୍ରମ ସହକାରେ ପାଠ କରି ସୁଦୀର୍ଘ ମୁଖବନ୍ଧଟି ଲେଖି ଦେଇ ବହୁ ଅନୁଗୃହୀତ କରାଇଅଛନ୍ତି । ସତ୍ୟବାଦୀର ତଦାନୀନ୍ତନ ବିଦ୍ୟାଳୟ ପରିଦର୍ଶକ ଶ୍ରୀ ଦୈତ୍ୟାରି ନନ୍ଦ ଏବଂ ମୋର ପ୍ରାଣପ୍ରତିମ କେତେକ ଛାତ୍ର ପାଣ୍ଡୁଲିପି ସଙ୍କଳନରେ ମୋତେ ବିଶେଷ ସାହାଯ୍ୟ କରିଅଛନ୍ତି । ବାମଣ୍ଡାଧୀଶ୍ୱର ଶ୍ରୀ ଦିବ୍ୟଶଙ୍କର ସୁଢ଼ଳ ଦେବ ସି.ବି.ଇ. ଗ୍ରନ୍ଥ ମୁଦ୍ରଣଭାର ନେଇ ମୋତେ ଯଥେଷ୍ଟ କୃତଜ୍ଞ କରିଅଛନ୍ତି । ମୋର ଜୀବନ ସହଚର ସତ୍ୟବାଦୀ ସହଯୋଗୀମାନଙ୍କ କଥା ବା କ'ଣ କହିବି ? ପୁସ୍ତକ ଲେଖାର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଚିନ୍ତାରେ, ଲେଖାରେ ଓ ବିଷୟ ନିର୍ବାଚନରେ ସର୍ବତ୍ର ସେହିମାନେ ହିଁ ବର୍ତ୍ତମାନ । ପୁସ୍ତକ ପ୍ରକାଶ କରିବା ନିମନ୍ତେ ଛାପାଖାନାର ପ୍ରୁଫ୍ ସଂଶୋଧନ ପ୍ରଭୃତି ସମୁଦାୟ କାର୍ଯ୍ୟ 'ହିତୈଷିଣୀ' ସମ୍ପାଦକ ଶ୍ରୀ ଦୀନବନ୍ଧୁ ଗଡ଼ନାୟକ ଓ ତାହାଙ୍କ ସହଯୋଗୀମାନେ ବହୁଶ୍ରମ ସ୍ୱୀକାର କରି ସାଧନ କରିଥିବାରୁ ମୁଁ ସେମାନଙ୍କୁ ଆନ୍ତରିକ ଧନ୍ୟବାଦ ଦେଉଅଛି ।

ପରିଶେଷରେ ପାଠକମାନଙ୍କ ଉଦାରତା, ସହାୟତା ଓ ଆନୁକୂଲ୍ୟ ଉପରେ ଏକାନ୍ତ ନିର୍ଭର କରି ଏ ପୁସ୍ତକ ପ୍ରକାଶ କରିବାରେ ସାହସୀ ହୋଇଅଛି । ପୁସ୍ତକର ଭଲ ମନ୍ଦ ଓ ଉପଯୋଗିତା ସେହିମାନଙ୍କ ଉପରେ ଏକା ନିର୍ଭର କରେ । ଇତି ।

ସତ୍ୟବାଦୀ
ମେଷ, ୧୩୨୬ ସାଲ } ଶ୍ରୀ କୃପାସିନ୍ଧୁ ମିଶ୍ର

# ମୁଖବନ୍ଧ

ପରମ ସ୍ନେହାସ୍ପଦ ଗ୍ରନ୍ଥକାରଙ୍କ ନିକଟରେ ମୁଁ ଏହି ଗ୍ରନ୍ଥର ମୁଖବନ୍ଧ ଲେଖିବା ଲାଗି ପ୍ରତିଶ୍ରୁତ ହୋଇଅଛି; ମାତ୍ର ସେଥିଲାଗି ଯେ ପ୍ରକାର ଶକ୍ତି ଆବଶ୍ୟକ, ତାହା ମୋହର ନାହିଁ। ଜନ୍ମଭୂମିର ପୁରାଣ କୀର୍ତ୍ତି ବର୍ଣ୍ଣନା କ୍ଷେତ୍ରରେ ଜଣେ କୃତବିଦ୍ୟ ଓଡ଼ିଆ ସନ୍ତାନଙ୍କର ଏହାହିଁ ପ୍ରଥମୋଦ୍ୟମ; ତେଣୁ ଗୁଣୋତ୍କର୍ଷ ସ୍ଥଳରେ ଉତ୍ସାହ ପ୍ରଦାନ ପାଠକ ପାଠିକାମାନଙ୍କ ପ୍ରଥମ କର୍ତ୍ତବ୍ୟ ହେଲେହେଁ ସାବଧାନ ଦୋଷ ପ୍ରଦର୍ଶନ ସେମାନଙ୍କର କର୍ତ୍ତବ୍ୟର ବହିର୍ଭୂତ ନୁହେଁ । ମାତ୍ର ଶକ୍ତିର ଅଭାବ ହେତୁରୁ ହେଉ ଅଥବା ଅନ୍ୟ ଯେ କୌଣସି କାରଣରୁ ହେଉ, ମୁଁ ଏହି ଗ୍ରନ୍ଥକୁ ଆମୂଳ ପାଠ କରି ଏଥିରେ ଦୋଷର ସଂଖ୍ୟା ଅତି ଅଳ୍ପ ଦେଖିଅଛି । ଅବଶ୍ୟ କଳ୍ପିତ ଭିତ୍ତିସଂସ୍ଥାପିତ ସିଦ୍ଧାନ୍ତ ଉପରେ ଦୋଷାରୋପ ଯୁକ୍ତିସଙ୍ଗତ ହୋଇଥିଲେ, ତାହା ଅନେକ ସ୍ଥାନରେ କରି ହୋଇଥାନ୍ତା; ମାତ୍ର ସେଭଳି ସ୍ଥଳରେ 'ନାନା ମୁନିର ନାନା ମତ' ଏହି ସଯୌକ୍ତିକ ଉକ୍ତି ମନରେ ପଡ଼ିବାରୁ ମୁଁ ତହିଁରୁ କ୍ଷାନ୍ତ ହୋଇଅଛି । ଏହା ବୋଲି ସେହି ଭିତ୍ତି ସୁକଳ୍ପିତ କି ନା ଏହା ଦେଖିବାକୁ ଛାଡ଼ିନାହିଁ । ତେଣୁ କାହାରି କାହାରି ଦୃଷ୍ଟିରେ ଏହି ମୁଖବନ୍ଧ ପ୍ରୀତିକର ହୋଇ ନ ପାରେ; କିନ୍ତୁ ସେଥିଲାଗି ମୋହର ଭୀତି ନାହିଁ । ମୋହର ସଂପୂର୍ଣ୍ଣ ଆଶା ଅଛି ଯେ, କାଳକ୍ରମେ ଏହି ଗ୍ରନ୍ଥ ଉତ୍କଳରେ ଏକ ଅମୂଲ୍ୟ ରତ୍ନ ବୋଲି ପରିଗଣିତ ହେବ ଏବଂ ଅନେକ କୃତବିଦ୍ୟ ଉତ୍କଳୀ ଯୁବକଙ୍କ ମନରେ ତାଦୃଶ ରତ୍ନଲାଭର ଆକାଂକ୍ଷା ଜନ୍ମାଇବ । ତେଣୁ ସେହି ରତ୍ନରେ ନିଜ ନାମ ସୂତ୍ରରୂପେ ଗ୍ରଥିତ ରଖିବା ନିତାନ୍ତ ନିର୍ବୋଧତାର କାର୍ଯ୍ୟ ନୁହେଁ । ଏହି ବିବେଚନା ଅନେକ ପରିମାଣରେ ମୋହର ପୂର୍ବୋକ୍ତ ଭୀତି ଦୂର କରିଅଛି ।

ମୁନିଋଷିସେବିତା, ନୌମାଳିନୀ, ପ୍ରାଚୀକନ୍ୟା ଚନ୍ଦ୍ରଭାଗା ତାହାର ବିପୁଳ ସ୍ୱଚ୍ଛସଲିଳରାଶି ଘେନି କଳକଳ ରବରେ ସମୁଦ୍ରରେ ଆଉ ପ୍ରବେଶ କରୁନାହିଁ କିମ୍ୱା ତାହାର ମାତୃ-ଭଗିନୀ କୁଶଭଦ୍ରା ସ୍ୱକୀୟା ମାତା ଚିତ୍ରୋତ୍ପଳା ଓ ବିମାତା ବ୍ରାହ୍ମଣୀର ସାରବାନ୍ ବିପୁଳ ଧନରାଜି ପର୍ବତ କନ୍ଦରା ଓ ଉପତ୍ୟକାଦିରୁ ବହି ଆଣି ପ୍ରିୟପତି ରତ୍ନାକର ହସ୍ତେ ଭଗିନୀ କନ୍ୟାଞ୍ଚଳରେ ଅକୁଣ୍ଠିତ ଚିତ୍ତେ ଅର୍ପଣ କରୁନାହିଁ । ବର୍ଷୀୟସୀ ଉତ୍କଳମାତା ଅଧୁନା ବହୁପୁତ୍ରପ୍ରସବିନୀ ହେଲେହେଁ, ସେହି ସନ୍ତାନମାନେ ଧନ ଓ ମନ ଉଭୟରେ ହୀନ । ତେଣୁ ପରମ ପୂଜନୀୟା ଜନନୀ ଦେବୀଙ୍କର ଭଗ୍ନଶିରୋମଣି କୋଣାର୍କ ଦେବପ୍ରାସାଦ ପୁନର୍ବାର ନିର୍ମିତ ହେବା ତ ଦୂରର କଥା, ସଂସ୍କୃତ ହେବାର ସୁଦ୍ଧା ଆଶା ନାହିଁ । ତଥାପି କି ହେତୁରୁ

ପ୍ରାଚୀ-କନ୍ୟାର ସେହି ଆବିଳ ସଲିଳରେ ସହସ୍ର ସହସ୍ର ନରନାରୀ ପ୍ରତି ବର୍ଷ ମାଘ ଶୁକ୍ଳ ସପ୍ତମୀ ଦିନ ସ୍ୱଚ୍ଛସଲିଳ ସ୍ଥାନରେ ସ୍ନାନଦାନାଦି କାର୍ଯ୍ୟ ସମାପନ କରିଥାନ୍ତି ? ଏହାର କି କିଛି ପୂର୍ବସ୍ମୃତି ନାହିଁ ? ନିଶ୍ଚୟ ଅଛି । ଯୌବନଗର୍ବୋନ୍ମତ୍ତ ଉଚ୍ଛୃଙ୍ଖଳ ଶ୍ରୀକୃଷ୍ଣନନ୍ଦନ ଶାମ୍ବଙ୍କର ଏହି ପବିତ୍ର ତୀର୍ଥରେ ସ୍ନାନ ଏବଂ ତପଶ୍ଚର୍ଯ୍ୟା ହିଁ ତହିଁର ପୌରାଣିକୀ ସ୍ମୃତି । ତେଣୁ ଗ୍ରନ୍ଥକାର ଏ ବିଷୟଟି ତାହାଙ୍କ ଗ୍ରନ୍ଥର ପ୍ରଥମ ଅଧ୍ୟାୟରେ ସନ୍ନିବେଶିତ କରିଅଛନ୍ତି ।

ଧର୍ମତତ୍ତ୍ୱାନ୍ୱେଷୀ ପୁଣ୍ୟଭୂମି ଭାରତର ବକ୍ଷୋପରି ପୃଥିବୀର ଯାବତୀୟ ଧର୍ମର ଇତିହାସ ସ୍ୱର୍ଣ୍ଣାକ୍ଷରରେ ନିହିତ । ତହିଁରେ ପୁଣି ଉତ୍କଳ ପୃଷ୍ଠାରେ ଏହି ଇତିହାସର ସଂକ୍ଷିପ୍ତସାର ବହୁ ପୂର୍ବ କାଳରୁ ଅତି ବିଶଦ ଭାବରେ ଅଙ୍କିତ ଏବଂ ଯତ୍ନତଃ ସଂରକ୍ଷିତ ହୋଇ ଆସୁଥିଲା । ସେହି ହେତୁରୁ ଅତି ପ୍ରାଚୀନ କାଳରୁ ବୈଦେଶିକ ଭାରତ ପର୍ଯ୍ୟଟକଗଣ ଉତ୍କଳ ଭୂମି ପରିଦର୍ଶନ ନ କଲେ ସେମାନଙ୍କର ଭାରତ ଭ୍ରମଣ ପରିସମାପ୍ତ ହେଲା ବୋଲି ମନେ କରୁ ନ ଥିଲେ । ବୈଦିକ ଧର୍ମ ପୃଥିବୀର ଆଦିଧର୍ମ ଏବଂ ସୂର୍ଯ୍ୟ ସେହି ଧର୍ମର ଉପାସ୍ୟ ଦେବ । ଶାମ୍ବଙ୍କ ପୂର୍ବରୁ ଚନ୍ଦ୍ରଭାଗା, ମୈତ୍ରେୟବନ ଏବଂ ଅର୍କକ୍ଷେତ୍ରର ମହିମା ଭାରତ-ପ୍ରଥିତ ଥିବା ସଂପୂର୍ଣ୍ଣ ସମ୍ଭବପର; ନତୁବା ରୋଗ ବିମୁକ୍ତ୍ୟର୍ଥ ତପଶ୍ଚରଣ ଲାଗି ଶାମ୍ବ କଦାପି ଦ୍ୱାରକାରୁ ଏ ସ୍ଥାନକୁ ଆଗମନ କରି ନ ଥାନ୍ତେ । ତଦୀୟ ପିତା ଶ୍ରୀକୃଷ୍ଣ ନୀଳାଚଳରେ ନୀଳମାଧବ ସନ୍ଦର୍ଶନ କରିବା ଲାଗି ଉତ୍କଳକୁ ଆସିଥିବା ଯେପରି ପୁରାଣ ପ୍ରସିଦ୍ଧ, ଶାମ୍ବଙ୍କ ଆଗମନ ଘଟନା ମଧ୍ୟ ସେହିପରି ପୁରାଣ ପ୍ରସିଦ୍ଧ । ପୁରାଣମାନ ଯେତେ କପୋଳକଳ୍ପନା ଓ କିମ୍ବଦନ୍ତୀରେ ପୂର୍ଣ୍ଣ ହେଉ ପଛକେ, ସେଗୁଡ଼ିକର ଯେ ଆଦୌ ଐତିହାସିକ ଭିତ୍ତି ନାହିଁ, ଏହା କହିବା ନିତାନ୍ତ ସାହସିକତାର କାର୍ଯ୍ୟ । ଯେବେ ସେପରି ସାହସିକ କେହି ଥାନ୍ତି, ତାଙ୍କ ନିକଟରେ ଶାମ୍ବଙ୍କର କୋଣାର୍କାଭିଗମନ ସମ୍ବନ୍ଧେ ଗ୍ରନ୍ଥକାରଙ୍କର ଅନୁମାନ ସମୀଚୀନ ବୋଲି ଅବଶ୍ୟ ପ୍ରତୀୟମାନ ହେବନାହିଁ । ମାତ୍ର ଯାହାହେଉ, ଚିରପ୍ରଚଳିତ ପ୍ରଥାନୁଯାୟୀ ଐତିହାସିକ ତତ୍ତ୍ୱାନ୍ୱେଷଣକ୍ଷେତ୍ରରେ ପୌରାଣିକୀ ଗବେଷଣା ନିତାନ୍ତ ହେୟ ନୁହେଁ । ଯେବେ ଆଧୁନିକ ଐତିହାସିକମାନଙ୍କ ପରି ଗ୍ରନ୍ଥକାର ଏ ସମ୍ବନ୍ଧରେ ତାତ୍‌କାଳିକ ବୈଦେଶିକ ପର୍ଯ୍ୟଟକମାନଙ୍କର ସାକ୍ଷ୍ୟ ପ୍ରଦାନ କରିଥାନ୍ତେ ଏବଂ ଯାହା ପୂର୍ବୋକ୍ତ କାରଣରୁ ଥିବା ସମ୍ଭବପର, ତେବେ ତାହାଙ୍କର ପୌରାଣିକ ବର୍ଣ୍ଣନାର ଭିତ୍ତି ଅବଶ୍ୟ ସୁଦୃଢ଼ ହୋଇଥାନ୍ତା; ମାତ୍ର ଦୁଃଖର ବିଷୟ ଯେ, ସେ ସମୟର ପର୍ଯ୍ୟଟକମାନଙ୍କର ଉକ୍ତି କୌଣସିଠାରେ ଲିପିବଦ୍ଧ ହୋଇ ରହିଥିବା ଅଦ୍ୟାବଧି ଦେଖା ଯାଇନାହିଁ । ପୁରାଣମାନ ଖୋଜି ତଥ୍ୟାନୁସନ୍ଧାନ କରିବାରେ ଗ୍ରନ୍ଥକାର ଅନ୍ୟ ଉପରେ ନିର୍ଭର ହୋଇଥିବାର ପ୍ରମାଣ ସ୍ଥାନେ ସ୍ଥାନେ ମିଳୁଅଛି । ଏହା ଉତ୍ତମ ଐତିହାସିକ ପନ୍ଥା ନ ହେଲେହେଁ, ସେଥିରେ ସୁଦ୍ଧା ଗ୍ରନ୍ଥକାରଙ୍କର ଅଧ୍ୟବସାୟ ପରିଲକ୍ଷିତ ହୁଏ । ଏକ ପୁରାଣର ବିଭିନ୍ନ ସଂସ୍କରଣରେ ବର୍ଣ୍ଣିତ ବିଷୟମାନଙ୍କର ବିଭିନ୍ନତା ପରିଦୃଷ୍ଟ ହେବା ଅସମ୍ଭବ ନୁହେଁ ଏବଂ ଅନେକ ସ୍ଥଳରେ ପୂର୍ବାଂଶ ସହିତ ପରାଂଶର

ସାମଞ୍ଜସ୍ୟ ରଖି ବ୍ୟବହୃତ ଶବ୍ଦମାନଙ୍କର ଅର୍ଥ ସ୍ଥିର କରିବାକୁ ପଡ଼େ । ଗ୍ରନ୍ଥକାରଙ୍କର ଅଧ୍ୟବସାୟ ଏହି ଦିଗରେ ଆହୁରି ଟିକିଏ ସଂପ୍ରସାରିତ ହୋଇଥିଲେ ଭଲ ହୋଇଥାନ୍ତା । ନିଜ ମତର ପୋଷକତାରେ ପର୍ଯ୍ୟଟକମାନଙ୍କର ସାକ୍ଷ୍ୟ ଗ୍ରହଣ କରିବା ଲାଗି ଗ୍ରନ୍ଥକାର ଯେ ଚେଷ୍ଟା କରିନାହାନ୍ତି, ତାହା ନୁହେଁ । ଏହି ଗ୍ରନ୍ଥର ତୃତୀୟ ଅଧ୍ୟାୟ ପାଠ କଲେ, ଏଥିର ପ୍ରମାଣ ମିଳି ପାରିବ ଏବଂ ଯେଉଁ ଐତିହାସିକମାନେ ଉତ୍କଳର ଯାବତୀୟ ହିନ୍ଦୁ କୀର୍ତ୍ତିରେ ବୌଦ୍ଧଧର୍ମର ଭିତ୍ତି କଳ୍ପନା କରନ୍ତି, ସେମାନେ ଉକ୍ତ ଅଧ୍ୟାୟ ପାଠ କଲେ ପରାଙ୍ମୁଖ ହେବେ ।

ଉପର୍ଯ୍ୟୁକ୍ତ ଉଭୟ ବିଷୟ ପ୍ରତି ଦୃଷ୍ଟି ଆକୃଷ୍ଟ ହେବା ଲାଗି ମୁଁ ପାଠକମାନଙ୍କୁ ଗ୍ରନ୍ଥର ଦ୍ୱିତୀୟ ଓ ତୃତୀୟ ଅଧ୍ୟାୟ ପାଠ କରିବାକୁ ଅନୁରୋଧ କରୁଅଛି । ସ୍ଥାନୀୟ ତଦନ୍ତରେ ଗ୍ରନ୍ଥକାରଙ୍କର ପରିଶ୍ରମ ଓ ଦକ୍ଷତା ସୁଦକ୍ଷ ପୁଲିସ କର୍ମଚାରୀମାନଙ୍କର ସୁଦ୍ଧା ଅନୁକରଣୀୟ ଏବଂ ଏ ପ୍ରକାର ତଦନ୍ତଦ୍ୱାରା ସେ ପୁରୀ ଜିଲ୍ଲାର କୋଣାର୍କ ଥିବା ଅଂଶର ଯେଉଁ ଭୌଗୋଳିକ ଜ୍ଞାନ କରିଅଛନ୍ତି, ତାହା ପ୍ରତ୍ୟେକ ତତ୍ତ୍ୱାନ୍ୱେଷୀର ସ୍ପୃହଣୀୟ ।

ଚତୁର୍ଥ ଅଧ୍ୟାୟରୁ ଆରମ୍ଭ କରି ଅଷ୍ଟମ ଅଧ୍ୟାୟର ଶେଷ ପର୍ଯ୍ୟନ୍ତ ଗ୍ରନ୍ଥକାର କୋଣାର୍କ ଦେଉଳ, ତାହାର ବେଢ଼ା ଏବଂ ପାରିପାର୍ଶ୍ୱିକ ଦେବାଳୟମାନଙ୍କ ସମ୍ବନ୍ଧେ ସେମାନଙ୍କ ବର୍ତ୍ତମାନ ଅବସ୍ଥା ଦୃଷ୍ଟିରେ ସମୀଚୀନ ବର୍ଣ୍ଣନା କରିଅଛନ୍ତି । ସେ ସମସ୍ତ ପାଠ କଲେ ପ୍ରାଚୀନ ଉତ୍କଳର କଳୋତ୍କର୍ଷ, ବିଭବ ଓ ଗୌରବ ବିଷୟରେ ଉଚ୍ଚ ଧାରଣା ସ୍ୱତଃ ଜନ୍ମେ; ମାତ୍ର ତହିଁ ସଙ୍ଗେ ସଙ୍ଗେ ମନରେ ବିଶେଷ କ୍ଷୋଭ ସ୍ୱତଃ ଜାତ ହୁଏ । ଯେଉଁ ପାଷଣ୍ଡ 'ଉତ୍କଳ' ଶବ୍ଦର ଆକ୍ଷରିକ ଅର୍ଥରୁ ତାହାକୁ ଭାରବାହୀର ଦେଶ ବୁଝେ, ସେ କେବେହେଲେ ତାହାର କଳାର ଉତ୍କର୍ଷ ଦେଖିବାକୁ ଚକ୍ଷୁ ଉନ୍ମୀଳନ କରିନାହିଁ, ଯେହେତୁ ସେ ଘୋର ଅସୂୟାବିଭୂତ । କଳାର ଉତ୍କର୍ଷ ଦେଖାଇ ଉତ୍କଳ ଯୁଗଯୁଗାନ୍ତରୁ ଯେ ନିଜ ନାମ ସାର୍ଥକ କରି ଆସିଅଛି, ଏହା ଧ୍ରୁବ ସତ୍ୟ । ଏଥିଲାଗି ବିଦ୍ୟମାନ ଦେବାଳୟମାନ ଦେଖିବାକୁ ଯିବା ଅନାବଶ୍ୟକ । ଅସୂୟା ବ୍ୟକ୍ତି ଆଜି ସୁଦ୍ଧା କୋଣାର୍କର ଭଗ୍ନ ପ୍ରସ୍ତର ସ୍ତୂପରୁ ଏହି ସତ୍ୟ ଉପଲବ୍ଧି କରିପାରିବ ।

ଯେଉଁ ଦେଉଳର ଭଗ୍ନାବଶେଷରେ ସୁଦ୍ଧା ଅଧୁନା ଏତେ କାରୁକାର୍ଯ୍ୟ ନିହିତ ଅଛି, ତାହା ପୂର୍ଣ୍ଣାବୟବରେ ଥିଲାବେଳେ କେଡ଼େ ମନୋହର ହୋଇ ନ ଥିବ ! କେବଳ କଳାର ମନୋହାରିତ୍ୱରେ ତାହା ଶ୍ରେଷ୍ଠ ନୁହେଁ, ଉଚ୍ଚତାରେ କି ଉତ୍କଳ, କି ଭାରତ, କି ସମୁଦାୟ ପୃଥିବୀ ସର୍ବତ୍ର ତାହା ଅଦ୍ୱିତୀୟ ଥିଲା । ବାସ୍ତବରେ ୨୩୦ ଫୁଟ କୌଣସି ଦେବାଳୟ ଅଧୁନା କୁତ୍ରାପି ଦୃଷ୍ଟିଗୋଚର ହୁଏନାହିଁ କିମ୍ବା କେବେ ଥିଲା ବୋଲି ଶୁଣାଯାଏ ନାହିଁ । ଚିନ୍ତା କଲେ ଦୁଃଖ ଜାତ ହୁଏ, ଗୋଟିଏ ଗୋଟିଏ ସାମାନ୍ୟ ପ୍ରାସାଦ ନିର୍ମାଣ କରିବା ଲାଗି ଅଧୁନା କେତେ ଶିକ୍ଷା ଓ ଦୀକ୍ଷା ଆବଶ୍ୟକ । ମାତ୍ର ସେ କାଳରେ ଓଡ଼ିଆମାନେ ଏତେ ଶିକ୍ଷା ଓ ଦୀକ୍ଷା

କାହୁଁ ଲାଭ କରିଥିଲେ ? ଜନଶ୍ରୁତି ଅଛି ଯେ, ଶିବାଇ ସାନ୍ତରା ରାଜନିର୍ଦ୍ଦେଶରେ ବାରଶ ବଢ଼େଇ ଲଗାଇ ପଦ୍ମତୋଳା ଗଣ୍ଡରେ କୋଣାର୍କ ଦେଉଳ ତୋଳାଇଥିଲେ । ଏହି ଜନଶ୍ରୁତି ଉତ୍କଳର ସର୍ବତ୍ର ସୁବିଦିତ । ସାମନ୍ତରାୟ କାଳସ୍ରୋତ୍ରରେ ଯାଇଅଛନ୍ତ ଏବଂ ତାଙ୍କ ସଙ୍ଗେ ସଙ୍ଗେ ବାରଶ ବଢ଼େଇ ଚାଲିଗଲେ; କିନ୍ତୁ ଯେଉଁ କେନ୍ଦ୍ର ବା କେନ୍ଦ୍ରମାନଙ୍କରୁ ସାମନ୍ତରାୟ ସେହି ଅସାଧାରଣ କଳ୍ପନା ଓ ବୁଦ୍ଧି ଏବଂ ବିଜ୍ଞାଣୀମାନେ ଲୋକଦୁର୍ଲ୍ଲଭ କଳାକୁଶଳତା ଲାଭ କରିଥିଲେ, ସେହି ସ୍ଥାନମାନଙ୍କର ନାମ ସୁଦ୍ଧା ଜନଶ୍ରୁତିରୁ ବିଲୁପ୍ତ ହେବାକୁ ବସିଲାଣି ! ଏପରି ଘଟିଲାଣି ଯେ, ଉତ୍କଳୀୟ ଶିଳ୍ପାଲୋଚନାର ନିଦର୍ଶନ ସ୍ୱରୂପ ଖଣ୍ଡିଏ ଗ୍ରନ୍ଥ ଆଜି ଓଡ଼ିଆ ଭାଷାରେ ମିଳୁନାହିଁ ! ଏହାଠାରୁ ବଳି କ୍ଷୋଭ ଓ ପରିତାପର ବିଷୟ ଆଉ କ'ଣ ହୋଇପାରେ ? ଉତ୍କଳ ଭାଷାରେ ଲିଖିତ ଶିଳ୍ପଶାସ୍ତ୍ରମାନଙ୍କ ମଧ୍ୟରୁ ଅଧିକାଂଶ ବିଲୁପ୍ତ ହୋଇଥିଲେହେଁ ଅଦ୍ୟାବଧି କିଛି କିଛି ଯେ ନାହିଁ ତାହା ନୁହେଁ; କିନ୍ତୁ ସେଥିରୁ ଖଣ୍ଡିଏ ହେଲେ ଆଜିଯାଏ ମୁଦ୍ରିତ ଓ ପ୍ରକାଶିତ ନ ହେବା ଆମ୍ଭମାନଙ୍କ ସାହିତ୍ୟପ୍ରାଣତା ସମ୍ବନ୍ଧେ କି ସାକ୍ଷ୍ୟ ପ୍ରଦାନ କରୁଅଛି ? ଗ୍ରନ୍ଥକାର ବୋଧହୁଏ ବହୁ ଅନୁସନ୍ଧାନ କରି ପୀଢ଼, ବାଢ଼, ଚାଳ, ଜଘା, ବରାଣ୍ଡି ଓ ବନ୍ଧନା ଏବଂ ପାଦ, କୁମ୍ଭ, ପଟା, କଣି, ଫେଣି ଓ ବସନ୍ତ ପ୍ରଭୃତି କତିପୟ ପାରିଭାଷିକ ଶବ୍ଦ ପାଇଅଛନ୍ତି ଏବଂ ତାହାଙ୍କ ବର୍ଣ୍ଣନାରେ ଯଥାସ୍ଥାନରେ ସେଗୁଡିକର ଅର୍ଥ ବୁଝାଇ ଦେଇଅଛନ୍ତି ।

ଗ୍ରନ୍ଥର ପଞ୍ଚମ ଅଧ୍ୟାୟରେ କୋଣାର୍କର ବଡ଼ ଦେଉଳ ବର୍ଣ୍ଣିତ ହୋଇଅଛି । ନିର୍ମାତାଙ୍କର କଳ୍ପନା ନ ଥାଉ ପଛକେ, ଗ୍ରନ୍ଥକର୍ତ୍ତାଙ୍କ କଳ୍ପନା ଆମ୍ଭମାନଙ୍କଠାରେ ସମ୍ଭବପର ହେଲେ, ଆମ୍ଭେମାନେ ଆଜି ସୁଦ୍ଧା ଶିଳ୍ପକଳାର ଆଦର୍ଶ ଚତୁର୍ବିଂଶତି ଚକ୍ରସମନ୍ୱିତ ସପ୍ତାଶ୍ୱବାହୀ ରଥରେ ସୂର୍ଯ୍ୟଦେବଙ୍କୁ ବସାଇ କୋଣାର୍କରେ ତାହାଙ୍କର ଉପାସନା କରି ପାରନ୍ତେ । ସାମୁଦ୍ରିକ ବାୟୁହିଲ୍ଲୋଳରେ ରଥର ପତାକା ଉଡ୍ଡୀନ ହେଉଥାନ୍ତା; ଜୀବନ୍ତବତ୍ ପ୍ରତୀୟମାନ ପାଷାଣୋତ୍କୀର୍ଣ୍ଣ ତରୁଲତା-ପରିଶୋଭିତ ଜନ୍ତୁମାନେ ରଥକୁ ବେଢ଼ି ରହିଥାନ୍ତେ ଏବଂ ଉପାସକଗଣ ରଥର ବହିର୍ଭାଗରୁ ଯେଉଁଆଡୁ ତଦୁପରି ଦୃଷ୍ଟିପାତ କରୁଥାନ୍ତେ, ସେଠାରେ ଏକ ଅନୁପମ ମନ୍ଦିର ଅଭ୍ୟନ୍ତରାଧିଷ୍ଠିତ ଦେବତୁଲ୍ୟ ଏକ ମୂର୍ତ୍ତି ସନ୍ଦର୍ଶନ କରିପାରନ୍ତେ । ଆହା ! କାର୍ଯ୍ୟ ସହିତ କଳ୍ପନାର କି ଅଭାବନୀୟ ସମ୍ମେଳନ; ଅଧୁନା ତାହା ଖପୁଷ୍ପବତ୍ ପ୍ରତୀୟମାନ ହେଉଅଛି । ଗ୍ରନ୍ଥକାରଙ୍କ ଭାଷାରେ ବଡ଼ଦେଉଳଟି ଗୋଟିଏ ପଞ୍ଚରଥ ସମନ୍ୱିତ ରେଖଦେଉଳ ଥିଲା ।

ଷଷ୍ଠ ଅଧ୍ୟାୟରେ ମୁଖଶାଳାର ବର୍ଣ୍ଣନା ଅଛି । ଏହାର ଉଚ୍ଚତା ଭୁବନେଶ୍ୱର ବଡ଼ଦେଉଳଠାରୁ ୧୫।୨୦ ଫୁଟ ଅଧିକ ପଛକେ ଊଣା ନ ଥିଲା । ଏହା ପଦ୍ମପୃଷ୍ଠୋପରି ସଂସ୍ଥାପିତ ଏକ ପୀଢ଼ଦେଉଳ । ଏହାର ଅନ୍ୟାନ୍ୟ କାର୍ଯ୍ୟମାନଙ୍କର ବର୍ଣ୍ଣନା ମଧ୍ୟରେ ତିନି

ଦିଗରେ ଥିବା ଦୁଇ ଦୁଇ ସ୍ତମ୍ଭ ସହ ତିନିଗୋଟି ଦ୍ୱାରବନ୍ଧ, ପୂର୍ବଦ୍ୱାର ଉପରିସ୍ଥ ଦୁଇ ବହୁଭୁଜ ସ୍ତମ୍ଭୋପରି ସଂସ୍ଥାପିତ ନବଗ୍ରହପାଟ (ଯାହା କି ଅଧୁନା ସ୍ଥାନାନ୍ତରେ ରକ୍ଷିତ), ପୂର୍ବ ସିଂହଦ୍ୱାରସ୍ଥ ଅଧୁନା ସ୍ଥାନଚ୍ୟୁତ ଦୁଇ ସିଂହ ମୂର୍ତ୍ତି ଏବଂ ବର୍ତ୍ତମାନ ବିଲୁପ୍ତ ତୋରଣ, ଦକ୍ଷିଣଦ୍ୱାରର ଦୁଇ ଘୋଡା ଏବଂ ଉତ୍ତର ଦ୍ୱାରର ଦୁଇ ହାତୀଙ୍କର ବର୍ଣ୍ଣନା ମନୋଯୋଗ ସହକାରେ ପଠନୀୟ । କିନ୍ତୁ ପଠନାପେକ୍ଷା ପରିଦର୍ଶନ ଅଧିକତର ବାଞ୍ଛନୀୟ; କାରଣ ଜଗମୋହନର ବାଡ଼ ଦେହରେ ଆଜି ସୁଦ୍ଧା ଯେଉଁ ଲତାପତ୍ରର କାମ କୋଣାର୍କ-ଶିଳ୍ପୀମାନଙ୍କର ଆଲୋକଛାୟା କ୍ରୀଡ଼ାର ଅଭିଜ୍ଞତା ବିଷୟରେ ସାହାଯ୍ୟ ପ୍ରଦାନ କରୁଅଛି, ସେଥିର ସୌନ୍ଦର୍ଯ୍ୟ ଗ୍ରହଣ ଦର୍ଶନ ବ୍ୟତୀତ ବର୍ଣ୍ଣନା ପାଠଦ୍ୱାରା ସମ୍ଭବପର ନୁହେଁ ।

ସପ୍ତମ ଅଧ୍ୟାୟରେ ନାଟମନ୍ଦିର ଓ ରାମଚଣ୍ଡୀ ମନ୍ଦିରର ବର୍ଣ୍ଣନା ଅଛି । ନାଟମନ୍ଦିରକୁ ଡାକ୍ତର ରାଜେନ୍ଦ୍ର ଲାଲ ମିତ୍ର ପ୍ରଭୃତି କତିପୟ ପୁରାତତ୍ତ୍ୱାନ୍ୱେଷୀ ଭୋଗମଣ୍ଡପ ଆଖ୍ୟା ପ୍ରଦାନ କରିଛନ୍ତି । ବସ୍ତୁତଃ ତାହା ଯେ ଅସମ୍ଭବ ଓ ଅସତ୍ୟ, ଏହା ଗ୍ରନ୍ଥକାର ସୁସ୍ପଷ୍ଟ ଭାବରେ ପ୍ରତିପାଦନ କରିଅଛନ୍ତି । ଏହା ମୁଖଶାଳା ପରି ଏକ ପଞ୍ଚରଥ ପୀଢ଼ଦେଉଳ ଥିଲା । ଏଥିରେ ଅଶ୍ଳୀଳ ମୂର୍ତ୍ତି ଆଦୌ ନାହିଁ । ନୃତ୍ୟ, ଗୀତ ଓ ଭଜନ ସ୍ମରଣର ବିବିଧ ରୀତି ପ୍ରଦର୍ଶନ ଏହି ମନ୍ଦିରର କାରୁକାର୍ଯ୍ୟମାନଙ୍କର ଏକ ପ୍ରଧାନ ଉପାଦାନ । ବଡ଼ଦେଉଳ ଓ ମୁଖଶାଳା ପୀଠ ସଙ୍ଗେ ସମୋଚ୍ଚ ପୀଠ ଉପରେ ନାଟମନ୍ଦିର ନିର୍ମିତ ହୋଇଥିଲା ।

ନାଟମନ୍ଦିରର ପୂର୍ବ ଦ୍ୱାରରେ ଯେଉଁ ପ୍ରକାଣ୍ଡ ଗଜସିଂହ ମୂର୍ତ୍ତି ଦୁଇଟି ବିଦ୍ୟମାନ, ସେମାନଙ୍କର ବର୍ଣ୍ଣନା ପାଠକଲେ ବଡ଼ କୌତୂହଳ ଜାତ ହୁଏ । ଏକ ଏକ ସିଂହର ଉଦର ତଳେ ଏକ ଏକ ହସ୍ତୀ ଚିପାହୋଇ ରହିଅଛନ୍ତି । ନାଭି ଓ ପଛଗୋଡ଼ ଦୁଇଟି ଛଡା ସିଂହର ଅନ୍ୟ କୌଣସି ଅଂଶ ଗଜସହ ସଂଲଗ୍ନ ନାହିଁ । ଦେଢ଼ଇଞ୍ଚ ବ୍ୟାସବିଶିଷ୍ଟ ଏକ ଏକ ଗୋଲାକାର ଲୁହାଗଜଦ୍ୱାରା ସିଂହର ନାଭି ହାତୀର ପିଠି ସଙ୍ଗେ ଯୋଡ଼ା ହୋଇଅଛି ଏବଂ ଏହାହିଁ ନାଭିଠାରୁ ମସ୍ତକ ପର୍ଯ୍ୟନ୍ତ ସିଂହର ସମସ୍ତ ଭାର ସମ୍ଭାଳି ଅଛି । ପ୍ରତ୍ୟେକ ହାତୀର ଲୌହଶିକୁଳିବଦ୍ଧ ଗଳାରେ ଘଣ୍ଟି ଝୁଲୁଅଛି ଏବଂ ଶୁଣ୍ଢୋପରି ଏକ ମନୁଷ୍ୟ ରହିଅଛି । ପ୍ରତ୍ୟେକ ପାଖର ହାତୀ, ମନୁଷ୍ୟ ଓ ସିଂହ ଖଣ୍ଡିଏ ପଥରରେ କାମ ହେଲାପରି ସମ୍ପୂର୍ଣ୍ଣ ପ୍ରତୀତି ଜନ୍ମେ ଏବଂ ସମସ୍ତ ପ୍ରସ୍ତରର ଓଜନ ପ୍ରାୟ ୭୭୦ ମହଣ । ପାଠକଗଣ, ଏପରି ଦୁଇଗୋଟି ପ୍ରକାଣ୍ଡ ଶିଳ୍ପର କଳ୍ପନା କଲେ ଆପଣମାନଙ୍କ ମନରେ ପୁରାକାଳୀନ ଉତ୍କଳର ଏ କ୍ଷେତ୍ରରେ ଶିଳ୍ପକଳା ଚର୍ଚ୍ଚାର କି ଧାରଣା ସ୍ୱଭାବତଃ ଜନ୍ମେ ? ସୂକ୍ଷ୍ମ ସୂଚୀ କାର୍ଯ୍ୟଠାରୁ ଆରମ୍ଭ କରି ଯେଉଁମାନେ ଏ ପ୍ରକାର ପ୍ରକାଣ୍ଡ ପ୍ରକାଣ୍ଡ ମୂର୍ତ୍ତି ପ୍ରସ୍ତରରେ ଖୋଦନ କରି ପାରୁଥିଲେ, ସେମାନଙ୍କର ବଂଶଧରମାନେ ଆଜି କାହାନ୍ତି ? କୋଣାର୍କର ଭଗ୍ନାବଶେଷ ନିକଟରେ ଏହି ପ୍ରଶ୍ନ ପଚାରିଲେ, ତାହା ବି ଉତ୍ତର ଦିଏ 'କାହାନ୍ତି' ।

କୋଣାର୍କ ମନ୍ଦିରର ବେଢ଼ାରେ ଥିବା ଅନ୍ୟ ଯେଉଁ ଦେଉଳକୁ ଗ୍ରନ୍ଥକାର ରାମଚଣ୍ଡୀଙ୍କର ଦେଉଳ ଏବଂ ଶ୍ରୀଯୁକ୍ତ ବିଷନ୍ ସ୍ୱରୂପ ମାୟାଦେବୀଙ୍କର ମନ୍ଦିର ବୋଲି କହିଅଛନ୍ତି, ତାହା ବଡ଼ଦେଉଳର ଗୋଟିଏ କ୍ଷୁଦ୍ରତର ପ୍ରତିକୃତି । ଯେ ଏହାକୁ ଦେଖିବ, ତାହାର ବଡ଼ଦେଉଳର ଶିଳ୍ପକଳା ଜ୍ଞାନ ସମୀଚୀନ ହେବ । ମାତ୍ର ଘୋର ପରିତାପର ବିଷୟ ଯେ, ଏହା ମଧ୍ୟ ଅଧୁନା ବଡ଼ଦେଉଳର ସମଦଶା ଲାଭ କଲାଣି । ଏହି ଦେଉଳର ପାର୍ଶ୍ୱଦେବ ରୂପେ ଯେଉଁ ତିନିଗୋଟି ସୂର୍ଯ୍ୟମୂର୍ତ୍ତି ଥିଲେ, ସେମାନେ ଅଧୁନା ବିଦ୍ୟମାନ । ପଶ୍ଚିମ ପାର୍ଶ୍ୱର ସୂର୍ଯ୍ୟମୂର୍ତ୍ତିର ସୁଷମା ବିଶ୍ୱମନୋରମ । ବସ୍ତୁତଃ କାରିଗରମାନେ କିପରି ହାତହତିଆର ଘେନି ଏହାକୁ ନିର୍ମାଣ କରିଥିଲେ, ତାହାର କଳ୍ପନା ସୁଦ୍ଧା ଆଜି ଉତ୍କଳରେ କରାଯାଇ ପାରିବ ନାହିଁ । ଖଣ୍ଡିଏ ଶଙ୍ଖ ମଲମଲ ପଥରରେ ମୂର୍ତ୍ତିଟି ଗଠିତ । ଗ୍ରନ୍ଥକାର ନ୍ୟାୟତଃ କହିଅଛନ୍ତି, ଏହି ମୂର୍ତ୍ତିଟି ' କୋଣାର୍କ ସ୍ଥାପତ୍ୟର ଚୂଡ଼ାନ୍ତ ନିଦର୍ଶନ' । ଏହି ମୂର୍ତ୍ତି ସମ୍ବନ୍ଧୀୟ ଅନ୍ୟାନ୍ୟ ବିବରଣ ଅଷ୍ଟମ ଅଧ୍ୟାୟରେ ପଠିତବ୍ୟ ।

ଏଠାରେ ଗୋଟିଏ ବିଷୟ ଉଲ୍ଲେଖଯୋଗ୍ୟ । ଉତ୍କଳର ପ୍ରତ୍ୟେକ ଦେବମନ୍ଦିରର ଏକ ବିଶେଷତ୍ୱ ଏହି ଯେ, ତହିଁର ଉପାସ୍ୟ ଦେବଙ୍କର ପତ୍ନୀଙ୍କ ଉପାସନା ପାଇଁ ବେଢ଼ା ମଧ୍ୟରେ ଏକ ସ୍ଥାନ ଥାଏ । ଭୁବନେଶ୍ୱର ଦେଉଳ ଦେଖ, ପୁରୀ ଦେଉଳ ଦେଖ, ଏମନ୍ତ କି ପୁରୀର ଲୋକନାଥ ପ୍ରଭୃତି କ୍ଷୁଦ୍ର ଦେବାଳୟମାନଙ୍କରେ ସୁଦ୍ଧା ଏହା ଦେଖିବାକୁ ପାଇବ । ଯେଉଁଠାରେ ସ୍ୱତନ୍ତ୍ର ଦେଉଳ ନାହିଁ, ସେଠାରେ ଅନ୍ତତଃ ଦେଉଳର ପୃଷ୍ଠଭାଗରେ ଏକ ସ୍ଥାନରେ ଦେବପତ୍ନୀଙ୍କ ନିମନ୍ତେ ଏକ ସ୍ଥାନ ଅଛି । କୋଣାର୍କରେ ଯେ ଏହି ପ୍ରଥା ଅନୁସୃତ ହୋଇ ନ ଥିବ, ଏହା କଦାପି ଅନୁମାନ କରାଯାଇ ନ ପାରେ । ମୋର ସାମାନ୍ୟ ବିବେଚନାରେ ଗ୍ରନ୍ଥକାର ଯାହାକୁ ରାମଚଣ୍ଡୀଙ୍କ ଦେଉଳ କହିଅଛନ୍ତି, ତାହା ସୂର୍ଯ୍ୟପତ୍ନୀ ଛାୟାଦେବୀଙ୍କର ଦେଉଳ, ତାହା ଶ୍ରୀ ବିଷନ୍ ସ୍ୱରୂପଙ୍କ 'ମାୟାଦେବୀ'ଙ୍କ ମନ୍ଦିର ନୁହେଁ । ସଂଜ୍ଞାଦେବୀ ସୂର୍ଯ୍ୟ ତେଜ ସହି ନ ପାରି ଆପଣାର ଅନୁରୂପା ଯେଉଁ ଛାୟାଦେବୀଙ୍କୁ ସତତ ସୂର୍ଯ୍ୟଙ୍କ ନିକଟରେ ରହିବା ଉଦ୍ଦେଶ୍ୟରେ ଭିଆଇଥିଲେ, ସେହି ଛାୟାଦେବୀ କୋଣାର୍କର ଅନ୍ୟ ଏକ ଦେବତା ଥିଲେ । କାଳକ୍ରମେ ସେହି ମୂର୍ତ୍ତି ହୁଏତ ଭଗ୍ନ ନ ହୋଇ ସ୍ଥାନାନ୍ତରକୁ ଯାଇଅଛନ୍ତି । ଗ୍ରନ୍ଥକାର ଗ୍ରନ୍ଥର ଅଷ୍ଟମ ଅଧ୍ୟାୟରେ ରାମଚଣ୍ଡୀ ମନ୍ଦିରର ପଶ୍ଚିମ ପାର୍ଶ୍ୱରେ ଯେଉଁ ସୂର୍ଯ୍ୟମୂର୍ତ୍ତି ଥିବାର ବର୍ଣ୍ଣନା କରିଅଛନ୍ତି ଏବଂ ତାହାଙ୍କର ଦୁଇ ପାଖେ ଯେଉଁ ଦୁଇ ସଖୀ ଥିବାର ଉଲ୍ଲେଖ କରିଅଛନ୍ତି, ସେ ଦୁହେଁ ମୋ ମତରେ ଆଉ କେହି ନୁହନ୍ତି, ସଂଜ୍ଞା ଓ ଛାୟା । ଯାହାହେଉ, ମୋର ଏହି ମତ ଗବେଷଣା-ସାପେକ୍ଷ ।

ଅଷ୍ଟମ ଅଧ୍ୟାୟରେ କୋଣାର୍କର ଧ୍ୱଂସାବଶେଷ ମଧ୍ୟରେ ବେଢ଼ାଭିତରୁ ମିଳିଥିବା କେତେଗୁଡ଼ିଏ ସ୍ଥାପତ୍ୟର ବର୍ଣ୍ଣନା ଅଛି । ଏଥିମଧ୍ୟରୁ କେତେକ କାର୍ଯ୍ୟ ସମ୍ବନ୍ଧେ ବିଦେଶୀୟ ପୁରାତତ୍ତ୍ୱାନ୍ୱେଷୀମାନେ ବିଭିନ୍ନ ଭ୍ରାନ୍ତ ମତବ୍ୟକ୍ତ କରିଅଛନ୍ତି ଏବଂ ଗ୍ରନ୍ଥକାର ସେ

ମତଗୁଡ଼ିକର ଖଣ୍ଡନ କରିବାର ଚେଷ୍ଟା କରି କୃତକାର୍ଯ୍ୟ ହୋଇଅଛନ୍ତି । ଅନେକ ସ୍ଥଳରେ ମୁଁ ଗ୍ରନ୍ଥକାରଙ୍କ ସହିତ ଏକମତ ହୋଇ ବିଦେଶୀୟ ଦ୍ରଷ୍ଟାମାନଙ୍କ ବିଚାରର ସମୀଚୀନତାରେ ସନ୍ଦିହାନ ହୋଇଅଛି । ସେହି ବିଷୟଗୁଡିକ ଆମୂଳ ପାଠ କରିବା ଲାଗି ମୁଁ ପାଠକବର୍ଗଙ୍କୁ ବିଶେଷ ଅନୁରୋଧ କରୁଅଛି । ଭିତ୍ତିହୀନ ପୂର୍ବଧାରଣାର ବଶବର୍ତ୍ତୀ ହେଲେ ବିଜ୍ଞଲୋକମାନେ ସୁଦ୍ଧା କିପରି ଅଯଥା ନିଷ୍କରିରେ ଉପନୀତ ହୁଅନ୍ତି, ତାହା ଏହି ଅଧ୍ୟାୟ ପାଠକଲେ ସହଜେ ପ୍ରତିପନ୍ନ ହେବ ।

ନବମ ଅଧ୍ୟାୟରେ ମନ୍ଦିର ନିର୍ମାଣର କାଳ ନିର୍ଣ୍ଣିତ ହୋଇଅଛି । ଏ ବିଷୟରେ ନାନା ମୁନିଙ୍କର ନାନା ମତ ଏବଂ ପ୍ରତ୍ୟେକେ ନିଜ ନିଜ ପୂର୍ବ ଧାରଣାର ବଶବର୍ତ୍ତୀ ହୋଇ ଏକ ଏକ ସିଦ୍ଧାନ୍ତରେ ଉପନୀତ ହୋଇଅଛନ୍ତି । ଆମ୍ଭମାନଙ୍କର ଗ୍ରନ୍ଥକାର 'ମାଦଳାପାଞ୍ଜି' ସହିତ ଏକମତ ହୋଇ ୧୨୦୦ ଶକାବ୍ଦ ବା ୧୨୭୮ ଖ୍ରୀଷ୍ଟାବ୍ଦ ମନ୍ଦିର ନିର୍ମାଣର ସମୟ ବୋଲି ସ୍ଥିର କରିଅଛନ୍ତି । ଯେଉଁମାନେ ସିଂହଳର 'ଦନ୍ତପଞ୍ଜିକା'କୁ ଅଭ୍ରାନ୍ତ ଏବଂ 'ମାଦଳାପାଞ୍ଜି'କୁ ଭ୍ରମସଙ୍କୁଳ ବୋଲି ମନେ କରନ୍ତି, ସେମାନଙ୍କ ଯୁକ୍ତିର ସମୀଚୀନତା ପରୀକ୍ଷା କରିବା ଲାଗି ଗ୍ରନ୍ଥକାର ଯେଉଁ ଶ୍ରମସ୍ୱୀକାର କରିଅଛନ୍ତି, ତାହା ଅବଶ୍ୟ ପଣ୍ଡଶ୍ରମ ହୋଇନାହିଁ ଏବଂ ଯେଉଁଦିନ ଓଡ଼ିଶାର ପ୍ରକୃତ ଇତିହାସ ଲେଖାହେବ, ସେହିଦିନ ଏକା ଗ୍ରନ୍ଥକାରଙ୍କର ଯୁକ୍ତିର ସାରବତ୍ତା ପ୍ରତିପାଦିତ ହେବ । ଅଧୁନା ଏତିକି ମାତ୍ର କୁହାଯାଇପାରେ ଯେ, ମନ୍ଦିରର ଭଗ୍ନାବଶେଷରେ କୌଣସି ଉତ୍କୀର୍ଣ୍ଣ ଲିପି ନ ମିଳିଥିବା ସ୍ଥଳେ ଆଉ କୌଣସି ଯୁକ୍ତିଯୁକ୍ତ ବାହ୍ୟପ୍ରମାଣ ମିଳିପାରିଥିଲେ 'ମାଦଳାପାଞ୍ଜି'ର ଭିତ୍ତି ଅନ୍ତତଃ ସମସାମୟିକ ଘଟନା ସମ୍ବନ୍ଧେ ସ୍ଥିରତର୍ ହୋଇ ପାରିଥାନ୍ତା । କୋଣାର୍କରେ ଅଧୁନା ଯେଉଁ ମନ୍ଦିରର ଧ୍ୱଂସାବଶେଷ ପଡି ରହିଅଛି, ତାହା ମନୁଷ୍ୟର କୀର୍ତ୍ତି ମଧ୍ୟରେ ଉତ୍କୃଷ୍ଟତମ ହେଲେହେଁ, ବ୍ୟୋମଚାରୀ ସୂର୍ଯ୍ୟଦେବଙ୍କର ଆବାସ ହେବା ନିମନ୍ତେ 'କୁଟୀର' ନୁହେଁ ତ ଆଉ କ'ଣ ? ତେଣୁ ଶ୍ରୀ ବିଷନ୍ ସ୍ୱରୂପ ଯାହାକୁ କୁଟୀର ମଣୁ ନାହାନ୍ତି, ତାହା ବିଶ୍ୱାସୀ ଭକ୍ତ ପକ୍ଷରେ କୁଟୀରରୁ ହୀନତର । କୋଣାର୍କ ଚୂଡ଼ ସମ୍ବନ୍ଧେ ଶ୍ରୀ ବିଷନ୍‌ସ୍ୱରୂପଙ୍କର କୌଶଳପୂର୍ଣ୍ଣ ମତବାଦର ଭିତ୍ତି ଯେ ଅକର୍ମଣ୍ୟ, ଏହା ମନେହୁଏ ଗ୍ରନ୍ଥକାର ଅତି ସୁସ୍ପଷ୍ଟଭାବରେ ପ୍ରତିପାଦନ କରିଅଛନ୍ତି ।

ଦଶମ ଅଧ୍ୟାୟରେ କୋଣାର୍କଦେବଙ୍କର ଭୋଗ ଓ ଯାତ୍ରା କଥା ବର୍ଣ୍ଣିତ ଅଛି । କେଶରୀବଂଶୀୟ ତ୍ରିଂଶତ୍ତମ ରାଜା ପୁରନ୍ଦର କେଶରୀ ଯେପରି ଏକ ସୂର୍ଯ୍ୟମନ୍ଦିର ନିର୍ମାଣ କରି ଭୋଗର ସୁବନ୍ଦୋବସ୍ତ କରିଥିଲେ ଏବଂ ଗଙ୍ଗବଂଶର ଅନଙ୍ଗଭୀମଦେବ ଓ ଲାଙ୍ଗୁଳା ନରସିଂହଦେବ ଯେପରି ତହିଁର ଅଭିବୃଦ୍ଧି ଯଥାକ୍ରମେ ସାଧନ କଲେ, ତାହା ଗ୍ରନ୍ଥକାର ମାଦଳାପାଞ୍ଜି ଅନୁସାରେ ଯଥାର୍ଥରୂପେ ବର୍ଣ୍ଣନା କରିଅଛନ୍ତି । ଯେଉଁମାନେ କହନ୍ତି, କୋଣାର୍କର ଦେଉଳ ତୋଳା ନ ସରୁଣୁ ଭାଙ୍ଗିପଡିଲା, ତହିଁରେ ଦିଅଁ ବସି ନ ଥିଲେ, ଭୋଗଖଞ୍ଜାର ବିବରଣ ସେମାନଙ୍କୁ ଉପଯୁକ୍ତ ଉତ୍ତର ପ୍ରଦାନ କରିବ । ବାସ୍ତବରେ ଶାମ୍ବଙ୍କ

ସମୟରୁ କୋଣାର୍କରେ ସୂର୍ଯ୍ୟଦେବ ମନ୍ଦିରାଧିଷ୍ଠିତ; କେତେବେଳେ କେଉଁ ରାଜା ଶାମ୍ବ ପ୍ରତିଷ୍ଠିତ ଦେବଙ୍କ ପାଇଁ ନୂଆ ମନ୍ଦିର ତୋଳାଇ ଦେଇଅଛନ୍ତି କିମ୍ବା ତହିଁର ଜୀର୍ଣ୍ଣସଂସ୍କାରାଦି କରିଅଛନ୍ତି । କିନ୍ତୁ ସେହି ଶାମ୍ବ ପ୍ରତିଷ୍ଠିତ ମୂର୍ତ୍ତି ଯାହା କି ଅଧୁନା ପୁରୀ କ୍ଷେତ୍ରରେ ଜଗନ୍ନାଥ ଦେବଙ୍କ ବେଢ଼ା ଭିତରେ ଏକ ଦେଉଳରେ ସୁରକ୍ଷିତ, କୋଣାର୍କ କ୍ଷେତ୍ରରୁ ତାହାଙ୍କର ତିରୋଭାବ ଲାଙ୍ଗୁଳା ନରସିଂହଙ୍କ ମନ୍ଦିର ସଂସ୍ଥାପନ ପର୍ଯ୍ୟନ୍ତ କାହିଁକି, ଅତି ଅଳ୍ପ କାଳ ପୂର୍ବ ପର୍ଯ୍ୟନ୍ତ କେବେହେଲେ ଘଟି ନ ଥିଲା ।

କୋଣାର୍କ ସନ୍ନିହିତ ଚନ୍ଦ୍ରଭାଗା ନଦୀରେ କେବେ ସ୍ନାନବିଧି ସର୍ବପ୍ରଥମେ ଅନୁଷ୍ଠିତ ହୋଇଥିଲା, ତାହା ଅନ୍ୱେଷଣ କରିବାକୁ ଯାଇ 'କୋଣାର୍କ' ନାମରୁ କୋଣାବସ୍ଥିତ ଅର୍କର ସମୟ ସ୍ଥିର କରି ସ୍ନାନର ଆରମ୍ଭ ନିରୂପଣ କରିବାକୁ ଗ୍ରନ୍ଥକାର ଚେଷ୍ଟା କରିଅଛନ୍ତି । ଅଧ୍ୟାପକ ରାୟ ବାହାଦୁର ଶ୍ରୀଯୁକ୍ତ ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧି ଏମ୍.ଏ. ମହାଶୟଙ୍କ ମତାନୁବର୍ତ୍ତୀ ହୋଇ ସେ ଶ୍ରୀଯୁକ୍ତ ବିଷନ୍ ସ୍ୱରୂପଙ୍କ ଗଣନାର ଭ୍ରମ ପ୍ରଦର୍ଶନ କରିଅଛନ୍ତି ଏବଂ ସ୍ୱୟଂ ଗଣନା କରି ଦେଖାଇଅଛନ୍ତି ଯେ, ପ୍ରାୟ ଖ୍ରୀଃ ପୂଃ ୧୦ମ ଶତାବ୍ଦୀରେ ଏହି ସ୍ନାନର ଆରମ୍ଭ ହୋଇଥିବ । ଯେଉଁବର୍ଷ ଡିସେମ୍ବର ମାସ ୨୧ ତାରିଖରେ ସୂର୍ଯ୍ୟ ତାହାଙ୍କର ଦକ୍ଷିଣାୟନ ଶେଷ କରିଥିବେ ଏବଂ ୨୨ ତାରିଖରେ ମାଘ ଶୁକ୍ଳ ସପ୍ତମୀ ହୋଇ ଉତ୍ତରାୟଣ ଆରବ୍ଧ ହୋଇଥିବ, ସେହି ବର୍ଷରୁ ଏହି ସ୍ନାନ ଆରମ୍ଭ ହୋଇଥିବ ବୋଲି ଗ୍ରନ୍ଥକାର ସ୍ୱମତ ବ୍ୟକ୍ତ କରିଅଛନ୍ତି । ଆଜିକାଲି ହିନ୍ଦୁମାନେ ସମସ୍ତେ ଜାଣନ୍ତି ଯେ, ମକର ସଂକ୍ରମଣ ଦିବସ ଉତ୍ତରାୟଣ ଆରବ୍ଧ ହୁଏ ଏବଂ ସେ ଦିନ ପ୍ରାତଃକାଳରୁ ସ୍ନାନ ସାରି ସମସ୍ତେ ସୂର୍ଯ୍ୟଦେବଙ୍କୁ ପୂଜା କରନ୍ତି । ଏହି ସଂକ୍ରାନ୍ତି ଆଜିକାଲି ଜାନୁଆରୀ ୧୨ କିମ୍ବା ୧୩ ତାରିଖରେ ପଡୁଅଛି । ମୋର କ୍ଷୁଦ୍ର ମତରେ ଯେଉଁଦିନ ମକର ସଂକ୍ରାନ୍ତି ମାଘ ଶୁକ୍ଳ ସପ୍ତମୀରେ ପଡିଥିଲା, ସେହିଦିନରୁ ଏହି ସ୍ନାନ ଆରବ୍ଧ ହୋଇଥିବା ସମ୍ଭବପର । ଆହୁରି ଗୋଟିଏ ବିଷୟ ଏଠାରେ ଉଲ୍ଲେଖଯୋଗ୍ୟ । ଉତ୍କଳ ଖଣ୍ଡରେ ଶମ୍ବର ଦଶମୀ ବୋଲି ଗୋଟିଏ ପର୍ବ ପ୍ରତିପାଳିତ ହୁଏ । ସେ ଦିନ ସୂର୍ଯ୍ୟପୂଜା କରାଯାଇଥାଏ । ଶମ୍ବର ଦଶମୀର ଅନ୍ୟ ନାମ 'ଶାମ୍ବଦଶମୀ' ଏବଂ ଏହା ପୌଷ ଶୁକ୍ଳ ଦଶମୀ । ଶାମ୍ବ ମାଘ ଶୁକ୍ଳ ସପ୍ତମୀ ମକର ସଂକ୍ରାନ୍ତିରେ ଚନ୍ଦ୍ରଭାଗା ଜଳରେ ସ୍ନାନ କରି ତପସ୍ୟାରମ୍ଭ କରିଥିବା ଏବଂ ତତ୍‌ପରବର୍ତ୍ତୀ ଏକ ପୌଷ ଶୁକ୍ଳ ଦଶମୀ ବା ଶାମ୍ବଦଶମୀ ଦିନ ପଦ୍ମପତ୍ରରେ ସୂର୍ଯ୍ୟମୂର୍ତ୍ତି ଅବଲୋକନ କରି ବରଲାଭ କରିଥିବା ମଧ୍ୟ ଅସମ୍ଭବ ନୁହେଁ । ବିଗତ ବର୍ଷ ଶମ୍ବର ଦଶମୀ ଜାନୁଆରୀ ୨ ତାରିଖରେ ପଡିଥିଲା ଏବଂ କେବେ କେବେ ଆଗରୁ କେବେ କେବେ ଅବା ପଛରେ ପଡେ; କାରଣ ଚାନ୍ଦ୍ରମାନ ଓ ସୌରମାନ ମଧ୍ୟରେ ଏପରି ପ୍ରଭେଦ ଘଟିବା ସ୍ୱାଭାବିକ । ହିନ୍ଦୁମାନଙ୍କ ମଧ୍ୟରେ ଉଭୟବିଧ ଗଣନା ପ୍ରଚଳିତ; କିନ୍ତୁ ସୌରମାନର କେବଳ ସଂକ୍ରମଣ ଏବଂ ଚାନ୍ଦ୍ରମାନର ସକଳ ତିଥି ପର୍ବଦିବସ ମଧ୍ୟରେ ପରିଗଣିତ ହୁଏ, ଏକ ସମୟରେ ମକର ସଂକ୍ରାନ୍ତି ସ୍ନାନ ଓ ମାଘ ଶୁକ୍ଳ

ସପ୍ତମୀ ଏକାଦିନକେ ପଡିଥିବ । ମକର ସଂକ୍ରମଣ ସ୍ନାନ ଉତ୍କଳ ତଥା ଭାରତର ସର୍ବତ୍ର ସମ୍ମାନିତ; କିନ୍ତୁ ମାଘ ଶୁକ୍ଳ ସପ୍ତମୀରେ ଚନ୍ଦ୍ରଭାଗା ସ୍ନାନ କେବଳ ଉତ୍କଳରେ ସମ୍ମାନିତ ହୋଇ ଆସୁଅଛି । କାରଣ ବୋଧହୁଏ ତହିଁ ସଙ୍ଗେ ଚନ୍ଦ୍ରଭାଗାରେ ଶାମ୍ବ ସ୍ନାନରୂପେ ଏକ ପବିତ୍ର ଘଟଣାର ସାହଚର୍ଯ୍ୟ ରହିଅଛି । ଶାମ୍ବଙ୍କର ବରଲାଭ କାରଣରୁ ମଧ୍ୟ ବୋଧହୁଏ ଶମ୍ବର ଦଶମୀ ଉତ୍କଳରେ ଯେତେ ଆଦୃତ, ଭାରତର ଅନ୍ୟତ୍ର ତେତେ ନୁହେଁ ।

ଗ୍ରନ୍ଥକାର ଏହି ପୁସ୍ତକର ଏକାଦଶ ଅଧାୟରେ କୋଣାର୍କରେ ବୌଦ୍ଧାବଶେଷ ପ୍ରସଙ୍ଗରେ ଶ୍ରୀଯୁକ୍ତ ବିଷନ୍ ସ୍ୱରୂପଙ୍କ ମତ ଖଣ୍ଡନ କରିବାରେ ପ୍ରବୃତ୍ତ ହୋଇଅଛନ୍ତି ଏବଂ ସେ ସମସ୍ତ ଶ୍ରୀଯୁକ୍ତ ବିଷନ୍ ସ୍ୱରୂପଙ୍କ ମୂଳଗ୍ରନ୍ଥ ପାଠକରି ମୋର ପୂର୍ଣ୍ଣ ଧାରଣା ଜନ୍ମିଅଛି ଯେ ଇଞ୍ଜିନିୟର ସାହେବଙ୍କ କଳ୍ପନା ଜଳ୍ପନା ଅଳୀକ ଓ ବହୁ ପ୍ରମାଦପୂର୍ଣ୍ଣ । ଶ୍ରୀ ବିଷନ୍‌ସ୍ୱରୂପଙ୍କ ସଦୃଶ ବୌଦ୍ଧବାୟୁଗ୍ରସ୍ତ ସୁଲେଖକ ଆଜିକାଲି ଅନେକ ଦେଖାଯାନ୍ତି ଏବଂ ସେମାନେ ମନେକରନ୍ତି ଯେ ଯେବେ କୌଣସି ହିନ୍ଦୁକୀର୍ତ୍ତିରେ ବୌଦ୍ଧପ୍ରଭାବ ପ୍ରଦର୍ଶନ କରାଯାଇପାରେ ତେବେ ସେମାନଙ୍କ ଗବେଷଣାର ଗଭୀରତା ଦୃଷ୍ଟିରେ ସେମାନେ ବ୍ରାହ୍ମଣ୍ୟଧର୍ମ ବିଦ୍ୱେଷୀମାନଙ୍କର ଶ୍ରଦ୍ଧାଭାଜନ ହୋଇ ପାରିବେ । ପ୍ରକୃତ ସୁଯୌକ୍ତିକ ଗବେଷଣା ଉପରେ ମୁଁ ଏ ପ୍ରକାର ଦୋଷାରୋପ କରୁନାହିଁ ଏବଂ ସେଭଳି ଗବେଷଣାକାରୀ ଯେ ବିରଳ ତାହା ମଧ୍ୟ ମୁଁ କହୁନାହିଁ । କିନ୍ତୁ ପୀଠଦେବୀଙ୍କଠାରୁ ଆରମ୍ଭ କରି କ୍ଷୁଦ୍ର କ୍ଷୁଦ୍ର କାରୁକାର୍ଯ୍ୟ ପର୍ଯ୍ୟନ୍ତ ଏବଂ ଦେଉଳର ଆକାରଠାରୁ ଆରମ୍ଭ କରି ତାହାର ଅତି ସୂକ୍ଷ୍ମ ଶିଳ୍ପଛଟା ପର୍ଯ୍ୟନ୍ତ ଯେ କୋଣାର୍କରେ ବୌଦ୍ଧପ୍ରଭାବ ଦେଖାଇବାକୁ ଚେଷ୍ଟା କରିଅଛନ୍ତି, ସେ ଅବଶ୍ୟ ସ୍ଥିର କରିଥିବେ ଯେ ବୌଦ୍ଧଧର୍ମ ଅନ୍ୟ ଦେଶରୁ ଭାରତକୁ ଅଣା ଯାଇଥିଲା ଏବଂ ତାହା ଭାରତର ସନାତନ ଆର୍ଯ୍ୟଧର୍ମର କ୍ରମିକ ଅଭିବ୍ୟକ୍ତି ନୁହେଁ । ଶ୍ରୀଯୁକ୍ତ ବିଷନ୍ ସ୍ୱରୂପଙ୍କ ଅସଂବଦ୍ଧ ପ୍ରଳାପ ଏହି ଅଧାୟ ପାଠକଲେ ସମସ୍ତେ ସହଜେ ହୃଦୟଙ୍ଗମ କରିପାରିବେ ।

ଦ୍ୱାଦଶ ଅଧାୟରେ କୋଣାର୍କ ଦେଉଳର ଶିଳ୍ପ ଓ ସ୍ଥାପତ୍ୟର ସମାଲୋଚନା ଅଛି ଏବଂ ତଦ୍ୱାରା ଗ୍ରନ୍ଥକାର ପ୍ରତିପାଦନ କରିଅଛନ୍ତି ଯେ, ତାହା ଅନବଦ୍ୟ । ଆକାର ଏବଂ କାରୁକାର୍ଯ୍ୟର ସୌଷ୍ଠବ ଏ ଦୁଇଟି ଶିଳ୍ପର ଅନବଦ୍ୟତା ପ୍ରଦର୍ଶନ କରେ । କି ମିସରଦେଶୀୟ, କି ଭାରତୀୟ ଅନ୍ୟାନ୍ୟ ଶିଳ୍ପକାର୍ଯ୍ୟ ଉଭୟରେ ଏହି ଦୁଇ ପ୍ରକାର ସୌଷ୍ଠବର ଏକତ୍ର ସମାବେଶ ବିରଳ; କିନ୍ତୁ କୋଣାର୍କରେ ଉଭୟର ସମାବେଶ ଘଟିଥିଲା । ତେଣୁ ଏହା କେବଳ ଭାରତର ନୁହେଁ, ପୃଥିବୀର ଶ୍ରେଷ୍ଠତମ ଶିଳ୍ପକାର୍ଯ୍ୟ । ଯେଉଁ ଦେଉଳର ଅଙ୍କିତ ଅତି ଅଶ୍ଳୀଳ ମୂର୍ତ୍ତି ସୁଦ୍ଧା ଅଦ୍ୟାବଧି ଶିଳ୍ପକଳାର ପରାକାଷ୍ଠା ପ୍ରଦର୍ଶନ କରୁଅଛି, ତହିଁର ଶିଳ୍ପୀମାନଙ୍କର ଭାସ୍କର୍ଯ୍ୟକଳ୍ପନାକୁ ଗ୍ରନ୍ଥକାର କିପରି ସୁଦକ୍ଷଭାବରେ ସମର୍ଥନ କରି ସ୍ୱୀୟ ଗବେଷଣାର ଗଭୀରତା ଦେଖାଇଅଛନ୍ତି, ତାହା ଅନୁଭବରେ ଆଣିବା ଲାଗି ମୁଁ ପାଠକମାନଙ୍କୁ ଏହି ବିଷୟ ପାଠ କରିବା ଲାଗି ଅନୁରୋଧ କରୁଅଛି ।

ତପ୍‌ରେ ଗ୍ରନ୍ଥକାର କୋଣାର୍କ ଦେଉଳରେ ତଥା ଅଧିକାଂଶ ହିନ୍ଦୁମନ୍ଦିରରେ ଅଶ୍ଳୀଳ ମୂର୍ତ୍ତିମାନଙ୍କର ଅବସ୍ଥାପନ ସମ୍ବନ୍ଧେ ବିଦେଶୀୟ ଲେଖକମାନଙ୍କର ମତ ଖଣ୍ଡନ କରିଅଛନ୍ତି । ଯଥାର୍ଥତଃ ଗ୍ରନ୍ଥକାର କହିଅଛନ୍ତି, "ଆମ୍ଭମାନଙ୍କର ରୁଚି ଓ ଭାବଦ୍ୱାରା ଆମ୍ଭେମାନେ ଯାହାକୁ ଅଶ୍ଳୀଳ ବୋଲି ଘୃଣା କରିଥାଉଁ, ପୂର୍ବେ ଲୋକେ ତହିଁରେ କୌଣସି ଅଶ୍ଳୀଳତା ଆରୋପ କରୁ ନ ଥିଲେ । କେବଳ ଭାରତ ନୁହେଁ, ପୃଥିବୀର ପ୍ରାୟ ସର୍ବତ୍ର ବର୍ତ୍ତମାନର ଅଶ୍ଳୀଳତା ଜ୍ଞାନ ପୂର୍ବେ ଲୋକଙ୍କର ନ ଥିଲା ।" ସେ ନିଜ ଉକ୍ତିର ଯାଥାର୍ଥ୍ୟ ପ୍ରତିପାଦନ କରିବାଲାଗି ପୃଥିବୀର ବିଭିନ୍ନାଞ୍ଚଳରୁ ଉଦାହରଣ ସଂଗ୍ରହ କରିଅଛନ୍ତି । ମାତ୍ର ପ୍ରାକୃତିକ ଦୃଶ୍ୟରେ ଏହି ଅଶ୍ଳୀଳତା ଜ୍ଞାନ କେବେ ଯେ ଏ ଦେଶରେ ଆମଦାନୀ ହେଲା, ତାହା ସେ କହି ନାହାନ୍ତି । ପ୍ରକୃତପକ୍ଷେ ଆଜି ସୁଦ୍ଧା ବୃଦ୍ଧ ସଂସ୍କୃତଜ୍ଞ ପଣ୍ଡିତମାନେ ଯାହାକୁ ଅଶ୍ଳୀଳ ଭାଷା ଓ ଭାବ ବୋଲି ମନେ କରନ୍ତି ନାହିଁ, ଆମ୍ଭେମାନେ ତାହାକୁ ଅଶ୍ଳୀଳ ବୋଲି ମନେ କରୁଁ । ସେମାନଙ୍କର ବିଶ୍ୱାସ ଅଛି, ଯାହା ପ୍ରାକୃତିକ ତାହା କଦାପି ଅଶ୍ଳୀଳ ନୁହେଁ; ତାହା ଆଧ୍ୟାତ୍ମିକ ମାତ୍ର, କୃତ୍ରିମ ନୁହେଁ କିମ୍ବା ନିତାନ୍ତ ଗ୍ରାମ୍ୟରୁଚି ବା କୁରୁଚିର ଉଦ୍‌ବୋଧକ ନୁହେଁ । ଯେପରି ବିଭିନ୍ନ ଲୋକର ରୁଚି ବିଭିନ୍ନ, ସେହିପରି ବିଭିନ୍ନ ସମାଜର ରୁଚି ବିଭିନ୍ନ ଏବଂ ବିଭିନ୍ନ କାଳ ଓ ଅବସ୍ଥାରେ ଏକ ସମାଜର ରୁଚି ବିଭିନ୍ନ ହୋଇଥିବା ମଧ୍ୟ ବିରଳ ନୁହେଁ । ଆମ୍ଭମାନଙ୍କର ଆଜିକାଲିର ଅଶ୍ଳୀଳତା ଜ୍ଞାନ ପାଶ୍ଚାତ୍ୟ ଜାତିର ସଂସ୍ରବଜନିତ ନୁହେଁ କି ? ଯେଉଁ ଶିଳ୍ପୀମାନେ କଳାଚର୍ଚ୍ଚାରେ ପ୍ରାଣୀଜୀବନର ବିଭିନ୍ନ ବିଭାବ ପ୍ରକଟନ କରିଅଛନ୍ତି, ସେମାନଙ୍କୁ ତହିଁର ଏକ ବିଶେଷ ବିଭାବର ପ୍ରକଟନ ଲାଗି ଦୋଷୀ କରିବା ଅସଙ୍ଗତ ଓ ଅନୁଚିତ । ଉତ୍କଳରେ କୋଣାର୍କ ପରେ କୌଣସି ସୁବୃହତ୍ ଓ ସର୍ବାଙ୍ଗସୁନ୍ଦର ମନ୍ଦିର ନିର୍ମିତ ହୋଇନାହିଁ କିମ୍ବା ଉପେନ୍ଦ୍ର ଓ ଅଭିମନ୍ୟୁଙ୍କ ଭଳି ଖାଣ୍ଟି ଦେଶୀ ବଡ଼ କବି ଜନ୍ମି ନାହାନ୍ତି । ତେଣୁ କେହି କେହି ଅନୁମାନ କରିପାରିଅଛନ୍ତି ଯେ, ଅଶ୍ଳୀଳତା କଳାରେ ସ୍ଥାନ ଲଭିବା ଦିନୁ ଉତ୍କଳର ଅବନତି ଘଟିଅଛି । ମାତ୍ର କେହି ତତ୍ତ୍ୱଦର୍ଶୀ ଐତିହାସିକ ପଣ୍ଡିତ ଏହା ବିଶ୍ୱାସ କରିବେ ନାହିଁ । ମୋ ବିବେଚନାରେ କାଳ ଓ ଅବସ୍ଥା ପରିବର୍ତ୍ତନରେ କଳାବନତିର କାରଣ ଅନୁସନ୍ଧେୟ, ରୁଚିରେ ନୁହେଁ । ଏ ସମ୍ବନ୍ଧରେ ଆଉ ଅଧିକ କହିବା ନିଷ୍ପ୍ରୟୋଜନ ।

ତ୍ରୟୋଦଶ ଅଧ୍ୟାୟରେ କୋଣାର୍କ ମନ୍ଦିରର ନିର୍ମାଣ କୌଶଳ ବର୍ଣ୍ଣିତ ହୋଇଅଛି । ଅନ୍ୟାନ୍ୟ ଲେଖକମାନଙ୍କ ପରି ଗ୍ରନ୍ଥକାର ମଧ୍ୟ ମନ୍ଦିର ଦେହରେ ଅବସ୍ଥାପିତ ଶିଳାମାନଙ୍କର ପ୍ରକାଣ୍ଡତା ଉପଲବ୍ଧି କରି ସେଗୁଡିକ କିପରି ସେଠାକୁ ଆନୀତ ହୋଇଥିଲା ଏବଂ କି ଉପାୟରେ ଅବା ମନ୍ଦିର ଉପରକୁ ଉତ୍‌ଥାପିତ ହୋଇଥିଲା, ତାହା ଭାବି ସ୍ଥିର କରିପାରି ନାହାନ୍ତି; ପରନ୍ତୁ ମହା ବିସ୍ମୟାଭିଭୂତ ହୋଇଅଛନ୍ତି । ହେବା ସ୍ୱାଭାବିକ; କାରଣ ଆଧୁନିକ ବିଜ୍ଞାନୋନ୍ନତ ଯୁଗରେ ସୁଦ୍ଧା ଦୂରଦେଶରୁ ସେ ପ୍ରକାର ସୁବୃହତ୍ ଶିଳାମାନଙ୍କର ଆନୟନ ସଂପୂର୍ଣ୍ଣ ଅସମ୍ଭବ । ତହିଁରେ ପୁଣି ସେଗୁଡିକ ତକୁ ଉପରକୁ ଉଠାଇବାକୁ କେତେ ବୁଦ୍ଧିମତ୍ତା ଓ

କେତେ ଆୟାସର ଅପେକ୍ଷା କରେ । ୨ ହଜାର ଟନ ବା ୫୬୦୦୦ ମହଣ ଓଜନର ଖଣ୍ଡେ ଖଣ୍ଡେ ଶିଳା ଯାହାକୁ ଆଧୁନିକ ରେଲ ବା ଷ୍ଟିମର ଦୂରଦେଶରୁ ଆଣିବା ଦୁଃସାଧ ତାହା ଦୂରରୁ ଅଣାଯାଇ ୨୦୦ ଫୁଟ ଉପରକୁ ଉଠାଯାଇ ପାରୁଥିଲା, ଏହା ଭାବି କିଏ ବିସ୍ମିତ ନ ହୋଇ ରହି ପାରିବ !

ତତ୍‌ପରେ ଗ୍ରନ୍ଥକାର ପୀଢ଼ ଓ ରେଖ ଦେଉଳମାନଙ୍କର ଗଠନପ୍ରଣାଳୀ ପର୍ଯ୍ୟାଲୋଚନା କରି କୋଣାର୍କ ଶିଳ୍ପୀମାନଙ୍କର ସ୍ଥିତିଗତିବିଜ୍ଞାନ ସମ୍ବନ୍ଧୀୟ ଅଭିଜ୍ଞତା ପ୍ରଦର୍ଶନ କରିଅଛନ୍ତି ଏବଂ ଶ୍ରୀ ବିଷନ୍‌ସ୍ୱରୂପଙ୍କ ଭଳି ସମାଲୋଚକମାନଙ୍କ ଦ୍ୱାରା ଆରୋପିତ ପୁରାତନ ଉତ୍କଳୀୟ ଶିଳ୍ପୀମାନଙ୍କ ଖିଲାଣ କର୍ମରେ ଅନଭିଜ୍ଞତାରୂପ ଦୋଷ ସମୀଚୀନରୂପେ ଖଣ୍ଡନ କରିଅଛନ୍ତି । ଏହି ବିଷୟ ସମାଲୋଚନା କରୁ କରୁ ଗ୍ରନ୍ଥକାର କୋଣାର୍କରେ ଅଧୁନା ପ୍ରାପ୍ତବ୍ୟ ଲୁହାକଡ଼ିର କଥା କହିଅଛନ୍ତି । ଦିଲ୍ଲୀର ଲୌହସ୍ତମ୍ଭ ଯାହା ଓଜନରେ ୧୯ ଟନ୍ ମାତ୍ର ଏବଂ ଯହିଁର ନିର୍ମାଣ ପ୍ରଣାଳୀ ଭାବିଲେ ଆଧୁନିକ ବୈଜ୍ଞାନିକମାନେ ସ୍ତମ୍ଭୀଭୂତ ହୋଇଯାନ୍ତି ତହିଁରୁ ଅନେକ ଗୁଣରେ ଦୀର୍ଘ ଓ ପ୍ରଶସ୍ତ ଏବଂ ତହିଁର ପାଞ୍ଚଗୁଣ ଓଜନର ଲୁହାକଡ଼ି କି ଉପାୟରେ ପୂର୍ବ କାଳରେ ଏହ ଉତ୍କଳୀୟମାନେ ନିର୍ମାଣ କରି ଏତେ ଉପରକୁ ଉଠାଇ ପାରୁଥିଲେ, ଏହା ଭାବି ବସିଲେ ପାଷାଣୀଭୂତ ହୋଇଯିବା ସ୍ୱାଭାବିକ । ଏହି ଅଧ୍ୟାୟର ଶେଷଭାଗରେ ଗ୍ରନ୍ଥକାର ଯଥାର୍ଥତଃ କହିଅଛନ୍ତି :— ''କେତେ ଜ୍ଞାନ ଓ ଅନୁଭବ, କେତେ ହସ୍ତପାଟବ କୋଣାର୍କର ସର୍ବାଙ୍ଗ ମଣ୍ଡନ କରିଅଛି । ଇତିହାସର କେତେ ମଧୁମୟ ଘଟଣା, ଓଡ଼ିଆ ଜାତୀୟ ଜୀବନୀର କେତେ ଆଶ୍ଚର୍ଯ୍ୟ କାହାଣୀ କୋଣାର୍କର ପ୍ରତ୍ୟେକ ଶିଳାଖଣ୍ଡରେ ଲିପିବଦ୍ଧ ହୋଇଅଛି । ପ୍ରତ୍ୟେକ ଲତାପତ୍ର ଯେପରି କଳାବିଦ୍ୟାର ତାବତୀୟ ଐତିହାସିକ ତତ୍ତ୍ୱଜିଜ୍ଞାସା ଦର୍ଶକ ମନରେ ଜନ୍ମାଏ, ପ୍ରତ୍ୟେକ ନରରୂପ ସେହିପରି ମାନବହୃଦୟର ଅପାର ଭାବତରଙ୍ଗ ସମ୍ମୁଖରେ ଖେଳାଇ ଦିଏ । ପୁଣି ସମୁଦାୟ ମନ୍ଦିର ଓ ପ୍ରକାଣ୍ଡ ଶିଳାରାଶି ପର୍ବତ ସମାନ ମାଡିଆସି ଦର୍ଶକର ସମସ୍ତ ଜ୍ଞାନ ଓ ଚିନ୍ତା ଅପହରଣ କରିନିଏ । କୋଣାର୍କର ସେ ସମସ୍ତ ବିଭବ ଉଦ୍‌ଘାଟନ କରିବା ନିମନ୍ତେ ଏ ପର୍ଯ୍ୟନ୍ତ କୌଣସି ଗ୍ରନ୍ଥକାର ସମର୍ଥ ହୋଇ ପାରିନାହାନ୍ତି କି ମାନବୀୟ ଚେଷ୍ଟା କେବେ କୃତକାର୍ଯ୍ୟ ହେବ କଳନା ସୁଦ୍ଧା କରି ହୁଏନାହିଁ । ତେବେ ସେ ସମସ୍ତ ମଧ୍ୟରେ ସମସ୍ତ ଜ୍ଞାନ ଓ ବିଭବ, ସମସ୍ତ ସୌନ୍ଦର୍ଯ୍ୟ ଓ ଗାମ୍ଭୀର୍ଯ୍ୟ ମଧ୍ୟରେ ପୁଣ୍ୟାତ୍ମା 'ଲାଙ୍ଗୁଳା ନରସିଂହ' ଓ 'ଶିବାଇ ସାନ୍ତରା' କୋଣାର୍କର ପ୍ରତ୍ୟେକ ପବିତ୍ର ଶିଳାଖଣ୍ଡରେ ଅତି ଦିବ୍ୟ ବପୁରେ ଦର୍ଶକ ସମ୍ମୁଖରେ ବିରାଜିତ ରହିଅଛନ୍ତି ।

ଏଥିରେ ଅତିଶୟୋକ୍ତି ନାହିଁ । ଏହାର ପ୍ରତ୍ୟେକ ଅକ୍ଷର ସମ୍ୟକରୂପେ ସାରବାନ୍ । ଗ୍ରନ୍ଥକାର ୧୪ଶ ଅଧ୍ୟାୟରେ କୋଣାର୍କର ପତନ ବର୍ଣ୍ଣନା କରି ୧୫ଶ ଅଧ୍ୟାୟରେ ଗ୍ରନ୍ଥର ଉପସଂହାର କରିଅଛନ୍ତି । କୋଣାର୍କର ପତନ ସମ୍ବନ୍ଧେ ନାନା ମୁନିଙ୍କର ନାନା ମତ ପୁଙ୍ଖାନୁପୁଙ୍ଖରୂପେ ପର୍ଯ୍ୟାଲୋଚନା କରି ତହିଁର ଅସାରତା ପ୍ରତିପାଦନ କରିବାରେ ଗ୍ରନ୍ଥକାର

ତ୍ରୁଟି କରିନାହାନ୍ତି । ବରଂ ସେ ଯେ ସଂପୂର୍ଣ୍ଣ କୃତକାର୍ଯ୍ୟ ହୋଇଅଛନ୍ତି, ଏହା ଏଥିର ପାଠକମାନେ ସ୍ୱୀକାର କରିବେ । ଦେଉଳ ପତନ ସମ୍ବନ୍ଧେ ଯେ ଜନଶ୍ରୁତି ଅଛି ଏବଂ ତହିଁରେ ଯେତେ ପରିମାଣରେ ସତ୍ୟ ନିହିତ ଅଛି, ପରିଶେଷରେ ଗ୍ରନ୍ଥକାର ତହିଁର ଅନୁସନ୍ଧାନ କରିଅଛନ୍ତି ଏବଂ ସେହି ଅନୁସନ୍ଧାନ ଫଳୋପଧାୟକ ହୋଇଥିବା ମୋହର ଧାରଣା । ଉତ୍କଳର ଅନ୍ୟାନ୍ୟ ଦେବଦେବୀ ଓ ଦେବାଳୟ ଭଗ୍ନ କରି କଳାପାହାଡ଼ ଯେଉଁ ଖ୍ୟାତି ଅର୍ଜିଥିଲେ, କୋଣାର୍କ ମନ୍ଦିର ଭାଙ୍ଗିବାରେ ତହିଁର ପରାକାଷ୍ଠା ଲବ୍ଧ ହେଲା । ସେ ସ୍ୱୟଂ ସୁଦୃଢ଼ ବଡ଼ଦେଉଳକୁ ଭୂମିସାତ୍ କରି ପାରି ନ ଥିଲେହେଁ କୁମ୍ଭପଥରକୁ ଖସାଇ ପକାଇ ଭବିଷ୍ୟତରେ ଦେଉଳର ପତନ ଘଟିବାର ସୂତ୍ରପାତ କରି ଯାଇଥିବା ସମ୍ପୂର୍ଣ୍ଣ ସମ୍ଭବପର; ଏପରି କି ତାହା ଧ୍ରୁବସତ୍ୟ ଘଟଣା । ପରେ ଯେତେବେଳେ କୁମ୍ଭପଥର ତଳକୁ ଖସି ପଡ଼ିବାରୁ ମନ୍ଦିର କ୍ରମେ ଭାଙ୍ଗିଯାଉଥିଲା ଏବଂ ଦୂରରେ ସମୁଦ୍ରଗର୍ଭରେ ଜାହାଜମାନ ରଖି ପର୍ତ୍ତୁଗୀଜ ଜଳଦସ୍ୟୁମାନେ ଉକ୍ତ ମନ୍ଦିରରେ ଆଶ୍ରୟ ନେଉଥିଲେ, ତେତେବେଳେ ଭୟାତୁର ଦୂରବର୍ତ୍ତୀ ଜନପଦବାସୀମାନେ ପ୍ରକୃତ ଘଟଣା ବୁଝି ନ ପାରି କୁମ୍ଭପଥରରେ ଚୁମ୍ବକ ଧର୍ମ ଆରୋପ କରିଥିବା ଏବଂ ସେଥିଯୋଗେ ମନ୍ଦିର କ୍ରମେ କ୍ରମେ ଭଙ୍ଗା ହୋଇଥିବା ବିଶ୍ୱାସ କରିବା ସମ୍ପୂର୍ଣ୍ଣ ସମ୍ଭବପର । ତଦନୁସାରେ ଜନଶ୍ରୁତି ଗଠିତ ହେବାକୁ ଲାଗିଲା । ଯେତେବେଳେ ଦେଉଳ ଅପବିତ୍ର ହୋଇ ତହିଁରେ ବିରାଜମାନ ଦେବଙ୍କର ସେବାପୂଜା ବନ୍ଦ ହେଲା ସେଠାକୁ ଲୋକସମାଗମ ନ ହେବାରୁ ତାହା ଲତା ଗୁଳ୍ମରେ ପରିପୂର୍ଣ୍ଣ ହେଲା ଏବଂ ତହିଁରେ ନାନା ହିଂସ୍ରପ୍ରାଣୀ ବାସକଲେ । ଘରଟିଏ କେତେକ ଦିନ ଲୋକଶୂନ୍ୟ ହେଲେ ତାହାର ଅବସ୍ଥା ଯେପରି ଘଟେ, ମନ୍ଦିର ଅବସ୍ଥା ସେହିପରି ଘଟିଥିଲା ।

ଯାହାହେଉ, ବର୍ତ୍ତମାନ ମନ୍ଦିର ଭୂପତିତ ଏବଂ ସେଥି ସଙ୍ଗେ ତହିଁର ପୌରାଣିକ ଓ ଐତିହାସିକ ମହିମା ଅସ୍ତମିତ । ତଥାପି ସେହି ଭଗ୍ନ ପ୍ରସ୍ତର ସ୍ତୂପରୁ ସୁଦ୍ଧା ପ୍ରତିବେଶୀମାନେ ପୁରାତନ ଉତ୍କଳୀୟମାନଙ୍କର କଳା-କୁଶଳତା ଛଡ଼ାଇ ନେବାକୁ ଉଦ୍ୟତ । ତେଣୁ ସିନା ବଙ୍ଗଳା 'ବିଶ୍ୱକୋଷ' କର୍ତ୍ତା ପ୍ରତ୍ନତତ୍ତ୍ୱଦର୍ଶୀ ଶ୍ରୀମାନ୍ ନଗେନ୍ଦ୍ରନାଥ ବସୁ କୋଣାର୍କକୁ 'ବଙ୍ଗୀୟ ଶିଳ୍ପର ପରାକାଷ୍ଠା' ଲେଖିବାକୁ କୁଣ୍ଠିତ ହୋଇନାହାନ୍ତି ! ହାୟ ! ଯେବେ ସମୁଦାୟ ବଙ୍ଗଭୂମି ଆଜି କୋଣାର୍କ ମନ୍ଦିରର ଶତାଂଶରୁ ଏକାଂଶ ସୌନ୍ଦର୍ଯ୍ୟଯୁକ୍ତ ଏକ ପୁରାତନ ଦେବାଳୟ ଦେଖାଇବାକୁ ସକ୍ଷମ ହୋଇ ପାରନ୍ତା, ତେବେ ନଗେନ୍ଦ୍ର ବାବୁ ଆଉ କେତେଦୂର ଲମ୍ଫଝମ୍ପ ପ୍ରଦାନ କରି ପାରି ନ ଥାଆନ୍ତେ !

ଉପସଂହାରରେ ଗ୍ରନ୍ଥକାର ସଦାଶୟ ବ୍ରିଟିଶ ଗଭର୍ଣ୍ଣମେଣ୍ଟଙ୍କୁ ଧନ୍ୟବାଦ ଦେଇ କୋଣାର୍କର ଉଦ୍ଧାର ପ୍ରକ୍ରିୟା ଯଥାକ୍ରମେ ବର୍ଣ୍ଣନା କରିଅଛନ୍ତି । ଏକ ସ୍ଥାନରେ ସେ କହିଅଛନ୍ତି – ଏହି ମନ୍ଦିରର ଉଦ୍ଧାରସାଧନ କାଳରେ ଯେଉଁ ଶିଳାଗୁଡ଼ିକ ଦେଉଳ ଦେହରୁ ବାହାରି ବେଢ଼ା ଭିତରେ ଇତସ୍ତତଃ ଜମା ହୋଇଥିଲା, ସେଗୁଡ଼ିକୁ ବେଢ଼ା ବାହାରକୁ ନେବାଲାଗି

ବିଶେଷ କଷ୍ଟ ଅନୁଭବ କରିବାକୁ ପଡିଥିଲା । ଏପରିକି ବାରୁଦ ପ୍ରଭୃତି ସାହାଯ୍ୟରେ ପଥରମାନ ଖଣ୍ଡ ବିଖଣ୍ଡ କରି ସ୍ଥାନାନ୍ତର କରାଗଲା । ସେ ବ୍ୟଙ୍ଗକରି ଲେଖିଅଛନ୍ତି – କୋଣାର୍କଯୁଗରେ ସେ ସବୁ ଏକ ପ୍ରକାର ହାଲୁକା ଥିବାରୁ ଅକ୍ଳେଶରେ ବୁହା ହୋଇ ଆସି ପାରିଥିଲା; କିନ୍ତୁ ବର୍ତ୍ତମାନ (ଅର୍ଥାତ୍ ୧୯୦୬ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ) ଛଅ ସାତ ଶହ ବର୍ଷ ପାଣି ପବନ ଖାଇ ବିଶେଷ ଫୁଲି ଯିବାରୁ ଅଧିକ ଭାରି ହୋଇ ଯାଇଥିଲା; ଅଗତ୍ୟା ମନୁଷ୍ୟ କଥା ଦୂରେ ଥାଉ ବୈଜ୍ଞାନିକ ଯନ୍ତ୍ର ସାହାଯ୍ୟରେ ମଧ୍ୟ ତାହା ସ୍ଥାନାନ୍ତରିତ ହେବା କଷ୍ଟସାଧ୍ୟ ହୋଇଥିଲା !!!

କୋଣାର୍କ କୀର୍ତ୍ତିର ଅଧୁନାତନ ଉଦ୍ଧାରର ଅର୍ଥ ସମସ୍ତ ମନ୍ଦିରର ପୁନଃ ନିର୍ମାଣ ନୁହେଁ, କେବଳ ତାହାର ଭଗ୍ନାବଶେଷର ସାମୟିକ ରକ୍ଷା ମାତ୍ର । ତଥାପି ତହିଁରେ ସରକାର ବାହାଦୂରଙ୍କର ଏକ ଲକ୍ଷରୁ ଅଧିକ ଟଙ୍କା ବ୍ୟୟିତ ହୋଇଅଛି । ସେଥିଲାଗି ଉତ୍କଳବାସୀ କାହିଁକି ସମଗ୍ର ଭାରତବର୍ଷ ବ୍ରିଟନୀୟ ଗଭର୍ଣ୍ଣମେଣ୍ଟଙ୍କ ନିକଟରେ ଚିର ଋଣୀ; କାରଣ କୋଣାର୍କ ଭାରତୀୟ ଶିଳ୍ପର ପରାକାଷ୍ଠା ଏବଂ ତହିଁର ଧ୍ୱଂସାବଶେଷର ରକ୍ଷଣ ସୁଦ୍ଧା ଭାରତୀୟ ଶିଳ୍ପ ଗାରିମାର ଟେକ ରକ୍ଷା ।

ଗ୍ରନ୍ଥ ଶେଷରେ ଆଧୁନିକ ପ୍ରୟୋଜନବାଦୀମାନଙ୍କୁ ଆକ୍ଷେପ କରି ଗ୍ରନ୍ଥକାର ଯଥାର୍ଥତଃ କହିଅଛନ୍ତି – ''ଶିଳ୍ପ ଜାତୀୟ ପ୍ରାଣର ପ୍ରକାଶ ଜାତୀୟ ଭାବର ଅଭିବ୍ୟଞ୍ଜକ । କୋଣାର୍କ ଓ ଅନ୍ୟାନ୍ୟ ମନ୍ଦିରମାନ ଆଜି ଆମ୍ଭମାନଙ୍କର ଦୁର୍ବଳ ହୃଦୟରେ ପୂର୍ବପୁରୁଷମାନଙ୍କର ଉନ୍ନତ ଆଦର୍ଶର କ୍ଷୀଣ ଆଲୋକ ପକାଇ ଉତ୍ତରାଧିକାରିତ୍ୱ ଅଭିମାନରେ ବେଳେ ବେଳେ ଆତ୍ମଗୌରବ ଜନ୍ମାଏ । ବାସ୍ତବରେ ଆଖି ଫିଟାଇ ଦେଖିଲେ, କାନ ଡେରି ଶୁଣିଲେ, ଏହିସବୁ ଶୈବାଳସଙ୍କୁଳ ଶିଳାରାଶି ନିର୍ଜୀବ ଜଡପିଣ୍ଡ ବୋଲି ପ୍ରତୀୟମାନ ହେବେ ନାହିଁ । ସେସବୁ ଭିତରୁ ପୂର୍ବପୁରୁଷମାନଙ୍କର ପ୍ରାଣସ୍ପର୍ଶୀ ବାଣୀ ଅଦ୍ୟାପି ଅମର ଧାରାରେ ନିଃସୃତ ହେଉଅଛି, ଯେପରି କି ସାନ୍ତ୍ୱନା ଦେଉଅଛି, ''ହତାଶ ହୁଅ ନାହିଁ'' ! କେବେ ଉତ୍କଳବାସୀ ସେ ଅମର ବାଣୀ ଶୁଣିବେ ଓ ଜଗତକୁ ଶୁଣାଇବେ !!!''

ସର୍ବଶେଷରେ ଗ୍ରନ୍ଥର ଲିଖନପଦ୍ଧତି ଓ ଭାଷା ସମ୍ବନ୍ଧେ ପଦେ ଅଧେ କହିବାକୁ ମୁଁ ଇଚ୍ଛାକରେ । ଯେପରି ସରଳ ଓ ସରସ ଖାଦ୍ୟ ରସନେନ୍ଦ୍ରିୟ ତୃପ୍ତିସାଧନ କରି ଶରୀରର ପୁଷ୍ଟିବିଧାୟକ ହୁଏ, ସେହିପରି ସରଳ ଓ ସରସ ଲେଖା ଶ୍ରବଣେନ୍ଦ୍ରିୟର ତୃପ୍ତିସାଧନାନ୍ତର ଜ୍ଞାନର ପୁଷ୍ଟିସାଧନ କରେ । ଗ୍ରନ୍ଥରେ ଏହି ଉଭୟ ଗୁଣର ସମାବେଶ ଦେଖି ମୁଁ ସାତିଶୟ ଆପ୍ୟାୟିତ ହୋଇଅଛି । ଗ୍ରନ୍ଥକାର ପାଶ୍ଚାତ୍ୟ ରୀତିରେ ଶିକ୍ଷିତ; ତେଣୁ ଅଳଙ୍କାର ପ୍ରତି ତାଙ୍କର ବିଦ୍ୱେଷ ଜନ୍ମିବା ସ୍ୱାଭାବିକ । ଯେତେହେଲେ ସେ ଏ ଦେଶୀ ଓଡ଼ିଆ; ବେଶୀ କିଛି ଦେବାକୁ ଇଚ୍ଛୁକ ନ ହେଲେହେଁ ସେ ଆପଣା କନ୍ୟାର ଗୋଡ଼ରେ ହାତରେ ଦୁଇ ଦୁଇ ପଟ

ଖଡ଼ୁ, ନାକରେ ଗୁଣା ବସଣୀ, ଗଳାରେ କଣ୍ଠିମାଳ, କାନରେ ଦୁଇଟା ମଲ୍ଲିକଢ଼ୀ ଦେବାକୁ କୁଣ୍ଠିତ ହୋଇ ନ ଥାନ୍ତେ । ମାତ୍ର ସେ ବୁଝିପାରି ଅଛନ୍ତି ଯେ, ତାଙ୍କର କନ୍ୟା କେବଳ ଗୁଣବତୀ ନୁହେଁ ରୂପବତୀ, ନିଃସର୍ଗସୁନ୍ଦରୀ; ତେଣୁ ତାହାର କୌଣସି ଅଳଙ୍କାର ଲୋଡା ନାହିଁ । ବରଂ କୃତ୍ରିମ ଅଳଙ୍କାର ତାହାର ସୌନ୍ଦର୍ଯ୍ୟହାନି ଘଟାଇ ପାରେ । ସେହି ଆଶଙ୍କାରେ ବୋଧହୁଏ, ସେ ତାହାର ଅଳଙ୍କରଣ ପ୍ରତି ଦୃକ୍‌ପାତ ସୁଦ୍ଧା କରିନାହାନ୍ତି । ମାତ୍ର ସୁନା ରୂପାର ଅଳଙ୍କାର ଛାଡ଼ି ଫୁଲ, ଫଳ, ଲତା ପତ୍ର ପ୍ରଭୃତି ଯେ କୌଣସି ନୈସର୍ଗିକ ଦ୍ରବ୍ୟ ତାହାଙ୍କର କନ୍ୟା ନେଇପାରେ ବା ନେବାକୁ ଇଚ୍ଛା କରିଅଛି, ସେ ତାହା ଯୋଗାଇବାରେ ଲେଶମାତ୍ର ବିମୁଖ ହୋଇନାହାନ୍ତି । ଓଡ଼ିଆ ଘରର କନ୍ୟା ଯେତେ ରୂପବତୀ ଓ ଗୁଣବତୀ ହେଉ ଏବଂ ତାହାର ପିତା ଯେତେ ଧୀର ଓ ମୃଦୁ ହୁଅନ୍ତୁ, ସମ୍ବନ୍ଧିନୀଠାରୁ ପଦେ ଅଧେ ଶୁଣିବାର ଆଶଙ୍କା ସମସ୍ତଙ୍କର ଥାଏ । ତେଣୁ ଗ୍ରନ୍ଥକାର ସେହି ଆଶଙ୍କାରେ ପଡି ସମ୍ବନ୍ଧିନୀର ପାଟି ବନ୍ଦର ଉପାୟ ଆଗରୁ କରିବାକୁ ଯାଇ ଆସ୍ତେ ଆସ୍ତେ ପ୍ରତିବାଦ କରୁ କରୁ ସ୍ଥାନେ ସ୍ଥାନେ ଏତେ କଥା ସରଳ ଓ ସରସ ଭାବରେ କହିପକାଇ ଅଛନ୍ତି ଯେ, ତାହାଙ୍କୁ ଜଣେ ବାଗ୍ମୀ ବୋଲି ପାଠକମଣ୍ଡଳୀ ମନେକରି ପାରିବେ । ଫଳତଃ ଗ୍ରନ୍ଥର ଭାଷା ଯେପରି ସରଳ ସେହିପରି ମଧୁର ହୋଇଅଛି ଏବଂ ମୋର ସଂପୂର୍ଣ୍ଣ ବିଶ୍ୱାସ, ଉତ୍କଳରେ ଏହା ଏକ ଅଦ୍ୱିତୀୟ ଓ ପରମ ଆଦରଣୀୟ ଗ୍ରନ୍ଥ ବୋଲି ପରିଗୃହୀତ ହେବ ।

କଟକ<br>
ତା ୩୧।୭।୧୯୧୮ } ଶ୍ରୀ ମଧୁସୂଦନ ଦାଶ

# ପ୍ରଥମ ଅଧ୍ୟାୟ

## ମୈତ୍ରେୟ ବନ

ଉତ୍କଳର ପୁଣ୍ୟକ୍ଷେତ୍ରମାନଙ୍କ ମଧ୍ୟରେ କୋଣାର୍କ ଅନ୍ୟତମ । ଏହା ପୁରୀଠାରୁ ଉତ୍ତର-ପୂର୍ବ ପ୍ରାୟ ୨୨ ମାଇଲ ଦୂରରେ ସମୁଦ୍ରକୂଳରେ ଅବସ୍ଥିତ । ଏହା ନିକଟରେ କେତେଗୁଡ଼ିଏ ଗ୍ରାମ ଥିଲେ ସୁଦ୍ଧା ବର୍ତ୍ତମାନ ଏହା ଏକ ନିର୍ଜନ ମରୁପ୍ରାନ୍ତରରେ ପରିଣତ ହୋଇଅଛି । ଏକେ ପୁରୀଠାରୁ କୋଣାର୍କ ପଥ ଏକପ୍ରକାର ଦୁର୍ଗମ । ସମସ୍ତ ପଥ କେବଳ ବାଲୁକାମୟ । ସାମାନ୍ୟ ସୂର୍ଯ୍ୟକିରଣ ଦ୍ୱାରା ବାଲି ଅତ୍ୟନ୍ତ ତପ୍ତ ହୋଇଯାଏ ଏବଂ ସ୍ଥାନେ ସ୍ଥାନେ ବାଲିରୁ ପାଦ ପ୍ରାୟ ଉଠାଇ ହୁଏ ନାହିଁ । କୋଣାର୍କଠାରୁ ପୁରୀ ପର୍ଯ୍ୟନ୍ତ ରାସ୍ତାରେ ଆଶ୍ରୟ ନେବା ନିମନ୍ତେ ଖଣ୍ଡିଏ ମାତ୍ର ଘର ନାହିଁ କି ଗୋଟିଏ ମାତ୍ର ଛାୟାପ୍ରଦ ବୃକ୍ଷ ସୁଦ୍ଧା ନାହିଁ । ସୁତରାଂ ଗ୍ରୀଷ୍ମ, ବର୍ଷା, ଶୀତ ସକଳ ସମୟରେ କୋଣାର୍କ ପଥ ସାଧାରଣତଃ ଦୁର୍ଗମ ହୋଇଥାଏ । ଏଥିରେ ପୁଣି କୋଣାର୍କ ବର୍ତ୍ତମାନ ପରିତ୍ୟକ୍ତ । କୋଣାର୍କର ସୂର୍ଯ୍ୟନାରାୟଣ ଦେବ ଆଉ ସେଠାରେ ନାହାନ୍ତି କି କୋଣାର୍କ ମନ୍ଦିର ଆଉ ପୂର୍ବ ଅବସ୍ଥାରେ ଅକ୍ଷୁର୍ଣ୍ଣ ଦଣ୍ଡାୟମାନ ରହିନାହିଁ । କେବଳ ଜରାଜୀର୍ଣ୍ଣ ଓ ପତନୋନ୍ମୁଖ ମୁଖଶାଳା ବ୍ୟତୀତ କୋଣାର୍କର ଅନ୍ୟ ସମସ୍ତ ବିଭବ ବର୍ତ୍ତମାନ ଅସ୍ତମିତ ହୋଇଅଛି । କାଳର କରାଳ ସ୍ରୋତରେ କୋଣାର୍କର ସମସ୍ତ ବିଭବ ଯେପରି ଭାସି ଯାଇଅଛି, ଚନ୍ଦ୍ରଭାଗାର ପୁଣ୍ୟସ୍ରୋତ ସେହିପରି ପ୍ରତିହତ ହୋଇ ଅତି କ୍ଷୀଣ ଆକାରରେ ବର୍ତ୍ତମାନ କେବଳ ସ୍ମାରକ ସ୍ୱରୂପ ରହିଅଛି । ସ୍ଥୂଳତଃ ଯେଉଁ ବିଷୟଗୁଡ଼ିକ ଯାତ୍ରୀସମାଗମର ମୁଖ୍ୟକାରଣ – ଦେବଦର୍ଶନ, ତୀର୍ଥସ୍ନାନ, ଦେବତାଙ୍କ ଯାତ୍ରାବିଧି ଏବଂ ରମଣୀୟ ମନ୍ଦିର ଦର୍ଶନ ଇତ୍ୟାଦି – କୋଣାର୍କରେ ବର୍ତ୍ତମାନ ସେ ସମସ୍ତଙ୍କର ଏକାନ୍ତ ଅଭାବ । ସୁତରାଂ ବର୍ତ୍ତମାନ ଓଡ଼ିଶାର ଅନ୍ୟାନ୍ୟ ପୁଣ୍ୟ କ୍ଷେତ୍ରପରି କୋଣାର୍କରେ କୌଣସି ଯାତ୍ରା ନାହିଁ କି ଯାତ୍ରା ଉପଲକ୍ଷରେ ବିଦେଶୀ ଯାତ୍ରୀମାନଙ୍କର ସେତେ ଘନିଷ୍ଠ ସମାଗମ ହୁଏନାହିଁ । କେବଳ ଅଛି, ଗୋଟିଏ ଜରାଜୀର୍ଣ୍ଣ ଭଗ୍ନ ମନ୍ଦିରର କାରୁକାର୍ଯ୍ୟ । ତାହା ମୁଷ୍ଟିମେୟ ଜ୍ଞାନପିପାସୁ ସମାଲୋଚକଙ୍କ ଯଥେଷ୍ଟ ହୃଦୟହାରୀ ହେଲେ ସୁଦ୍ଧା, ଭକ୍ତିପ୍ରାଣ ଯାତ୍ରୀମାନଙ୍କ ପ୍ରତି ନିତାନ୍ତ ଅକିଞ୍ଚିତ୍କର ମାତ୍ର । ପୁଣି ଏ ସମସ୍ତ ଅଭାବ ବ୍ୟତୀତ କୋଣାର୍କରେ ହିନ୍ଦୁମାନଙ୍କର ବସବାସ ନିମନ୍ତେ କୌଣସି ସୁବିଧା ନାହିଁ । ପ୍ରାୟ ବର୍ଷ ପଞ୍ଚାଶ ହେଲା ବେଢ଼ାର ଦକ୍ଷିଣ ପାଖରେ ଗୋଟିଏ ମଠ ସ୍ଥାପିତ ହୋଇଅଛି । ତହିଁରେ କିନ୍ତୁ ନିରାକାର ଉପାସନା ଚଳୁଥିବାରୁ ହିନ୍ଦୁମାନଙ୍କପ୍ରତି ମଧ୍ୟ ତାହା ନିତାନ୍ତ ଉପଯୁକ୍ତ ନୁହେଁ ।

ଏହିରୂପେ କୋଣାର୍କ ଯାତ୍ରୀସମାଗମରୁ ବହୁକାଳ ହେଲା ବଞ୍ଚିତ ହେଲେ ମଧ୍ଯ ଭାରତର ଅନ୍ୟାନ୍ୟ ପୁଣ୍ୟକ୍ଷେତ୍ରମାନଙ୍କ ପରି କେବଳ ଆପଣାର ପୁରାଣ ମହିମାରେ ଏକ ପ୍ରଧାନ ମୁକ୍ତିକ୍ଷେତ୍ର ରୂପେ ଅଦ୍ୟାବଧି ପରିଗଣିତ ହୋଇ ଆସୁଅଛି ।

ଅନ୍ୟାନ୍ୟ ପୁଣ୍ୟକ୍ଷେତ୍ରମାନଙ୍କ ପରି ପୁରାଣକାରମାନେ କୋଣାର୍କକୁ ନାନାଭାବରେ ଅଭିହିତ କରିଅଛନ୍ତି । ବିଭିନ୍ନ ପୁରାଣରେ ଏହାର ନାମ ଭିନ୍ନ ଭିନ୍ନ ହୋଇଥିବାର ଦେଖାଯାଏ । ବ୍ରହ୍ମପୁରାଣ ଏହାକୁ 'କୋଣାଦିତ୍ୟ' ଏବଂ ସ୍କନ୍ଦପୁରାଣ 'ସୂର୍ଯ୍ୟକ୍ଷେତ୍ର' ବୋଲି କହିଅଛନ୍ତି । ପୁଣି ପ୍ରାଚୀ-ମାହାତ୍ମ୍ୟରେ ଏହା 'ଅର୍କକ୍ଷେତ୍ର' ବା 'ରବିକ୍ଷେତ୍ର' ନାମରେ ପରିଚିତ । ଭବିଷ୍ୟ ପୁରାଣ 'ମିତ୍ରବନ', ଶାମ୍ବପୁରାଣ 'ମୈତ୍ରବନ' ଏବଂ କପିଳସଂହିତା 'ରବିକ୍ଷେତ୍ର' ବା ମୈତ୍ରେୟ ବନ' ଆଖ୍ୟାରେ ଏହାକୁ ଅଭିହିତ କରିଅଛନ୍ତି । ଏହି ନାନାବିଧ ଆଖ୍ୟା ମଧ୍ୟରେ 'ମିତ୍ରବନ', 'ମୈତ୍ରବନ' ବା 'ମୈତ୍ରେୟ ବନ' ବର୍ତ୍ତମାନ କୋଣାର୍କ ସମ୍ବନ୍ଧରେ ଆଉ ସାଧାରଣତଃ ଶୁଣାଯାଏ ନାହିଁ । ସୁତରାଂ ଏହା ସ୍ଥିର ଯେ, ବର୍ତ୍ତମାନ ପ୍ରଚଳିତ 'ରବିକ୍ଷେତ୍ର', ଅର୍କକ୍ଷେତ୍ର', ସୂର୍ଯ୍ୟକ୍ଷେତ୍ର' ପ୍ରଭୃତି ଆଖ୍ୟାରେ ଅଭିହିତ ହେବା ପୂର୍ବରୁ ଏହା 'ମୈତ୍ରେୟବନ' ନାମରେ ପ୍ରସିଦ୍ଧ ଥିଲା । କପିଳସଂହିତାରେ ଉଲ୍ଲେଖ ଅଛି, ''ମୈତ୍ରେୟତପସାର୍ଜ୍ଜିତଂ'' ଅର୍ଥାତ୍ ମୈତ୍ରେୟ ମହର୍ଷିଙ୍କ ତପସ୍ୟା ପ୍ରଭାବରେ ସ୍ଥାନର ଉତ୍ପତ୍ତି ହୋଇଥିବାରୁ ଏହିପରି ନାମକରଣ ହୋଇଥିଲା । ସୁତରାଂ କ୍ଷେତ୍ରର ଆରମ୍ଭ ଅବସ୍ଥାରେ କେତେକ ସମୟ ପର୍ଯ୍ୟନ୍ତ କୋଣାର୍କର ନାମ 'ମୈତ୍ରେୟ ବନ' ଥିଲା । ପରେ ସୂର୍ଯ୍ୟଙ୍କ ସହିତ ଏହାର ସମ୍ବନ୍ଧ ଥିବାରୁ ଏହା 'ମିତ୍ରବନ' ବା 'ମୈତ୍ରବନ' ନାମରେ ପରିଚିତ ହେଉଥିଲା । 'ମିତ୍ରବନ' ବା 'ମୈତ୍ରବନ'ର ବ୍ୟାଖ୍ୟା କରି ଡାକ୍ତର ରାଜେନ୍ଦ୍ରଲାଲ କହନ୍ତି – ମିତ୍ର ଅର୍ଥାତ୍ ବନ୍ଧୁ, ଅର୍ଥାତ୍ (ନିମ୍ନରେ ଯେପରି ବର୍ଣ୍ଣିତ ହେବ) ଶାମ୍ବଙ୍କର କୁଷ୍ଠରୋଗ ଆରୋଗ୍ୟରେ ଏହା ସହାୟ ହୋଇଥିବାରୁ ସ୍ଥାନର ନାମ 'ମୈତ୍ର' ବା 'ମିତ୍ରବନ' ହୋଇଥିଲା । ଏହା ଅପେକ୍ଷା କିନ୍ତୁ ମିତ୍ରର ଅର୍ଥ ସୂର୍ଯ୍ୟ କରିବା ବିଶେଷ ସମୀଚୀନ ବୋଧହୁଏ । ସୂର୍ଯ୍ୟ ଆପଣାର ଗତିପଥରେ ଦ୍ୱାଦଶ ରାଶି ପାରହୋଇ ଭ୍ରମଣ କରନ୍ତି । ପୁରାଣବଚନ ଅନୁସାରେ ଏହି ପ୍ରତ୍ୟେକ ରାଶିରେ ଉପସ୍ଥିତ ହେଲାବେଳେ ସୂର୍ଯ୍ୟଙ୍କର ଭିନ୍ନ ଭିନ୍ନ ନାମ ଅଛି; ଅର୍ଥାତ୍ ଦ୍ୱାଦଶ ମାସରେ ସୂର୍ଯ୍ୟ ଦ୍ୱାଦଶ ନାମରେ ଅଭିହିତ ହୋଇଥାନ୍ତି । ଯଥା –

ଏକୋଽସୌ ବହୁଧାଭୂତ୍ୱା କାଳଭେଦାଦନିନ୍ଦିତଃ ।
ମାସେ ମାସେ ତୁ ପତତି ଏକୋଦ୍ୱାଦଶତାଂ ବ୍ରଜେତ୍ ।।
ମିତ୍ରୋ ମାର୍ଗଶିରେମାସି ପୌଷେ ବିଷ୍ଣୁଃ ସନାତନଃ ।
ବରୁଣୋ ମାଘମାସେ ତୁ ସୂର୍ଯ୍ୟୋ ବୈ ଫାଲ୍‌ଗୁନେଽପିଚ ।।
ଚୈତ୍ରମାସେ ତପେଦ୍‌ଭାନୁର୍ବୈଶାଖେ ତାପନଃସ୍ମୃତଃ ।
ଜ୍ୟେଷ୍ଠେମାସେ ତପେଦିନ୍ଦ୍ର ଆଷାଢେ ତପତେ ରବି ।।

ଗଭସ୍ତିଃ ଶ୍ରାବଣେ ମାସେ ଯମୋ ଭାଦ୍ରପଦେ ତଥା ।
ହିରଣ୍ୟରେତାଶ୍ୱଯୁଜିଃ କାର୍ତ୍ତିକେ ତୁ ଦିବାକରଃ ।।
ଇତ୍ୟେତେ ଦ୍ୱାଦଶାଦିତ୍ୟା ମାସି ମାସି ପ୍ରକୀର୍ତ୍ତିତାଃ ।
ଉଗ୍ରରୂପା ମହାତେଜା ଯୁଗାନ୍ତାନଳବର୍ଚ୍ଚସଃ ।।

— ଶ୍ରୀପଦ୍ମପୁରାଣଂ, ସୃଷ୍ଟିଖଣ୍ଡ, ୫୮ଶତ୍ ଅଧ୍ୟାୟ ।*

ଉପରୋକ୍ତ ଦ୍ୱାଦଶାଦିତ୍ୟଙ୍କ ମଧ୍ୟରୁ ପ୍ରଥମ ସୂର୍ଯ୍ୟଙ୍କର ନାମ 'ମିତ୍ର' । ଅତଏବ ମିତ୍ର ବା ସୂର୍ଯ୍ୟଙ୍କର ପ୍ରିୟ ବନ ହୋଇଥିବାରୁ ସ୍ଥାନର ନାମ ମିତ୍ର, ମୈତ୍ର ବା ମୈତ୍ରେୟ ବନ ହୋଇଥିବାର ବିଶ୍ୱାସ କରାଯାଏ ।

ସୂର୍ଯ୍ୟଙ୍କ ସହିତ ଏହି ବନର ସମ୍ବନ୍ଧ ବିଷୟରେ ମୈତ୍ରେୟ ବନର ପୌରାଣିକ ଆଖ୍ୟାୟିକା ସ୍ୱରୂପ ଗୋଟିଏ ଅତି ରହସ୍ୟମୟ ଉପାଖ୍ୟାନ ଶାମ୍ବପୁରାଣରେ ବର୍ଣ୍ଣିତ ଅଛି **:—

ଶାମ୍ବ ଜାମ୍ବବତୀଙ୍କ ଗର୍ଭରେ କୃଷ୍ଣଙ୍କର ପୁତ୍ର । ସମୁଦାୟ ଯାଦବକୁଳରେ ସେ ସର୍ବ ସୁନ୍ଦର ଥିଲେ ଏବଂ ତାହାଙ୍କର ଗର୍ବ ମଧ୍ୟ ଅସୀମ ଥିଲା । ବୟସ, ଜ୍ଞାନ ଓ ପଦଗୌରବ ପ୍ରତି ତାହାଙ୍କର ଆଦୌ ଆସ୍ଥା ନ ଥିଲା । ଶ୍ରୀକୃଷ୍ଣ ଓ ତାହାଙ୍କ ପିତା ବସୁଦେବଙ୍କ ପର୍ଯ୍ୟନ୍ତ ସମସ୍ତ ଯାଦବମାନେ ବ୍ରହ୍ମର୍ଷି ନାରଦଙ୍କୁ ଅସାଧାରଣ ଭକ୍ତି କରୁଥିଲେ । କିନ୍ତୁ ଶାମ୍ବ ଭକ୍ତି କରିବା ତେଣେ ଥାଉ ଉପହାସରେ ତାହାଙ୍କୁ ଉଡ଼ାଇ ଦେଉଥିଲେ । ନାନା ଉପଦେଶଦ୍ୱାରା ନାରଦ ଶାମ୍ବଙ୍କର ସ୍ୱଭାବ ପରବର୍ତ୍ତନ କରାଇବାରେ ବହୁ ଚେଷ୍ଟା କଲେ; କିନ୍ତୁ ପାରିଲେ ନାହିଁ । ଶାମ୍ବ ଯେପରି ଦୁର୍ବୃତ୍ତ, ନାରଦ ମଧ୍ୟ ସେହିପରି କଳହପ୍ରିୟ । ପରିଶେଷରେ ଶାମ୍ବଙ୍କର ସର୍ବନାଶ ସାଧନରେ ସେ କୃତସଂକଳ୍ପ ହେଲେ । କୃଷ୍ଣଙ୍କ ମନରେ ଶାମ୍ବଙ୍କ ପ୍ରତି ବିରକ୍ତି ଓ ବିଦ୍ୱେଷ ଜନ୍ମାଇବା ଆଶାରେ ନାରଦ ଦିନେ କୃଷ୍ଣଙ୍କ ଆଗେ ଜଣାଇଲେ ଯେ, ତାହାଙ୍କର ଷୋଳସହସ୍ର ଗୋପନାରୀଙ୍କ ସଙ୍ଗେ ଶାମ୍ବଙ୍କର ପାପପ୍ରଣୟ ଥିଲା ଏବଂ ତାହାଙ୍କର ଅଲୌକିକ ସୌନ୍ଦର୍ଯ୍ୟରେ ନାରୀମାନେ ଭୁଲି ଯାଉଥିଲେ । କୃଷ୍ଣ କିନ୍ତୁ ଏ କଥା ହସି ଉଡ଼ାଇ ଦେଲେ ଏବଂ ନାରଦଙ୍କୁ ଉତ୍ତର ଦେଲେ, ''ଶାମ୍ବଙ୍କର ବୟସ ଏତେ ଅଳ୍ପ ଏବଂ ରୂପ ଓ ଗୁଣ ଏଡ଼େ ମଧୁର;

---

* ଅନ୍ୟତ୍ର —

''ଇନ୍ଦ୍ରୋଧାତା ଭଗସ୍ତ୍ୱଷ୍ଟା ମିତ୍ରୋଽଥ ବରୁଣୋଽର୍ଯ୍ୟମା ।
ବିବସ୍ୱାନ୍ ସବିତା ପୂଷା ଅଂଶୁମାନ୍ ବିଷ୍ଣୁରେବଚ ।।
ଏତେ ସହସ୍ର କିରଣା ଆଦିତ୍ୟାଃ ଦ୍ୱାଦଶ ସ୍ମୃତାଃ ।
ମାରୀଚାଦ୍ କଶ୍ୟପାଦ୍ ଯଜ୍ଞେ ପୁତ୍ରାନ୍‌ଦିତିରୁତ୍ତମାନ୍ ।।

— ଶ୍ରୀ ପଦ୍ମପୁରାଣଂ, ସୃଷ୍ଟିଖଣ୍ଡ, ୬ଷ୍ଠ ଅଧ୍ୟାୟ ।

** ଡାକ୍ତର ରାଜେନ୍ଦ୍ରଲାଲ ମିତ୍ରଙ୍କ "Antiquities of Orissa" Vol. II. PP. 145-146.

ସେ ନିଜର ବିମାତାମାନଙ୍କ ସଙ୍ଗେ ଅସଦାଚରଣ କରୁଥିବା ନିତାନ୍ତ ଅସମ୍ଭବ ।'' ନାରଦ ଏହା ଶୁଣି ମନେ ମନେ ସ୍ଥିର କଲେ, କୃଷ୍ଣଙ୍କୁ ଦିନେ ସ୍ୱଚକ୍ଷୁରେ ଘଟଣାଟି ପରିଷ୍କାର ଦେଖାଇଦେବେ । କିଛି ଦିନ ପରେ ଦିନେ କୃଷ୍ଣ ରୈବତକ ପର୍ବତକୁ ଯାଇଥିଲେ, ଏଥିମଧ୍ୟରେ ନାରଦ ଶାମ୍ବଙ୍କୁ କହିଲେ, ''ରୈବତକ ପର୍ବତରେ କୃଷ୍ଣ ତୁମ୍ଭଙ୍କୁ ଅପେକ୍ଷା କରି ରହିଅଛନ୍ତି, ତୁମ୍ଭେ ଶୀଘ୍ର ସେ ସ୍ଥାନକୁ ମୋ ସଙ୍ଗେ ଆସ ।'' ନାରଦଙ୍କ କଥା ଅନୁସାରେ ଶାମ୍ବ ରୈବତକ ପର୍ବତକୁ ଗଲେ । ସେଠାରେ ଦେଖିଲାବେଳକୁ ଗୋପବାଳାମାନେ ଗୋଟିଏ ପୋଖରୀ ମଧ୍ୟରେ ଜଳକେଳି କରୁଥିଲେ । ଶାମ୍ବଙ୍କୁ ଦେଖିବା ମାତ୍ରେ ସେମାନେ ତାହାଙ୍କ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇଗଲେ । ନାରଦ ଇତି ମଧ୍ୟରେ ହଠାତ୍ କୃଷ୍ଣଙ୍କ ନିକଟକୁ ଯାଇ ଗୋପୀଗଣଙ୍କ ମଧ୍ୟରେ ଶାମ୍ବଙ୍କୁ ଦେଖାଇଦେଲେ । କୃଷ୍ଣଙ୍କର ଆଉ କୌଣସି ସନ୍ଦେହ ରହିଲା ନାହିଁ; ''କୁଷ୍ଠ ହୋଇ ତୋର ସମସ୍ତ ସୌନ୍ଦର୍ଯ୍ୟ ଲୁପ୍ତ ହେଉ'' କହି ଶାମ୍ବଙ୍କୁ ହଠାତ୍ ଘୋର ଅଭିଶାପ ଦେଲେ । ଶାମ୍ବ ନିଜକୁ ଯେତେ ନିର୍ଦ୍ଦୋଷ ବୋଲି ପ୍ରମାଣ କଲେ ସୁଦ୍ଧା ଅଭିଶାପର ଆଉ ପ୍ରତ୍ୟାହାର ହେଲାନାହିଁ । ପରେ ନାରଦଙ୍କ ଉପଦେଶାନୁସାରେ ଏହି କଠିନ ରୋଗରୁ ମୁକ୍ତି ଲଭିବା ପାଇଁ ଶାମ୍ବ ମୈତ୍ରେୟ ବନରେ ବାର ବର୍ଷ ପର୍ଯ୍ୟନ୍ତ ତପସ୍ୟା କରିବା ନିମନ୍ତେ ପ୍ରସ୍ଥାନ କଲେ ।

ଚନ୍ଦ୍ରଭାଗା ନଦୀକୂଳବର୍ତ୍ତୀ ସୁରମ୍ୟ ମୈତ୍ରେୟ ବନରେ ପ୍ରବେଶ କରି ଶାମ୍ବ ଘୋର ତପସ୍ୟା ଆରମ୍ଭ କଲେ ଏବଂ ଶାନ୍ତ, ଦାନ୍ତ, ନିରାହାର ଓ ଜିତେନ୍ଦ୍ରିୟ ହୋଇ ବାର ବର୍ଷ ପର୍ଯ୍ୟନ୍ତ ଏକ ସୂର୍ଯ୍ୟଧ୍ୟାନରେ ନିମଗ୍ନ ରହିଲେ । ତାହାଙ୍କର ନାନାବିଧ ପୂଜା ଉପାସନାଦି ଦ୍ୱାରା ପ୍ରସନ୍ନ ହୋଇ ଦିନେ ସୂର୍ଯ୍ୟ ଶାମ୍ବଙ୍କୁ ସ୍ୱପ୍ନରେ ଦେଖାଦେଲେ ଏବଂ ଅଚଳ ଭକ୍ତି ଓ ବିଶ୍ୱାସସହ ତାହାଙ୍କର 'ଏକବିଂଶତି ନାମ' * ସ୍ମରଣ କରିବାକୁ ଆଦେଶ ଦେଇଗଲେ । ଏହିରୂପେ ବାର ବର୍ଷ ତପସ୍ୟା ପରେ ସୂର୍ଯ୍ୟ ଅତୀବ ପ୍ରସନ୍ନ ହୋଇ ଶାମ୍ବଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ବର ଯାଚ୍ଞା କରିବାକୁ ଶାମ୍ବଙ୍କୁ ଆଦେଶ ଦେବାରେ ଶାମ୍ବ ପ୍ରାର୍ଥନା

---

*''ଭାସ୍କରୋ ଭଗବାନ୍ ସୂର୍ଯ୍ୟଶ୍ଚିତ୍ରଭାନୁର୍ବିଭାବସୁଃ ।
ଯମସ୍ତାତୋଽଂଶୁମାଳୀ ଚ ଯମୁନା-ପ୍ରୀତି-ଦାୟକଃ ॥
ଦିବାକରୋ ଜଗନ୍ନାଥଃ ସପ୍ତାଶ୍ୱଶ୍ଚ ପ୍ରଭାକରଃ ।
ଲୋକଚକ୍ଷୁଃ ସ୍ୱୟମ୍ଭୁଶ୍ଚ ଛାୟା-ରତି-ପ୍ରଦାୟକଃ ॥
ତିମିରାରିର୍ଦ୍ଦିନଧବୋ ଲୋକତ୍ରୟ-ପ୍ରକାଶକଃ ।
ଭକ୍ତବନ୍ଧୁର୍ଦୟାସିନ୍ଧୁଃ କର୍ମସାକ୍ଷୀ ପରାତ୍ପରଃ ॥
ଏକବିଂଶତି ନାମାନି ଯଃ ପଠେତ୍ତୁ ଦିତେ ମୟି ।
ତସ୍ୟ ଶାନ୍ତିଂ ପ୍ରଯଚ୍ଛାମି ସ୍ୱୟଂସତ୍ୟଂ ବଦାମ୍ୟହଂ ॥''

— କପିଳସଂହିତା, ୬ଷ୍ଠ ଅଧ୍ୟାୟ

କଲେ, ''ନିତ୍ୟ ତୁମ୍ଭଠାରେ ମୋର ଭକ୍ତି ଥାଉ ।'' ସୂର୍ଯ୍ୟ ଆହୁରି ସନ୍ତୁଷ୍ଟ ହୋଇ କହିଲେ, ''ତୁମ୍ଭର ବ୍ରତରେ ମୁଁ ଅତିଶୟ ପ୍ରୀତ ହେଲି, ତୁମ୍ଭେ ଦ୍ୱିତୀୟ ବର ଇଚ୍ଛା କର ।'' ତହୁଁ ଶାମ୍ବ ପ୍ରାର୍ଥନା କଲେ, ''ତୁମ୍ଭ ପ୍ରସାଦରୁ ମୋର ଏହି ଶରୀର ରୋଗମୁକ୍ତ ହେଉ ।'' ତତ୍‌କ୍ଷଣାତ୍ ଶାମ୍ବ ପୂର୍ବ ରୂପଲାବଣ୍ୟ ଲାଭକଲେ । ସୂର୍ଯ୍ୟ ଶାମ୍ବଙ୍କୁ କହିଲେ, ''ଆଜିଠାରୁ ଯେ ମୋ ନାମରେ ମର୍ତ୍ତ୍ୟରେ ମନ୍ଦିର ନିର୍ମାଣ କରି କ୍ଷେତ୍ର ସ୍ଥାପନ କରିବ, ସେ ସନାତନ ଲୋକ ପ୍ରାପ୍ତହେବ ।''

ଶାମ୍ବ ସୂର୍ଯ୍ୟଙ୍କ ଆଦେଶ ପାଳନରେ ସ୍ଥିରସଂକଳ୍ପ ହେଲେ । ପରଦିନ ପ୍ରାତଃକାଳରେ ଚନ୍ଦ୍ରଭାଗା ନଦୀରେ ସ୍ନାନ କରୁ କରୁ ସୂର୍ଯ୍ୟଦେବଙ୍କର ଗୋଟିଏ ପ୍ରସ୍ତର ପ୍ରତିମୂର୍ତ୍ତି ପଦ୍ମାସନରେ ନଦୀର ବିଶୁଦ୍ଧ ଜଳ ମଧ୍ୟରେ ବିରାଜମାନ ହୋଇଥିବାର ଶାମ୍ବ ଦେଖି ପାରିଲେ । ପୂର୍ବେ ବିଶ୍ୱକର୍ମା ସୂର୍ଯ୍ୟଙ୍କ ଶରୀରର କେତେକ ଅଂଶରେ ଏହି ବିଗ୍ରହ ଗଠନ କରିଥିଲେ । କଥିତ ଅଛି, ସଂଜ୍ଞା ନାମରେ ବିଶ୍ୱକର୍ମାଙ୍କର ଗୋଟିଏ ପରମାସୁନ୍ଦରୀ କନ୍ୟା ଥିଲା । ସୂର୍ଯ୍ୟ ସଂଜ୍ଞାଙ୍କୁ ବିବାହ କରିଥିଲେ; କିନ୍ତୁ ସୂର୍ଯ୍ୟଙ୍କର ପ୍ରଚଣ୍ଡ ରୌଦ୍ରରୂପରେ ତ୍ରସ୍ତ ହୋଇ ସଂଜ୍ଞା ତାହାଙ୍କଠାରୁ ପଳାଇଯାଇ ଶ୍ୱେତଦ୍ୱୀପରେ ଲୁଚି ରହିଲେ । ସୂର୍ଯ୍ୟ ବ୍ରହ୍ମାଙ୍କ ନିକଟକୁ ଗଲେ ଏବଂ ତାହାଙ୍କ ପରାମର୍ଶ ଅନୁସାରେ ବିଶ୍ୱକର୍ମାଙ୍କ ନିକଟରେ ପହଞ୍ଚିଲେ । ବିଶ୍ୱକର୍ମା ସୂର୍ଯ୍ୟଦେବଙ୍କୁ କୁନ୍ଦରେ ବସାଇ କେବଳ ଦୁଇଟି ପାଦ ଛାଡି ବାକୀ ସମସ୍ତ ଶରୀରରୁ ଅଷ୍ଟମାଂଶ ଚାଞ୍ଛିଦେଲେ । ଏହିରୂପେ ଶରୀର ସୁନ୍ଦର ଓ ସହନୀୟ ହେବାରୁ ସୂର୍ଯ୍ୟ ପୁନରାୟ ଆପଣାର ପତ୍ନୀ ସଂଜ୍ଞାଙ୍କୁ ଲାଭ କଲେ । ବିଶ୍ୱକର୍ମା ସୂର୍ଯ୍ୟଙ୍କ ଶରୀରର ସେହି ଅଷ୍ଟମାଂଶ ଫିଙ୍ଗିଦେଇ ନ ଥିଲେ । ତାହାର କେତେକ ଅଂଶରେ ସେ ବିଷ୍ଣୁଙ୍କର ଚକ୍ର, ଶିବଙ୍କର ତ୍ରିଶୂଳ, କୁବେରଙ୍କର ଗଦା ଓ କାର୍ତ୍ତିକେୟଙ୍କର ବର୍ଚ୍ଛା ନିର୍ମାଣ କଲେ ଏବଂ ଅବଶିଷ୍ଟାଂଶରେ ସୂର୍ଯ୍ୟଙ୍କର ଗୋଟିଏ ସୁନ୍ଦର ପ୍ରତିମୂର୍ତ୍ତି ଗଢ଼ିଦେଲେ । ସେହି ବିଗ୍ରହଟି କୌଣସି ମତେ ଚନ୍ଦ୍ରଭାଗା ନଦୀରେ ଶାମ୍ବ ଦେଖି ପାରିଥିଲେ ଏବଂ ଗୋଟିଏ ସୁନ୍ଦର ମନ୍ଦିର ନିର୍ମାଣ କରି ଉକ୍ତ ବିଗ୍ରହଟି ତହିଁରେ ସ୍ଥାପନ କଲେ । ସୂର୍ଯ୍ୟଦେବଙ୍କର ଉପଦେଶ ଅନୁସାରେ ଶାମ୍ବ କେତେକ ଭୈଷଜ (ବୈଦ୍ୟ) ଶାକଦ୍ୱୀପୀ ବ୍ରାହ୍ମଣଙ୍କୁ ସେବାକାର୍ଯ୍ୟରେ ନିଯୁକ୍ତ କରାଇ ଦେଲେ । ସେହି ଦିନଠାରୁ ସୂର୍ଯ୍ୟଦେବଙ୍କର ସେହି ମଣିବିଗ୍ରହ ଯୁଗେ ଯୁଗେ ପୂଜାପାଇ ଆସୁଅଛନ୍ତି । (୧)

'କପିଳସଂହିତା'ରେ ଏହି ଉପାଖ୍ୟାନର ମଧ୍ୟ ଉଲ୍ଲେଖ ଅଛି । ପୂର୍ବରୁ ଶାମ୍ବ ପୁରାଣରେ ଏହା ସବିଶେଷ ବର୍ଣ୍ଣିତ ଥିବାରୁ ସଂହିତା କେବଳ ସଂକ୍ଷେପରେ ଏହାର

---

(୧) ଶାମ୍ବଙ୍କ ଏହି ଉପାଖ୍ୟାନ ପଢ଼ିଲେ ଗ୍ରୀସଦେଶର ପୁରାଣରେ ଆକ୍‌ଟିଅନଙ୍କର ଗଳ୍ପ ମନେପଡ଼େ ଏବଂ ଦୁଇ ପ୍ରଧାନ ପ୍ରାଚୀନ ଜାତିର ଚିନ୍ତାରେ ପାପର ପରିଣାମର ତୁଳନା ସହଜରେ ମନକୁ ଆସେ । ଆକଟିଅନ (Actaeon) କାଡ଼ମସ (Cadmus)ଙ୍କ କନ୍ୟା ଅନଟୋଇ (Autonoe)ଙ୍କ ଗର୍ଭରେ ଆରିଷ୍ଟିଅସ୍ (Aristaeus)ଙ୍କ ପୁତ୍ର । ସେ ଜଣେ ପ୍ରସିଦ୍ଧ ଶିକାରୀ ଥିଲେ । ଦିନେ ୫୦ଟି

ଅବତାରଣା କରିଅଛନ୍ତି । ଶାମ୍ବଙ୍କ ଶାପ ସମ୍ବନ୍ଧରେ ନାରଦଙ୍କର ଉଲ୍ଲେଖ ନାହିଁ । ବୋଧହୁଏ ସଂହିତା ସଂକ୍ଷେପ ଆଖ୍ୟାୟିକା ଦେଇଥିବାରୁ ନାରଦଙ୍କର ନାମୋଲ୍ଲେଖ କରି ନାହାନ୍ତି ।

ଶ୍ରୀଯୁକ୍ତ ବିଷଦ୍ ସ୍ୱରୂପ (କଟକର ଭୂତପୂର୍ବ ଡ଼ିଷ୍ଟ୍ରିକ୍ଟ ଇଞ୍ଜିନିଅର) 'କୋଣାର୍କ' ନାମରେ ଗୋଟିଏ ଇଂରେଜି ଗ୍ରନ୍ଥ ଲେଖିଅଛନ୍ତି । ତହିଁରେ ସେ ଭବିଷ୍ୟ ପୁରାଣରୁ ଏହି ଉପାଖ୍ୟାନ ଉଦ୍ଧାର କରିଅଛନ୍ତି । ନାରଦ ଓ କୃଷ୍ଣଙ୍କ ପରିବର୍ତ୍ତରେ କେବଳ 'ଋଷି ଦୁର୍ବାସା' ଶାମ୍ବଙ୍କ କଠୋର ଶାପର କାରଣ ବୋଲି ବୋଧହୁଏ ଭ୍ରମରେ ସେ ଲେଖିଅଛନ୍ତି । ଏହି ସମ୍ପର୍କରେ ଭବିଷ୍ୟ ପୁରାଣରେ ମଧ୍ୟ ସୂର୍ଯ୍ୟଙ୍କ ପୂଜାବିଧି, ପୂଜାର ନିର୍ଦ୍ଦିଷ୍ଟ ଦିବସ, ପୂଜାସାମଗ୍ରୀ ଓ ବ୍ରାହ୍ମଣ ଭୋଜନାଦିର ଉଲ୍ଲେଖ ଅଛି ।

ଉପରୋକ୍ତ ଶାମ୍ବ ଉପାଖ୍ୟାନରେ ପ୍ରଧାନ କଥା ଯେ, ସୂର୍ଯ୍ୟ କୁଷ୍ଠ ପ୍ରଭୃତି ଅସାଧ୍ୟ ରୋଗମାନ ଆରୋଗ୍ୟ କରିପାରନ୍ତି । ଏହା କେବଳ ଧାର୍ମିକର ଭ୍ରାନ୍ତ ବିଶ୍ୱାସ ପରି ବୋଧ ହୁଏନାହିଁ । ଅବଶ୍ୟ ସୂର୍ଯ୍ୟଦେବ ଆଦିମ କାଳରୁ ଭାରତୀୟ ଆର୍ଯ୍ୟମାନଙ୍କର ପ୍ରଧାନ ଉପାସ୍ୟ ଦେବତା ରୂପେ ଭକ୍ତି ପ୍ରୀତି ଆକର୍ଷଣ କରି ଆସୁଅଛନ୍ତି । ସୂର୍ଯ୍ୟ-ଉପାସନା ସମ୍ବନ୍ଧରେ ପରେ (୨ୟ ଅଧ୍ୟାୟରେ) କୁହାଯିବ ଯେ, ଭାରତୀୟ ଧର୍ମ ଇତିହାସରେ ସୂର୍ଯ୍ୟ ନାନା ଭାବରେ ଉପାସିତ ହୋଇଅଛନ୍ତି । ପ୍ରଥମତଃ ସୂର୍ଯ୍ୟ ଏକମାତ୍ର ଅଦ୍ୱିତୀୟ ପରମେଶ୍ୱର ସ୍ୱରୂପ କଳ୍ପିତ ହୋଉଥିଲେ । ପରେ ପୁଣି ଜ୍ଞାନ ଓ ସଭ୍ୟତାର ବିକାଶ ସଙ୍ଗେ ସଙ୍ଗେ ସୂର୍ଯ୍ୟ ଅପରାପର ଦେବତାମାନଙ୍କ ମଧ୍ୟରେ ଅନ୍ୟତମ ଉପାସ୍ୟ ଦେବ ବୋଲି ପରିଗଣିତ ହେଲେ । ସୂର୍ଯ୍ୟଙ୍କୁ ମଧ୍ୟ ବିଷ୍ଣୁ ସ୍ୱରୂପ କଳ୍ପନା କରାଯାଇଥିଲା । ଏହିରୂପେ ଆର୍ଯ୍ୟମାନେ ସୂର୍ଯ୍ୟଙ୍କୁ ସମୟାନୁସାରେ ନାନା ଭାବରେ ଉପାସନା କରି ଆସୁଥିଲେ । ଅତଏବ କେବଳ ଏହି ଧର୍ମ ଭାବରେ ସୂର୍ଯ୍ୟଙ୍କଠାରେ ରୋଗ ଆରୋଗ୍ୟ କରିବାର ଗୁଣ ଯେ ବୃଥାରେ ଆରୋପ କରାଯାଇଥିଲା, ତାହା ସଂପୂର୍ଣ୍ଣ ବିଶ୍ୱାସ କରାଯାଇ ନ ପାରେ । ଏହି ଧର୍ମ ବିଶ୍ୱାସ ସଙ୍ଗେ ସଙ୍ଗେ ଏଥିରେ ପ୍ରକୃତ କିଛି ବୈଜ୍ଞାନିକ ସତ୍ୟ ନିହିତ ଥିବାର ବୋଧହୁଏ । ସୂର୍ଯ୍ୟ ଉପାସନାର କ୍ରମିକ ବିକାଶ ମଧ୍ୟରେ ଜ୍ଞାନର ବୃଦ୍ଧି ସଙ୍ଗେ ସଙ୍ଗେ ଆର୍ଯ୍ୟମାନେ ବାସ୍ତବରେ ସୂର୍ଯ୍ୟଙ୍କର ଏହି ନବ ଗୁଣର ପରିଚୟ ପାଇଥିଲେ । ସେହି ଦିନଠାରୁ ସୂର୍ଯ୍ୟଙ୍କୁ ରୋଗ ଆରୋଗ୍ୟକାରୀ ଭାବି ମଧ୍ୟ ପୂଜା କରିବାକୁ ଆରମ୍ଭ କଲେ । ବର୍ତ୍ତମାନ ପର୍ଯ୍ୟନ୍ତ ମଧ୍ୟ ସୂର୍ଯ୍ୟ ସେହି ଭାବରେ ପୂଜା ପାଇ ଆସୁଅଛନ୍ତି ।

---

କୁକୁର ନେଇ ସେ ସିଥେରନ ପର୍ବତକୁ ଶିକାର ଉଦ୍ଦେଶ୍ୟରେ ଯାଇଥିଲେ । ଶିକାର କରୁ କରୁ ଆର୍ଟେମିସ୍ ଓ ତାହାଙ୍କ ସହଚରୀମାନଙ୍କ ଉପରେ ତାହାଙ୍କର ଦୃଷ୍ଟି ପଡ଼ିଲା । ଏଥିରେ ଆର୍ଟେମିସ୍ କ୍ରୁଦ୍ଧା ହୋଇ ତାହାଙ୍କୁ ଗୋଟିଏ ହରିଣରେ ପରିଣତ କଲେ । ତତ୍‌କ୍ଷଣାତ୍ ହରିଣଟିଏ ପାଖରେ ଦେଖି ଉକ୍ତ ୫୦ଟି କୁକୁର ତାହାକୁ ଖଣ୍ଡ ବିଖଣ୍ଡ କରି ଭକ୍ଷଣ କରିଦେଲେ । ଏଥିରୁ ଶାମ୍ବ ଏବଂ ଆକ୍‌ଟିଅନଙ୍କ ପାପର ପରିଣାମ ସହଜରେ ତୁଳନୀୟ ।

ଅବଶ୍ୟ ଆର୍ଯ୍ୟମାନେ କିପରି କେଉଁ ସମୟରେ ଏହି ନୂତନ ଗୁଣର ପରିଚୟ ପାଇଲେ, ତାହା ସ୍ଥିର କରିବା ବର୍ତ୍ତମାନ ସହଜସାଧ୍ୟ ନୁହେଁ । ଭାରତର ଅନ୍ୟାନ୍ୟ ଆବିଷ୍କ୍ରିୟା ବା ଅନୁଷ୍ଠାନ ଯେପରି, ବର୍ତ୍ତମାନ ବିଷୟ ମଧ୍ୟ ସେହିପରି ଇତିହାସ ହିସାବରେ ଘୋର ଅନ୍ଧକାରାଚ୍ଛନ୍ନ । କେଉଁ ସମୟରେ ଆର୍ଯ୍ୟମାନେ ସୂର୍ଯ୍ୟଙ୍କର ଏହି ନୂତନ ଗୁଣର ଆବିଷ୍କାର କରିଥିଲେ, ତାହା ସ୍ଥିର କରିବା ନିମନ୍ତେ ଡାକ୍ତର ରାଜେନ୍ଦ୍ରଲାଲ ମିତ୍ର ତାହାଙ୍କ ସୁପ୍ରସିଦ୍ଧ ଗ୍ରନ୍ଥରେ ବହୁ ପରିମାଣରେ ପ୍ରୟାସ ମାତ୍ର କରିଅଛନ୍ତି * । ମମ୍ମଟଭଟ୍ଟଙ୍କର 'କାବ୍ୟ ପ୍ରକାଶ'ରେ ସୂର୍ଯ୍ୟଙ୍କର ରୋଗ ଆରୋଗ୍ୟ କରିବା କ୍ଷମତାର ଉଲ୍ଲେଖ ଅଛି । ଆଧୁନିକ ପାଶ୍ଚାତ୍ୟ ପଣ୍ଡିତମାନଙ୍କ ମତରେ 'କାବ୍ୟ ପ୍ରକାଶ' ଖ୍ରୀଷ୍ଟ ନବମ ଶତାବ୍ଦୀର ଗ୍ରନ୍ଥ । ଏହା ଯଦି ସତ୍ୟ ହୁଏ, ତେବେ ଖ୍ରୀଷ୍ଟ ନବମ ଶତାବ୍ଦୀ ପୂର୍ବରୁ ନିଶ୍ଚୟ ଏହି ନୂତନ ଭାବ ଆର୍ଯ୍ୟମାନେ ପାଇଥିଲେ । ମମ୍ମଟଭଟ୍ଟ କାବ୍ୟ ପ୍ରକାଶର ବହୁବର୍ଷ ପୂର୍ବର ଲୋକ । କଥିତ ଅଛି, "ମମ୍ମଟଭଟ୍ଟଃ ସୂର୍ଯ୍ୟଶତକଂ କୃତ୍ୱା କୁଷ୍ଠରୋଗାଦ୍‌ବିମୁକ୍ତିଂ ଲେଭେ", ଅର୍ଥାତ୍‌ ମୟୂରଭଟ୍ଟ ସୂର୍ଯ୍ୟଶତକ ଗୁଣି କୁଷ୍ଠରୋଗରୁ ମୁକ୍ତି ଲଭିଥିଲେ । ଗୋୟୀଚନ୍ଦ୍ର ସଂକ୍ଷିପ୍ତସାର ବ୍ୟାକରଣ ଟୀକାରେ ଲେଖିଛନ୍ତି :—

"ଆରୋଗ୍ୟଂ ଭାସ୍କରାଦିଚ୍ଛେଦ୍‌ଜ୍ଞାନମିଚ୍ଛେତ୍ତୁ ଶଙ୍କରାତ୍‌ ।
ମୁକ୍ତିଞ୍ଚ କେଶବାଦିଚ୍ଛେଦ୍ଧନ ମିଚ୍ଛେଦ୍ଧୁତାଶନାତ୍‌ ।।"

ଅର୍ଥାତ୍‌ ସୂର୍ଯ୍ୟଙ୍କଠାରୁ ଆରୋଗ୍ୟ, ଶଙ୍କରଙ୍କଠାରୁ ଜ୍ଞାନ, ବିଷ୍ଣୁଙ୍କଠାରୁ ମୁକ୍ତି ଏବଂ ଅଗ୍ନିଙ୍କଠାରୁ ଧନ ଇଚ୍ଛା କରାଯାଏ । ପୁଣି ପୁରାଣବଚନ ଅନୁସାରେ ସୂର୍ଯ୍ୟ ବିଶ୍ୱକର୍ମାଙ୍କ କନ୍ୟା ସଂଜ୍ଞାଙ୍କୁ ବିବାହ କରି ତାହାଙ୍କ ଔରସରେ ଅଶ୍ୱିନୀକୁମାରଦ୍ୱୟଙ୍କୁ ଜନ୍ମ କରିଥିଲେ । ସେମାନେ ସ୍ୱର୍ଗରେ ଦେବତାମାନଙ୍କର ବୈଦ୍ୟ ଥିଲେ । ସୁତରାଂ ଅଶ୍ୱିନୀକୁମାର ରୋଗ ଆରୋଗ୍ୟ କରିବାରେ ପୈତୃକ ଗୁଣର ଉତ୍ତରାଧିକାରୀ ହୋଇଥିଲେ ମାତ୍ର । ଏହିରୂପେ ନାନା ଶାସ୍ତ୍ର ପୁରାଣରେ ସୂର୍ଯ୍ୟଙ୍କୁ ରୋଗମୁକ୍ତିର କାରଣ ସ୍ୱରୂପ ବହୁ ପୁରାକାଳରୁ ନିର୍ଦ୍ଦେଶ କରାଯାଇଅଛି ।

ଏହି ନବ ଭାବର ଐତିହାସିକ ତତ୍ତ୍ୱ ଯାହାହେଉ ପଛକେ ଉପରୋକ୍ତ ଶାସ୍ତ୍ରୀୟ ପ୍ରମାଣମାନଙ୍କରୁ ଏହା ଅନ୍ତତଃ ବୁଝାଯାଏ ଯେ, ସୂର୍ଯ୍ୟ ବାସ୍ତବିକ କେତେକ ରୋଗ ଆରୋଗ୍ୟ କରିପାରନ୍ତି । ଉକ୍ତ ଶାସ୍ତ୍ରୀୟ ପ୍ରମାଣକୁ ଅସତ୍ୟ ବୋଧରେ ଉପେକ୍ଷା କଲେ ମଧ୍ୟ ରୋଗ ଆରୋଗ୍ୟ କରିବା ବିଷୟରେ ସୂର୍ଯ୍ୟକିରଣର କର୍ତ୍ତୃତ୍ୱ କଦାପି ଅସ୍ୱୀକାର କରାଯାଇ ନ ପାରେ । ବର୍ତ୍ତମାନ ମଧ୍ୟ ଏହା ସୁପରୀକ୍ଷିତ ଯେ, ସୂର୍ଯ୍ୟକିରଣ ନାନା ରୋଗର କଣିକା ବିନାଶ କରିଦିଏ । ସେଦିନ ଶୁଣାଯାଇଥିଲା, ଫ୍ରାନ୍ସର ଜଣେ ଡାକ୍ତର ସୂର୍ଯ୍ୟକିରଣ ଦ୍ୱାରା

* Antiquities of Orissa - Vol. II. P. 147

କେତୋଟି ରୋଗ ଆରୋଗ୍ୟ ହେବାର ପରୀକ୍ଷା କରି ପ୍ରକାଶ କରିଥିଲେ । ସମସ୍ତେ ମଧ୍ୟ ଜାଣନ୍ତି, ଯେଉଁ ସ୍ଥାନରେ ସୂର୍ଯ୍ୟକିରଣ ପରିଷ୍କାର ନ ପଡେ, ସେହି ସ୍ଥାନରେ ବାସକଲେ ନାନା ରୋଗ ଜନ୍ମ ହୁଏ । ଦୁଇ ତିନି ଦିନ କ୍ରମାନ୍ୱୟରେ ମେଘାଚ୍ଛନ୍ନ ହୋଇ ଖରା ନ ପଡିଲେ ମନୁଷ୍ୟ ସାଧାରଣତଃ ନିଜକୁ ଅସୁସ୍ଥ ବୋଧକରେ । ଏହିପରି ଅବସ୍ଥାରେ ରୋଗ (ବିଶେଷତଃ କୁଷ୍ଠ ସଂକ୍ରାନ୍ତ ରୋଗ) ଆରୋଗ୍ୟ କରିବା ବିଷୟରେ ସୂର୍ଯ୍ୟକିରଣର କର୍ତ୍ତୃତ୍ୱରେ ବିଶ୍ୱାସ କରିବା ନିତାନ୍ତ ଅମୂଳକ ନୁହେଁ ଏବଂ ବାର ବର୍ଷକାଳ ସୂର୍ଯ୍ୟ ତେଜ ପାଇ ଶାମ୍ବଙ୍କର କୁଷ୍ଠରୋଗର କଣିକା ମରି ଯାଇଥିବାର ବିଚିତ୍ରତା ବା କ'ଣ ?

ଉପରୋକ୍ତ ଶାମ୍ବ ଉପାଖ୍ୟାନରୁ ଜଣାଯାଏ ଯେ, ମୈତ୍ରେୟ ବନରେ ନବ ପ୍ରତିଷ୍ଠିତ ସୂର୍ଯ୍ୟଦେବଙ୍କର ପୂଜା ଆରାଧନା ନିମନ୍ତେ ଶାମ୍ବ କେତେକ ଶାକଦ୍ୱୀପୀ ବ୍ରାହ୍ମଣଙ୍କୁ ସେବକ ସ୍ୱରୂପ ନିଯୁକ୍ତ କରିଥିଲେ । ପ୍ରଥମରେ ସେ ମଥୁରା ରାଜ୍ୟର ରାଜା ଉଗ୍ରସେନଙ୍କ ପୁରୋହିତଙ୍କୁ ସୂର୍ଯ୍ୟଙ୍କର ସେବାଭାର ଅର୍ପଣ କରିବାର ପ୍ରସ୍ତାବ କରିଥିଲେ । ସେ ଅସ୍ୱୀକୃତ ହେବାରୁ ଶାମ୍ବ ଶାକଦ୍ୱୀପୀ ବ୍ରାହ୍ମଣମାନଙ୍କ ହସ୍ତରେ ସେ ଭାର ଦେଲେ * । ଶାମ୍ବ ପୁରାଣ ଅନୁସାରେ କିନ୍ତୁ ଶାମ୍ବ ଆପଣା ଇଚ୍ଛାରେ ଉକ୍ତ ବ୍ରାହ୍ମଣଙ୍କୁ ଅର୍ପଣ ନ କରି ସୂର୍ଯ୍ୟ ନିଜେ ଶାକଦ୍ୱୀପୀ ବ୍ରାହ୍ମଣଙ୍କ ହସ୍ତରେ ପୂଜା ଭାର ଦେବା ନିମନ୍ତେ ଶାମ୍ବଙ୍କୁ ଆଦେଶ ଦେଇଥିଲେ । ସୂର୍ଯ୍ୟ କହିଥିଲେ :—

"ନ ଯୋଗ୍ୟ ପରିଚର୍ଯ୍ୟାୟାଂ ଜମ୍ବୁଦ୍ୱୀପେ ମମାନଘ ।
ମମପୂଜା ପରାନ୍‌କୃତ୍ୱା ଶାକଦ୍ୱୀପାଦିହାନୟ ॥
ମଗଣ୍ଡ ମାମଗାଣ୍ଡୈବ ମାନସା ମନ୍ଦଗାସ୍ତଥା ।
ତନ୍ମଗାନ୍ ମମପୂଜାର୍ଥଂ ଶାକଦ୍ୱୀପାଦିହାନୟ ॥"

ସେ ଯାହାହେଉ ଶାକଦ୍ୱୀପୀ ମଗମାନଙ୍କୁ ଦେବସେବା କାର୍ଯ୍ୟରେ ନିଯୁକ୍ତ କରିବା ଭାରତୀୟ ଜାତି ବିଭାଗ ପ୍ରଥାରେ ଗୋଟିଏ ନୂତନ କଥା । ଶାକଦ୍ୱୀପକୁ ବର୍ତ୍ତମାନ ଇତିହାସ ଲେଖକମାନେ ପାରସ୍ୟ ବୋଲି ଜ୍ଞାନ କରନ୍ତି । ଶ୍ରୀ ବିଷନ୍ ସ୍ୱରୂପ କହନ୍ତି ଯେ ସୂର୍ଯ୍ୟଦେବଙ୍କ ସେବକମାନେ ପାରସ୍ୟବାସୀ ଥିଲେ । ସେମାନେ ହୁଏତ ପାରସିକ ଆର୍ଯ୍ୟ ହୋଇଥିବେ ଅଥବା କେତେକ ଭାରତୀୟ ଆର୍ଯ୍ୟ ବ୍ରାହ୍ମଣ ପାରସ୍ୟରେ ଯାଇ ବାସ କରିଥିବେ । ଶାକଦ୍ୱୀପ ନାମ ଭାରତର ନାନା ଧର୍ମଶାସ୍ତ୍ରମାନଙ୍କରେ ବହୁତ ପଡେ । ଜଣାଯାଏ, ଭାରତରେ ଜାତିବନ୍ଧନ ଦୃଢ଼ ହେବା ପୂର୍ବରୁ ପାରସ୍ୟ ଓ ଭାରତବର୍ଷ ଏକଜାତି ଥାଇ ଏକପ୍ରାଣ ଓ ଏକଭାବ ଅନୁଭବ କରୁଥିଲେ । ଆର୍ଯ୍ୟମାନେ ଭାରତକୁ ପ୍ରଥମରେ ଏକାବେଳକେ ଏକ ସମୟରେ ଆସି ନ ଥିଲେ ଏବଂ ଆସି ମଧ୍ୟ ସମାଜ ବନ୍ଧନ ଏକ ଦିନ ମଧ୍ୟରେ ଦୃଢ଼ କରିଦେଇ ନ ଥିଲେ । ଭାରତକୁ ଆର୍ଯ୍ୟ ଆଗମନ ଯେପରି, ଭାରତରେ ଆର୍ଯ୍ୟ ସମାଜବନ୍ଧନ ମଧ୍ୟ

* Mr. Bishan Swarup's 'Konark' P.4

ସେହପରି କ୍ରମେ କ୍ରମେ ହୋଇଥିଲା । କେତେ ଶତାବ୍ଦୀ ଧରି ଦଳ ଦଳ ହୋଇ ଆର୍ଯ୍ୟମାନେ ଏ ଦେଶକୁ ଆସିଥିଲେ ଏବଂ ଆସିଲାବେଳେ ମଧ୍ୟ ପାରସ୍ୟ ଦେଇ ଆସିଥିବାର ଇତିହାସ ଲେଖକମାନେ ପ୍ରାୟ ସମସ୍ତେ କହନ୍ତି । ଆସିଲାବେଳେ ସେମାନଙ୍କ ଗୋଷ୍ଠୀରୁ କେତେକ ଦଳ ପାରସ୍ୟରେ ରହିଥିଲେ; ସୁତରାଂ ଆର୍ଯ୍ୟ ଆଗମନର ଆରମ୍ଭରୁ କେତେ କାଳ ପର୍ଯ୍ୟନ୍ତ ପାରସ୍ୟ ଓ ଭାରତବର୍ଷ ମଧ୍ୟରେ ଆର୍ଯ୍ୟମାନଙ୍କର ଗମନାଗମନ ଅବାଧରେ ହେଉଥିଲା । ଜାତି ବିଭାଗ ଦୃଢ଼ ହେବା ପୂର୍ବରୁ ପାରସିକ ଆର୍ଯ୍ୟମାନେ ଭାରତ ସମାଜରେ ସୁନ୍ଦର ମିଶି ପାରୁଥିଲେ । ପାଟଳୀପୁତ୍ର ବା ପାଟଣାର ଖନନ କାର୍ଯ୍ୟରେ ନିଯୁକ୍ତ ଡାକ୍ତର ଡି. ବି. ସ୍ପୁନର (Dr. D. B. Spooner) ଅଳ୍ପକାଳ ପୂର୍ବେ ଯେଉଁ ରିପୋର୍ଟ ପ୍ରକାଶ କରିଥିଲେ, ତାହା କେହି କେହି ପଢ଼ିଥିବେ । ତହିଁରେ ସେ ଅତ୍ୟନ୍ତ ଅଭିନବ ଐତିହାସିକ ତତ୍ତ୍ୱମାନ ପ୍ରକାଶ କରି କେବଳ ହାସ୍ୟାସ୍ପଦ ହୋଇଥିଲେ । ତାହାଙ୍କ ମତ ଅନୁସାରେ ଚନ୍ଦ୍ରଗୁପ୍ତ ଏମନ୍ତ କି ଚାଣକ୍ୟ ପର୍ଯ୍ୟନ୍ତ ମଧ୍ୟ ପାରସିକ ଥିଲେ । ଯାହାହେଉ, ଡାକ୍ତର ସ୍ପୁନରଙ୍କ ରିପୋର୍ଟର ଅନ୍ତତଃ ଏହି ସତ୍ୟ ସ୍ୱୀକାର କରିବାକୁ ହେବ ଯେ, ପାରସିକ ଆର୍ଯ୍ୟମାନେ ଭାରତରେ ଆର୍ଯ୍ୟବସତିର କେତେ କାଳ ପରେ ମଧ୍ୟ ଏ ଦେଶକୁ ଆସି ଅବାଧରେ ଏ ଦେଶୀୟ ଆର୍ଯ୍ୟସମାଜରେ ମିଶି ଯାଉଥିଲେ । ବର୍ତ୍ତମାନ ମଧ୍ୟ ବିହାର ପ୍ରଭୃତି ଅଞ୍ଚଳରେ ନାନା ସ୍ଥାନରେ ଶାକଦ୍ୱୀପୀ ବ୍ରାହ୍ମଣ ଥିବାର ଦେଖାଯାନ୍ତି ।

କେବଳ ସାମାଜିକ ହିସାବରେ ନୁହେଁ, ରାଜନୈତିକ ଭାବରେ ମଧ୍ୟ ପାରସ୍ୟ ସହିତ ଭାରତର ଘନିଷ୍ଠ ସମ୍ବନ୍ଧ ଥିଲା । ଚନ୍ଦ୍ରଗୁପ୍ତଙ୍କ ସମୟରେ ପାରସ୍ୟ ଭାରତର ଗୋଟିଏ ସୀମାନ୍ତ ରାଜ୍ୟ ସ୍ୱରୂପ ଥିଲା ଏବଂ ଚନ୍ଦ୍ରଗୁପ୍ତଙ୍କ ପୂର୍ବବର୍ତ୍ତୀ ନନ୍ଦବଂଶୀୟ ରାଜାମାନଙ୍କର ପାରସିକ ରାଜାମାନେ ସାମନ୍ତ ରାଜା ଓ ମିତ୍ର ଥିଲେ । ସୁତରାଂ ଚନ୍ଦ୍ରଗୁପ୍ତଙ୍କ ମନ୍ତ୍ରୀ ଚାଣକ୍ୟ ପାରସିକ ରାଜାଙ୍କ ଧ୍ୱଂସରେ ଦୃଢ଼ସଂକଳ୍ପ ଥିବାର 'ମୁଦ୍ରାରାକ୍ଷସ' ନାଟକରୁ ଜଣାଯାଏ * । ମୌର୍ଯ୍ୟବଂଶ ପରେ ପାରସ୍ୟର ପାର୍ଥିୟାନ୍‌ମାନେ ଭାରତରେ ସାମ୍ରାଜ୍ୟ ସ୍ଥାପନ କରି ପଲ୍ଲବ ନାମରେ ପରିଚିତ ହୋଇଥିଲେ । ଚାଲୁକ୍ୟ ବଂଶୀୟ ଦିଗ୍‌ବିଜୟୀ ନରପତି ପୁଲକେଶୀଙ୍କର ପାରସ୍ୟ ରାଜାଙ୍କ ସହିତ ମିତ୍ରତା ଏବଂ ରାଜନୀତିକ ସଂପର୍କ ପ୍ରତିଷ୍ଠିତ ହୋଇଥିଲା । ଶକରାଜାଙ୍କ 'ଶକାବ୍ଦ' ବର୍ତ୍ତମାନ ପର୍ଯ୍ୟନ୍ତ ମଧ୍ୟ ସମସ୍ତ ଭାରତବର୍ଷରେ ଚଳୁଅଛି । କନିଷ୍କଙ୍କ ପୂର୍ବରୁ ଶକମାନେ ଶୈବ ଥିଲେ । ସୁତରାଂ କି ସାମାଜିକ, କି ରାଜନୈତିକ ସମସ୍ତ ବିଷୟରେ ପାରସ୍ୟ ଓ ଭାରତବର୍ଷ ମଧ୍ୟରେ ସମ୍ବନ୍ଧ ଅବଶ୍ୟ ଘନିଷ୍ଠ ଥିଲା । ଏହିହେତୁ ଶାମ୍ବ କେତେକ ମଗଙ୍କୁ ଅଣାଇ ସୂର୍ଯ୍ୟଙ୍କର ସେବକ ସ୍ୱରୂପ ନିଯୁକ୍ତ କରିଥିଲେ ।

ଯାହାହେଉ, ମୈତ୍ରେୟ ବନରେ ପାରସିକ ଶାକଦ୍ୱୀପୀ ବ୍ରାହ୍ମଣମାନଙ୍କ ଦେବସେବା ଗ୍ରହଣ ଉକ୍ତ ବନର ଐତିହାସିକତା ନିର୍ଣ୍ଣୟ କରିବା ସମ୍ବନ୍ଧରେ କେତେକ ସାହାଯ୍ୟ କରୁଅଛି ।

* ମୁଦ୍ରାରାକ୍ଷସ - ୧ମ ଅଙ୍କ, ୨୦ଶ ଶ୍ଳୋକ

ଉପରେ ଯେପରି କୁହାଗଲା, ମୈତ୍ରେୟ ବନରେ ଶାକଦ୍ୱୀପୀ ଭାରତୀୟ ଆର୍ଯ୍ୟଙ୍କର ଦେବସେବା ଭାର ଗ୍ରହଣ କରିବାର ଅର୍ଥ ଯେ ସେ ସମୟରେ ଭାରତୀୟ ଆର୍ଯ୍ୟ ଏବଂ ପାରସିକ ଆର୍ଯ୍ୟମାନଙ୍କ ମଧ୍ୟରେ ସାମାଜିକ ବିରୋଧ ଆଦୌ ନ ଥିଲା । ପାରସିକ ଆର୍ଯ୍ୟମାନେ ଅବାଧରେ ଏବଂ ଅତ୍ୟନ୍ତ ଆଦର ସହିତ ଭାରତ ସମାଜର ଅନ୍ତର୍ଭୁକ୍ତ ହେଉଥିଲେ । ବିହାର ପ୍ରଭୃତି ଅଞ୍ଚଳରେ ଯେଉଁ ଶାକଦ୍ୱୀପୀ ବ୍ରାହ୍ମଣମାନେ ଅଦ୍ୟାପି ଅଛନ୍ତି, ସେମାନେ କିନ୍ତୁ ଭାରତ ସମାଜର ଅନ୍ତର୍ଭୁକ୍ତ ହୋଇପାରି ନ ଥିଲେ ଏବଂ ବର୍ତ୍ତମାନ ମଧ୍ୟ ସେମାନେ ଭାରତୀୟ ବ୍ରାହ୍ମଣମାନଙ୍କଠାରୁ ସାମାଜିକତାରେ ପୃଥକ୍ ଭାବରେ ଅଛନ୍ତି । ଡାକ୍ତର ସ୍ପୁନରଙ୍କ ମନ୍ତବ୍ୟରୁ ଯେପରି ପ୍ରକାଶ ପାଏ, ଉକ୍ତ ବିହାରୀ ବ୍ରାହ୍ମଣମାନେ ବୁଦ୍ଧଦେବ ବା ତାହାଙ୍କର ପୂର୍ବବର୍ତ୍ତୀ ସମୟରେ ବିହାରକୁ ଆସିଥଲେ । କାରଣ ସେହି ସମୟକୁ ଜାତିବନ୍ଧନ ଦୃଢ଼ ହୋଇ ଆସିଥିଲା । ପରନ୍ତୁ, କୋଣାର୍କର ଶାକଦ୍ୱୀପୀ ବ୍ରାହ୍ମଣ ଭାରତ ସମାଜରୁ ପୃଥକ୍ ହୋଇ ରହି ନ ଥିଲେ । ସୁତରାଂ ଜାତିପ୍ରଥା ଯଥେଷ୍ଟ ଶିଥିଳ ଥିବା ସମୟରେ ସେମାନେ ଏ ଦେଶକୁ ଆସିଥିଲେ । ଏପରି ସ୍ଥଳେ ମୈତ୍ରେୟ ବନର ଉପରୋକ୍ତ ଶାମ୍ବ ଉପାଖ୍ୟାନ ଓ ସୂର୍ଯ୍ୟଦେବଙ୍କ ଅଧିଷ୍ଠାନ ନିମନ୍ତେ ଆମ୍ଭମାନଙ୍କୁ ବୁଦ୍ଧଦେବଙ୍କର ବହୁ ଶତାବ୍ଦୀ ପୂର୍ବକୁ ଯିବାକୁ ହେବ ।

ଅନ୍ୟ ଦିଗରୁ ଦେଖିଲେ ମଧ୍ୟ ଉପରୋକ୍ତ ଅନୁମାନ ପ୍ରମାଣିତ ହୁଏ । ଶାମ୍ବ ପରୀକ୍ଷିତ ମହାରାଜାଙ୍କର ପ୍ରାୟ ସମସାମୟିକ କହିଲେ ଚଳେ । ପରୀକ୍ଷିତ ୩୮୪୩ ବର୍ଷ ପୂର୍ବେ ରାଜତ୍ୱ କରିଥିବାର ଜଣାଯାଏ । କାରଣ ବିଷ୍ଣୁ ପୁରାଣରୁ ଜଣାଯାଏ ଯେ, ପରୀକ୍ଷିତଙ୍କ ସିଂହାସନାରୋହଣ ସମୟକୁ କଳିଯୁଗର ୧୨୦୦ ବର୍ଷ ଅତୀତ ହୋଇଥିଲା । ବର୍ତ୍ତମାନ କଳିଯୁଗରୁ ୫୦୪୩ ବର୍ଷ ଗତ ହୋଇଅଛି । ସୁତରାଂ ବର୍ତ୍ତମାନଠାରୁ (୫୦୪୩–୧୨୦୦) ୩୮୪୩ ବର୍ଷ ପୂର୍ବେ ଅର୍ଥାତ୍ ଖ୍ରୀଷ୍ଟ ପ୍ରତିଲୋମ ଊନବିଂଶ ଅବ୍ଦରେ ପରୀକ୍ଷିତ ରାଜତ୍ୱ କରିଥିଲେ । ପରନ୍ତୁ ଭାଗବତ ଅନୁସାରେ ପରୀକ୍ଷିତ କଳିଯୁଗ ଆରମ୍ଭରେ ରାଜ୍ୟଭାର ଗ୍ରହଣ କରିଥିଲେ । ଏହା କିନ୍ତୁ ବିଶ୍ୱାସ୍ୟ ନୁହେଁ । କାରଣ ମହାଭାରତରେ ଉଲ୍ଲେଖ ଅଛି, ମହାଭାରତ ଯୁଦ୍ଧର ବହୁ ପୂର୍ବରୁ କଳି ଆରମ୍ଭ ହୋଇଥିଲା ଏବଂ ସହଦେବ କଳିକୁ ବାନ୍ଧି ରଖିଥିଲେ । ଭାଗବତ ମଧ୍ୟ ଅନ୍ୟତ୍ର କହେ, ପରୀକ୍ଷିତଙ୍କ ଜନ୍ମ ଓ ନନ୍ଦଙ୍କ ସିଂହାସନାରୋହଣ ମଧ୍ୟରେ ୧୧୧୫ ବର୍ଷ ବ୍ୟବଧାନ ଥିଲା * । ରମେଶ ଚନ୍ଦ୍ର ଦତ୍ତଙ୍କ ଅନୁସାରେ ଚନ୍ଦ୍ରଗୁପ୍ତ ପ୍ରାୟ ଖ୍ରୀଷ୍ଟ ପ୍ରତିଲୋମ ୩୨୦-୨୧ ଅବ୍ଦରେ ନନ୍ଦବଂଶ ଧ୍ୱଂସ କରି ରାଜତ୍ୱ କରିଥିଲେ । ଚନ୍ଦ୍ରଗୁପ୍ତଙ୍କ

---

* "ଆରଭ୍ୟ ଭବତୋଜନ୍ମ ପାବନ୍ନନ୍ଦାଭିଷେଚନଂ ।
ଏତଦ୍‌ବର୍ଷ ସହସ୍ରନ୍ତୁ ଶତଂ ପଞ୍ଚଦଶୋତ୍ତରଂ ॥

— ଦ୍ୱାଦଶସ୍କନ୍ଧ, ତୃତୀୟ ଅଧ୍ୟାୟ । ୨୬ଶ ଶ୍ଳୋକ

ଶ୍ରୀ ବିଷ୍ଣୁନ୍ଦ ସ୍ୱରୂପ ଏହାକୁ ୧୫୦୦ ବର୍ଷ ଅର୍ଥ କରି ଭ୍ରମରେ ପଡ଼ି ଅଛନ୍ତି ।

ପୂର୍ବରୁ ନନ୍ଦମାନେ ପ୍ରାୟ ୧୦୦ ବର୍ଷ ରାଜତ୍ୱ କରିଥିଲେ । ସୁତରାଂ ଭାଗବତ ଅନୁସାରେ ପରୀକ୍ଷିତଙ୍କ ସମୟ (୧୧୧୫+୩୨୦+୧୦୦) ୧୫୩୫ ବର୍ଷ, ଅର୍ଥାତ୍ ଖ୍ରୀଷ୍ଟ ପ୍ରତିଲୋମ ଷୋଡ଼ଶ ଶତାବ୍ଦୀ । ଶ୍ରୀ ବିଷନ୍ ସ୍ୱରୂପ ଭାଗବତରୁ ପରୀକ୍ଷିତଙ୍କ ସମୟରେ ସପ୍ତର୍ଷିଙ୍କ ଯେପରି ଅବସ୍ଥାନ ଥିଲା, ତାହା ଅନୁସାରେ ହିସାବ କରି କହନ୍ତି ଯେ, ପରୀକ୍ଷିତ ଖ୍ରୀଷ୍ଟପୂର୍ବ ୧୯୦୦ ଅବ୍ଦରେ ରାଜତ୍ୱ କରିଥିଲେ */ । ଅତଏବ ବର୍ତ୍ତମାନ ଅନ୍ତତଃ କୁହାଯାଇପାରେ ଯେ, ପରୀକ୍ଷିତ ଖ୍ରୀଷ୍ଟପୂର୍ବ ଅଷ୍ଟାଦଶ ବା ଊନବିଂଶ ଶତାବ୍ଦୀରେ ରାଜତ୍ୱ କରିଥିଲେ । ଶାମ୍ୱ ପରୀକ୍ଷିତଙ୍କର ଯଥାର୍ଥ ସମସାମୟିକ ନ ହେଲେ ସୁଦ୍ଧା ଦୁହିଁଙ୍କ ମଧ୍ୟରେ ଏକ ପୁରୁଷ ମାତ୍ର ପ୍ରଭେଦ । ସୁତରାଂ ଶାମ୍ୱଙ୍କୁ ଖ୍ରୀଷ୍ଟପୂର୍ବ ଊନବିଂଶ ଶତାବ୍ଦୀର ଲୋକ ବୋଲି ଧରାଯାଇପାରେ ।

ଅତଏବ ଉପରୋକ୍ତ ସମସ୍ତ ବିଷୟ ବିଚାର କଲେ ଆପାତତଃ ଅନୁମାନ କରାଯାଏ ଯେ, ମୈତ୍ରେୟ ବନ ବା କୋଣାର୍କରେ ଖ୍ରୀଷ୍ଟପୂର୍ବ ଊନବିଂଶ ଶତାବ୍ଦୀରୁ ଶାମ୍ୱଙ୍କଦ୍ୱାରା ସୂର୍ଯ୍ୟଦେବଙ୍କର ଅଧିଷ୍ଠାନ ହୋଇଅଛି । ପରବର୍ତ୍ତୀ ଅଧ୍ୟାୟମାନଙ୍କରେ ପ୍ରସଙ୍ଗକ୍ରମେ ଉପରୋକ୍ତ ସିଦ୍ଧାନ୍ତର ପୁନରାୟ ଆଲୋଚନା କରାଯିବ ।

ଶ୍ରୀ ବିଷନ୍ ସ୍ୱରୂପ ତାହାଙ୍କ କୋଣାର୍କରେ **/ ସନ୍ଦେହ କରନ୍ତି ଯେ, ଶାମ୍ୱ ଯେଉଁ ଚନ୍ଦ୍ରଭାଗାରେ ସ୍ନାନ କରିଥିଲେ, ତାହା କୋଣାର୍କର ଚନ୍ଦ୍ରଭାଗା ନୁହେଁ ବରଂ ପଞ୍ଜାବର ଚନ୍ଦ୍ରଭାଗା ବା ଚେନାବ ନଦୀ । କାରଣ ପଞ୍ଜାବର ଚନ୍ଦ୍ରଭାଗା ଶ୍ରୀକୃଷ୍ଣ ଓ ଶାମ୍ୱଙ୍କ ବାସସ୍ଥାନ ଦ୍ୱାରକାକୁ ନିକଟ । ପୁଣି ସେ କହନ୍ତି ଯେ, ମୈତ୍ରେୟ ବନ କୋଣାର୍କରେ ଥିବା ଅସମ୍ଭବ । କାରଣ କୋଣାର୍କ ସମୁଦ୍ର ତୀରବର୍ତ୍ତୀ ବାଲୁକାମୟ ସ୍ଥାନ ଏବଂ ଏହିପରି ବାଲୁକାମୟ ସ୍ଥାନରେ ଗଛ ବୃକ୍ଷ ଜନ୍ମି ବନ ହୋଇଥିବା ଅସମ୍ଭବ । ଅତଏବ ସେ ମନେ କରନ୍ତି, ମୈତ୍ରେୟ ବନ କୋଣାର୍କରେ ନ ଥାଇ ବରଂ ପଞ୍ଜାବରେ ଥିଲା ।

ଏହି ରୂପ ସନ୍ଦେହ ଅବଶ୍ୟ ବଡ଼ ଗୁରୁତର ବିଷୟ । କୋଣାର୍କରେ ମୈତ୍ରେୟ ବନ ଥିବାର ଅସ୍ୱୀକାର କଲେ, କୋଣାର୍କର ସମୁଦାୟ ପୌରାଣିକ ମହତ୍ତ୍ୱ ମୂଳରେ କୁଠାରାଘାତ କରିବାକୁ ହୁଏ । କପିଳ ସଂହିତା, ଶାମ୍ୱ ପୁରାଣ ପ୍ରଭୃତିରେ ମୈତ୍ରେୟ ବନ କୋଣାର୍କରେ ହୋଇଥିବାର ସାକ୍ଷାତ୍ ପ୍ରମାଣ ଥିବା ସ୍ଥଳେ ଯେଉଁମାନେ ତାହାକୁ ପଞ୍ଜାବ ବା ଅନ୍ୟତ୍ର ନେବାକୁ ଚେଷ୍ଟା କରନ୍ତି, ସେମାନଙ୍କର ମତ ପ୍ରମାଣ କରିବା ନିମନ୍ତେ ସେହିମାନେ ପ୍ରଥମେ ଦାୟୀ । ଏପର୍ଯ୍ୟନ୍ତ କୌଣସି ଲେଖକ ସେରୂପ ସନ୍ତୋଷଜନକ ପ୍ରମାଣ ଦେଇ ନ ଥିବା ସ୍ଥଳେ ସେମାନଙ୍କର ମତ ଖଣ୍ଡନ କରିବା ଏହି ଗ୍ରନ୍ଥ ପକ୍ଷରେ ଅନାବଶ୍ୟକ । ତଥାପି କେବଳ ଯୁକ୍ତି ଛଳରେ ଏବଂ ଏହି ଗ୍ରନ୍ଥରେ ପ୍ରତିପାଦିତ ମତକୁ ଆହୁରି ଦୃଢ଼ କରିବା ନିମନ୍ତେ ଶ୍ରୀ ବିଷନ୍

* Konarka P. 3 foot-note.

** Konarka - p.4.

ସ୍ୱରୂପଙ୍କ ତଥାକଥିତ ପ୍ରମାଣ ପରୀକ୍ଷା କରିବା ନିତାନ୍ତ ଅନାବଶ୍ୟକ ନୁହେଁ । ଶ୍ରୀ ବିଷନ୍ ସ୍ୱରୂପଙ୍କ ପ୍ରଥମ କାରଣ ଏହି ଯେ, କୋଣାର୍କ ଅପେକ୍ଷା ପଞ୍ଜାବ ଦ୍ୱାରକାକୁ ନିକଟତର । ଏହି କାରଣ କିନ୍ତୁ ଯଥାର୍ଥ ନୁହେଁ । ତପସ୍ୟା କରିବା ପାଇଁ ଦୂରତା ବା ନିକଟତାର ବିଚାର ପୂର୍ବେ ମନରେ କଦାପି ସ୍ଥାନ ପାଉ ନ ଥିଲା । କେହି କେବେ କୌଣସି ସ୍ଥାନ ନିକଟ ବୋଲି ସେ ସ୍ଥାନକୁ ତପସ୍ୟା କରବାକୁ ଯାଉ ନ ଥିଲେ । ସ୍ଥାନ ଦୂର ହେଉ ବା ନିକଟ ହେଉ, ଉପଯୁକ୍ତ ସ୍ଥାନରେ ତପସ୍ୟା କରିବା ନିମନ୍ତେ ତପସ୍ୱୀମାନେ ଇଚ୍ଛା କରୁଥିଲେ । କପିଳ ମୁନି ତପସ୍ୟା ଉଦ୍ଦେଶ୍ୟରେ ପାତାଳପୁରୀ (ବର୍ତ୍ତମାନ ସାଗର ଦ୍ୱୀପ)ରେ ଆଶ୍ରମ କରିଥିଲେ ଏବଂ ଭଗୀରଥ ପିତୃମାନଙ୍କୁ ଉଦ୍ଧାର କରିବା ପାଇଁ ସ୍ୱର୍ଗରୁ ପାତାଳ ପର୍ଯ୍ୟନ୍ତ ଭ୍ରମଣ କରିଥିଲେ । ରାବଣ ତପସ୍ୟା ନିମନ୍ତେ ଲଙ୍କାରୁ କୈଳାଶ ଶିଖରକୁ ଯାଇଥିଲେ । ସୁତରାଂ ଶାମ୍ବଙ୍କର କୋଣାର୍କକୁ ଆସିବା କିଛି ଅସମ୍ଭବ ନୁହେଁ ।

କୋଣାର୍କରେ ଅବଶ୍ୟ ବର୍ତ୍ତମାନ କୌଣସି ନିବିଡ ବନ ଜଙ୍ଗଲ ନାହିଁ; ତଥାପି ସେଠାରେ ଯେ ବନ ନ ଥିଲା, ତାହା କୁହାଯାଇ ନ ପାରେ । ବରଂ କହିବା ସହଜ ଯେ, କୋଣାର୍କ ପୂର୍ବେ ନିବିଡ଼ ଜଙ୍ଗଲମୟ ଥିଲା । ବର୍ତ୍ତମାନ ଅବଶ୍ୟ କେତେକ ବରଗଛ, ଝାମୁ ଓ ଲଙ୍କାଆମ୍ବ ପ୍ରଭୃତି ଗଛ ଛାଡିଦେଲେ ଅନ୍ୟ କୌଣସି ଗଛ କୋଣାର୍କରେ ପ୍ରାୟ ଦେଖାଯାଏ ନାହିଁ । ତଥାପି ଯେଉଁ ସ୍ଥାନରେ ବର, ଝାମୁ, ଲଙ୍କାଆମ୍ବ ପ୍ରଭୃତି ଗଛ ଜନ୍ମ ହୋଇପାରେ, ସେହି ସ୍ଥାନରେ ବନ ନ ଥିବା କହିବା ନିତାନ୍ତ ଅମୂଳକ ଏବଂ ସେ ସ୍ଥାନ ବନ ଜଙ୍ଗଲ ନିମନ୍ତେ 'ନିତାନ୍ତ ପ୍ରତିକୂଳ' (quite unfavourable) ବୋଲାଯାଇ ନ ପାରେ । ପରନ୍ତୁ ପୁରାଣମାନଙ୍କରେ ଅନ୍ୟାନ୍ୟ ବୃକ୍ଷ ମଧ୍ୟରେ ଏଠାର ପୁଷ୍ପବୃକ୍ଷମାନଙ୍କର ନାମ ଅଛି । ବ୍ରହ୍ମପୁରାଣରେ ଲେଖା ଅଛି * –

"ଲବଣାସ୍ୟୋଦଧେସ୍ତୀରେ ପବିତ୍ରେ ସୁମନୋହରେ ।
ସର୍ବତ୍ର ବାଲୁକାକୀର୍ଣ୍ଣେ ଦେଶେ ସର୍ବ ଗୁଣାନ୍ୱିତେ ॥
ଚମ୍ପକାଶୋକବକୁଳୈଃ କରବୀରୈଃ ସପାଟଳୈଃ ।
ପୁନ୍ନାଗୈଃ କର୍ଣ୍ଣିକାରେଶ୍ଚ ବକୁଳୈର୍ନାଗକେଶରୈଃ ॥"

ପ୍ରାଚୀମାହାତ୍ମ୍ୟରେ ଲେଖାଅଛି ** –

(ରାମ) "ଦେଖିଲେ ଅଛି ଦିବ୍ୟବନ । ଆନନ୍ଦ ରାଜୀବ ଲୋଚନ ॥
ନାନା କୁସୁମେ ଲତାକୁଞ୍ଜ । ଗୁଳ୍ମ ବଲ୍ଲରୀ ଯେ ଗହଳ ॥
ମାଳତୀ ମାଳ ନାଗେଶ୍ୱର । ଚମ୍ପକ ବକୁଳ କେଶର ॥

* ଶ୍ରୀ ମନମୋହନ ଗାଙ୍ଗୁଲି - 'Orissa and Her Remains.' P. 438.

** ପ୍ରାଚୀମାହାତ୍ମ୍ୟ - ଅଷ୍ଟମ ଅଧ୍ୟାୟ

ଧବ ଖଦିର କୁରୁବକ । ପାଟଳୀ ବକୁଳ ଅଶୋକ ।।
ମତ୍ତ ମାତଙ୍ଗ ଯୂଥ ମୃଗ । ବରାହ ସ୍ତବକ କୁରଙ୍ଗ ।।
ଶୁକ କୋକିଳ ଶାରୀ ହଂସ । ରାବ କରନ୍ତି ଅହର୍ନିଶ ।।''

ଏହି ପୁରାଣପ୍ରସଙ୍ଗ ବାଦଦେଲେ ମଧ୍ୟ କୋଣାର୍କରେ ବର୍ତ୍ତମାନ ନାନାପ୍ରକାର ଛୋଟ ବଡ଼ ଗଛ ଥିବାର ଦେଖାଯାଏ । ମନୁଷ୍ୟ ସମାଗମ ହେତୁରୁ ସେଗୁଡ଼ିକ କ୍ରମେ ଲୁପ୍ତ ହୋଇ ଯାଉଅଛି । କୋଣାର୍କର ସାମାନ୍ୟ ଦୂରକୁ ଗଲେ ବିସ୍ତର ଜଙ୍ଗଲ ଦେଖିବାକୁ ମିଳେ । ପ୍ରାୟ ଚାରି ପାଞ୍ଚ ମାଇଲ ଦକ୍ଷିଣରେ ଲିଆଖିଆ କୂଳରେ ଯେଉଁ ବାଘୋର ଲଟା ଅଛି, ତହିଁରେ ବାଘ, ଭାଲୁ ଆଦି ସର୍ବଦା ଲୁଚି ରହନ୍ତି । ସେ ଜଙ୍ଗଲ ମଧ୍ୟ ସମୁଦ୍ର କୂଳ ବାଲୁକାମୟ ସ୍ଥାନ । ଏହି ଲଟାର ବାଉଁଶ ଗଛ କୋଣାର୍କ ପଥରେ ବହୁଦୂରକୁ ଦେଖାଯାଏ । ପୁଣି କୋଣାର୍କର ପାଞ୍ଚ ମାଇଲ ଉତ୍ତର-ପୂର୍ବ ସମୁଦ୍ର କୂଳରେ 'ଗୋଲରାଗଡ' ନାମରେ ଗୋଟିଏ ନିବିଡ ଜଙ୍ଗଲ ଅଛି । ସେଠାରେ ମୁଁ ବୁଝିଲି ଯେ, ଦିନରେ ସୁଦ୍ଧା କେହି ସାହସ କରି ସେ ଜଙ୍ଗଲ ଭିତରେ ପଶି ପାରନ୍ତି ନାହିଁ । ପୂର୍ବେ ଏହି ଜଙ୍ଗଲ ମଧ୍ୟରେ ଗୋଟିଏ ଗଡ଼ ଥିଲା ଏବଂ ଖଣ୍ଡାୟତମାନେ ସୈନ୍ୟ ଶିକ୍ଷା କରି ଏହି ଦୁର୍ଗରେ ଲୁଚି ରହୁଥିଲେ । ଏହି ଜଙ୍ଗଲ ମଧ୍ୟ ସମୁଦ୍ର କୂଳ ବାଲି ଉପରେ ବଢ଼ିଅଛି । ସୁତରାଂ ସମୁଦ୍ର କୂଳ ବାଲି ଗଛ ବୃକ୍ଷ ନିମନ୍ତେ 'ନିତାନ୍ତ ପ୍ରତିକୂଳ' କହିବା ଅନଭିଜ୍ଞତାର ପରିଚୟ ମାତ୍ର ।

ଯେଉଁ ପୁରାଣମାନଙ୍କରେ (ବ୍ରହ୍ମ ପୁରାଣ ପ୍ରଭୃତି) ମୈତ୍ରେୟ ବନର ଉଲ୍ଲେଖ ଅଛି, ସେଥିରେ ମଧ୍ୟ ତାହା ସମୁଦ୍ର ତୀରବର୍ତ୍ତୀ ଥିବାର ଲେଖାଅଛି । ପଞ୍ଜାବରେ ମୈତ୍ରେୟ ବନ ହୋଇଥିଲେ ତାହା ସମୁଦ୍ର ତୀରବର୍ତ୍ତୀ ହୋଇଥିଲା କିପରି ? ପୁଣି ସୂର୍ଯ୍ୟକ୍ଷେତ୍ର ପଞ୍ଜାବରେ କାହୁଁ ଆସିଲା । ସୁତରାଂ କୋଣାର୍କରେ ମୈତ୍ରେୟ ବନ ଥିବାର ସନ୍ଦେହ କରିବାରେ କୌଣସି ଯଥାର୍ଥ କାରଣ ନାହିଁ; ଥିଲେ ମଧ୍ୟ କୌଣସି ସମାଲୋଚକ ତାହା ଏପର୍ଯ୍ୟନ୍ତ ଦେଖାଇ ନାହାନ୍ତି । ଏପରି ସ୍ଥଳେ ମୈତ୍ରେୟ ବନକୁ ପଞ୍ଜାବରେ ଆରୋପ ନ କରି ତାହା କୋଣାର୍କର ଆଦିମ ଅବସ୍ଥା ବୋଲି ଧରିବା ଶାସ୍ତ୍ରସଙ୍ଗତ ଓ ଯୁକ୍ତିଯୁକ୍ତ ।

******

# ଦ୍ୱିତୀୟ ଅଧ୍ୟାୟ

## ସୂର୍ଯ୍ୟ-ଉପାସନା ଓ କୋଣାର୍କ ମାହାତ୍ମ୍ୟ

ସମଗ୍ର ଭାରତବର୍ଷ ମଧ୍ୟରେ ଉତ୍କଳ ହିନ୍ଦୁମାନଙ୍କର ପରମ ପବିତ୍ର ଭୂମି । ନାନା ଦେବଦେବୀ ଓ ତୀର୍ଥମାନଙ୍କର ଅଧିଷ୍ଠାନ ଯୋଗେ ପ୍ରାଚୀନ ମହର୍ଷିମାନେ ଉତ୍କଳକୁ ଭାରତୀୟ ଧର୍ମସାମ୍ରାଜ୍ୟରେ ଅତି ଉଚ୍ଚ ସ୍ଥାନ ଦେଇଅଛନ୍ତି । ପୁରାଣମାନଙ୍କରେ ଉତ୍କଳର ମାହାତ୍ମ୍ୟ ଅତି ଗୌରବ ସହକାରେ କୀର୍ତ୍ତନ କରା ଯାଇଅଛି । ଓଡ଼ିଶାର ଦେବସ୍ଥଳୀମାନଙ୍କରେ ପ୍ରଶାନ୍ତଭାବ, ଉନ୍ନତ ଆଦର୍ଶ ହିନ୍ଦୁ ଧର୍ମ ଯୁଗେ ଯୁଗେ ପୁଣ୍ୟାତ୍ମା ଆର୍ଯ୍ୟମାନଙ୍କର ଜୀବନ ଅନୁପ୍ରାଣିତ କରିଅଛି । ମରହଟ୍ଟା ବୀର ମହାତ୍ମା ଶିବାଜୀ ଏକାମ୍ର କାନନରେ ଉପସ୍ଥିତ ହୋଇ କହିଥିଲେ, ''ଏହି ଦେଶ ଦେବତାମାନଙ୍କର ପ୍ରିୟ ନିକେତନ; ପାପପ୍ରବଣ ମନୁଷ୍ୟ ଏହି ପବିତ୍ର ଭୂମି କଳଙ୍କିତ କରିବା ଅନୁଚିତ *। ହିନ୍ଦୁମାନଙ୍କର ଗୋଟିଏ ପରମ ପବିତ୍ରସ୍ଥଳୀ ବୋଲି ଓଡ଼ିଶା ପାଶ୍ଚାତ୍ୟ ଜଗତରେ ମଧ୍ୟ ସୁବିଦିତ ** । ଏହି ପବିତ୍ରତାର ଉତ୍ତରୋତ୍ତର ବୃଦ୍ଧିଲାଭ ନିମନ୍ତେ ଓଡ଼ିଶାରେ ପ୍ରଶାନ୍ତ, ଉଦାର ଓ କମନୀୟ ପ୍ରକୃତି ବହୁତ ସାହାଯ୍ୟ କରିଥିଲା । ତେଣୁ ବହୁ ସିଦ୍ଧତପା ଯୋଗୀ, ଋଷି ଓ ଧର୍ମବୀର ଭାରତର ନାନା ସ୍ଥାନରେ ଜନ୍ମଗ୍ରହଣ କରିଥିଲେ ସୁଦ୍ଧା ଆପଣା ଆପଣାର କର୍ମଭୂମି ନିମନ୍ତେ ଓଡ଼ିଶାକୁ ଚିରକାଳ ପ୍ରଶସ୍ତ ମନେ କରିଅଛନ୍ତି ଏବଂ କେହି କେହି ଏହାର ସୁବିମଳ, ଉଦାର ପ୍ରକୃତି ମଧ୍ୟରେ ଆପଣାର ପଶ୍ଚିମ ଜୀବନ ଶାନ୍ତିରେ ଅତିବାହିତ କରିଅଛନ୍ତି । ସୁତରାଂ ଭାରତର ସୁବିଶାଳ ବକ୍ଷରେ ଯେତେ ନବ ନବ ଧର୍ମର ଆବିର୍ଭାବ ହୋଇଅଛି, ଯେତେ ନବ ନବ ଦୀକ୍ଷା ଭାରତୀୟମାନଙ୍କୁ ଯୁଗେ ଯୁଗେ ଦୀକ୍ଷିତ କରିଅଛି, ସେ ପ୍ରତ୍ୟେକ ଧର୍ମ ଓ ଦୀକ୍ଷା ଉତ୍କଳଭୂମିରେ ଯଥା ସମୟରେ ଦେଖା ଦେଇଅଛି । ଧର୍ମ ବିଷୟରେ ଓଡ଼ିଶା ଭାରତବର୍ଷର ସଂକ୍ଷିପ୍ତ ସାର । ବୌଦ୍ଧ, ଜୈନ, ଶୈବ, ସୌର, ଶାକ୍ତ, ବୈଷ୍ଣବ, ଓ ଗାଣପତ୍ୟ ପ୍ରଭୃତି ଯେଉଁ ଧର୍ମମାନ ଭାରତବର୍ଷରେ ଉଦିତ ହୋଇଅଛି, ସେ ପ୍ରତ୍ୟେକେ ଯଥା ସମୟରେ ଏହି କ୍ଷୁଦ୍ର ଭୂମିଖଣ୍ଡରେ ଆବିର୍ଭୂତ ହୋଇ ଅଦ୍ୟାବଧି ନିଜ

---

* ଫେରିସ୍ତାଙ୍କର 'ଦାକ୍ଷିଣାତ୍ୟର ଇତିହାସ'ରୁ ଜଣାଯାଏ ଯେ, ଶିବାଜୀ ଦିଲ୍ଲୀରେ ଆଓରଙ୍ଗଜେବଙ୍କ ବନ୍ଦୀଶାଳାରୁ କୌଶଳକ୍ରମେ ମୁକ୍ତିଲାଭ କରି ସ୍ୱଦେଶକୁ ପଳାୟନ କଲାବେଳେ କଟକ ଆସିଥିଲେ ଏବଂ କଟକରେ ଘୋଡ଼ାଟିଏ ପାଇ ସ୍ୱଦେଶକୁ ଯାଇଥିଲେ । ସେ ଭୁବନେଶ୍ୱରରେ ପହଞ୍ଚି ଏହିପରି ଉକ୍ତି କରିଥିବାର ଶୁଣାଯାଏ ।

** Encyclopaedia Britannica, article on 'Orissa'. "The whole of Orissa is holy ground".

ନିଜର ଅବଶେଷ ସୁଦ୍ଧା ରଖି ଯାଇଅଛି । ପରିମାଣରେ କ୍ଷୁଦ୍ର କିନ୍ତୁ ଧର୍ମ ସାମ୍ରାଜ୍ୟରେ ଉତ୍କଳ ଯଥେଷ୍ଟ ମହୀୟାନ୍ । ଉପରୋକ୍ତ ସକଳ ଧର୍ମର ଆବିର୍ଭାବ ଓ ତିରୋଭାବରୁ ବୁଝାଯାଏ ଯେ, ଓଡ଼ିଶାର ରାଜା ଓ ପ୍ରଜା ନବ ନବ ଧର୍ମ ଆଲିଙ୍ଗନ କରିବାରେ ଯେପରି ସଂସ୍କାର-ପ୍ରବଣ, ତାହା ପୁଣି ଏକାବେଳକେ ପରିତ୍ୟାଗ କରିବା ବିରୁଦ୍ଧରେ ସେହିପରି ରକ୍ଷଣଶୀଳ । ଓଡ଼ିଆଙ୍କର ଏହି ସଂସ୍କାରପ୍ରୟାସ ଓ ରକ୍ଷଣଶୀଳତା ଏତେ ସୁନ୍ଦର ଭାବରେ ଅନ୍ୟତ୍ର ବଡ କ୍ୱଚିତ୍ ଦେଖାଯାଏ — ପାଶ୍ଚାତ୍ୟ ଜଗତରେ ଏହା ଏକାବେଳକେ ସ୍ୱପ୍ନାତୀତ ।

ଉପରୋକ୍ତ ଧର୍ମମାନଙ୍କ ମଧ୍ୟରେ ସୌର ଧର୍ମ ଏକ ସମୟରେ ଓଡ଼ିଶାରେ ପ୍ରଚଳିତ ଥିଲା । ସୂର୍ଯ୍ୟ ଉପାସନା ଅତି ଆଦିମକାଳରୁ ଆର୍ଯ୍ୟମାନଙ୍କ ମଧ୍ୟରେ ପ୍ରଚଳିତ ଅଛି । ଏମନ୍ତ କି ଅନ୍ୟ କୌଣସି ବିଶିଷ୍ଟ ଦେବଙ୍କର ଉପାସନା ଆରମ୍ଭ ହେବା ପୂର୍ବରୁ ସୂର୍ଯ୍ୟ ଏକମାତ୍ର ପରମେଶ୍ୱର ରୂପେ ପୂଜା ପାଉଥିଲେ । ତାହା ହେବାର କଥା । କାରଣ ଏହି ସଂସାରର ବିଭିନ୍ନତା ଓ ପରିବର୍ତ୍ତନ ମଧ୍ୟରେ ଆବଦ୍ଧ ରହି ଚିରକାଳ ସନ୍ତୁଷ୍ଟ ରହିବା ମନୁଷ୍ୟ ପ୍ରକୃତିର ବହିର୍ଭୂତ । ଜ୍ଞାନର ଉଦୟ ସଙ୍ଗେ ସଙ୍ଗେ ଏହି ସମସ୍ତ ପରିବର୍ତ୍ତନ ମଧ୍ୟରେ ସେ ଏକ ଅପରିବର୍ତ୍ତନୀୟ ଶକ୍ତିର ଅନ୍ୱେଷଣ କରେ । ଏହି ପ୍ରବୃତ୍ତି ମାନବ ଇତିହାସର ଆଦିମ ଯୁଗରୁ ଜ୍ଞାନ ଓ ସଭ୍ୟତାର ପରିମାଣ ଅନୁସାରେ ଅଳ୍ପାଧିକ ପରିମାଣରେ ପ୍ରତ୍ୟେକ ମାନବ-ହୃଦୟରେ ଜନ୍ମେ । ସଭ୍ୟତାର ଶୈଶବରେ ମନୁଷ୍ୟ ସୂର୍ଯ୍ୟଙ୍କୁ ସାରା ବିଶ୍ୱର ସୃଷ୍ଟି ଓ ବିନାଶର କାରଣ ବୋଲି ଅନୁମାନ କରିବା ସ୍ୱାଭାବିକ । ଚକ୍ଷୁ ମେଲାଇଲା କ୍ଷଣି ସେ ଦେଖୁଛି ସୂର୍ଯ୍ୟ, ଘରୁ ବାହାରିଲା କ୍ଷଣି ତାହାର ଦେହ ଖରା ତେଜ ଅନୁଭବ କରୁଅଛି । ପୁଣି ଖରା ନ ପଡିଲେ ବୃକ୍ଷପତ୍ରର ଜୀବନ ଯେପରି, ଆପଣାର ଜୀବନ ମଧ୍ୟ ସେହିପରି ମ୍ରିୟମାଣ ହୋଇଯାଏ । ସୂର୍ଯ୍ୟର ଦୂରତା ଏବଂ ଆଲୋକ ଓ ଉତ୍ତାପର ପରିମାଣ କ୍ଷୁଦ୍ର ମନୁଷ୍ୟ ଚିନ୍ତାର ଅଗମ୍ୟ । ଏହିପରି ଅବସ୍ଥାରେ ଇତିହାସର ପ୍ରାଥମିକ ଯୁଗରେ ସୂର୍ଯ୍ୟଦେବଙ୍କୁ ସାରା ସୃଷ୍ଟିର ଏକମାତ୍ର ନିୟନ୍ତା ମନେ କରିବା ମନୁଷ୍ୟ ପକ୍ଷରେ ଅତ୍ୟନ୍ତ ସହଜ । ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରୁ ଆରମ୍ଭ କରି ଗ୍ରୀସର ଦାର୍ଶନିକମାନେ ସୃଷ୍ଟିର କାରଣ ଅନୁସନ୍ଧାନ କରୁ କରୁ ଶେଷରେ ଯଥାକ୍ରମେ ଜଳ, ବାୟୁ, ଉତ୍ତାପ, ଆଲୋକ ଇତ୍ୟାଦି ଜଗତର ମୂଳ କାରଣ ବୋଲି ନାନା ଯୁକ୍ତି ତର୍କ ସାହାଯ୍ୟରେ ସ୍ଥିର କରିଥିଲେ । ଏମନ୍ତ କି ଖ୍ରୀଷ୍ଟ ୨୦୦ବର୍ଷ ପୂର୍ବେ ଷ୍ଟୋଇକ୍‌ମାନେ ମଧ୍ୟ ଆଲୋକକୁ ଭଗବାନଙ୍କର ସତ୍ତା ସ୍ୱରୂପ ମନେ କରୁଥିଲେ । ଏପରି ସ୍ଥଳେ ଆର୍ଯ୍ୟମାନେ ଖ୍ରୀଷ୍ଟପୂର୍ବ ୪୦୦୦ ବା ତତୋଧିକ ବର୍ଷ ପୂର୍ବେ ଜଳ, ବାୟୁ, ଆଲୋକ ଓ ଉତ୍ତାପର ମୂଳ କାରଣ ସୂର୍ଯ୍ୟଦେବଙ୍କୁ ସର୍ବଶକ୍ତିମାନ୍ ପରମେଶ୍ୱର ସ୍ଥିର କରିବା ବରଂ ଅଧିକ ଗୌରବର କଥା । ସୁତରାଂ ପ୍ରାଚୀନ ଆର୍ଯ୍ୟମାନେ ସୂର୍ଯ୍ୟଦେବଙ୍କୁ 'ପ୍ରଜାପତି' ବା ଜୀବ ଜଗତର ପରମ ପ୍ରଭୁ ଆଖ୍ୟା ଦେଇଥିଲେ ।

କାଳକ୍ରମେ ଜ୍ଞାନର ବିକାଶ ସଙ୍ଗେ ସଙ୍ଗେ ସୂର୍ଯ୍ୟ ଆଉ ଏକ ଅଦ୍ୱିତୀୟ ପରମେଶ୍ୱର ହୋଇ ରହିଲେ ନାହିଁ; ବରଂ ଅନ୍ୟାନ୍ୟ ଦେବତାମାନଙ୍କ ମଧ୍ୟରେ ଅନ୍ୟତମ ଉପାସ୍ୟ ଦେବତା ରୂପେ ପରିଗଣିତ ହେଲେ । ସୂର୍ଯ୍ୟଙ୍କ ସହିତ ସମଶକ୍ତିଶାଳୀ ମନେ କରି ଅଗ୍ନି ଓ ବାୟୁକୁ ଉପାସନା କରାଗଲା । ଭାରତୀୟ ଆର୍ଯ୍ୟମାନଙ୍କ ମତରେ ଏହି ତିନି ଶକ୍ତି ଆଦ୍ୟ ଦେବ ଥିଲେ । ପରେ ସେମାନଙ୍କୁ ଯେତେ ଭିନ୍ନ ଭିନ୍ନ ନାମ ଦିଆ ଯାଇଥିଲା ଅଥବା ସେମାନଙ୍କର ଯେତେ ଯେତେ ଭିନ୍ନ ଭିନ୍ନ ଗୁଣ ବା ଅବସ୍ଥାର ଉଦ୍‌ବୋଧନ କରାଯାଇଥିଲା, ସେତେ ନୂତନ ନୂତନ ଦେବତା କଳ୍ପିତ ହେଲେ । ଅତଏବ ଏହି ତିନି ଆଦ୍ୟ ଦେବଙ୍କର ବିଭିନ୍ନ ନାମ, ଗୁଣ ବା ଅବସ୍ଥାକୁ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ଦେବତା ସ୍ୱରୂପ ପୂଜା କରାଗଲା । ଏହିରୂପେ ଗ୍ରୀସରେ ଯେପରି ଭାରତରେ ମଧ୍ୟ ସେହିପରି ଦେବତାମାନଙ୍କର ସଂଖ୍ୟା ଦିନକୁ ଦିନ ବଢ଼ିଯାଇ ପୌରାଣିକ ଯୁଗରେ ତେତ୍ରିଶ କୋଟି ହୋଇଥିଲା । ଏକ ସୂର୍ଯ୍ୟ ପରିବର୍ତ୍ତରେ ଋକ୍‌ବେଦରେ ମିତ୍ର, ପୂଷା ପ୍ରଭୃତି ସୂର୍ଯ୍ୟଙ୍କର ବିଭିନ୍ନ ନାମକୁ ସ୍ୱତନ୍ତ୍ର ଦେବତା ସ୍ୱରୂପ କଳ୍ପନା କରା ଯାଇଅଛି ଏବଂ ଦ୍ୱାଦଶାଦିତ୍ୟଙ୍କ ମଧ୍ୟରୁ ଏକାଦଶଙ୍କ ନିମନ୍ତେ ସ୍ୱତନ୍ତ୍ର ମନ୍ତ୍ରମାନ ଲେଖାଅଛି । ପ୍ରତ୍ୟେକ ଦେଶର ପୌରାଣିକ କଳ୍ପନାରେ ଦେଖାଯାଏ ଯେ, କୌଣସି କୌଣସି ଦେବତାଙ୍କଠାରେ ନୂତନ ଗୁଣର ଆରୋପ କରାଗଲେ ପୁରାତନ ଗୁଣ ଆଉ ଭକ୍ତମାନଙ୍କ ମନରେ ନ ଥାଏ । ସୁତରାଂ ଏକ ଯୁଗରେ ପୂଷାଙ୍କର ବିଶେଷ ଉପାସନା ଚଳୁଥିଲେ ସୁଦ୍ଧା ଅପର ଯୁଗରେ ମିତ୍ର ପ୍ରଧାନ ଉପାସ୍ୟ ହେବା ସ୍ୱାଭାବିକ । ପୁଣି ଉପରୋକ୍ତ ତଥାକଥିତ ସ୍ୱତନ୍ତ୍ର ଦେବତାମାନଙ୍କ ମଧ୍ୟରୁ ଯେଉଁମାନଙ୍କର ଉପାସନା ବିଶେଷ ଭାବରେ ଚଳିଲା, ସେମାନେ କ୍ରମେ ପ୍ରାଧାନ୍ୟ ଲାଭ କଲେ ଏବଂ ଅପର ଦେବତାମାନେ ଉପେକ୍ଷିତ ହେଲେ । ଏହିରୂପେ ବୈଦିକ ତ୍ରିମୂର୍ତ୍ତି ଅଗ୍ନି, ସୂର୍ଯ୍ୟ ଓ ବାୟୁ ବ୍ରାହ୍ମଣ ଓ ପୌରାଣିକ ଯୁଗରେ ଯଥାକ୍ରମେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ରୂପରେ ପରିଣତ ହେଲେ । ଅଗ୍ନିଙ୍କଠାରେ ସୃଷ୍ଟି, ସୂର୍ଯ୍ୟଙ୍କଠାରେ ପାଳନ ଗୁଣ ନୂତନ ଆରୋପ କରାଗଲା । ବାୟୁ ପ୍ରଥମତଃ ଇନ୍ଦ୍ର ଏବଂ ପରେ ରୁଦ୍ର ରୂପରେ ପରିଣତ ହେଲେ । ପରିଶେଷରେ ତାହାଙ୍କ ରୁଦ୍ର ରୂପରେ ଭୀତ ହୋଇ ଲୋକ ତାହାଙ୍କଠାରେ ପ୍ରଳୟ ଗୁଣ ଆରୋପ କଲେ ଏବଂ ସେ ଶିବ ନାମରେ ପୂଜା ପାଇଲେ * ।

ଅତଏବ ଉପରୋକ୍ତ ବିଷୟରୁ ଜଣାଯାଏ ଯେ, ବୈଦିକ ଯୁଗରେ ବର୍ତ୍ତମାନ ପ୍ରଧାନ ଆରାଧ୍ୟ ବିଷ୍ଣୁଙ୍କର ସ୍ୱତନ୍ତ୍ର ଅସ୍ତିତ୍ୱ ନ ଥିଲା; ବରଂ ସେ ସୂର୍ଯ୍ୟଙ୍କର ନାମାନ୍ତର ମାତ୍ର ଥିଲେ । ଋକ୍‌ବେଦରେ ବିଷ୍ଣୁଙ୍କ ସମ୍ବନ୍ଧରେ ଲେଖାଅଛି, ସେ 'ଶୀଘ୍ର ଭ୍ରମଣ କରନ୍ତି', 'ସେ ସପ୍ତଲୋକ ପ୍ରଦକ୍ଷିଣ କରନ୍ତି', 'ତାହାଙ୍କର ପାଦତ୍ରୟ ମଧ୍ୟରେ ସାରା ବିଶ୍ୱ ନିହିତ ଅଛି' ଇତ୍ୟାଦି । ଏହି ରୂପ ବିଶେଷଣର ବହୁତ ଉଲ୍ଲେଖ ଥିବାରୁ ଭାଷ୍ୟକାରମାନେ ବିଷ୍ଣୁଙ୍କୁ ସୂର୍ଯ୍ୟଙ୍କର ନାମାନ୍ତର ସ୍ୱରୂପ ଧରିଅଛନ୍ତି । 'ଶତପଥ ବ୍ରାହ୍ମଣ'ରେ ବିଷ୍ଣୁଙ୍କୁ ପରିଷ୍କାର 'ଆଦିତ୍ୟ' ବୋଲି କୁହା

* Antiquities of Orissa - Vol. I. P. 151.

ଯାଇଅଛି – ''ଯେ ଏହି ବିଷ୍ଣୁ, ସେ ମଧ୍ୟ ଯଜ୍ଞ ଏବଂ ଯେ ଯଜ୍ଞ, ସେ ମଧ୍ୟ ଆଦିତ୍ୟ'' । ବିଷ୍ଣୁଙ୍କୁ ଋକ୍‌ବେଦରେ ମଧ୍ୟ ସମୟର ନିୟନ୍ତା ସ୍ୱରୂପ କଳ୍ପନା କରାଯାଇଅଛି – ''ଚକ୍ରନେମୀ କ୍ରମେ ସେ ୩୬୦ ନାମ (ଦିନ) ସହିତ ସମୟର ପରିବର୍ତ୍ତନ କରାଉଅଛନ୍ତି'' । ଏହିରୂପ ଉକ୍ତିମାନଙ୍କରୁ ପ୍ରକୃତରେ ସୂର୍ଯ୍ୟଙ୍କର ଦୈନିକ ଓ ବାର୍ଷିକ ଗତି ବୁଝା ଯାଉଅଛି । ବିଷ୍ଣୁ ଶବ୍ଦର ଅର୍ଥରୁ ମଧ୍ୟ ସୂର୍ଯ୍ୟ ବୁଝାଯାଏ । ବିଷ୍ ଧାତୁର ଅର୍ଥ ବ୍ୟାପୀ ରହିବା ଅର୍ଥାତ୍ ସୂର୍ଯ୍ୟ ଆପଣାର ତେଜ ବା ଆଲୋକଦ୍ୱାରା ସାରା ସୃଷ୍ଟି ବ୍ୟାପୀ ରହିଥାଏ । ଆକାଶର ଅନ୍ୟନାମ 'ବିଷ୍ଣୁପଦ' । ବିଷ୍ଣୁ ପୁଣି ଦ୍ୱାଦଶାଦିତ୍ୟଙ୍କ ମଧ୍ୟରୁ ଅନ୍ୟତମ ଅର୍ଥାତ୍ ସୂର୍ଯ୍ୟଙ୍କର ଦ୍ୱାଦଶ ଅବସ୍ଥା ମଧ୍ୟରୁ ଗୋଟିକର ନାମ ବିଷ୍ଣୁ * ।

କାଳକ୍ରମେ ପୌରାଣିକ ଯୁଗରେ ସୂର୍ଯ୍ୟ ଓ ବିଷ୍ଣୁଙ୍କ ମଧ୍ୟରେ ପାର୍ଥକ୍ୟ ବଢ଼ିବାକୁ ଲାଗିଲା; ମାତ୍ର ବିଷ୍ଣୁ ଆଉ ସୂର୍ଯ୍ୟଙ୍କର କେବଳ ନାମାନ୍ତର ହୋଇ ରହିଲେ ନାହିଁ; ବରଂ ଗୋଟିଏ ସ୍ୱତନ୍ତ୍ର ଦେବତା ହୋଇଗଲେ ଏବଂ ବୈଦିକ ତ୍ରିମୂର୍ତ୍ତି ଅଗ୍ନି, ସୂର୍ଯ୍ୟ ଓ ବାୟୁ ପରିବର୍ତ୍ତରେ ଯଥାକ୍ରମେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ନାମରେ ଖ୍ୟାତ ହେଲେ । ପୌରାଣିକ ଯୁଗରେ ଶୈବ, ବୈଷ୍ଣବ, ସୌର, ଶାକ୍ତ ଓ ଗାଣପତ୍ୟ ନାମରେ ଯେଉଁ ପାଞ୍ଚ ଭାଗରେ ହିନ୍ଦୁ ଧର୍ମ ବିଭକ୍ତ ହେଲା, ସୌରମାନେ ସେମାନଙ୍କ ମଧ୍ୟରେ ଗୋଟିଏ ସଂପ୍ରଦାୟ ମାତ୍ର ହୋଇ ରହିଲେ । ବୈଦିକ ଯୁଗରେ ବୈଷ୍ଣବ ନାମରେ କୌଣସି ବିଶିଷ୍ଟ ସମ୍ପ୍ରଦାୟ ନ ଥିଲେ ସୁଦ୍ଧା ପରବର୍ତ୍ତୀ କାଳରେ ନାନା ନୂତନ ଭାବ ଦ୍ୱାରା ବର୍ଦ୍ଧିଷ୍ଣୁ ହୋଇ ବୈଷ୍ଣବ ମତ ସୌରମାନଙ୍କଠାରୁ ଏକାବେଳକେ ପୃଥକ୍ ହୋଇଗଲା । ପରବର୍ତ୍ତୀ ପୁରାଣମାନଙ୍କରେ ଶୈବ ଓ ବୈଷ୍ଣବମାନଙ୍କର ଯେତେ ଉଲ୍ଲେଖ ଦେଖାଯାଏ, ସୌରମାନଙ୍କର ସେତେ ପ୍ରାୟ ନାହିଁ । କ୍ରମେ ସୌର ସମ୍ପ୍ରଦାୟ ଭାରତବର୍ଷରୁ ଲୁପ୍ତ ପ୍ରାୟ ହୋଇଅଛି ଏବଂ କେବଳ ଉତ୍ତର-ପଶ୍ଚିମ ପ୍ରଦେଶରେ ଅତି ଅଳ୍ପ ମାତ୍ର ସୌର ବର୍ତ୍ତମାନ ଦେଖାଯାନ୍ତି । ସାଧାରଣ କାର୍ଯ୍ୟକଳାପରେ ସେମାନେ ଅନ୍ୟାନ୍ୟ ହିନ୍ଦୁମାନଙ୍କ ସଙ୍ଗେ ପ୍ରାୟ ସମାନ । ପ୍ରଭେଦ କେବଳ ସେମାନଙ୍କ ମସ୍ତକରେ ରକ୍ତ ଚନ୍ଦନର ତିଳକ ଓ ବେକରେ ସ୍ଫଟିକମାଳା ଥାଏ । ପ୍ରତ୍ୟେକ ରବିବାର ଓ ସଂକ୍ରାନ୍ତି ଦିନ ସେମାନେ ଏକବାର ମାତ୍ର ଖାଦ୍ୟ ଅଲଣା ଖାଆନ୍ତି । ଉତ୍ତର-ପଶ୍ଚିମ ପ୍ରଦେଶ ବ୍ୟତୀତ ଗୋୟାଲିୟର ପ୍ରଭୃତି ସ୍ଥାନରେ ସୂର୍ଯ୍ୟଦେବଙ୍କର ମନ୍ଦିର ଅଛି ଏବଂ ସମସ୍ତଙ୍କ ମଧ୍ୟରେ କାଶ୍ମୀରର ମାର୍ତ୍ତଣ୍ଡଙ୍କ ମନ୍ଦିର ବୃହତ୍ତମ । ଏହି ପ୍ରତ୍ୟେକ ସ୍ଥଳରେ କୋଣାର୍କ ପରି ସୂର୍ଯ୍ୟଦେବଙ୍କୁ ରୋଗଆରୋଗ୍ୟକାରୀ ବୋଲି ପୂଜା କରାଯାଏ । ଏହି କେତେକ ସ୍ଥଳ ବ୍ୟତୀତ ଭାରତର ଅନ୍ୟ କୌଣସି ସ୍ଥାନରେ ସୂର୍ଯ୍ୟଦେବଙ୍କର ଉପାସନା ବର୍ତ୍ତମାନ ନାହିଁ ।

ଓଡ଼ିଶାରେ ସୌର ଉପାସନା କେବେ ପ୍ରବେଶ କଲା, ତାହା ନିଶ୍ଚୟ କରି କୁହାଯାଇ ନ ପାରେ । ତେବେ ଏହି ପ୍ରଦେଶରେ ଆର୍ଯ୍ୟବସତି ସଙ୍ଗେ ଏହା ପ୍ରବେଶ କରିଥିବାର ସନ୍ଦେହ

* ୧ମ ଅଧ୍ୟାୟ

ନାହିଁ । ସୌରମାନଙ୍କର ଗୋଟିଏ ସାମ୍ପ୍ରଦାୟିକ ସ୍ୱାତନ୍ତ୍ର୍ୟ ଥିଲେ ସୁଦ୍ଧା ପ୍ରତ୍ୟେକ ହିନ୍ଦୁ ସମ୍ପ୍ରଦାୟ ନିର୍ବିଶେଷରେ ସୌର ଥିଲେ ଏବଂ ସୂର୍ଯ୍ୟ-ଉପାସନା ପ୍ରତ୍ୟେକର ଆହ୍ନିକ କାର୍ଯ୍ୟ ଥିଲା । ଅଦ୍ୟାପି ସ୍ନାନାଦି ନିତ୍ୟକର୍ମମାନଙ୍କରେ ଅନ୍ୟାନ୍ୟ ଦେବତାମାନଙ୍କ ମଧ୍ୟରେ ସୂର୍ଯ୍ୟଦେବଙ୍କ ଉପାସନା ବିଶେଷ ଭାବରେ କରାଯାଏ । ସ୍ଥୂଳତଃ ବର୍ତ୍ତମାନ ବ୍ରାହ୍ମଣ ପ୍ରକୃତରେ ଶୈବ ଥିଲେ ମଧ୍ୟ ଯେତେ ପରିମାଣରେ ସୌର ଥିବାର ଦେଖାଯାଏ, ସେତେ ଶୈବ ନୁହେଁ । ବ୍ରହ୍ମା ସୃଷ୍ଟି କରନ୍ତି, ବିଷ୍ଣୁ ପାଳନ କରନ୍ତି ଓ ଶଙ୍କର ସଂହାର କରନ୍ତି; କିନ୍ତୁ ସୂର୍ଯ୍ୟଦେବ ଏକା ଏହି ତିନି କାର୍ଯ୍ୟ ପ୍ରତ୍ୟହ କରୁଅଛନ୍ତି ଏବଂ ସେହି ହିସାବରେ ସୂର୍ଯ୍ୟଦେବଙ୍କୁ ବର୍ତ୍ତମାନ ଆହ୍ନିକ କୃତ୍ୟାଦିରେ ସମସ୍ତ ଦେବତାମାନଙ୍କ ମଧ୍ୟରେ ସର୍ବୋଚ୍ଚ ଆସନ ଦିଆ ଯାଉଅଛି * । ସୁତରାଂ ହିନ୍ଦୁ ମାତ୍ରେ ବୈଷ୍ଣବ ହୁଅନ୍ତୁ ବା ଶୈବ ହୁଅନ୍ତୁ – ଉଦୟଠାରୁ ଅସ୍ତ ପର୍ଯ୍ୟନ୍ତ ସୂର୍ଯ୍ୟଦେବଙ୍କୁ ଏକମାତ୍ର ଦେବତା ଜ୍ଞାନ କରି ପୂଜା କରି ଆସୁଅଛନ୍ତି । ଭାରତର ଯେଉଁ ସ୍ଥାନମାନଙ୍କରେ ସୂର୍ଯ୍ୟମନ୍ଦିର ପୂର୍ବେ ଥିଲା ବା ବର୍ତ୍ତମାନ ଅଛି, ତାହା କେବଳ ସୌର ସମ୍ପ୍ରଦାୟର କେନ୍ଦ୍ର ଥିବାର ସମ୍ପୂର୍ଣ୍ଣରୂପେ କୁହାଯାଇ ନ ପାରେ । ଷ୍ଟର୍ଲିଙ୍ଗ ପ୍ରଭୃତି ଲେଖକମାନେ ଯାହା କହନ୍ତି ଯେ, କୋଣାର୍କ ମନ୍ଦିର ନିର୍ମାତା ଲାଙ୍ଗୁଳା ନରସିଂହ ଦେବଙ୍କଠାରୁ ଆରମ୍ଭ କରି ପରବର୍ତ୍ତୀ କେତେକ ଗଙ୍ଗବଂଶୀୟ ରାଜାମାନେ କେବଳ ସୌର ଥିଲେ, ତାହା ନିତାନ୍ତ ସତ୍ୟ ବୋଲି ଧରାଯାଇ ନ ପାରେ । ପରନ୍ତୁ ଗଙ୍ଗବଂଶୀୟ ରାଜାମାନେ ପରମ ବୈଷ୍ଣବ ଥାଇ ସୁଦ୍ଧା ଆଧୁନିକ ହିନ୍ଦୁମାନଙ୍କ ପରି ସୂର୍ଯ୍ୟଦେବଙ୍କର ଯେପରି ଏକାନ୍ତ ଭକ୍ତ ଥିଲେ, କେଶରୀ ରାଜାମାନେ ଶୈବ ଥାଇ ମଧ୍ୟ ସେହିପରି କୋଣାର୍କରେ ସୂର୍ଯ୍ୟମନ୍ଦିର ନିର୍ମାଣ ଓ ସୂର୍ଯ୍ୟ-ଉପାସନା କରୁଥିଲେ (୯ମ ଓ ୧୦ମ ଅଧ୍ୟାୟ) । ଏପରି ସ୍ଥଳେ ସୂର୍ଯ୍ୟ ଉପାସନାକୁ ବୌଦ୍ଧଧର୍ମର ପରବର୍ତ୍ତୀ ଫଳ ମନେକରି କୋଣାର୍କ ନିର୍ମାଣକାରୀ ନରସିଂହ ଦେବଙ୍କୁ ବିଶିଷ୍ଟଭାବରେ ସୌର ଜ୍ଞାନ କରିବା ହଣ୍ଟରଙ୍କର କେବଳ ଭ୍ରମ ମାତ୍ର । ଅତଏବ ଭାରତରେ କୌଣସି ସମୟରେ ସୌର ନାମରେ ଗୋଟିଏ ବିଶିଷ୍ଟ ସମ୍ପ୍ରଦାୟ ଥିଲେ ସୁଦ୍ଧା ପ୍ରତ୍ୟେକ ହିନ୍ଦୁ ସମ ପରିମାଣରେ ସୂର୍ଯ୍ୟ-ଉପାସନା କରୁଥିଲେ ଏବଂ ଆର୍ଯ୍ୟବସତି ସଙ୍ଗେ ସଙ୍ଗେ ଓଡ଼ିଶାରେ ସୂର୍ଯ୍ୟ-ଉପାସନା ପ୍ରବେଶ କରିଥିଲା । କୋଣାର୍କ ଓଡ଼ିଶାରେ ସୂର୍ଯ୍ୟ ଉପାସନାର କେନ୍ଦ୍ର ଥିଲା । ସମୁଦାୟ ହିନ୍ଦୁ ରାଜ୍ୟରେ ସୂର୍ଯ୍ୟକ୍ଷେତ୍ର ଏତେ ବିରଳ ଥିବା ସ୍ଥଳେ କୋଣାର୍କ ମୈତ୍ରେୟ ବନରେ ଦେବାଧିଦେବ ସୂର୍ଯ୍ୟଦେବଙ୍କର ପ୍ରତିଷ୍ଠା ହୋଇଥିବା ଅବଶ୍ୟ ଓଡ଼ିଶା ପକ୍ଷରେ ବିଶେଷ ଗୌରବର ବିଷୟ ।

---

* ନମଃ ସବିତ୍ରେ ଜଗଦେକ ଚକ୍ଷୁଷେ ଜଗଦ୍-ପ୍ରସୂତି-ସ୍ଥିତି-ନାଶ-ହେତବେ;
ତ୍ରୈମୟାୟ ତ୍ରିଗୁଣାତ୍ମଧାରିଣେ ବିରଞ୍ଚି-ନାରାୟଣ-ଶଙ୍କରାତ୍ମନେ ନମଃ ଇତ୍ୟାଦି ।

# କୋଣାର୍କ-ମାହାତ୍ମ୍ୟ

'ପୁରୁଷୋତ୍ତମ-ମାହାତ୍ମ୍ୟ'ରେ ବର୍ଣ୍ଣିତ ଅଛି, ବିଷ୍ଣୁ ଗୟାସୁରକୁ ବଧକରି ଆପଣାର ବିଜୟଚିହ୍ନ ସ୍ୱରୂପ ପୁରୁଷୋତ୍ତମରେ ଶଙ୍ଖ, ଭୁବନେଶ୍ୱରରେ ଚକ୍ର, ଯାଜପୁରରେ ଗଦା ଏବଂ କୋଣାର୍କରେ ପଦ୍ମ ରଖିଥିଲେ । ଏହି ହେତୁରୁ କପିଳ ସଂହିତା ଅନୁସାରେ ଓଡ଼ିଶାର ସମସ୍ତ ତୀର୍ଥମାନଙ୍କ ମଧ୍ୟରେ ଏହି ଚାରୋଟି ସର୍ବପ୍ରଧାନ; ଯଥା — ଶଙ୍ଖକ୍ଷେତ୍ର ବା ପୁରୁଷୋତ୍ତମ, ଚକ୍ରକ୍ଷେତ୍ର ବା ଭୁବନେଶ୍ୱର, ଗଦାକ୍ଷେତ୍ର ବା ଯାଜପୁର ଏବଂ ପଦ୍ମକ୍ଷେତ୍ର ବା କୋଣାର୍କ । ଏହା ବ୍ୟତୀତ ଶମ୍ଭୁକ୍ଷେତ୍ର ବା କପିଳାସ ଗିରି ଏବଂ ବିନାୟକ କ୍ଷେତ୍ର ବା ଦର୍ପଣ ରାଜ୍ୟର ମହାବିନାୟକ ପର୍ବତ ମଧ୍ୟ ଓଡ଼ିଶାର ତୀର୍ଥମାନଙ୍କ ମଧ୍ୟରେ ପରିଗଣିତ । ଓଡ଼ିଶା ଛଡା ଦେଶାନ୍ତର ଯାତ୍ରୀ ବଡ କ୍ୱଚିତ୍ ଶେଷୋକ୍ତ ଦୁଇ କ୍ଷେତ୍ରକୁ ଯାଆନ୍ତି । କପିଳସଂହିତା ବ୍ୟତୀତ ଅନ୍ୟ ପୁରାଣମାନଙ୍କରେ ମଧ୍ୟ ସେମାନଙ୍କର ଉଲ୍ଲେଖ ବଡ କ୍ୱଚିତ୍ ଦେଖାଯାଏ (୧) । ପୂର୍ବୋକ୍ତ ଚାରୋଟି କ୍ଷେତ୍ର ସମସ୍ତ ହିନ୍ଦୁ ଯାତ୍ରୀମାନଙ୍କର ପ୍ରଧାନ ସମାଗମସ୍ଥଳ ଥିଲା । କାଳକ୍ରମେ କୋଣାର୍କର ବିରାଟ ମନ୍ଦିରର ପତନ ଦିନଠାରୁ ଏହା ପରିତ୍ୟକ୍ତ କହିଲେ ଚଳେ । କୋଣାର୍କର ଆଉ ସେ ଆଡମ୍ବର, ସେ ଗାମ୍ଭୀର୍ଯ୍ୟ ନାହିଁ କି ଚନ୍ଦ୍ରଭାଗାର ପୁଣ୍ୟନୀର ଆଉ ଅବାଧରେ ଅନନ୍ତ ସମୁଦ୍ର ଆଡକୁ ବୋହି ଯାଉନାହିଁ । ସମସ୍ତ କେବଳ ଏକ ବିସ୍ତର ଶୁଷ୍କ ନୀରସ ମରୁଭୂମିରେ ପରିଣତ ହୋଇଅଛି ମାତ୍ର । ତଥାପି ସେ ଯୁଗରେ କୋଣାର୍କର ମାହାତ୍ମ୍ୟ ଏତେ ଅଧିକ ଥିଲା ଯେ, ଚନ୍ଦ୍ରଭାଗାର ଲୁପ୍ତପ୍ରାୟ କ୍ଷୀଣ ସତ୍ତା ମଧ୍ୟ ଅଦ୍ୟାପି ବହୁ ନରନାରୀଙ୍କ ହୃଦୟ ଆକର୍ଷଣ କରିବାରେ ଯଥେଷ୍ଟ ମହିମାଶାଳୀ ହୋଇଅଛି ।

କୋଣାର୍କ କ୍ଷେତ୍ରର ମାହାତ୍ମ୍ୟ ବହୁ ପୁରାଣରେ ନାନାଭାବରେ ବର୍ଣ୍ଣିତ ଅଛି । ବ୍ରହ୍ମପୁରାଣ ଏହାକୁ 'କୋଣାଦିତ୍ୟ' ବା 'ସୂର୍ଯ୍ୟକ୍ଷେତ୍ର' ବୋଲି କହନ୍ତି । ଉକ୍ତ ପୁରାଣରେ ଲେଖାଅଛି * :—

''ଭାରତବର୍ଷରେ ଦକ୍ଷିଣ ସମୁଦ୍ର ଉପକୂଳରେ ଓଡ୍ର (ଓଡ଼ିଶା) ନାମରେ ଗୋଟିଏ ପ୍ରସିଦ୍ଧ ଦେଶ ଅଛି । ଏହି ଦେଶରେ ଧର୍ମାତ୍ମାମାନେ ବାସ କରନ୍ତି । ଏହି ଦେଶର ବ୍ରାହ୍ମଣମାନେ ନାନା ବେଦ, ଶାସ୍ତ୍ର, ଇତିହାସ ଓ ପୁରାଣରେ ବହୁ ପାରଦର୍ଶୀ ଅଟନ୍ତି । ସେମାନେ ଯଜ୍ଞାଦି ଧର୍ମକାର୍ଯ୍ୟରେ ବିଶେଷ ରତ ଥାନ୍ତି । ଅନ୍ୟାନ୍ୟ ବ୍ରାହ୍ମଣେତର ଜାତିମାନେ ମଧ୍ୟ ଧର୍ମପରାୟଣ ଏବଂ ଆପଣା ଆପଣା ଧର୍ମ କର୍ମରେ ମନଯୋଗୀ । ସେହି ଦେଶରେ କୋଣାଦିତ୍ୟ ନାମରେ ସୂର୍ଯ୍ୟଦେବ ବିରାଜିତ । ତାହାଙ୍କର ଦର୍ଶନ ପାଇଲେ ଭକ୍ତ ସର୍ବ ପାପରୁ

(୧) କପିଳସଂହିତାକୁ ଓଡ଼ିଶାର ଗ୍ରନ୍ଥ ବୋଲି ମନେ କରିବାର ଏହା ଅନ୍ୟତମ କାରଣ ।

* ଶ୍ରୀ ବିଷନ୍ ସ୍ୱରୂପଙ୍କ "Konarka' P. P. 40-41.

ମୁକ୍ତିଲାଭ କରେ । ସହସ୍ରାଂଶୁ ସୂର୍ଯ୍ୟଦେବଙ୍କର ଏହି ଭକ୍ତି-ମୁକ୍ତି-ଫଳପ୍ରଦ ପବିତ୍ର କ୍ଷେତ୍ର ସାତ ଯୋଜନବ୍ୟାପୀ (ଅର୍ଥାତ୍ ପ୍ରାୟ ୬୩ ମାଇଲ ପରିଧି ବିଶିଷ୍ଟ) । ଏହା ନାନାପ୍ରକାର ଫୁଲ ଓ ଫଳ ବୃକ୍ଷଦ୍ୱାରା ପରିପୂର୍ଣ୍ଣ । ମହୋଦଧି ତୀରବର୍ତ୍ତୀ ସୁମନୋହର ସର୍ବତ୍ର ବାଲୁକାକୀର୍ଣ୍ଣ ସର୍ବଗୁଣାନ୍ୱିତ ଦେଶରେ ଚମ୍ପକ, ଅଶୋକ ବକୁଳ, କରବୀର, ପାଟଳ, ପୁନ୍ନାଗ, କର୍ଣ୍ଣିକାର, ନାଗକେଶର ପ୍ରଭୃତି ନାନାପ୍ରକାର ସୁନ୍ଦର ବୃକ୍ଷ ବର୍ତ୍ତମାନ । ଧର୍ମାତ୍ମାମାନେ ମାସର ଶୁକ୍ଳ ସପ୍ତମୀଦିନ ସେହି ସ୍ଥାନର ସମୁଦ୍ରରେ ସ୍ନାନ କରି ପିତୃଲୋକଙ୍କୁ ତର୍ପଣ ଏବଂ ସୂର୍ଯ୍ୟଦେବଙ୍କୁ ସଭକ୍ତିରେ ଉପାସନା କରନ୍ତି । ଯେଉଁମାନେ ସୂର୍ଯ୍ୟଦେବଙ୍କୁ ଅର୍ଘ୍ୟ ଅର୍ପଣ କରନ୍ତି, ସେମାନେ ମୁକ୍ତି ପାଆନ୍ତି । ଯେଉଁମାନେ ଲୋକତ୍ରୟ ପ୍ରକାଶକଙ୍କର ନାମ ଗୁଣନ୍ତି ସେମାନେ ଚିର ଆନନ୍ଦ ଭୋଗ କରନ୍ତି । ସମୁଦ୍ର ସ୍ନାନ ପରେ ସୂର୍ଯ୍ୟଙ୍କୁ ଏହିରୂପେ ପୂଜା କଲେ ରୋଗୀମାନେ ରୋଗମୁକ୍ତ ହୁଅନ୍ତି; ଯେଉଁମାନେ ଧନ ଇଚ୍ଛା କରନ୍ତି, ସେମାନେ ଅତୁଳ ସମ୍ପତ୍ତି ପାଆନ୍ତି ଏବଂ ଯେଉଁମାନେ ପୁତ୍ର ଇଚ୍ଛା କରନ୍ତି, ସେମାନେ ପୁତ୍ରବାନ୍ ହୁଅନ୍ତି । ସୂର୍ଯ୍ୟଗଙ୍ଗାରେ ସ୍ନାନ କଲେ ଏବଂ ସେହି ଜଳ କୁଶ ଦ୍ୱାରା ମସ୍ତକରେ ସେଚନ କଲେ ମନୁଷ୍ୟ ପାପମୁକ୍ତ ହୋଇ ସ୍ୱର୍ଗ ପାଏ । ସୂର୍ଯ୍ୟଙ୍କୁ ଏକ ଅଞ୍ଜଳି ପୁଷ୍ପ ଅର୍ପଣ କଲେ, ମନୁଷ୍ୟ ସୂର୍ଯ୍ୟଲୋକ ପାଏ । କୋଣାର୍କଙ୍କୁ ବେଦମନ୍ତ୍ରରେ ପୂଜା କଲେ ଏବଂ ଚନ୍ଦନ, ପୁଷ୍ପ, ଧୂପ, ଦୀପ ଓ ନୈବେଦ୍ୟ ପ୍ରଭୃତି ଅର୍ପଣ କଲେ, ଭକ୍ତ ଦଶ ଅଶ୍ୱମେଧ ଯଜ୍ଞର ଫଳ ପାଏ ଏବଂ ସକଳ ପାପରୁ ମୁକ୍ତ ହୋଇ ସୂର୍ଯ୍ୟଦେବଙ୍କ ସଦୃଶ ତେଜୋମୟ ଶରୀରରେ ସୂର୍ଯ୍ୟଲୋକ ପ୍ରାପ୍ତ ହୁଏ ଏବଂ ଶେଷରେ ମୋକ୍ଷ ପାଏ । ଚୈତ୍ର ଶୁକ୍ଳପକ୍ଷ ପର୍ବରେ ଯେ ସେହି କ୍ଷେତ୍ରରେ କାମଦେବଙ୍କର ପୂଜା କରନ୍ତି ସେ ଉପରୋକ୍ତ ସମସ୍ତ ଫଳ ଭୋଗ କରନ୍ତି । ଯେ ବିଷୁବ ଓ ଅୟନାନ୍ତ ପ୍ରଭୃତି ସମୟରେ କିମ୍ବା ରବିବାର ବା ସପ୍ତମୀରେ ଏହି କ୍ଷେତ୍ରକୁ ତୀର୍ଥଯାତ୍ରାରେ ଆସନ୍ତି, ସେ ସୂର୍ଯ୍ୟଲୋକ ପାଆନ୍ତି । ଏହି କ୍ଷେତ୍ର ନିକଟରେ ସମୁଦ୍ରବେଳାରେ ବାମଦେବ ନାମରେ ଖ୍ୟାତ ଶିବଲିଙ୍ଗ ଅଛନ୍ତି; ତାହାଙ୍କୁ ଉପାସନା କଲେ ଲୋକ ଶିବଲୋକ ଏବଂ ଶେଷରେ ମୁକ୍ତି ପାଏ । ଯେ ଏହି ସୂର୍ଯ୍ୟକ୍ଷେତ୍ରରେ ଦେହତ୍ୟାଗ କରେ, ସେ ସୂର୍ଯ୍ୟଲୋକ ଏବଂ ପରେ ମୋକ୍ଷ ପାଏ ।''

ପୂର୍ବବର୍ତ୍ତୀ ଅଧ୍ୟାୟରେ ମୈତ୍ରେୟ ବନର ପବିତ୍ରତା ବିଷୟରେ କପିଳସଂହିତାରେ ଶାମ୍ବ ଉପାଖ୍ୟାନ ବର୍ଣ୍ଣିତ ଥିବାର କୁହାଯାଇଅଛି । ଶାମ୍ବ ଉପାଖ୍ୟାନ ବ୍ୟତୀତ ସଂହିତା ଅତି ଉଚ୍ଚ ସ୍ୱରରେ ଏହି କ୍ଷେତ୍ରରେ ମାହାତ୍ମ୍ୟ ଘୋଷଣା କରିଅଛି । ସଂହିତାର ୬ଷ୍ଠ ଅଧ୍ୟାୟରେ ଲେଖାଅଛି * –

''ମୈତ୍ରେୟ ମହର୍ଷିଙ୍କର ତପସ୍ୟା ପ୍ରଭାବରେ ଏହି ମୈତ୍ରେୟ ବନର ଉତ୍ପତ୍ତି । ଏହି ପୁଣ୍ୟଭୂମିକୁ ତୀର୍ଥଯାତ୍ରା କଲେ ନର ଶୀଘ୍ର ମହାରୋଗରୁ ମୁକ୍ତି ପାଏ । ଯେଉଁମାନେ

* Antiquities of Orissa - Vol. II. P. 148. F.N.

ବୀତରାଗ ଓ ବିକଲ୍ମଷ ହୋଇ ସେଠାରେ ରହିବାକୁ ଇଚ୍ଛା କରନ୍ତି, ଦିନପତି ସୂର୍ଯ୍ୟଦେବଙ୍କ ଦ୍ୱାରା ସେମାନଙ୍କର ମନୋରଥ ସଫଳ ହୁଏ । ରମ୍ୟ ମୈତ୍ରେୟ ବନରେ ଯେଉଁମାନେ ଦେହତ୍ୟାଗ କରନ୍ତି, ସେମାନେ ସମସ୍ତ ପାପ ପରିତ୍ୟାଗ କରି ଜ୍ୟୋତିର୍ଲୋକକୁ ଗମନ କରନ୍ତି । ଯେଉଁମାନେ ରବିବାର ଦିନ ସଭକ୍ତିରେ ରବିକ୍ଷେତ୍ରରେ ରବିଦର୍ଶନ କରନ୍ତି, ସେମାନେ ରବିଗୃହ ଲାଭ କରନ୍ତି । ଯେଉଁମାନେ ମୈତ୍ରେୟ ବନରେ ଦେହତ୍ୟାଗ କରନ୍ତି, ସେମାନେ ଅମର ହୋଇ ପୁନର୍ଜନ୍ମରୁ ମୁକ୍ତ ହୁଅନ୍ତି ଏବଂ ଦେବଲୋକ ପ୍ରାପ୍ତ ହୋଇ ରବିଙ୍କ ସହିତ ଚିରାନନ୍ଦ ଉପଭୋଗ କରନ୍ତି । ଯେଉଁମାନେ ସେ ସ୍ଥାନରେ ଭକ୍ତିମାନସରେ ଭାସ୍କରଙ୍କୁ ଅର୍ଚ୍ଚନା କରନ୍ତି, ସେମାନେ ସହସା ପାପବିମୁକ୍ତ ହୋଇ ବାଞ୍ଛିତ ଫଳ ପାଇ ପାଆନ୍ତି । ସେ ସ୍ଥାନର ଶ୍ରୀମଙ୍ଗଳ ତୀର୍ଥ ଦେବତାମାନଙ୍କର ମଙ୍ଗଳପ୍ରଦ । ସେ ମଙ୍ଗଳତୀର୍ଥରେ ମଙ୍ଗଳବାରରେ ସ୍ନାନ କଲେ ଭକ୍ତର ନିଶ୍ଚୟ ମଙ୍ଗଳ ହୁଏ । ସେ ସ୍ଥାନରେ 'ଶ୍ରୀଶାଲ୍ମଳୀଭାଣ୍ଡ' ନାମକ ସର୍ବ ପାପହର, ପୁଣ୍ୟ ସିଦ୍ଧଗନ୍ଧର୍ବସେବିତ ଓ ତ୍ରୈଲୋକ୍ୟପାବନ ତୀର୍ଥ ଅଛି । ତାହା ନାନା ମୁନିଜନାକୀର୍ଣ୍ଣ ଏବଂ ସମସ୍ତଙ୍କର ମୁକ୍ତିଦାୟକ । ସେଠାରେ ସ୍ନାନ କଲେ ନର ସାକ୍ଷାତ ଦୀଧିତିଙ୍କୁ ପ୍ରାପ୍ତ ହୁଏ । ଶ୍ରୀଶାଲ୍ମଳୀଭାଣ୍ଡରେ ସ୍ନାନ କରି ସେଠାରେ ଛାୟାପତିଙ୍କୁ ଦର୍ଶନ କଲେ ମନୁଷ୍ୟ ସର୍ବପାପ ଧ୍ୱଂସ କରି ସୂର୍ଯ୍ୟଲୋକ ପାଏ । ସୂର୍ଯ୍ୟଗଙ୍ଗା ସମାନ ତୀର୍ଥ ଆଉ ମହୀରେ ଅନ୍ୟତ୍ର ନାହିଁ କି ନ ଥିବ । ସେହି ସୂର୍ଯ୍ୟଗଙ୍ଗା ସମ୍ମୁଖରେ ମହୋଦଧିରେ ସ୍ନାନ କଲେ ସକଳ ପାପ ଦୂର ହୁଏ । ସରିତ୍‌ପତିସାଗର ସକଳ ତୀର୍ଥମାନଙ୍କ ମଧ୍ୟରେ ଶ୍ରେଷ୍ଠ । ସେହି ସ୍ଥାନର ସମୁଦ୍ର ବେଳାରେ ରାମେଶ୍ୱର ବିଦ୍ୟମାନ । ରାମଚନ୍ଦ୍ର ପ୍ରାଣୀହିତ ନିମନ୍ତେ ସେହି ରାମେଶ୍ୱରଙ୍କୁ ପୂଜା କରିଥିଲେ । ଯେଉଁ ବିଖ୍ୟାତ ନରମାନେ ରାମେଶ୍ୱରଙ୍କୁ ସଯତ୍ନରେ ପୂଜା କରନ୍ତି, ରାମଚନ୍ଦ୍ର ନିଜେ ସେମାନଙ୍କ ଇଷ୍ଟ ସିଦ୍ଧି କରନ୍ତି । ଯେଉଁମାନେ ମହେଶ୍ୱରଙ୍କୁ ଗନ୍ଧ, ପୁଷ୍ପ, ନୈବେଦ୍ୟ ଓ ଅର୍ଘ୍ୟରେ ଅର୍ଚ୍ଚନା କରନ୍ତି, ସେମାନେ ବିମାନରେ ବିରାଜିତ ହୋଇ ଶିବଲୋକକୁ ପ୍ରସ୍ଥାନ କରନ୍ତି । ଯେ ବିଧିପୂର୍ବକ ଚନ୍ଦ୍ରଭାଗା ଜଳରେ ସ୍ନାନ କରନ୍ତି, ସେ ଚନ୍ଦ୍ରତୁଲ୍ୟ ବପୁ ଧାରଣ କରି ଚନ୍ଦ୍ରଲୋକକୁ ଗମନ କରନ୍ତି । ସେ ସ୍ଥାନରେ 'ଅର୍କବଟ' ନାମରେ ଗୋଟିଏ କଳ୍ପବଟ ଅଛି । ତାହା ଛାୟାରେ ମୁନିଜନମାନେ ଆଶ୍ରୟ ନିଅନ୍ତି ଏବଂ ତାହା ପକ୍ଷୀମାନଙ୍କଦ୍ୱାରା ସୁଶୋଭିତ । ଯେ ଏହି ମୁକ୍ତିପ୍ରଦ ବଟ ନିକଟକୁ ଯାଆନ୍ତି, ସେ ଅବଧ୍ୟ ହୋଇ ରହନ୍ତି । ପ୍ରାଣୀମାନଙ୍କ ହିତ ନିମନ୍ତେ ସୂର୍ଯ୍ୟ ସାକ୍ଷାତରେ ସେହି ବୃକ୍ଷ ଆକାର ଧାରଣ କରିଅଛନ୍ତି; ସେହି ବୃକ୍ଷ ତଳେ ବସି ଉତ୍ତମ ସୂର୍ଯ୍ୟ ମନ୍ତ୍ର ଜପ କଲେ ତିନି ପକ୍ଷ ମଧ୍ୟରେ ସାଧକର ଅଭୀଷ୍ଟ ସିଦ୍ଧି ହୁଏ । ମର୍ତ୍ତ୍ୟରେ ଯେ ଅର୍କବଟ, ସ୍ୱର୍ଗଲୋକରେ ସେ ନନ୍ଦନ ବୃକ୍ଷ ନାମରେ ପରିଚିତ । ମୁଁ ସତ୍ୟ କହୁଛି, ସେ ସ୍ଥାନରେ ସିଦ୍ଧଗଣ ବାସ କରନ୍ତି ଏବଂ ସେ ସ୍ଥାନରେ ଯେ ବିଷ୍ଣୁଙ୍କୁ ଧ୍ୟାନ କରେ ତାହାପ୍ରତି ବିଷ୍ଣୁ ପ୍ରସନ୍ନ ହୁଅନ୍ତି । ବିଜୟା ସପ୍ତମୀ ଦିନ *

---

* ଶୁକ୍ଳପକ୍ଷର ସପ୍ତମୀ ରବିବାର ଦିନ ପଡିଲେ 'ବିଜୟା ସପ୍ତମୀ' ହୁଏ ।

ଯେ ଦିବାକରଙ୍କୁ ଅର୍ଚ୍ଚନା କରନ୍ତି, ସେ ସର୍ବ ପାପରୁ ମୁକ୍ତି ପାଇ ସର୍ବତ୍ର ବିଜୟୀ ହୁଅନ୍ତି । ପୁଣ୍ୟ ମୈତ୍ରେୟ ବନରେ ରଥଯାତ୍ରା ମହୋତ୍ସବ ଯେ ଭକ୍ତିରେ ଦର୍ଶନ କରନ୍ତି, ସେ ସୂର୍ଯ୍ୟଙ୍କର ବାସ୍ତବ ଶରୀରର ଦର୍ଶନ ପାଆନ୍ତି ।

ଅତଏବ ବ୍ରହ୍ମପୁରାଣ ଓ କପିଳସଂହିତା ଅନୁସାରେ କୋଣାର୍କରେ ନିମ୍ନଲିଖିତ ପୁଣ୍ୟସ୍ଥଳ ଓ ଦେବତା ଥିଲେ :—

୧ । କୋଣାଦିତ୍ୟ ବା ସୂର୍ଯ୍ୟଦେବ । ୨ । ସମୁଦ୍ର । ୩ । ସୂର୍ଯ୍ୟଗଙ୍ଗା । ୪ । କାମଦେବ । ୫ । ବାମଦେବ । ୬ । ମୈତ୍ରେୟ ବନ । ୭ । ଶ୍ରୀମଙ୍ଗଳତୀର୍ଥ । ୮ । ଶ୍ରୀଶାକ୍ମକୀଭାଣ୍ଡ । ୯ । ରାମେଶ୍ୱର । ୧୦ । ମହେଶ୍ୱର । ୧୧ । ଚନ୍ଦ୍ରଭାଗା ଏବଂ ୧୨ । ଅର୍କବଟ ।

ପଦ୍ମପୁରାଣାନ୍ତର୍ଗତ 'ପ୍ରାଚୀମାହାତ୍ମ୍ୟ' କୋଣାର୍କକୁ 'ଅର୍କକ୍ଷେତ୍ର' ଓ 'ଅର୍କତୀର୍ଥ' ଆଖ୍ୟା ଦେଇଅଛନ୍ତି । ଅର୍କତୀର୍ଥର ମାହାତ୍ମ୍ୟ ବର୍ଣ୍ଣନରେ 'ପ୍ରାଚୀମାହାତ୍ମ୍ୟ' ପୂର୍ଣ୍ଣ । ପୂର୍ବେ ଏହି ସ୍ଥାନରେ ସ୍ୱୟଂ ସୂର୍ଯ୍ୟଦେବ ତପସ୍ୟା କରିଥିଲେ ।

"ତାହାଙ୍କ (ଚଣ୍ଡଘଣ୍ଟା) ନୈର୍‌ଋତ ଦିଗରେ ।
ତପସ୍ୟା କଲେ ଦିନକରେ ।।
ହେଲେ ସେ ତେଜଙ୍କର ଧାମ ।
ବ୍ରହ୍ମାଣ୍ଡେ ହେଲେ ଅନୁପମ ।।"

— ୬ଷ୍ଠ ଅଧ୍ୟାୟ

ପରେ ଦିନେ ମହାଦେବ ବ୍ରହ୍ମାଙ୍କ ଶିରଚ୍ଛେଦନ କରି ଯାଉ ଯାଉ ଗୋଟିଏ ଘୋର ବନରେ ମିଳିଲେ । ସେଠାରେ ନାନା ମୁନି ଓ ମୁନିକନ୍ୟାମାନେ ବାସ କରୁଥିଲେ । ମହାଦେବଙ୍କ ହସ୍ତରେ ସ୍ୱୟଂ ବ୍ରହ୍ମାଙ୍କର ଛିନ୍ନଶିର ଦେଖି ମୁନିକନ୍ୟାମାନେ ବିଚଳିତ ହୁଅନ୍ତେ, ମୁନିଙ୍କ ଶାପରେ ହର ମାତଙ୍ଗିରୂପରେ ବନଚାରୀ ହୋଇ ବୁଲିଲେ । ପାର୍ବତୀ ପତିଙ୍କ ଉଦ୍ଧାର ନିମନ୍ତେ ଗୋପାଳୁଣୀ ବେଶରେ ମୁନି ଓ ମୁନିକନ୍ୟାମାନଙ୍କୁ ସନ୍ତୁଷ୍ଟ କରିବା ନିମନ୍ତେ ଦହି, ଲହୁଣୀ, ଘୃତାଦି ବିନାମୂଲ୍ୟରେ ବିକ୍ରି କରିବାକୁ ଆରମ୍ଭ କଲେ । ମୁନିକନ୍ୟାମାନେ ତାହାଙ୍କର ରୂପଶ୍ରୀ ଓ ମିଷ୍ଟାଳାପରେ ଅତିଶୟ ମୁଗ୍ଧ ହୋଇ ଯାଇଥିଲେ । କେତେ ଦିନ ଏହିପରି ଗଲା ପରେ ସପ୍ତର୍ଷି ପୂଜା ଉପସ୍ଥିତ ହେଲା । ସମସ୍ତ ମୁନିମାନଙ୍କର ଦୁଧ ଦହି ଦରକାର । ପାର୍ବତୀ ଅକୁଣ୍ଠିତ ଭାବରେ ସମସ୍ତ ଯୋଗାଇଲେ । ଏଥିରେ ମୁନି ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ବର ଦେବାକୁ କହିବାରୁ ପାର୍ବତୀ ନିଜର ପରିଚୟ ଦେଇ ସ୍ୱାମୀଙ୍କର ମୁକ୍ତି ଭିକ୍ଷା କଲେ । ତହୁଁ ମହାଦେବ ଶାପମୁକ୍ତ ହୋଇ ରବିଲୋକକୁ ଗମନ କଲେ । ସୂର୍ଯ୍ୟଙ୍କ ପରାମର୍ଶ ଅନୁସାରେ ମହାଦେବ ଶୋଭନେଶ୍ୱରଙ୍କ ପଶ୍ଚିମବର୍ତ୍ତୀ ଅର୍କତୀର୍ଥରେ ସ୍ନାନ କରି ଘୋର ତପସ୍ୟା ଆଚରଣ କଲେ ।

"ପବନ ଭକ୍ଷି ତପ କରି । ସୁସିଦ୍ଧ ନିୟମ ଆଚରି ॥
ଆପେ ଆପକୁ ଆରାଧନ । କରି ନାଶିଲେ ପାପମନ ॥"

— ୬ଷ୍ଠ ଅଧ୍ୟାୟ

ସେହି ଦିନଠାରୁ ସେ ତୀର୍ଥ 'ବିମୁକ୍ତି' ନାମେ ଖ୍ୟାତ ହେଲା । ଅର୍କତୀର୍ଥର ମାହାତ୍ମ୍ୟ 'ପ୍ରାଚୀମାହାତ୍ମ୍ୟ'ର ତଳଲିଖିତ ପଂକ୍ତିଚୟରୁ ସ୍ପଷ୍ଟ ଜଣାଯାଏ :—

"ଅର୍କତୀର୍ଥରେ ମୁନିମାନେ । ତପ କରନ୍ତି ଅନୁକ୍ଷଣେ ॥
ଇନ୍ଦ୍ରଙ୍କୁ ଆଦି ଯେତେ ସୁର । ସେ ସ୍ଥାନେ କଲେ ତପଘୋର ॥
ତହିଁ ତପସ୍ୟା ସିଦ୍ଧ କରି । ସ୍ୱର୍ଗେ ହୋଇଲେ ଅଧିକାରୀ ॥
ଅର୍କତୀର୍ଥରେ ତପ କରି । ଶୁକ ହୋଇଲେ ଯୋଗଧାରୀ ॥
ଅର୍କତୀର୍ଥରେ ସ୍ନାନ କଲେ । ଜନ୍ମ ହୁଅଇ ପୁଣ୍ୟ ବଳେ ॥
ପୂର୍ବେ ସନକାଦୟ ଯେତେ । ତପସ୍ୟା କଲେ ଅର୍କତୀର୍ଥେ ॥

× × × ×

ବ୍ୟାସଙ୍କୁ ଆଦି ମୁନି ଯେତେ । ଖ୍ୟାତ ହୋଇଲେ ସେ ଜଗତେ ॥
ପୂର୍ବେ ଯେ ଜମ୍ବୁବତୀସୁତ । ସେ ତୀର୍ଥେ ହେଲେ ଉପଗତ ॥
ଅର୍କତୀର୍ଥରେ ସ୍ନାନ କରି । ଯିବି ଯେ ବୋଲେ ହେଳାକରି ॥
ଯେତେ ପକାଇ ଯାଇ ପାଦ । ତେତିକି ଯାଗଫଳପ୍ରଦ ॥

× × × ×

ଏ ପ୍ରାଚୀ ସରସ୍ୱତୀ ନୀର । ମାର୍ଜନେ ଔଷଧି ଦେହର ॥
ବିଶେଷେ ଅର୍କତୀର୍ଥ ନୀର । ମୁକ୍ତି ଦିଅଇ ନିରନ୍ତର ॥
ସ୍ୱର୍ଗେ ବାଞ୍ଛନ୍ତି ସର୍ବ ସୁର । କି ରୂପେ ହେବା ମର୍ତ୍ତ୍ୟେ ନର ॥
ଅର୍କତୀର୍ଥରେ କରି ସ୍ନାନ । ଗମନ୍ତୁ ପୁଣି ନିଜସ୍ଥାନ ॥

— ୬ଷ୍ଠ ଅଧ୍ୟାୟ

'ପ୍ରାଚୀ ମାହାତ୍ମ୍ୟ' ଅନୁସାରେ ଅର୍କତୀର୍ଥର ଦେବଦେବୀମାନଙ୍କ ମଧ୍ୟରେ ନିମ୍ନଲିଖିତ ନାମଗୁଡ଼ିକ ଦେଖାଦିଏ :—

୧ । ପୂର୍ଣ୍ଣେଶ୍ୱର — ଏହାଙ୍କଠାରେ ପ୍ରାଚୀକୂଳରେ ବ୍ରହ୍ମା ତପସ୍ୟା କରିଥିଲେ ଏବଂ ପରେ ତାଙ୍କୁ ବ୍ରହ୍ମା ପୂଜା କରିଥିବାରୁ ଏହାଙ୍କ ନାମ ମଧ୍ୟ 'ବ୍ରହ୍ମେଶ' ହୋଇଥିଲା ।

୨ । ଶୋଭନେଶ୍ୱର — ସକଳ ଗୁଣକର୍ମରେ ନିପୁଣ ହୋଇଥିବାରୁ ନାମ 'ଶୋଭନେଶ୍ୱର' ରହିଥିଲା ।

୩ । ମହାକାତ୍ୟାୟିନୀ — ଶୋଭନେଶ୍ୱରଙ୍କ ପଶ୍ଚିମ ଦିଗରେ ତାହାଙ୍କ ରୂପ ମହାଭୟଙ୍କର । ମଦମାଂସରେ ସର୍ବଦା ସନ୍ତୁଷ୍ଟ ଥିବାରୁ ସେ 'ଚଣ୍ଡଘଣ୍ଟା' ନାମ ମଧ୍ୟ ବୋହିଥିଲେ ।

ଏହିପରି ତ୍ରିବେଣୀଶ୍ୱର, ବିଲ୍ଲେଶ୍ୱର, ରାମେଶ୍ୱର, ଗୋକର୍ଣ୍ଣେଶ୍ୱର ପ୍ରଭୃତି ଅର୍କକ୍ଷେତ୍ରର ମାହାତ୍ମ୍ୟ ବଢ଼ାଉଥିଲେ । ପ୍ରାଚୀମାହାତ୍ମ୍ୟର ଅର୍କତୀର୍ଥ ଅବଶ୍ୟ ଚନ୍ଦ୍ରଭାଗା ଥିଲା । କାରଣ ଅର୍କତୀର୍ଥର ବର୍ଣ୍ଣନା ଓ ସ୍ଥାନ ନିର୍ଦ୍ଦେଶରୁ ଚନ୍ଦ୍ରଭାଗା ବ୍ୟତୀତ ଅନ୍ୟ କିଛି ପ୍ରକାଶ ପାଉନାହିଁ । 'ପ୍ରାଚୀମାହାତ୍ମ୍ୟ' ଏହାକୁ ଚନ୍ଦ୍ରଭାଗା ବୋଲି କୌଣସି ସ୍ଥାନରେ କହି ନାହାନ୍ତି । ମାଘ ମାସର ଶୁକ୍ଳପକ୍ଷ ସପ୍ତମୀ ଦିନ ଅର୍କତୀର୍ଥରେ ସ୍ନାନ କରି ଦାନ ଭୋଜନ ଦେଲେ ଲୋକ ନିରୋଗୀ ହୁଏ ।

''ଯେ ଅବା ମହାରୋଗୀ ହୁଏ । ବୈଦ୍ୟ ଯାହାକୁ ଛାଡିଯାଏ ॥
ସେ ନର କଲେ ତହିଁ ସ୍ନାନ । ନିରୋଗୀ ହୁଅଇ ବହନ ॥''

କପିଳସଂହିତା ଓ ବ୍ରହ୍ମପୁରାଣରେ ମୈତ୍ରେୟ ବନର ଯେଉଁ ଆରୋଗ୍ୟ-କାରୀ ଗୁଣ ବର୍ଣ୍ଣିତ ଅଛି, 'ପ୍ରାଚୀମାହାତ୍ମ୍ୟ'ର ଅର୍କତୀର୍ଥରେ ମଧ୍ୟ ସେହି ସବୁ ଗୁଣ ଅଛି; ସୁତରାଂ ଚନ୍ଦ୍ରଭାଗା ପ୍ରାଚୀର ଅଂଶବିଶେଷ କହିବା ବାହୁଲ୍ୟ ମାତ୍ର ।

ପୁରୀର ମାଦଳାପାଞ୍ଜିରେ ମଧ୍ୟ କୋଣାର୍କ ମାହାତ୍ମ୍ୟ ଯଥେଷ୍ଟ ବର୍ଣ୍ଣିତ ଅଛି । ଶ୍ରୀଯୁକ୍ତ ବିଷନ୍ ସ୍ୱରୂପ ମାଦଳାପାଞ୍ଜି, ଉପରୋକ୍ତ ବ୍ରହ୍ମପୁରାଣ ଓ କପିଳସଂହିତାରୁ କୋଣାର୍କ ଦେବଙ୍କ ବ୍ୟତୀତ କ୍ଷେତ୍ରରେ ନିମ୍ନଲିଖିତ ଦେବଦେବୀ ଥିବାର ଲେଖିଅଛନ୍ତି * :—

୧ । ମାୟାଦେବୀ (ଅଧିଷ୍ଠାତ୍ରୀ ଦେବୀ)

(କୋଣାର୍କ ମନ୍ଦିରରେ ଦକ୍ଷିଣ-ପଶ୍ଚିମ କୋଣରେ ଯେଉଁ ମନ୍ଦିରର ଅବଶେଷ ବର୍ତ୍ତମାନ ଅଛି, ତାହା ମାୟାଦେବୀଙ୍କ ମନ୍ଦିର ଥିବାର ଶ୍ରୀ ବିଷନ ସ୍ୱରୂପ କହନ୍ତି । କିନ୍ତୁ ମୋର ଦୁଇ ଥର କୋଣାର୍କ ଦର୍ଶନରେ ମୁଁ ଅନେକ ବ୍ୟକ୍ତିଙ୍କଠାରୁ ବୁଝିଲି ଯେ, ଏହା ରାମଚଣ୍ଡୀଙ୍କ ମନ୍ଦିର ଥିଲା । ଗୋଟିଏ କିମ୍ବଦନ୍ତୀ ଶୁଣିଲି ଯେ, ରାମଚଣ୍ଡୀ ଏହି ମନ୍ଦିରରୁ ଯାଇ ବର୍ତ୍ତମାନ ଲିଆଖିଆ ମୁହାଣରେ ପ୍ରତିଷ୍ଠିତ ଅଛନ୍ତି । କଳାପାହାଡ଼ କୋଣାର୍କ ଆକ୍ରମଣ ସମୟରେ ଯେତେବେଳେ ରାମଚଣ୍ଡୀଙ୍କ ମନ୍ଦିର ଧ୍ୱଂସ କରି ଦେବୀଙ୍କୁ ଅପବିତ୍ର କରି ବସିଲା, ଦେବୀ ପାଣି ଆଣିବା ବାହାନାରେ କଳାପାହାଡ଼ଠାରୁ କେତେକ ସମୟ ପାଇଁ ବିଦାୟ ନେଇ କାଖରେ ମାଠିଆଟିଏ ଧରି ଚାଲିଗଲେ । କଳାପାହାଡ଼ ଏଣେ ବହୁତ ଅପେକ୍ଷା କରି ବସିଲା; କିନ୍ତୁ ରାମଚଣ୍ଡୀ ଆଉ ଫେରିଲେ ନାହିଁ । ସୁତରାଂ କଳାପାହାଡ଼ ଅଗତ୍ୟା ରାମଚଣ୍ଡୀଙ୍କ ଅନ୍ୱେଷଣରେ ବାହାରିଲା । ଦେଖିଲାବେଳକୁ ଦେବୀ ମାଠିଆଟି କାଖରେ ଯାକି ଲିଆଖିଆ

* 'Konarka' P. 43.

ମୁହାଣରେ ଭାସୁଅଛନ୍ତି । କଳାପାହାଡ଼ ଯେତେ ଡାକିଲେ ସୁଦ୍ଧା ସେ ଆଉ ଫେରିଲେ ନାହିଁ । ନଈ ବହୁତ ବଢ଼ିଥିବାରୁ କଳାପାହାଡ଼ ମଧ ମୁହାଣ ଭିତରକୁ ପଶି ପାରିଲା ନାହିଁ । ଅଗତ୍ୟା ଫେରି ଆସି ସେ ରାମଚଣ୍ଡୀଙ୍କ ଦ୍ୱାର ଉପରେ ଲେଖିଗଲା :—

"ଭଲା ରାମଚଣ୍ଡୀ ଭଲା ରେ,

କଳାପାହାଡ଼କୁ ଦୁଆରେ ବସାଇ

ଭଲା ପାଣି ପାଇଁ ଗଲା ରେ ।"

ସୁତରାଂ ଏହି ଦେବୀ ରାମଚଣ୍ଡୀ ଥିବାର ସନ୍ଦେହ ନାହିଁ । ଯାହାହେଉ ଏ ବିଷୟ ପରେ ରାମଚଣ୍ଡୀଙ୍କ ମନ୍ଦିର ବର୍ଣ୍ଣନାସ୍ଥଳେ ଆଲୋଚ୍ୟ * ।

୨ । ବାମଦେବ — ସମୁଦ୍ର ନିକଟରେ ମହାଦେବ ମୂର୍ତ୍ତି । ଏହାଙ୍କ ନାମ ପରେ ପରିବର୍ତ୍ତିତ ହୋଇଥିଲା । ଏବେ ତାହାଙ୍କର ଅସ୍ତିତ୍ୱ ନାହିଁ କି ତାହାଙ୍କ ନାମ ମଧ ଶୁଣାଯାଏ ନାହିଁ ।

୩ । ଅଷ୍ଟଶମ୍ଭୁ — କ୍ଷେତ୍ରର ରକ୍ଷକ ସ୍ୱରୂପ ଅଷ୍ଟଶିବ ମୂର୍ତ୍ତି ସ୍ଥାପିତ ଥିଲେ; ଯଥା :— ରାମେଶ୍ୱର, ଚିତ୍ରେଶ୍ୱର, ମଙ୍ଗଳେଶ୍ୱର, ଈଶାନେଶ୍ୱର, ମୁକ୍ତେଶ୍ୱର, ତ୍ରିବେଣୀଶ୍ୱର, ଉତ୍ପଳେଶ୍ୱର ଏବଂ ଶୋଭନେଶ୍ୱର ।

(କ) ରାମେଶ୍ୱର ମହାଦେବ — ବର୍ତ୍ତମାନ ଲିଆଖିଆ ମୁହାଣରେ ଅଛନ୍ତି ।

(ଖ) ଚିତ୍ରେଶ୍ୱର — ବର୍ତ୍ତମାନ ଗୋଲରାର ଯଦୁପୁର ନିକଟରେ କାଦୁଆ ନଦୀ କୂଳରେ ପ୍ରାୟ ୩ ମାଇଲ ଦୂରରେ ଅଛନ୍ତି ।

(ଗ) ମଙ୍ଗଳେଶ୍ୱର — କୋଣାର୍କ ମନ୍ଦିର ନିକଟରେ ଦକ୍ଷିଣ ପାଖକୁ ଯେଉଁ ମଠ ଅଛି, ତାହାର ପଛ ପାଖରେ ବର୍ତ୍ତମାନ ଅଛନ୍ତି ।

(ଘ) ଈଶାନେଶ୍ୱର — ଐଶାନ୍ୟ କୋଣରେ ଥିବାରୁ ନାମ 'ଈଶାନେଶ୍ୱର' ହୋଇଅଛି । ବର୍ତ୍ତମାନ କୋଣାର୍କର ଦୁଇ ମାଇଲ ଉତ୍ତର-ପୂର୍ବ ସନ୍ଥପୁର ଗ୍ରାମରେ ସେ ପୂଜା ପାଉଅଛନ୍ତି ।

(ଙ) ମୁକ୍ତେଶ୍ୱର — ଚନ୍ଦ୍ରଭାଗା ପାଖରେ ସମୁଦ୍ର କୂଳରେ ଥିଲେ । ସମୁଦ୍ର ଲହଡ଼ା କୂଳ ଖାଇଯିବାରୁ ମୁକ୍ତେଶ୍ୱର ମଧ ଭାସିଗଲେ । ଏକ ବା ଦୁଇ ବର୍ଷ ପୂର୍ବେ କୂଳରେ ଲହରୀ ମଧରେ ମୁକ୍ତେଶ୍ୱର ଦୁଇ ତିନି ଦିନ ପର୍ଯ୍ୟନ୍ତ ଦେଖା ଦେଇଥିଲେ; କିନ୍ତୁ ତାହା ପୂର୍ବରୁ

* ୭ମ ଅଧ୍ୟାୟ ।

ଭାସିଯିବା କଥା ଜଣା ଯାଇଥିବାରୁ କେହି ଆଉ ସେଠାକୁ ଯାଉ ନ ଥିଲେ । ସୁତରାଂ ଦୁଇ ତିନି ଦିନ ଦେଖାଦେଲେ ମଧ ପଣ୍ଡାମାନଙ୍କ ଦୃଷ୍ଟିରେ ନ ପଡ଼ିବାରୁ ପୁଣି ସମୁଦ୍ରସାତ୍ ହୋଇଗଲେ । ତାହାଙ୍କ ଚବିଶ ଦଣ୍ଡିରେ ସାତ ବା ଆଠ ମାଣ ବାହେଲ ଜମି ବର୍ତ୍ତମାନ ମଧ ଅଛି । କୋଣାର୍କର ପ୍ରାୟ ୩ ମାଇଲ ଉତ୍ତରରେ କାଦୁଆ ଉପରେ ଅନସରା ବୋଲି ଗୋଟିଏ ଗ୍ରାମ ଅଛି । ମୁକ୍ତେଶ୍ୱରଙ୍କ ପଣ୍ଡାମାନେ ସେହି ଗ୍ରାମରେ ଅଦ୍ୟାପି ଅଛନ୍ତି ଏବଂ ଉକ୍ତ ସମସ୍ତ ଜମି ମଧ ଭୋଗଦଖଲ କରୁଅଛନ୍ତି ।

(ଚ) ତ୍ରିବେଣୀଶ୍ୱର – କୋଣାର୍କର ଉତ୍ତର-ପଶ୍ଚିମ ପ୍ରାୟ ଅଧମାଇଲ ଦୂରରେ ମାଧିପୁର ଗ୍ରାମରେ ବର୍ତ୍ତମାନ ପର୍ଯ୍ୟନ୍ତ ପୂଜା ପାଉଅଛନ୍ତି । ଏହି ଗ୍ରାମର ସେବକମାନେ ମଧ କୋଣାର୍କ ବେଢ଼ା ମଧରେ ନବଗ୍ରହ ପାଟର ବର୍ତ୍ତମାନ ପୂଜା କରୁଅଛନ୍ତି ।

(ଛ) ଉପ୍ଳେଶ୍ୱର – ଉପରୋକ୍ତ ଅନସରା ଗ୍ରାମ ନିକଟରେ 'ଉପ୍ଳ' ନାମରେ ଗୋଟିଏ କ୍ଷୁଦ୍ର ଗ୍ରାମ ଅଛି । ଉପ୍ଳେଶ୍ୱର ସେଠାରେ ବର୍ତ୍ତମାନ ପର୍ଯ୍ୟନ୍ତ ପୂଜା ପାଉଅଛନ୍ତି ।

(ଜ) ଶୋଭନେଶ୍ୱର – ଚନ୍ଦ୍ରଭାଗା ନିକଟରେ ସମୁଦ୍ର କୂଳରେ ଥିଲେ । ବର୍ତ୍ତମାନ ତାହାଙ୍କର ଅସ୍ତିତ୍ୱ ନାହିଁ ।

ଏ ସମସ୍ତ ମହାଦେବ 'ପ୍ରାଚୀମାହାତ୍ମ୍ୟ'ରେ ସବିଶେଷ ବର୍ଣ୍ଣିତ ଅଛନ୍ତି । ଏମାନଙ୍କ ବ୍ୟତୀତ ବର୍ତ୍ତମାନ ମଧ ଦକ୍ଷିଣେଶ୍ୱର, ଅମରେଶ୍ୱର, ବଟେଶ୍ୱର ପ୍ରଭୃତି ମହାଦେବମାନେ ଅଛନ୍ତି । ମାଘ ସପ୍ତମୀ ଯାତ୍ରା ଉପଲକ୍ଷରେ ଈଶାନେଶ୍ୱର, ତ୍ରିବେଣୀଶ୍ୱରଙ୍କ ସଙ୍ଗେ ଦକ୍ଷିଣେଶ୍ୱର ପ୍ରଭୃତି ଚନ୍ଦ୍ରଭାଗାକୁ ବିଜେ କରନ୍ତି * ।

୪ । ଅଷ୍ଟଚଣ୍ଡୀ – ଏମାନେ କ୍ଷେତ୍ରର ରକ୍ଷୟିତ୍ରୀ ସ୍ୱରୂପ ଅଷ୍ଟଦେବୀ ମୂର୍ତ୍ତି । ଏମାନଙ୍କ ମଧରୁ ସାତଟି ଦେବୀଙ୍କର ନାମ ଲେଖାଅଛି; ଯଥା - ଖାଇକୋଠୀ, ରାମଚଣ୍ଡୀ, ଭଗବତୀ, ରୁଦ୍ରାଣୀ, ଖେଳେଶ୍ୱରୀ, ଚର୍ଚ୍ଚିକା ଏବଂ ଚିତ୍ରେଶ୍ୱରୀ ।

(କ) ଖାଇକୋଠୀ – ବର୍ତ୍ତମାନ ରାମଚଣ୍ଡୀଙ୍କ ନିକଟରେ ଲିଆଖିଆ ମୁହାଣ ପାଖରେ ଖାଇକୋଠ ଗ୍ରାମର ଅଧିଷ୍ଠାତ୍ରୀ ଦେବୀ ।

(ଖ) ରାମଚଣ୍ଡୀ – କୋଣାର୍କ ବେଢ଼ା ମଧରେ ଥିଲେ, ବର୍ତ୍ତମାନ ତିନି ମାଇଲ ଦକ୍ଷିଣ ଲିଆଖିଆ ମୁହାଣରେ ପ୍ରତିଷ୍ଠିତ ।

(ଗ) ଭଗବତୀ – କୋଣାର୍କର ଅଧ ମାଇଲ ପଶ୍ଚିମରେ ପୂର୍ବେ ଗୋଟିଏ ଗ୍ରାମ ଥିଲା ଏବଂ ତହିଁରେ ଭଗବତୀ ଥିଲେ । କାଳକ୍ରମେ ଗ୍ରାମ ଭାଙ୍ଗିଗଲା ଏବଂ ଠାକୁରାଣୀ ମଧ

* 'ପ୍ରାଚୀମାହାତ୍ମ୍ୟ'ରେ ଅଷ୍ଟଶମ୍ଭୁଙ୍କ ନାମ; ଯଥା – ଗୋକର୍ଣ୍ଣେଶ୍ୱର, ବିଲ୍ୱେଶ୍ୱର, କ୍ଷୋଭନେଶ୍ୱର, ରାମେଶ୍ୱର, ଅଙ୍ଗେଶ୍ୱର, ଅମରେଶ୍ୱର, ଗ୍ରାମେଶ୍ୱର ଓ ତ୍ରିବେଣୀଶ୍ୱର ।

ବାଲିରେ ପୋତି ହୋଇ ପଡିଲେ । ପରେ ଜଣେ ସେବକଙ୍କୁ ରାତ୍ରରେ ସ୍ୱପ୍ନାଦେଶ ହେଲା ଯେ, ଅମୁକ ଗଛରେ ଯେଉଁ ସିନ୍ଦୁର ଟୋପି ଦେଖାଯିବ, ତାହାକୁ ଭଗବତୀ ଜ୍ଞାନ କରି ପୂଜା କର । ତଦନୁସାରେ ସେହି ସିନ୍ଦୁର ମଥା ଅଦ୍ୟାପି ପୂଜା ହୋଇ ଆସୁଛନ୍ତି । ଭଗବତୀଙ୍କ ନିକଟରେ ବର୍ତ୍ତମାନ ବହୁତ ବଳି ପଡ଼େ ।

(ଘ) ରୁଦ୍ରାଣୀ – କୋଣାର୍କର ଦୁଇ ମାଇଲ ଦକ୍ଷିଣ-ପଶ୍ଚିମ କୋଣରେ 'ସୁତନ' ନାମରେ ଗୋଟିଏ ଗ୍ରାମ ଅଛି । ରୁଦ୍ରାଣୀ ବର୍ତ୍ତମାନ ସେହି ଗ୍ରାମର ଅଧିଷ୍ଠାତ୍ରୀ ଦେବୀ ।

(ଙ) ଖିଳେଶ୍ୱରୀ – ଖାଲକୋଠୀଙ୍କ ସହିତ ଖାଲକୋଠା ଗ୍ରାମରେ ବର୍ତ୍ତମାନ ପୂଜା ପାଉଅଛନ୍ତି ।

(ଚ) ଚର୍ଚ୍ଚିକା – ବର୍ତ୍ତମାନ ଏହାଙ୍କର ନାମ 'ଚାଚକେଣ୍ଡ' । କୋଣାର୍କର ଦୁଇ ତିନି ମାଇଲ ଉତ୍ତର-ପଶ୍ଚିମରେ 'ବିରୁହ' ଗ୍ରାମରେ ସେବା ପାଉଅଛନ୍ତି ।

(ଛ) ଚିତ୍ରେଶ୍ୱରୀ – ଚିତ୍ରେଶ୍ୱର ମହାଦେବଙ୍କ (ଉପରେ ଅଷ୍ଟଶମ୍ଭୁ ଦେଖ) ନିକଟରେ ଯଦୁପୁର ନିକଟରେ ଅଧିଷ୍ଠିତ ଅଛନ୍ତି ।

ଅଷ୍ଟଚଣ୍ଡୀଙ୍କର ଉଲ୍ଲେଖ ଥିବା ସ୍ଥଳେ ସାତୋଟି ଚଣ୍ଡୀଙ୍କର ନାମ ଅଛି । ଇତିପୂର୍ବେ ପ୍ରାଚୀମାହାତ୍ମ୍ୟରୁ କୁହାଯାଇଅଛି ଯେ, ଶୋଭନେଶ୍ୱରଙ୍କ ପଶ୍ଚିମରେ 'ଚଣ୍ଡଘଣ୍ଟା' ନାମରେ ମହାକାତ୍ୟାୟିନୀ ଅଧିଷ୍ଠିତ ଥିଲେ । ତାହାଙ୍କୁ ଅଷ୍ଟମ ଚଣ୍ଡୀ ଧରାଯାଇ ପାରେ ।

୫ । ଅରୁଣ – ସୂର୍ଯ୍ୟଦେବଙ୍କର ସାରଥି । କୋଣାର୍କ ମନ୍ଦିର ସମ୍ମୁଖସ୍ଥ ଅରୁଣ ସ୍ତମ୍ଭ ଉପରେ ବିରାଜିତ ଥିଲେ । ବର୍ତ୍ତମାନ ସେ ପୁରୀ ମନ୍ଦିରର ସିଂହଦ୍ୱାର ସମ୍ମୁଖରେ ଅରୁଣ ସ୍ତମ୍ଭରେ ଅଛନ୍ତି ।

କୋଣାର୍କର ପୁଣ୍ୟ ତୀର୍ଥମାନଙ୍କ ମଧ୍ୟରେ ମହୋଦଧି ବ୍ୟତୀତ ନିମ୍ନଲିଖିତ ତୀର୍ଥମାନଙ୍କର ନାମ ଉଲ୍ଲେଖ ଅଛି :—

୧ । ସୂର୍ଯ୍ୟଗଙ୍ଗା – ବର୍ତ୍ତମାନ ମଧ ମାଧିପୁର ଗ୍ରାମରେ ତ୍ରିବେଣୀଶ୍ୱରଙ୍କ ନିକଟରେ ଗୋଟିଏ କୁଣ୍ଡ ସ୍ୱରୂପ ଅଛି । କପିଳସଂହିତା ଓ ବ୍ରହ୍ମପୁରାଣରେ ଏହାର ମାହାତ୍ମ୍ୟ ବର୍ଣ୍ଣିତ ଥିବାର ପୂର୍ବେ କୁହାଯାଇଅଛି ।

୨ । ମଙ୍ଗଳା – ଗୋଟିଏ ପୁଣ୍ୟସ୍ରୋତ । ବର୍ତ୍ତମାନ ତାହାର ଚିହ୍ନ ମିଳେ ନାହିଁ । ଶ୍ରୀମଙ୍ଗଳତୀର୍ଥ ନାମରେ କପିଳସଂହିତାରେ ଏହା ବର୍ଣ୍ଣିତ ହୋଇଅଛି ।

୩ । ଶ୍ରୀଶାଲ୍ମଳୀଭାଣ୍ଡ – ବର୍ତ୍ତମାନ ଗୋଟିଏ ପୁଷ୍କରିଣୀ ଏହି ନାମରେ କୋଣାର୍କର ଦେଢ଼ ମାଇଲ ଦୂରରେ ଅଛି । ଏହାକୁ 'ଶିମିଳିଭାଣ୍ଡ' କହୁଅଛନ୍ତି । କପିଳସଂହିତାରୁ ପୂର୍ବେ ଏହାର ମାହାତ୍ମ୍ୟ ବର୍ଣ୍ଣନା କରାଯାଇଅଛି ।

୪ । ଚନ୍ଦ୍ରଭାଗା – ପୂର୍ବେ ଏହାର ନାମ ଚିତ୍ରୋତ୍ପଳା ଥିଲା । ବର୍ତ୍ତମାନ ସମୁଦ୍ର ନିକଟରେ କୋଣାର୍କରୁ ଦେଢ଼ ମାଇଲ ଦୂରରେ ଗୋଟିଏ ସାମାନ୍ୟ ପୋଖରୀ ମାତ୍ର । 'ପ୍ରାଚୀମାହାତ୍ମ୍ୟ'ର 'ଅର୍କତୀର୍ଥ' ବର୍ତ୍ତମାନ ଚନ୍ଦ୍ରଭାଗା ।

୫ । ଅର୍କବଟ – ସମୁଦ୍ର ନିକଟରେ ଗୋଟିଏ ପ୍ରସିଦ୍ଧ କଳ୍ପବଟ ଥିଲା । ପୂର୍ବେ କପିଳସଂହିତାରୁ ଏହାର ସବିଶେଷ ମାହାତ୍ମ୍ୟ ଉଦ୍ଧାର କରାଯାଇଅଛି । ପୂର୍ବେ ଏହାର ବିଶେଷ ପୂଜା ହେଉଥିଲା । ବର୍ତ୍ତମାନ ସେ ବଟବୃକ୍ଷ ନାହିଁ । ସେହି ବଟବୃକ୍ଷ ମୂଳରେ ବଟେଶ୍ୱର ନାମରେ ଯେଉଁ ଶିବଲିଙ୍ଗ ସ୍ଥାପିତ ହୋଇଥିଲେ, ସେ ଅଦ୍ୟାପି ସେବା ପୂଜା ପାଉଅଛନ୍ତି । କଥିତ ଅଛି, ଏହି ବଟେଶ୍ୱର କେଶରୀ ବଂଶୀୟ କୀର୍ତ୍ତି * ।

ଉପରୋକ୍ତ ତୀର୍ଥମାନଙ୍କ ବ୍ୟତୀତ 'ପ୍ରାଚୀମାହାତ୍ମ୍ୟ'ରେ ମଧ୍ୟ ପ୍ରତ୍ୟେକ ଶିବଲିଙ୍ଗଙ୍କ ନିକଟରେ ଗୋଟିଏ ଗୋଟିଏ ତୀର୍ଥର ବର୍ଣ୍ଣନା ଅଛି । ପୌରାଣିକ ପ୍ରମାଣ ମିଥ୍ୟା ବା କାଳ୍ପନିକ ହୋଇପାରେ; କିନ୍ତୁ ମାଦଳାପାଞ୍ଜିରେ ବର୍ଣ୍ଣିତ ତୀର୍ଥମାନ କଦାପି ଅସତ୍ୟ ନୁହେଁ । ବାସ୍ତବିକ, ପୂର୍ବେ ଯେପରି କୁହାଯାଇଅଛି, ସେମାନଙ୍କ ମଧ୍ୟରୁ କେତୋଟି ତୀର୍ଥ ବର୍ତ୍ତମାନ ପର୍ଯ୍ୟନ୍ତ ମଧ୍ୟ କ୍ଷୀଣାକାରରେ ଦେଖାଯାଏ ଏବଂ କେତେକ ଦେବଦେବୀ ଜୀର୍ଣ୍ଣାବସ୍ଥାରେ ମଧ୍ୟ ଅଦ୍ୟାପି ରହିଅଛନ୍ତି । ଏତଦ୍‌ବ୍ୟତୀତ କୋଣାର୍କରେ କେତେ ବାର୍ଷିକ ଯାତ୍ରା ଓ ଉତ୍ସବର ଅନୁଷ୍ଠାନ ଥିଲା; ପରେ (ଦଶମ ଅଧ୍ୟାୟରେ) ତାହାର ବର୍ଣ୍ଣନା କରାଯିବ । ହିନ୍ଦୁ ଦେବଦେବୀ ଓ ତୀର୍ଥମାନଙ୍କର ଅନୁଷ୍ଠାନ ଯୋଗେ ଏ କ୍ଷେତ୍ର ଯେ କେବଳ ହିନ୍ଦୁମାନଙ୍କ ପ୍ରତି ପବିତ୍ର ଥିଲା ତାହା ନୁହେଁ, ମୁସଲମାନମାନେ ମଧ୍ୟ ଏ ସ୍ଥାନକୁ ଆପଣାର ମନେ କରି ପବିତ୍ର ଜ୍ଞାନ କରୁଥିଲେ । ଆବୁଲଫଜଲ ଲେଖିଅଛନ୍ତି ** ଯେ, ଏହି ସ୍ଥାନରେ ମହାତ୍ମା କବିରଙ୍କର ସମାଧି

---

* Antiquities of Orissa - Vol. II., P. 109. F.N.

କେଶରୀମାନେ ନାନା ସ୍ଥାନରେ ରକ୍ଷକ ସ୍ୱରୂପ ଅଷ୍ଟଶମ୍ଭୁ ପ୍ରତିଷ୍ଠା କରିଥିଲେ; ଯଥା :– ୧ମ, ହଟେଶ୍ୱର, ଖୋର୍ଦ୍ଧା ନିକଟ ଅଟିଳି ଗ୍ରାମରେ; ସେଠାରେ ମାଘ ମାସରେ ମେଳା ହୁଏ ଓ ଉଷ୍ଣପ୍ରସ୍ରବଣ ଅଛି । ୨ୟ, ବଟେଶ୍ୱର, ଚିତ୍ରୋତ୍ପଳା ନଦୀ ଉପରେ । ୩ୟ, ଲିଙ୍ଗରାଜ, ଭୁବନେଶ୍ୱରରେ । ୪ର୍ଥ, ବାଲୁକେଶ୍ୱର, ବରାଳଗ୍ରାମରେ, ସତ୍ୟବାଦୀରୁ ଚାରି ମାଇଲ ପୂର୍ବରେ । ୫ମ, ଭୁବନେଶ୍ୱର, କୋଠଦେଶ ପ୍ରଗନା ଭୁବନେଶ୍ୱରର ଆଠ ମାଇଲ ପୂର୍ବରେ । ୬ଷ୍ଠ, ଲୋକେଶ୍ୱର, ପୁରୀ । ୭ମ, କପିଳେଶ୍ୱର, ଭୁବନେଶ୍ୱର ନିକଟରେ । ୮ମ – ?

** "ଆଇନୀ ଆକବରୀ" (Translated by Gladwin, Vol. II. P. 15.) –"ଅନେକେ କହନ୍ତି ଯେ, ଏହିଠାରେ କବିର ମାଉଏଲହିଦ୍‌ଙ୍କ ସମାଧି ଥିଲା ଏବଂ ବର୍ତ୍ତମାନ ପର୍ଯ୍ୟନ୍ତ ମଧ୍ୟ ଅନେକେ ତାହାଙ୍କର ଉକ୍ତି ଓ କ୍ରିୟାକଳାପ ବର୍ଣ୍ଣନା କରନ୍ତି । ତାହାଙ୍କ ଜ୍ଞାନ ଓ ଆଦର୍ଶ ଚରିତ୍ର ବଳରେ ସେ ଉଭୟ ହିନ୍ଦୁ ଓ ମୁସଲମାନଙ୍କର ସମାନ ଭକ୍ତି ଆକର୍ଷଣ କରି ପାରିଥିଲେ । ତାହାଙ୍କ ମରଣ ପରେ ବ୍ରାହ୍ମଣମାନେ ତାହାଙ୍କର ମୃତ ଦେହ ନେଇ ଦାହ କରିବା ନିମନ୍ତେ ଏବଂ

ଥିବାର ଶୁଣାଯାଏ । କାଳକ୍ରମେ କୋଣାର୍କର ପତନ ପରେ ଏ ସମସ୍ତ ଅନୁଷ୍ଠାନର ବିପର୍ଯ୍ୟୟ ହୋଇଅଛି ସତ, ତଥାପି ବହୁକାଳ ପର୍ଯ୍ୟନ୍ତ ଏହା କୋଟି କୋଟି ଧର୍ମପ୍ରାଣ ନରନାରୀଙ୍କର ଗୋଟିଏ ପ୍ରଧାନ ମୋକ୍ଷସ୍ଥଳ ଥିଲା, କହିବା ବାହୁଲ୍ୟ ମାତ୍ର । ତୀର୍ଥଯାତ୍ରା ପୃଥିବୀର ପ୍ରାୟ ସର୍ବଧର୍ମରେ ଅଳ୍ପାଧିକ ପରିମାଣରେ ଅଛି । ଭଗବାନଙ୍କ ସଙ୍ଗେ ଏକ ହେବା ନିମନ୍ତେ ମନୁଷ୍ୟ ହୃଦୟରେ ଗୋଟିଏ ବଡ଼ ପ୍ରବଳ ଆକାଙ୍କ୍ଷା ଚିରକାଳ ଜାଗ୍ରତ ଅଛି । ସେ ହିନ୍ଦୁ ହେଉ ବା ଖ୍ରୀଷ୍ଟାନ୍ ହେଉ, ଇହୁଦୀ ହେଉ ବା ମୁସଲମାନ ହେଉ, ସେ ଆକାଙ୍କ୍ଷା ପୂରଣ କରିବା ନିମନ୍ତେ ତୀର୍ଥଯାତ୍ରାକୁ ଅନ୍ୟତମ ଉପାୟ ମନେକରେ । ଖ୍ରୀଷ୍ଟ ଯେଉଁଠାରେ ଜନ୍ମ ହୋଇଥିଲେ, ଯେଉଁଠାରେ ଶିଷ୍ୟମାନଙ୍କୁ ଉପଦେଶ ଦେଇଥିଲେ, ଯେଉଁଠାରେ ଏବଂ ଯେଉଁ 'କ୍ରୁସ'ରେ ତାହାଙ୍କର ହତ୍ୟା ହୋଇଥିଲା, ତାହା ଏପର୍ଯ୍ୟନ୍ତ ମଧ୍ୟ ନାନା ସଂସ୍କାର, ବିପ୍ଳବ ପ୍ରଭୃତି ସତ୍ତ୍ୱେ ଖ୍ରୀଷ୍ଟିୟାନ ରାଜ୍ୟରେ ପରମ ପବିତ୍ର ବୋଲି ଗୃହୀତ ହେଉଅଛି । ତୀର୍ଥଯାତ୍ରା ଖ୍ରୀଷ୍ଟିୟାନ ଇଉରୋପର ମଧ୍ୟଯୁଗରେ ଯେ ଘୋର ବିପ୍ଳବ ସୃଷ୍ଟି କରିଥିଲା, ଇତିହାସ ତାହାର ସାକ୍ଷୀ । କେତେ 'କ୍ରୁସେଡ୍' ବିଧର୍ମୀମାନଙ୍କ ଅତ୍ୟାଚାରରୁ ତୀର୍ଥରକ୍ଷା ନିମନ୍ତେ ଅଜସ୍ର ନର ରକ୍ତପାତରେ ସିରିଆର ମରୁଭୂମି ରଞ୍ଜିତ କରିଥିଲା, ତାହା ଲୋକେ ଏ ପର୍ଯ୍ୟନ୍ତ ସ୍ମରଣ କଲେ ଭୟରେ ତ୍ରସ୍ତ ହୁଅନ୍ତି । ହିନ୍ଦୁ ଧର୍ମ ସମ୍ପର୍କରେ ରକ୍ତପାତ କରି ନାହିଁ ସତ, ତଥାପି ତାହାର ତୀର୍ଥଯାତ୍ରା ଧର୍ମର ଗୋଟିଏ ପ୍ରଧାନ ଅଙ୍ଗ ଏବଂ ମୁକ୍ତିର ପ୍ରଧାନ ସୋପାନ । ଅର୍ଥ ପ୍ରତି ଭ୍ରୂକ୍ଷେପ ନାହିଁ, ଶରୀର ପ୍ରତି ଆସ୍ଥା ନାହିଁ, ଏକ ବିଶ୍ୱାସରେ ବଳୀୟାନ ହୋଇ ପୁଣ୍ୟତୀର୍ଥ ଦର୍ଶନ ନିମନ୍ତେ ଆବହମାନକାଳରୁ ହିନ୍ଦୁଯାତ୍ରୀ ସହସ୍ର କ୍ରୋଶ ପର୍ଯ୍ୟନ୍ତ ଅକାତରରେ ପର୍ଯ୍ୟଟନ କରି ଆସୁଅଛି । ଧର୍ମଭାବ ସଙ୍ଗେ ସଙ୍ଗେ ଏହି ତୀର୍ଥଯାତ୍ରାମାନଙ୍କରେ ଗୋଟିଏ ଗୂଢ଼ ସାମାଜିକ ତତ୍ତ୍ୱ ମଧ୍ୟ ନିହିତ ଅଛି । ଭାରତ ନାନା ଦେଶ, ଜାତି, ପ୍ରଥା ଓ ସମ୍ପ୍ରଦାୟରେ ଚିରକାଳ ବିଭକ୍ତ । ତଥାପି ଏତେ ବିଭିନ୍ନତା ସତ୍ତ୍ୱେ ଏହି ତୀର୍ଥଯାତ୍ରା ପ୍ରଭୃତି ଦ୍ୱାରା ବିଭିନ୍ନ ଜାତି ପରସ୍ପର ସହିତ ଏକଭାବ ଓ ଏକପ୍ରାଣ ରଖି ପାରୁଥିଲେ । ସୁତରାଂ କୌଣସି କଂଗ୍ରେସ, କନ୍‌ଫରେନ୍‌ସ ବା ସମିତି ବ୍ୟତିରେକେ ମଧ୍ୟ ସମୁଦାୟ ଭାରତ-ସାମ୍ରାଜ୍ୟରେ ଏକ ଜାତୀୟ ଜୀବନ ଆବହମାନକାଳରୁ ଅକ୍ଷୁର୍ଣ୍ଣ ଭାବରେ ରହି ଆସୁଅଛି । ଓଡ଼ିଶାର ବିଶେଷତ୍ୱ ଏହି ଯେ, ନିଜର ସ୍ୱାତନ୍ତ୍ର୍ୟ ସଂରକ୍ଷଣ ସଙ୍ଗେ ସଙ୍ଗେ ଏହି ତୀର୍ଥାଦିମାନଙ୍କଦ୍ୱାରା ସମୁଦାୟ ଭାରତବ୍ୟାପୀ ଜାତୀୟ ମହାଜୀବନ ସହିତ ଆପଣାକୁ ଅତି ସୁନ୍ଦର ଭାବରେ ମିଶାଇ ଦେଇଥିଲା ।

*******

ମୁସଲମାନମାନେ ତାହାଙ୍କୁ କବର କରିବା ନିମନ୍ତେ କଳହ ଆରମ୍ଭ କଲେ; କିନ୍ତୁ ମୃତଦେହରୁ ଚାଦର କାଢ଼ି ଦେଖିଲାବେଳକୁ ମୃତ ଦେହ ଅଦୃଶ୍ୟ ହୋଇ ଯାଇଥିଲା ।''

# ତୃତୀୟ ଅଧ୍ୟାୟ

## କୋଣାର୍କର ଐତିହାସିକ ଗୌରବ

କୌଣସି କ୍ଷେତ୍ରର ପୁରାଣକଥିତ ମାହାତ୍ମ୍ୟ ଆଧୁନିକ ଯୁଗରେ କେବଳ କପୋଳକଳ୍ପନା ପରି ବୋଧ ହେଲେହେଁ କୋଟି କୋଟି ବିଶ୍ୱାସୀ ହିନ୍ଦୁ ନରନାରୀଙ୍କ ପକ୍ଷେ ତାହା କଳ୍ପନା ନୁହେଁ, ତାହା ସତ୍ୟ – ଜୀବନ୍ତ ସତ୍ୟ । ସେହି ସତ୍ୟରେ ତନ୍ମୟ ହୋଇ ଭାରତର ଏକ ପ୍ରାନ୍ତରୁ ଅପର ପ୍ରାନ୍ତ ପର୍ଯ୍ୟନ୍ତ ସମସ୍ତ ହିନ୍ଦୁ ଜାତି ଏ ପର୍ଯ୍ୟନ୍ତ ତୀର୍ଥଯାତ୍ରା କରି ଆସୁଛନ୍ତି । ଯେଉଁ କ୍ଷେତ୍ରର ମାହାତ୍ମ୍ୟ ଯେଉଁ ପରିମାଣରେ ଅଧିକ ବର୍ଣ୍ଣିତ ଅଛି, ଯାତ୍ରୀ ସମାଗମ ସେହି କ୍ଷେତ୍ରରେ ସେହି ପରିମାଣରେ ଅଧିକ ହୁଏ । କୋଣାର୍କର ମାହାତ୍ମ୍ୟ ନାନା ଶାସ୍ତ୍ର ପୁରାଣରେ ଯେତେ ବିସ୍ତୃତ ଭାବରେ ବର୍ଣ୍ଣନା କରାଯାଇଅଛି, ତାହାର କିଞ୍ଚିତ୍ ଆଭାସ ପୂର୍ବ ଅଧ୍ୟାୟରେ ଦିଆଗଲା । ବର୍ତ୍ତମାନ ପରି କେବଳ ଅପନ୍ତରା ମରୁଭୂମି ହୋଇଥିଲେ, ତାହାର ମାହାତ୍ମ୍ୟ ଏତେ ଘୋଷଣା କରାଯାଇ ନ ଥାନ୍ତା । କୋଣାର୍କର ବର୍ତ୍ତମାନ ଅବସ୍ଥା ଦେଖି ଦର୍ଶକମାନେ ବଡ଼ ଆଶ୍ଚର୍ଯ୍ୟ ହୁଅନ୍ତି ଯେ, ଏପରି ନିର୍ଜନ ପ୍ରାନ୍ତରରେ କି ଉଦ୍ଦେଶ୍ୟରେ ଏଡ଼େ ମନୋହର ଓ ବିରାଟ ମନ୍ଦିର ନିର୍ମିତ ହୋଇଥିଲା । କ୍ଷେତ୍ରମାହାତ୍ମ୍ୟ ଦେଖିଲେ ମନେହୁଏ, ବର୍ତ୍ତମାନ ପରି କୋଣାର୍କ ସବୁ ସମୟରେ ଏହିପରି ଅପନ୍ତରା ରାଜ୍ୟ ନ ଥିଲା । ଅନ୍ୟାନ୍ୟ ସମସ୍ତ ପ୍ରମାଣ ବାଦ୍ ଦେଇ କେବଳ ଏହି ପୌରାଣିକ ମାହାତ୍ମ୍ୟ ବିଚାର କଲେ ବିଶ୍ୱାସ କରାଯାଏ ଯେ, କୋଣାର୍କ ବାସ୍ତବିକ ଗୋଟିଏ ଜନାକୀର୍ଣ୍ଣ ସ୍ଥାନ ଥିଲା । ଏହାର ମାହାତ୍ମ୍ୟର ଏତେ ବିସ୍ତର ବର୍ଣ୍ଣନାରୁ ସ୍ୱତଃ ଜଣାଯାଏ ଯେ, ବହୁସଂଖ୍ୟକ ଯାତ୍ରୀ ଏ ସ୍ଥାନରେ ସମବେତ ହେଉଥିଲେ । ଯେଉଁ ସ୍ଥାନରେ ଲୋକ ସମାଗମ ହୁଏ, ସେହି ସ୍ଥାନରେ ଆଉ କିଛି ଅଧିକ ନ ଥିଲେ ମଧ୍ୟ ଯାତ୍ରୀମାନଙ୍କର ବସବାସ ନିମନ୍ତେ ଘରଦ୍ୱାର ଏବଂ ଖାଦ୍ୟପେୟ ନିମନ୍ତେ ଦୋକାନପତ୍ର ଥାଏ ଏବଂ ଯାତ୍ରୀମାନଙ୍କର ସଂଖ୍ୟା ଅନୁସାରେ ପଣ୍ଡାମାନଙ୍କର ଅଧିବାସ ମଧ୍ୟ ଥାଏ । ସୁତରାଂ କୋଣାର୍କରେ ଆଉ କିଛି ଅଧିକ ନ ଥିଲେ ସୁଦ୍ଧା ଏତେ ଯାତ୍ରୀ-ସମାଗମର ଉପଯୁକ୍ତ ଗୋଟିଏ ନଗର ନିତାନ୍ତ ପକ୍ଷରେ ଥିଲା ।

ପୂର୍ବବର୍ତ୍ତୀ ଅଧ୍ୟାୟରେ ଯେଉଁ ଅଷ୍ଟଶମ୍ଭୁ ଓ ଅଷ୍ଟଚଣ୍ଡୀଙ୍କ ନାମ ଲେଖା ଯାଇଅଛି, ସେମାନଙ୍କର ବର୍ତ୍ତମାନ ଅବସ୍ଥାନ ଦେଖିଲେ ଜଣାଯାଏ ଯେ, ଦକ୍ଷିଣରେ ଲିଆଖିଆ ମୁହାଣରୁ ଆରମ୍ଭ କରି ଉତ୍ତରରେ କାଦୁଆ ନଦୀକୂଳ ପର୍ଯ୍ୟନ୍ତ ଏହି ସମସ୍ତ ସ୍ଥାନ କୋଣାର୍କ କ୍ଷେତ୍ର

ନାମରେ ପରିଚିତ ହେଉଥିଲା । ଏହି ସ୍ଥାନରେ ସେହି ଦେବଦେବୀମାନେ କ୍ଷେତ୍ରପାଳ ସ୍ୱରୂପ ସ୍ଥାପିତ ହୋଇଥିଲେ । 'ପ୍ରାଚୀ ମାହାତ୍ମ୍ୟ'ରେ ପ୍ରାଚୀକୂଳରେ ଯେଉଁ ଅସଂଖ୍ୟ ଦେବଦେବୀ ପ୍ରତିଷ୍ଠିତ ଥିବାର ଲେଖାଅଛି, ସେମାନଙ୍କ ମଧ୍ୟରୁ ଅଧିକାଂଶ ଅର୍କତୀର୍ଥ ବା କୋଣାର୍କର ନିକଟରେ ଥିଲେ । ବ୍ରହ୍ମପୁରାଣରେ ଲେଖାଅଛି ଯେ, ଇନ୍ଦ୍ରଦ୍ୟୁମ୍ନ ମହାରାଜା ପୁରୁଷୋତ୍ତମ କ୍ଷେତ୍ରକୁ ଯିବା ସମୟରେ ପୁଣ୍ୟତୋୟା ଚିତ୍ରୋତ୍ପଳା ଦର୍ଶନ କରିଥିଲେ । ଚିତ୍ରୋତ୍ପଳା ଦକ୍ଷିଣାଭିମୁଖ ହୋଇ ସମୁଦ୍ରରେ ପଡିଥିଲା ଏବଂ ତାହାର କୂଳରେ ଛୋଟ ଓ ବଡ, ଜ୍ଞାନ ଓ ଧନରେ ପୂର୍ଣ୍ଣ କେତେକ ନଗର ଥିଲା । 'ପ୍ରାଚୀ ମାହାତ୍ମ୍ୟ'ରୁ ମଧ୍ୟ ଜଣାଯାଏ ଯେ, ପ୍ରାଚୀକୂଳରେ ଅନେକ ପୁଣ୍ୟସ୍ଥାନ ଓ ଜନପଦ ଥିଲା । ସୁତରାଂ ଅନୁମାନ ହୁଏ, କୋଣାର୍କ ସେହି ଜନପଦମାନଙ୍କ ମଧ୍ୟରୁ ଅନ୍ୟତମ ଜ୍ଞାନ ଓ ଧନପୂର୍ଣ୍ଣ ନଗର ଥିଲା । ଅଷ୍ଟଶମ୍ଭୁ ଓ ଚଣ୍ଡୀଙ୍କ ସ୍ଥାନ ବିବେଚନା କଲେ କୋଣାର୍କ ନଗରର ଆୟତନ ବଢ଼ ବିସ୍ତୃତ ଥିବାର ଜଣାଯାଏ ।

ପୁରୀ ଜିଲ୍ଲାର ପୂର୍ବାଞ୍ଚଳର ନଦୀମାନଙ୍କର ଅବସ୍ଥାନ ଓ ଗତି ଦେଖିଲେ ବୋଧହୁଏ ଯେ ପୂର୍ବେ କୋଣାର୍କ ବାଟେ ଗୋଟିଏ ପ୍ରବଳ ନଦୀ ସ୍ରୋତ ସମୁଦ୍ରକୁ ବୋହି ଯାଉଥିଲା । 'ପ୍ରାଚୀ ମାହାତ୍ମ୍ୟ'ରୁ ଜଣାଯାଏ ଯେ, ପ୍ରାଚୀନଦୀର ନାମ 'ସରସ୍ୱତୀ' ବା 'ଚିତ୍ରୋତ୍ପଳା' ଥିଲା । ଏହି ପ୍ରାଚୀ ସରସ୍ୱତୀ ମଧ୍ୟ ଅର୍କତୀର୍ଥ ବାଟେ ସମୁଦ୍ରରେ ପଡ଼ିଥିଲା । ଏମନ୍ତ କି କୁଶଭଦ୍ରା (ଯାହାକୁ ବର୍ତ୍ତମାନ ଲିଆଖିଆ କହନ୍ତି ଏବଂ ଯାହାର ମୁହାଣରେ ରାମଚଣ୍ଡୀ ଥିବାର ପୂର୍ବବର୍ତ୍ତୀ ଅଧ୍ୟାୟରେ କୁହାଯାଇଅଛି) ମଧ୍ୟ ପ୍ରାଚୀର ଅଂଶ ବିଶେଷ ଥିବାର ପ୍ରାଚୀ ମାହାତ୍ମ୍ୟର ବର୍ଣ୍ଣନାରୁ ଜଣାଯାଏ । ପ୍ରାଚୀନଦୀ ବର୍ତ୍ତମାନ ଦେଖିବାକୁ କୋଣାର୍କରୁ ପ୍ରାୟ ୮ ମାଇଲ ଦୂରରେ କୋଣାର୍କ ଓ ଦେବୀ ନଦୀ ମଧ୍ୟରେ ବୋହିଯାଏ । ପ୍ରାଚୀ ଖନତାପଡା ଗ୍ରାମ ନିକଟରୁ ବାହାରି ସମୁଦ୍ରରେ ପଡିଅଛି ଏବଂ ଏହା କୁଶଭଦ୍ରା ଓ କନ୍ଦଳ ନଦୀଦ୍ୱୟର ମଧ୍ୟବର୍ତ୍ତୀ ସମସ୍ତ ଭୂଭାଗର ଜଳ ବୋହିନିଏ । ପୁଣି ମୁହାଣ ନିକଟରେ ଏହା କାଦୁଆ ନଦୀ ସଙ୍ଗେ ମିଶିଅଛି । ବର୍ଷା ଋତୁରେ ବନ୍ୟା ପ୍ରବଳ ହେଲାବେଳେ କୁଶଭଦ୍ରାର ଜଳ ନିମାପଡ଼ା ନିକଟରେ ନଦୀବନ୍ଧ ଡେଇଁଯାଏ ଏବଂ କାଦୁଆରେ ଯାଇ ପଡ଼େ । ସୁତରାଂ ଅନୁମାନ ହୁଏ, କାଦୁଆ କୁଶଭଦ୍ରା ସଙ୍ଗେ ମିଶିଥିଲା ଏବଂ ଏହିରୂପେ କୁଶଭଦ୍ରା ମଧ୍ୟ ପ୍ରାଚୀ ସଙ୍ଗେ ମିଶିଥିବାରୁ 'ପ୍ରାଚୀମାହାତ୍ମ୍ୟ' କୁଶଭଦ୍ରାର ନିମ୍ନ ଅଂଶକୁ ପ୍ରାଚୀର ଅନ୍ତର୍ଭୁକ୍ତ କରିଥିଲେ । ପୁଣି କାଦୁଆର ମଧ୍ୟ ପୂର୍ବେ ଯୋଡ଼ିଏ ଶାଖା ଥିବାର ଅନୁମାନ ହୁଏ । ଗୋଟିଏ ଶାଖା ବର୍ତ୍ତମାନ କଲମକଣି ଗ୍ରାମର ପଶ୍ଚିମ ବାଟେ ବୋହିଯାଇ ସମୁଦ୍ରରେ ପଡିଥିଲା ଏବଂ ଅପର ଶାଖାଟି କନ୍ଦାଲୋ ଗ୍ରାମ ନିକଟରେ ପ୍ରାଚୀ ନଦୀରେ ପଡିଅଛି । ଏହା ବାଦ୍ ବର୍ତ୍ତମାନ ଚନ୍ଦ୍ରଭାଗା ମଧ୍ୟ ପୂର୍ବେ ଗୋଟିଏ ନଦୀ ଥିଲା ଏବଂ ତାହା କାଦୁଆରୁ ବାହାରି ଅନସରା ଗ୍ରାମବାଟେ କୋଣାର୍କର ବର୍ତ୍ତମାନ ମନ୍ଦିର ପାଖ ଦେଇ ସମୁଦ୍ରରେ ପଡିଥିଲା । ସୁତରାଂ ଏ ସମସ୍ତ ବିଚାର

କଲେ ଅନୁମାନ କରାଯାଏ ଯେ ପୂର୍ବେ ଏହି ପ୍ରାଚୀ ଏହାର ଶାଖାମାନଙ୍କୁ ନେଇ ଗୋଟିଏ ବଡ ପ୍ରବଳ ସ୍ରୋତ ଥିଲା ଏବଂ ଏହା ପୁରୀ ଜିଲ୍ଲାର ସର୍ବପ୍ରଧାନ ନଦୀ ଥିଲା । ମିଷ୍ଟର ଓ ମାଲୀ ପୁରୀର ଗେଜେଟିଅରରେ ମଧ ଏହି କଥା ବିଶ୍ୱାସ କରନ୍ତି ।

ଅନ୍ୟ ଆଡୁ ବିଚାର କଲେ ସୁଦ୍ଧା ପ୍ରାଚୀ ଗୋଟିଏ ବଡ଼ ନଦୀ ଥିବାର ଅନୁମାନ ହୁଏ । ମହାନଦୀର ଯେଉଁ ଜଳ କୁଆଖାଇ ନଦୀ ଦେଇ ପୁରୀ ଜିଲ୍ଲାକୁ ଆସେ, ସେ ସମସ୍ତ ଜଳ ସମୁଦ୍ରକୁ ବୋହି ନେବା ନିମନ୍ତେ ଦୟା, ଭାର୍ଗବୀ ଓ କୁଶଭଦ୍ରା ନଦୀ ତିନୋଟି । ପୂର୍ବେ କୁଆଖାଇରେ ଯେତେ ଜଳ ଆସୁଥିଲା, ବର୍ତ୍ତମାନ ସେତେ ଆସୁନାହିଁ । କାରଣ କୁଆଖାଇ କଟକ ପାଖରେ କାଠଯୋଡ଼ୀର ଯେଉଁଠାରୁ ବାହାରିଛି, ସେ ସ୍ଥାନ କ୍ରମେ କ୍ରମେ ପୋତି ହୋଇ ପଡୁଅଛି । ବର୍ତ୍ତମାନ କୁଆଖାଇର ମୁହଁ ଏତେ ଉଚ୍ଚ ହୋଇଗଲାଣି ଯେ କାଠଯୋଡ଼ୀରେ ବଢ଼ି ୧୫।୧୭ ଫୁଟ ଉଚ୍ଚ ନ ଉଠିଲେ କୁଆଖାଇକୁ ପାଣି ଆଦୌ ଆସେ ନାହିଁ । ସୁତରାଂ କୁଆଖାଇର ମୁହଁ ଯେତେବେଳେ କାଠଯୋଡ଼ୀର ଶଯ୍ୟା ସହିତ ସମାନ ଗଭୀର ଥିଲା, ସେତେବେଳେ କୁଆଖାଇକି ପାଣି ଆହୁରି ବେଶୀ ଆସୁଥିଲା; ସେହି ସମସ୍ତ ପାଣି ବୋହିନେବା ନିମନ୍ତେ ଦୟା, ଭାର୍ଗବୀ ପ୍ରଭୃତି ଯଥେଷ୍ଟ ନ ଥିଲା । କାରଣ ବର୍ତ୍ତମାନ ଯେଉଁ ପାଣି ଆସେ, ସେଥିରେ ମଧ ଭାର୍ଗବୀର ବନ୍ଧ ବାଡ଼ ଭାଙ୍ଗିଯାଏ । ଅତଏବ ଅନୁମାନ କରାଯାଏ ଯେ, ପୂର୍ବେ ପ୍ରାଚୀ ଓ ତାହାର ଶାଖାଗୁଡିକ ଯଥେଷ୍ଟ ବିସ୍ତୃତ ଓ ଗଭୀର ଥିଲା । କାଳକ୍ରମେ ପ୍ରାଚୀର ସ୍ରୋତ କ୍ଷୀଣ ହୋଇ ଯାଇଅଛି ଏବଂ ଦକ୍ଷିଣା ପବନ ଦ୍ୱାରା ବାଲି ଉଡ଼ି ପ୍ରାଚୀର କେତେଗୁଡିଏ ଶାଖା ମଧ ଲୋପ ପାଇଅଛି । ପୁରୀ ଜିଲ୍ଲାର ମାନଚିତ୍ରରୁ ଦେଖାଯାଏ ଯେ କୋଣାର୍କ ମନ୍ଦିରର କିଛିଦୂର ପଶ୍ଚିମରେ କାଦୁଆ ନଦୀର ଗୋଟିଏ ଶାଖା ବାଲିରେ ପୋତି ହୋଇ ପଡ଼ିଅଛି । ବାଲୁକା ରାଶି ଦ୍ୱାରା ନଦୀସ୍ରୋତର ବିକୃତି ହେବା କଥା ଲିଆଖିଆ ମୁହାଣ ଦେଖିଲେ ସ୍ପଷ୍ଟ ବୁଝାଯାଏ । କୁଶଭଦ୍ରାର ସ୍ରୋତ ସମୁଦ୍ର ଜୁଆର ଦ୍ୱାରା ପ୍ରତିହତ ହୋଇ ମୁହାଣର ଦକ୍ଷିଣ ପାଖରେ ଗୋଟିଏ ବାଲୁକା ପ୍ରାଚୀର ହୋଇଅଛି ଏବଂ ଦକ୍ଷିଣା ପବନ ଦ୍ୱାରା ଏହି ପ୍ରାଚୀର କ୍ରମେ କ୍ରମେ ନଦୀ ମଧ୍ୟକୁ ଏପରି ମାଡ଼ି ଯାଉଅଛି ଯେ, ନଦୀ ସେଠାରେ ଆଉ ପୂର୍ବଗାମୀ ନ ହୋଇ କ୍ରମେ ସମୁଦ୍ର କୂଳେ କୂଳେ ଉତ୍ତର-ପୂର୍ବ ଆଡ଼କୁ ଗତି କରୁଅଛି । ଅତଏବ ପ୍ରାଚୀର ଯେ କେତେକ ଶାଖା ପୂର୍ବେ ପ୍ରଶସ୍ତ ନଦୀ ଥିଲା, ବର୍ତ୍ତମାନ ତାହା ବାଲିରେ ପୋତି ହୋଇ ଲୁପ୍ତ ହୋଇଅଛି, ଏଥିରେ ସନ୍ଦେହ ନାହିଁ ।

ମାଦଳାପାଞ୍ଜିରୁ ଜଣାଯାଏ ଯେ ରାଜା ନରସିଂହ ଦେବ କୋଣାର୍କର ପୂର୍ବ ମନ୍ଦିର ଜୀର୍ଣ୍ଣ ହୋଇ ଯାଇଥିବାର ଦେଖି ଗୋଟିଏ ନୂତନ ମନ୍ଦିର ପଦ୍ମତୋଳା ନାମକ ଗଣ୍ଡରେ ତିଆରି କରାଇଲେ । ମନ୍ଦିର ନିର୍ମାଣ ବିଷୟରେ ଶିବାଇ ସାଆନ୍ତରାଙ୍କ ସମ୍ବନ୍ଧରେ ଯେ ଉକ୍ତି ଅଦ୍ୟାବଧି ପ୍ରଚଳିତ ଅଛି, ତାହା ପରେ (୧୩ଶ ଅଧ୍ୟାୟରେ) ଲେଖାଯିବ । ସେଥିରେ ଅନ୍ତତଃ ଜଣାଯାଏ ଯେ, ସେହି ପଦ୍ମତୋଳା ଗଣ୍ଡରେ ସେ ପଥର ପକାଇ ଦେଉଳର

ମୂଳପତନ କରୁଥିଲେ ଏବଂ ସେଥିରୁ ଆହୁରି ମଧ୍ୟ ଜଣାଯାଏ ଯେ, ସେ ଯେଉଁ ପଥର ପକାଉଥିଲେ, ତାହା ଭସାଇ ନେବା ନିମନ୍ତେ ସେ ଗଣ୍ଡ ପାଖରେ ସ୍ରୋତ ଥିଲା । ବିଶେଷତଃ କୋଣାର୍କରେ ଯେଉଁସବୁ ବଡ଼ ବଡ଼ ପଥରମାନଙ୍କରେ କାମ ହୋଇଥିଲା, ତାହା ଦେଖିଲେ ଅନୁମାନ ମଧ୍ୟ ହୁଏ ଯେ, ସେ ସ୍ରୋତ ଅତ୍ୟନ୍ତ ପ୍ରଖର ଥିଲା ।

କୋଣାର୍କ ମନ୍ଦିରରେ ଯେଉଁ ବଡ଼ ବଡ଼ ପଥରରେ କାର୍ଯ୍ୟ ହୋଇଥିଲା, ତାହାରି କିଞ୍ଚିତ୍ ଆଭାସ ପରେ (୧୩ଶ ଅଧ୍ୟାୟରେ) ଦିଆଯିବ । କୋଣାର୍କ ନିକଟରେ ସେଭଳି ପଥର ମିଳିବାର ଉପଯୁକ୍ତ ପାହାଡ଼ ନାହିଁ କି ନ ଥିଲା । ସେସବୁ ପଥର ବୋହି ଆଣିବା ନିମନ୍ତେ କୌଣସି ଯାନାଦି ସୁବିଧାଜନକ ବୋଲି ଅନୁମାନ କରାଯାଇ ନ ପାରେ । ସେସବୁ ନିଶ୍ଚୟ କୌଣସି ଜଳପଥରେ ଆସିଥିବା ସମ୍ଭବ । ଯେଉଁ ନଦୀ କୋଣାର୍କର ପଶ୍ଚିମରେ ଲୁପ୍ତ ହୋଇ ଥିବାର ପୂର୍ବେ ମୁଁ ଲେଖିଅଛି, ତହିଁରେ ପଥର ସବୁ ବୋହି ନେଉଥିବାର ଜଣାଯାଏ । କୋଣାର୍କର ପ୍ରାୟ ଦୁଇ ମାଇଲ ପଶ୍ଚିମରେ ଖରାଗାଁର ବାଡ଼ି ତଳେ ସେହି ନଦୀଧାରର ଅବଶେଷ ଗୋଟିଏ ଯୋଡ଼ ଆକାରରେ ବର୍ତ୍ତମାନ ପର୍ଯ୍ୟନ୍ତ ମଧ୍ୟ ଦେଖିବାକୁ ମିଳେ । ସେଠାରେ ମୁଁ ବୁଝିଲି ଯେ ଗ୍ରୀଷ୍ମ କାଳରେ ସେ ଯୋଡ଼ ଶୁଖିଗଲେ ଖରାଗାଁବାସୀ ତହିଁରୁ ମାଟି ନେଇ ବାଡ଼ି ବଗିଚା କରନ୍ତି ଏବଂ ଖୋଳିବାବେଳେ ତହିଁରୁ କୋଣାର୍କ ପଥର ଭଳି ବଡ଼ ବଡ଼ ପଥରମାନ ବାହାରେ । ସେହି ଗ୍ରାମବାସୀମାନେ ମଧ୍ୟ କହନ୍ତି, ଏହି ନଦୀ ବାଟେ ପୂର୍ବେ କୋଣାର୍କକୁ ପଥର ବୁହା ହେଉଥିଲା । ଅତଏବ ଏହି ନଦୀ ପୂର୍ବେ କେବଳ ସୁଗଭୀର ଓ ପ୍ରଶସ୍ତ ଯେ ଥିଲା ତାହା ନୁହେଁ, ଏହା ବୃହତ୍ ନୌଯାନ ଗତାୟାତ ପକ୍ଷରେ ଯଥେଷ୍ଟ ଉପଯୁକ୍ତ ମଧ୍ୟ ଥିଲା ।

ଯେଉଁ ସମୟର କଥା କୁହା ଯାଉଅଛି, ଓଡ଼ିଶା ସେତେବେଳେ ବାଣିଜ୍ୟ ପ୍ରଧାନ ଦେଶ ଥିଲା । ଓଡିଆ ବଣିକମାନେ ବାଣିଜ୍ୟ ଉଦ୍ଦେଶ୍ୟରେ ଦେଶ ଦେଶାନ୍ତର ଯାଉଥିଲେ । ଓଡ଼ିଆମାନେ ଜାଭା ଓ ବାଲିଦ୍ୱୀପକୁ ବାଣିଜ୍ୟ କରି ଯାଉଥିବା ଇତିହାସ ପ୍ରସିଦ୍ଧ । କୋଣାର୍କର ନିକଟବର୍ତ୍ତୀ ଅଞ୍ଚଳବାସୀ ଯେ ପରିମାଣରେ ବାଣିଜ୍ୟ ବ୍ୟବସାୟରେ ରତ, ସେଥିରୁ ଅନୁମାନ କରାଯାଏ ଯେ ପୂର୍ବେ ସେମାନଙ୍କର ବାଣିଜ୍ୟ ଦ୍ୱାରା ସେ ଅଞ୍ଚଳର ନଦୀମାନ ବ୍ୟବହୃତ ହେଉଥିଲା ଏବଂ ସେହି ନଦୀମୁହାଣମାନଙ୍କରୁ ବାଣିଜ୍ୟ ଦ୍ରବ୍ୟ ସମୁଦ୍ର ଉପରେ ଅନ୍ୟ ଦେଶକୁ ଯାଉଥିଲା । ଏହି ଅଞ୍ଚଳର ବାଣିଜ୍ୟଦ୍ରବ୍ୟ ମଧ୍ୟରେ ଲୁଣ ଆମଦାନୀ ବର୍ତ୍ତମାନ ଶୁଣିବାକୁ ମିଳେ । ପୂର୍ବେ ଏହି ଅଞ୍ଚଳରେ କେତେ ଲୁଣ ଆମଦାନୀ ହେଉଥିଲା, ତାହା ଜାଣିବା ବର୍ତ୍ତମାନ ସାଧ୍ୟାତୀତ । ତେବେ ଏହି କଥା ଅବଶ୍ୟ ସ୍ୱୀକାର କରିବାକୁ ହେବ ଯେ, କୋଣାର୍କ ସମୟରେ ଅର୍ଥାତ୍ ଗଙ୍ଗବଂଶୀୟ ରାଜତ୍ୱରେ ଯେଉଁ ଲୁଣ ବ୍ୟବସାୟ ଥିଲା, ତାହା କ୍ରମେ କ୍ରମେ ଅବନତ ହୋଇ ଇଂରେଜ ଆଗମନ ସମୟକୁ ବିଲୁପ୍ତ ପ୍ରାୟ ହୋଇଥିଲା । ତଥାପି ଷ୍ଟର୍ଲିଙ୍ଗ କହିଅଛନ୍ତି, ଇଂରେଜ ଶାସନର ପ୍ରଥମ ଅବସ୍ଥାରେ ଓଡ଼ିଶାର

ସମୁଦ୍ରତୀରବର୍ତ୍ତୀ ଅଞ୍ଚଳରୁ ଯେଉଁ ଲୁଣ ଆମଦାନୀ କରାଯାଉଥିଲା, ସମୁଦାୟ ଭାରତବର୍ଷରେ ତାହା ସର୍ବୋତ୍କୃଷ୍ଟ ଏବଂ ଇଷ୍ଟ ଇଣ୍ଡିଆ କୋମ୍ପାନୀ ବ୍ୟବସାୟରେ ଏକାଧିପତ୍ୟ ରକ୍ଷା କରିବା କାରଣ ସମସ୍ତ ଖର୍ଚ୍ଚ ବ୍ୟତୀତ ଅସଲ ପ୍ରାୟ ୧୮ ଲକ୍ଷ ଟଙ୍କା ବାର୍ଷିକ ଲୁଣ କର ପାଉଥିଲେ । ହଣ୍ଟର ମଧ ଲେଖିଅଛନ୍ତି ଯେ ତାହାଙ୍କ ସମୟରେ (୧୮୭୦ ଖ୍ରୀଷ୍ଟାବ୍ଦରୁ ୧୮୮୦ ପର୍ଯ୍ୟନ୍ତ) ଲୁଣ ପୁରୀର ପ୍ରଧାନ ଆମଦାନୀ ଥିଲା । ପୁରୀ ଗେଜେଟିଅରରୁ ପ୍ରକାଶ ଯେ ୧୮୯୬-୯୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ମଧ ଲୁଣ ବ୍ୟବସାୟ ବହୁ ଲୋକଙ୍କର ଜୀବିକା ଥିଲା ଏବଂ ସେହି ବର୍ଷ ୧,୯୫,୦୦୦ ମହଣ ଲୁଣ କେବଳ ପୁରୀ ଜିଲ୍ଲାରୁ ଆମଦାନୀ ହୋଇଥିଲା । ଯୁଣେଇ କୋଣାର୍କର ୧୪ ମାଇଲ ଦୂରରେ ପୂର୍ବୋକ୍ତ ଲୁପ୍ତନଦୀ ଉପରେ ଅବସ୍ଥିତ । ଲୁଣ ଗୋଦାମ ନିମନ୍ତେ ଏହା ବର୍ତ୍ତମାନ ପର୍ଯ୍ୟନ୍ତ ମଧ ପ୍ରସିଦ୍ଧ ଥିଲା । ୧୯୦୮ ଖ୍ରୀଷ୍ଟାବ୍ଦରେ ଦୁର୍ଭିକ୍ଷ ସାହାଯ୍ୟ ବଣ୍ଟନ ନିମନ୍ତେ ଯିବା ସମୟରେ ମରିଚପୁର ପ୍ରଭୃତି ଅଞ୍ଚଳବାସୀଙ୍କ ମୁଖରୁ ଶୁଣାଗଲା ଯେ, ସେ ଅଞ୍ଚଳରେ ଶସ୍ୟ ସାଧାରଣତଃ ଭଲ ହୁଏନାହିଁ ଏବଂ ସେମାନେ ମଧ ଚାଷବାସ ସେତେ ଜାଣନ୍ତି ନାହିଁ । ସେମାନଙ୍କର ପ୍ରଧାନ ଜୀବିକା ଲୁଣ ବ୍ୟବସାୟ । ସେ ବ୍ୟବସାୟ ଏକାବେଳକେ ବନ୍ଦ ହୋଇ ଯିବାରୁ ସେମାନେ ଅନନ୍ୟୋପାୟ ହୋଇ ଦୁର୍ଭିକ୍ଷ କବଳରେ ବାରମ୍ବାର ପଡୁଅଛନ୍ତି । ମାନ୍ଦ୍ରାଜ ଅଞ୍ଚଳରୁ ଲୁଣ ଆସି ଶସ୍ତାରେ ବିକ୍ରି ହେବାରୁ ଏବଂ ଲିଭରପୁର ଲୁଣ ବିନା ଭଡ଼ାରେ ଜାହାଜର Balast ରୂପେ ଆସିବାରୁ ପୁରୀ ଜିଲ୍ଲାର ଲୁଣ ଆମଦାନୀ ବନ୍ଦ ହୋଇ ଆସିଲା ଏବଂ ୧୮୯୯-୧୯୦୦ ଖ୍ରୀଷ୍ଟାବ୍ଦରେ ଲୁଣ ବ୍ୟବସାୟ ଏକାବେଳକେ ବନ୍ଦ ହୋଇଯିବାରୁ ବହୁ ବ୍ୟବସାୟୀ ବର୍ତ୍ତମାନ ନିରନ୍ନ ଅବସ୍ଥାରେ ପଡ଼ି ହାହାକାର କରୁଅଛନ୍ତି ।

ଲୁଣ ବ୍ୟବସାୟର ସ୍ମୃତି ଲୋକଙ୍କ ମନରେ କିଛି କିଛି ଥିବାରୁ ତା'ର ଅସ୍ତିତ୍ୱ ଅନୁମାନ କରାଯାଉଅଛି । ଏହିପରି ଆଉ କେତେ ବାଣିଜ୍ୟ ପ୍ରାଚୀ ଓ ତାହାର ଶାଖା ମୁହାଣମାନଙ୍କ ନିକଟରେ ହେଉଥିଲା; କାଳ ସ୍ରୋତରେ ତାହା ମନୁଷ୍ୟ ସ୍ମୃତିରୁ ମଧ ଭାସି ଯାଇଅଛି । ଲୋକମୁଖରେ ଅଦ୍ୟାପି ଶୁଣାଯାଏ ଯେ ପ୍ରାଚୀ ମୁହାଣରେ ଗୋଟିଏ ପୁରାତନ ବନ୍ଦର ଥିଲା । କୋଣାର୍କର ନିକଟବର୍ତ୍ତୀ ଯୁଣେଇ ନାମକ ସ୍ଥାନରେ ଗୋଟିଏ ପ୍ରସିଦ୍ଧ ଲୁଣଗୋଦାମ ଥିବା ଏବଂ ତାହା ଅଳ୍ପ ଦିନ ହେଲା ଉଠି ଯାଇଥିବା କୋଣାର୍କରେ ଶୁଣାଯାଏ । ସୁତରାଂ ପ୍ରାଚୀର ଶାଖା ଚନ୍ଦ୍ରଭାଗା କୂଳ ମଧ ଲୁଣ ବାଣିଜ୍ୟ ନିମନ୍ତେ ପ୍ରସିଦ୍ଧ ଥିଲା । ଚନ୍ଦ୍ରଭାଗା ନଦୀସ୍ରୋତର ଲୋପ ସଙ୍ଗେ ସଙ୍ଗେ ତାହାର ବାଣିଜ୍ୟମାନ ମଧ ଲୋପ ପାଇଅଛି ସତ; ତଥାପି ପୂର୍ବେ ଚନ୍ଦ୍ରଭାଗା ମୁହାଣ ନିକଟରେ କୋଣାର୍କ ଓ ତାହାର ନିକଟବର୍ତ୍ତୀ ଅଞ୍ଚଳ ବାଣିଜ୍ୟର ଯେ ଗୋଟିଏ ପ୍ରଧାନ କେନ୍ଦ୍ର ଥିଲା, ସନ୍ଦେହ ନାହିଁ ।

ବର୍ତ୍ତମାନ ମନ୍ଦିର କୋଣାର୍କର କେବଳ ଏକମାତ୍ର ମନ୍ଦିର ନ ଥିଲା । ଶାମ୍ବ ଉପାଖ୍ୟାନରେ ଲେଖାଅଛି ଯେ, ଶାମ୍ବ ସୂର୍ଯ୍ୟଦେବଙ୍କ ନିମନ୍ତେ ମନ୍ଦିର ନିର୍ମାଣ କରିଥିଲେ ।

ଏହାକୁ କେବଳ ପୌରାଣିକ ବୋଲି ଉପେକ୍ଷା କଲେ ମଧ ମାଦଳା ପାଞ୍ଜିରୁ ଜଣାଯାଏ ଯେ, କେଶରୀ ବଂଶର ୪୪ ଜଣ ରାଜାଙ୍କ ମଧ୍ୟରୁ ତ୍ରିଂଶତମ ରାଜା ପୁରନ୍ଦର କେଶରୀ ସୂର୍ଯ୍ୟଦେବଙ୍କର ମନ୍ଦିର ନିର୍ମାଣ କଲେ ଏବଂ ମନ୍ଦିରର ନିକଟବର୍ତ୍ତୀ ଅଞ୍ଚଳରେ ଆଠଟି ବ୍ରାହ୍ମଣ ଶାସନ ବସାଇଥିଲେ । ପାଞ୍ଜିରୁ ମଧ ଆହୁରି ଜଣାଯାଏ ଯେ ପୁରନ୍ଦରଙ୍କ ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ କେଶରୀ ଓ ଗଙ୍ଗବଂଶୀୟ ରାଜାମାନେ ବହୁ ପୁରାତନ ଯୁଗରୁ କୋଣାର୍କରେ ସୂର୍ଯ୍ୟ-ଉପାସନା କରି ଆସୁଥିଲେ । ପୁଣି ଦ୍ୱିତୀୟ ଅଧ୍ୟାୟର ପ୍ରାରମ୍ଭରେ ଲେଖା ଯାଇଅଛି ଯେ, ଗୟାସୁରକୁ ମାରି ବିଷ୍ଣୁ କୋଣାର୍କରେ ବିଜୟ ଚିହ୍ନସ୍ୱରୂପ ଆପଣାର ପଦ୍ମ ରଖିଥିବାରୁ ଏହାର ନାମାନ୍ତର 'ପଦ୍ମକ୍ଷେତ୍ର' ହୋଇଥିଲା । ସୁତରାଂ ଅନ୍ୟାନ୍ୟ କ୍ଷେତ୍ର ପୁରୀ, ଭୁବନେଶ୍ୱର, ଯାଜପୁର ପରି କୋଣାର୍କ ମଧ ସେତେବେଳେ ସମୁନ୍ନତ ଥିଲା । ଉପରୋକ୍ତ ତିନି କ୍ଷେତ୍ରରେ ରାଜା ସାମୟିକ ରାଜଧାନୀ କରୁଥିଲେ । ସୁତରାଂ କୋଣାର୍କରେ ଆଉ କିଛି ଅଧିକ ନ ଥିଲେ ମଧ ରାଜାଙ୍କର ଗୋଟିଏ ସାମୟିକ ରାଜଧାନୀ ଥିଲା ଏବଂ ପୁରୀ, ଭୁବନେଶ୍ୱର ପ୍ରଭୃତି ସେ ସମୟରେ ଯେପରି ଲୋକପ୍ରସିଦ୍ଧ ଓ ଜନାକୀର୍ଣ୍ଣ ରାଜଧାନୀ ଥିଲା, କୋଣାର୍କ ଅଧିକ ନ ହେଲେ ମଧ ସେହିପରି ଅନ୍ତତଃ ଗୋଟିଏ ବିଖ୍ୟାତ ଓ ଲୋକାରଣ୍ୟ ରାଜଧାନୀ ଥିଲା ବୋଲି ଅବଶ୍ୟ ସ୍ୱୀକାର କରିବାକୁ ହେବ ।

ପ୍ରସିଦ୍ଧ ଚୀନ ପରିବ୍ରାଜକ ହୁଏନ୍‌ସାଂ ୬୩୪ ଖ୍ରୀଷ୍ଟାବ୍ଦରୁ ୬୪୯ ମଧ୍ୟରେ ଭାରତ ପରିଭ୍ରମଣ କରିଥିଲେ । ସେଥିମଧ୍ୟରେ ସେ ଓଡ଼ିଶା ପରିଦର୍ଶନ କରିଥିଲେ । ସେତେବେଳେ 'ଚେଳିତାଲୋ' ନାମରେ ଗୋଟିଏ ସହର ଓଡ଼ିଶାର ରାଜଧାନୀ ଥିବାର ସେ ଲେଖିଛନ୍ତି । ଏହି ଚେଳିତାଲୋ ନଗର କେଉଁଠାରେ ଥିଲା, ସ୍ଥିର କରିବା ବିଷୟରେ ଓଡ଼ିଶାର ଇତିହାସ ଲେଖକଗଣଙ୍କ ମଧ୍ୟରେ ଘୋର ବିବାଦ ଉପସ୍ଥିତ ହୋଇଅଛି । ହୁଏନ୍‌ସାଂଙ୍କ ବର୍ଣ୍ଣନା ଅନୁସାରେ ଏହି ନଗର ବିଶେଷ ଉନ୍ନତ ଓ ସମୃଦ୍ଧିଶାଳୀ ଥିବାର ଜଣାଯାଏ । ହୁଏନ୍‌ସାଂ ନିମ୍ନଲିଖିତ ଭାବରେ ଏହାର ବର୍ଣ୍ଣନା କରିଅଛନ୍ତି :—

"ଉଚ (ବା ଓଡ୍ର, ଓଡ଼ିଶା) ଦେଶର ଦକ୍ଷିଣ-ପୂର୍ବ ସୀମାରେ ସମୁଦ୍ର କୂଳରେ ଚେଳିତାଲୋ ନାମକ ଗୋଟିଏ ରାଜଧାନୀ ଅଛି । ଏହାର ଚାରିପାଖର ପରିଧି ପ୍ରାୟ ୨୦ ଲି (ବା ୩୨ ମାଇଲ) । ଏହି ସ୍ଥାନରୁ ବଣିକମାନେ ବିଭିନ୍ନ ଦେଶକୁ ବାଣିଜ୍ୟ ଉଦ୍ଦେଶ୍ୟରେ ଯାତ୍ରା କରନ୍ତି । ଏହି ସ୍ଥାନକୁ ମଧ ବିଦେଶୀମାନେ ଯାତାୟାତ କରନ୍ତି ଏବଂ ଯିବା ଆସିବା ପଥରେ ଏହି ସ୍ଥାନରେ ରହନ୍ତି । ଏହି ନଗରର ପ୍ରାଚୀର ଶକ୍ତ ଓ ଉଚ୍ଚ । ଏହିଠାରେ ସକଳ ପ୍ରକାର ଦୁଷ୍ପ୍ରାପ୍ୟ ଓ ଦୁର୍ମୂଲ୍ୟ ପଦାର୍ଥ ମିଳେ । ଏହି ନଗରର ବହିର୍ଦ୍ଦେଶରେ ଗୋଟି ଗୋଟି ହୋଇ ପାଞ୍ଚଟି ବୌଦ୍ଧ ମଠ ଅଛି । ସେଗୁଡ଼ିକ ଅତି ଉଚ୍ଚ ଏବଂ ସନ୍ନ୍ୟାସୀମାନଙ୍କର ଅତି ସୁନ୍ଦର ପ୍ରତିମୂର୍ତ୍ତି ସେମାନଙ୍କ ଦେହରେ ଖୋଳା ହୋଇଅଛି ।"

ଶ୍ରୀ ବିଷନ୍ ସ୍ୱରୂପ ହୁଏନ୍‌ସାଂଙ୍କ ଚେଲିତାଲୋକୁ ପ୍ରାଚୀତୀରବର୍ତ୍ତୀ ମନେକରନ୍ତି ଏବଂ ତାହାଙ୍କ ମତରେ ଏହା ସେତେବେଳେ ପୁରୀଠାରୁ ମଧ୍ୟ ଉନ୍ନତତର ଥିଲା । ଜେନେରାଲ କନିଙ୍ଗହାମ୍ ଏହାକୁ ଭୁବନେଶ୍ୱର ମନେକରନ୍ତି । ରାଜେନ୍ଦ୍ର ଲାଲ ମିତ୍ର କନିଙ୍ଗହାମ୍‌ଙ୍କ ମତ ସମ୍ପୂର୍ଣ୍ଣ ଭ୍ରମାତ୍ମକ ମନେକରି ପ୍ରମାଣ କରିଅଛନ୍ତ ଯେ, ହୁଏନ୍‌ସାଂଙ୍କ ଚେଲିତାଲୋ ଯାଜପୁର ବ୍ୟତୀତ ଅନ୍ୟ କିଛି ନୁହେଁ । କନିଙ୍ଗହାମ୍‌ଙ୍କର ଯେ ଭ୍ରମ, ରାଜେନ୍ଦ୍ର ଲାଲଙ୍କର ମଧ୍ୟ ତାହାଠାରୁ ଉତ୍କଟତର ଭ୍ରମ । ପ୍ରଥମରେ 'ଚେଲିତାଲୋ' ସହିତ ଯାଜପୁରର କୌଣସି ଅକ୍ଷରଗତ ସମ୍ବନ୍ଧ ନାହିଁ କିମ୍ବା ଯାଜପୁରର କେବେ ଏପରି ନାମ ନ ଥିଲା, ଯାହା 'ଚେଲିତାଲୋ' ବୋଲି ଲେଖାଯାଇପାରେ । ପୁଣି ହୁଏନ୍‌ସାଂଙ୍କ ବର୍ଣ୍ଣନା ଯେ, ଚେଲିତାଲୋ ଗୋଟିଏ ବଡ଼ ବନ୍ଦର, ନାନା ଦେଶର ବଣିକମାନଙ୍କର ଗୋଟିଏ ପେଣ୍ଠ ଏବଂ ତାହା ଦକ୍ଷିଣ-ପୂର୍ବ ସମୁଦ୍ର କୂଳବର୍ତ୍ତୀ ଥିଲା । ଯାଜପୁର କେତେବେଳେ ନାନା ବିଦେଶୀଙ୍କ ସମାଗମ ସ୍ଥଳ ବଡ଼ ବନ୍ଦର ଥାଇପାରେ; କିନ୍ତୁ ତାହା କଦାପି ସମୁଦ୍ର କୂଳରେ ନାହିଁ କିମ୍ବା କେବେ ନ ଥିଲା ।

କେହି କେହି ମଧ୍ୟ ଚେଲିତାଲୋକୁ ପୁରୀ ମନେ କରନ୍ତି ଏବଂ ଏହା ସହିତ ଅନ୍ୟାନ୍ୟ କାରଣ ମିଶାଇ ପୁରୀ ଗୋଟିଏ ବୌଦ୍ଧପୀଠ ଥିବାର ପ୍ରମାଣ କରନ୍ତି । ପୁରୀ ବୌଦ୍ଧଧର୍ମର କେନ୍ଦ୍ର ସ୍ଥଳ ଥିବା ନ ଥିବା ସ୍ଥଳରେ ପ୍ରମାଣ କରାଯାଉ ନାହିଁ; କିନ୍ତୁ ପୁରୀ 'ଚେଲିତାଲୋ' ନ ଥିଲା, ଏହା ଧ୍ରୁବ । ପୁରୀର ନାମ ସବୁ ସମୟରେ ଶ୍ରୀକ୍ଷେତ୍ର ବା ପୁରୁଷୋତ୍ତମ । ତାହା ସହିତ 'ଚେଲିତାଲୋ'ର କୌଣସି ଆକ୍ଷରିକ ସମ୍ବନ୍ଧ ନାହିଁ । ହୁଏନ୍‌ସାଂ ଯାହାକୁ 'ଚେଲିତାଲୋ' କହିଅଛନ୍ତି, ତାହାର ଏଭଳି କିଛି ନାମ ଥିଲା, ଯାହାକୁ ଚୀନଭାଷୀ ପରିବ୍ରାଜକ ଚେଲିତାଲୋ ଉଚ୍ଚାରଣ କରି ଲେଖିଥିଲେ । ପୁରୀ, ଯାଜପୁର ବା ଭୁବନେଶ୍ୱରକୁ 'ଚେଲିତାଲୋ' କରି ଲେଖିଥିବା ସମ୍ପୂର୍ଣ୍ଣ ଅମୂଳକ ।

ସୁତରାଂ ଶ୍ରୀ ବିଷନ୍ ସ୍ୱରୂପ 'ଚେଲିତାଲୋ'କୁ ଚିତ୍ରୋତ୍ପଳା ମନେ କରନ୍ତି । ଚିତ୍ରୋତ୍ପଳାକୁ ଚୀନଭାଷୀ ହୁଏନ୍‌ସାଂ 'ଚେଲିତାଲୋ' କରି ଉଚ୍ଚାରଣ କରିଥିବା ସମ୍ପୂର୍ଣ୍ଣ ସମ୍ଭବ ବୋଧହୁଏ । ଏହି ଚିତ୍ରୋତ୍ପଳା ନଗରର ଅସ୍ତିତ୍ୱ 'ପ୍ରାଚୀମାହାତ୍ମ୍ୟ'ରୁ ଅନୁମାନ କରାଯାଏ । 'ମାହାତ୍ମ୍ୟ'ରୁ ଜଣାଯାଏ ଯେ, ପ୍ରାଚୀ ନଦୀର ଶାଖା କାଦୁଆ ଚିତ୍ରୋତ୍ପଳା ନାମରେ ପରିଚିତ ଥିଲା । ଏହାର ପ୍ରଥମ ଅଧ୍ୟାୟରେ ବର୍ଣ୍ଣିତ ଅଛି ଯେ, ସ୍ୱର୍ଗଲୋକର ନଦୀ ସରସ୍ୱତୀ ନାନା ରୂପ ଧରି ଶେଷରେ ମହାନଦୀରେ ଜାତ ହେଲେ ଏବଂ ପ୍ରାଚୀ ରୂପରେ ବୋହି ଯାଇ ପଶ୍ଚିମ ବାହିନୀ ହେଲା ପରେ 'ଭଦ୍ରା' ଓ ଚିତ୍ରୋତ୍ପଳା' ନାମ ଧାରଣ କଲେ । କାଦୁଆ ଯେଉଁଠାରେ ପ୍ରାଚୀରୁ ବାହାରିଛି, ସେଠାରେ 'ଭଦ୍ରା' ନାମରେ ବର୍ତ୍ତମାନ ମଧ୍ୟ ଗୋଟିଏ ଗ୍ରାମ ଅଛି । କାଦୁଆ ଭଦ୍ରା ନାମରେ କେତେକ ଦୂର ବୋହି ଆସିବା ପରେ 'ଚିତ୍ରୋତ୍ପଳା' ନାମରେ ପରିଚିତ ହୋଇଥିଲା । ସୁତରାଂ ଏହି 'ଚିତ୍ରୋତ୍ପଳା' ଚନ୍ଦ୍ରଭାଗା ଥିଲା, ଏଥିରେ ସନ୍ଦେହ ନାହିଁ । ଚନ୍ଦ୍ରଭାଗା ମଧ୍ୟ ପୂର୍ବେ ଯେପରି କୁହା ଯାଇଅଛି, କାଦୁଆରୁ ବାହାରି କୋଣାର୍କ

ନିକଟରେ ଲୋପ ପାଇଅଛି । ବର୍ତ୍ତମାନ ମଧ୍ୟ ଚନ୍ଦ୍ରଭାଗାକୁ 'କାଦୁଆଝର' ବୋଲି ଲୋକେ କହନ୍ତି । 'ଚିତ୍ରୋତ୍ପଳା'ର ଉତ୍ପତ୍ତି ସମ୍ବନ୍ଧରେ 'ପ୍ରାଚୀମାହାତ୍ମ୍ୟ' ଲେଖି ଅଛନ୍ତି :—

''ପୂର୍ବ କାଳରେ ପ୍ରାଚୀତୀରେ । ଚିତ୍ର ଚାଣ୍ଡାଳ ପୁରକରେ ॥
ସର୍ବ ଜନରେ ନିଷ୍ଠାପର । ହୋଇ ସେଠାରେ କରେ ଘର ॥
ତା' ସଙ୍ଗେ କଶ୍ଚିତ୍ ଦ୍ୱିଜନାରୀ । ଉତ୍ପଳା ନାମେ ସେ କୁମାରୀ ॥
ବିହାର କରେ ତା ସଙ୍ଗରେ । ପତ୍ନୀ ଭାବରେ ନିରନ୍ତରେ ॥
ପୂର୍ବ ଜନ୍ମର ପାପବଳେ । ସନ୍ତାନହୀନ ହେଲା କାଳେ ॥
ଏରୂପେ କେତେ କାଳ ଗଲା । ମରଣ କାଳ ଆସି ହେଲା ॥
ଚିତ୍ର-ଉତ୍ପଳା ଦୁହିଙ୍କର । ଜୀବ ଛାଡିଲା କଳେବର ॥
ସେ ଦୁହିଙ୍କର ଦ୍ରବୁ ଜାତ । ସେ ନଦୀ ସେ ଦିନୁଁ ବିଖ୍ୟାତ ॥
× × × ×
ଚିତ୍ରକ ଉତ୍ପଳା ନାମରେ । ଲିଙ୍ଗ ହୋଇଲେ ଦୁଇ ତୀରେ ॥
କହିଲି ଦ୍ୱିଜବରମାନେ । ଚିତ୍ର-ଉତ୍ପଳା ହେଲା ନାମେ ॥

— ୨ୟ ଅଧ୍ୟାୟ (୭ - ୧୭)

ଅତଏବ ଚିତ୍ରୋତ୍ପଳା ଯେ କାଦୁଆ ନଦୀର ଲୁପ୍ତ ଶାଖା ଚନ୍ଦ୍ରଭାଗା, ଏଥିରେ ସନ୍ଦେହ ନାହିଁ । ବର୍ତ୍ତମାନ ମଧ୍ୟ କାଦୁଆର ଯେଉଁଠାରୁ ଚନ୍ଦ୍ରଭାଗା ବାହାରିଛି, ସେଠାରେ 'ଚିତ୍ର' ଓ 'ଉତ୍ପଳା' ନାମରେ ଦୁଇ ଗୋଟି ଗ୍ରାମ ନଦୀର ଦୁଇ ପାଖରେ ଥିବାର ଶୁଣାଯାଏ ଏବଂ କୋଣାର୍କର ଅଷ୍ଟଶମ୍ଭୁଙ୍କ ମଧ୍ୟରୁ ଚିତ୍ରେଶ୍ୱର ଓ ଉତ୍ପଳେଶ୍ୱର ଏହି ଦୁଇ ଗ୍ରାମରେ ଅଛନ୍ତି; ସୁତରାଂ ଏହି ଦୁଇ ଗ୍ରାମ ପୂର୍ବେ 'ଚିତ୍ରୋତ୍ପଳା' ନାମରେ ଗୋଟିଏ ପ୍ରଧାନ ନଗରରେ ପରିଣତ ଥିଲା ଏବଂ ଚନ୍ଦ୍ରଭାଗା ନଦୀ ବାଣିଜ୍ୟର ପ୍ରଧାନ ସହାୟ ଥିବାରୁ ଏହି ଚିତ୍ରୋତ୍ପଳା ମଧ୍ୟ ଗୋଟିଏ ପ୍ରଧାନ ବନ୍ଦର ଥିଲା । ପୁଣି କୋଣାର୍କର ଅଷ୍ଟଶମ୍ଭୁଙ୍କ ମଧ୍ୟରୁ ଦୁଇ ଶିବଲିଙ୍ଗ ଏହି ଚିତ୍ରୋତ୍ପଳାରେ ପ୍ରତିଷ୍ଠିତ ଥିବାରୁ ଅନୁମାନ ମଧ୍ୟ ହୁଏ ଯେ ଚିତ୍ରୋତ୍ପଳା ବନ୍ଦର ମଧ୍ୟରେ କୋଣାର୍କ ମଧ୍ୟ ଅନ୍ତର୍ଭୁକ୍ତ ଥିଲା । ହୁଏନ୍‌ସାଂ ଚିତ୍ରୋତ୍ପଳାର ବହିର୍ଦ୍ଦେଶରେ ବୃହତ୍ ବୌଦ୍ଧମଠମାନ ଦେଖିଥିଲେ । ଶ୍ରୀ ବିଷନ୍ ସ୍ୱରୂପ ମନେ କରନ୍ତି ଯେ, ଏହି ପାଞ୍ଚ ବୌଦ୍ଧମଠମାନଙ୍କ ମଧ୍ୟରୁ ନିଜେ କୋଣାର୍କ ମନ୍ଦିର ଅନ୍ୟତମ ଥିଲା । ଶ୍ରୀ ବିଷନ୍ ସ୍ୱରୂପ କୋଣାର୍କର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସର୍ବତ୍ର ବୌଦ୍ଧାବଶେଷ ଅନୁମାନ କରନ୍ତି । ପରବର୍ତ୍ତୀ ୧୧ଶ ଅଧ୍ୟାୟରେ ତାହାର ସବିଶେଷ ବିଚାର କରାଯିବ । ବର୍ତ୍ତମାନ ଅନ୍ତତଃ କୋଣାର୍କ ମନ୍ଦିରକୁ ଗୋଟିଏ ବୌଦ୍ଧମଠ ମନେ ନ କରି ଚିତ୍ରୋତ୍ପଳା କୂଳରେ ଅନ୍ୟ ମନ୍ଦିରମାନଙ୍କୁ ମୁଁ ଅନୁମାନ କରେ । କାରଣ କାଦୁଆ ଓ ପ୍ରାଚୀକୂଳରେ ବର୍ତ୍ତମାନ ମଧ୍ୟ ଅନେକ ମନ୍ଦିରର

ଭଗ୍ନାବଶେଷ ମିଳେ । ବୌଦ୍ଧମଠମାନ ସେହିପରି କାଦୁଆ କୂଳର ଅନ୍ୟ କୌଣସି ସ୍ଥାନରେ ହୋଇଥିବା ଅସମ୍ଭବ ନୁହେଁ ।

ପ୍ରବାଦ ଅଛି, ବୁଦ୍ଧଦେବଙ୍କ ମୃତ୍ୟୁ ପରେ ତାହାଙ୍କ ଦନ୍ତ କଳିଙ୍ଗ ରାଜ୍ୟର ଯେଉଁଠାରେ ଥିଲା, ତାହା ଦନ୍ତପୁର ନାମରେ ପରିଚିତ ଥିଲା । ରିଜ୍ ଡେଭିଡ଼ସ୍ କହନ୍ତି ଯେ ବୌଦ୍ଧଗ୍ରନ୍ଥ ନିକାୟରେ ଲେଖାଅଛି ଯେ ବୌଦ୍ଧ ଯୁଗର ଆରମ୍ଭରେ ଦନ୍ତପୁର କଳିଙ୍ଗର ରାଜଧାନୀ ଥିଲା ଏବଂ ଏହା ସମୁଦ୍ର ତୀରବର୍ତ୍ତୀ ଥିଲା । ଏହି ଦନ୍ତପୁରର ସ୍ଥାନ ନେଇ ପ୍ରତ୍ନତତ୍ତ୍ୱବିଦ୍‌ମାନଙ୍କ ମଧ୍ୟରେ ନାନା ମତଭେଦ ଦେଖାଯାଏ । କେହି ଦନ୍ତପୁରକୁ ରାଜମାହେନ୍ଦ୍ରୀ, କେହି ପୁରୀ, କେହି ଅଥବା ଦାନ୍ତନ ମନେ କରନ୍ତି । ଶ୍ରୀ ବିଷନ୍ ସ୍ୱରୂପଙ୍କ ମତରେ ଉପରୋକ୍ତ ଚିଡ୍ରୋପୂଳା ବା ତାହା ନିକଟରେ ଦନ୍ତପୁର ଥିଲା । ଏହିପରି ମତଭେଦ ମଧ୍ୟରେ ପ୍ରକୃତ ସମସ୍ୟାରେ ଉପସ୍ଥିତ ହେବା ନିମନ୍ତେ ବୁଦ୍ଧଦେବଙ୍କ ଦାନ୍ତର ଇତିବୃତ୍ତ ଜାଣିବା ଆବଶ୍ୟକ । ସିଂହଳ ବା ଲଙ୍କାରେ 'ଦନ୍ତବଂଶ' ନାମରେ ଗୋଟିଏ ଐତିହାସିକ ପଞ୍ଜିକା ବୌଦ୍ଧଯୁଗର ଆରମ୍ଭରୁ ରକ୍ଷିତ ଅଛି । ବୌଦ୍ଧ ଯୁଗର ଇତିହାସ ଲେଖିବା ନିମନ୍ତେ ରିଜ୍ ଡେଭିଡ଼ସ୍ ପ୍ରଭୃତି ଲେଖକମାନେ ସେହି 'ଦନ୍ତବଂଶ'ର ବହୁତ ଆଶ୍ରୟ ନେଇଅଛନ୍ତି । ସେହି ଦନ୍ତବଂଶରେ ବୁଦ୍ଧଦେବଙ୍କ ଦାନ୍ତ ବିଷୟରେ ନିମ୍ନଲିଖିତ ଉପାଖ୍ୟାନ ଲେଖାଅଛି :—

"ବୁଦ୍ଧଦେବଙ୍କ ମୃତ୍ୟୁ ପରେ କ୍ଷେମ ନାମରେ ଜଣେ ଶିଷ୍ୟ ତାହାଙ୍କ ଚିତାରୁ ବାମ ପାର୍ଶ୍ୱର ବିଣିଦାନ୍ତ ନେଇ କଳିଙ୍ଗ ରାଜା ବ୍ରହ୍ମଦତ୍ତଙ୍କୁ ରାଜଧାନୀ ଦନ୍ତପୁରରେ ଦେଇଥିଲେ । ବ୍ରହ୍ମଦତ୍ତ ଏହି ଦାନ୍ତର ପୂଜା ନିମନ୍ତେ ଗୋଟିଏ ପରମ ସୁନ୍ଦର ମନ୍ଦିର ନିର୍ମାଣ କରାଇଦେଲେ । ସେ ମନ୍ଦିରରେ ସୁନାଛିଆଣି ହୋଇଥିଲା, ମୁକ୍ତାମାଳା ନାନାସ୍ଥାନରେ ଖଞ୍ଜା ଥିଲା । ତାହାର ଉପରି ଭାଗରେ ଶତ ଶତ କୋଠରୀ ଥିଲା । ସେହି ମନ୍ଦିରର ମଣିମୁକ୍ତାମାନଙ୍କ ତେଜରେ ଚକ୍ଷୁ ଝଲସି ପଡୁଥିଲା । ପ୍ରଭାତକାଳୀନ ସୂର୍ଯ୍ୟ ପରି ସେମାନେ ଜ୍ୱଳନ୍ତ ଓ ଦୀପ୍ତିମାନ୍ ଦେଖା ଯାଉଥିଲେ । ଏହି ମନ୍ଦିର ସ୍ୱର୍ଗକୁ ଯିବା ଓ ନିର୍ବାଣ ପାଇବା ନିମନ୍ତେ ସୋପାନ ସ୍ୱରୂପ ଥିଲା । ରାଜା ସେହି ମନ୍ଦିର ମଧ୍ୟରେ ଦନ୍ତ ପାଇଁ ଯେଉଁ ସିଂହାସନ କରିଥିଲେ, ତାହା ମଧ୍ୟ ମଣିମୁକ୍ତାରେ ଜଳି ଉଠିଥିଲା । ସେହି ସ୍ଥାନରେ ଭଗବାନ ବୁଦ୍ଧଦେବଙ୍କର ଦନ୍ତ ସ୍ଥାପନ କରି ରାଜା ଯଥାବିଧି ଉପାସନା କରୁଥିଲେ । × × × × × । ବ୍ରହ୍ମଦତ୍ତଙ୍କ ଉତ୍ତରାଧିକାରୀମାନେ ପ୍ରାଚୀନ ପଦ୍ଧତି ଅନୁସାରେ ଦନ୍ତର ଉପାସନା କରି ଆସୁଥିଲେ । ଶେଷରେ ଗୁହଶିବ ରାଜା ହେଲେ (୩୭୦ ରୁ ୩୯୦ ଖ୍ରୀଷ୍ଟାବ୍ଦ) । ସେ ବାଳଚପଳ ଓ ଅବ୍ୟବସ୍ଥିତ-ଚିତ୍ତ ଥିଲେ । ସେ ନିଗନ୍ଥ ଅର୍ଥାତ୍ ବ୍ରାହ୍ମଣମାନଙ୍କୁ ବିଶେଷ ଭକ୍ତି କରୁଥିଲେ ଏବଂ ସେମାନଙ୍କୁ ବହୁ ଅନୁଗ୍ରହ ମଧ୍ୟ ଦେଖାଉଥିଲେ । ଦିନକରେ ଉକ୍ତ ଦାନ୍ତ ସମ୍ପର୍କରେ ଗୋଟିଏ ପର୍ବ ଉପଲକ୍ଷରେ ଆନନ୍ଦ ଉତ୍ସବ ହେଉଥିଲା । ସେହି ଉତ୍ସବ ମଧ୍ୟରେ ଦାନ୍ତର ଦେବୀ

ମାୟାରେ ପରିବର୍ତ୍ତିତ ହୋଇ ହଠାତ୍ ସେ ଦାନ୍ତର ଘନିଷ୍ଠ ଉପାସକ ହୋଇଗଲେ ଏବଂ ବ୍ରାହ୍ମଣମାନଙ୍କୁ ନିଜ ରାଜ୍ୟରୁ ତଡ଼ିଦେଲେ ।

''ଏହି ସମୟରେ ଜମ୍ବୁଦ୍ୱୀପର ରାଜା ପାଣ୍ଡୁ ପାଟଳୀପୁତ୍ରରେ ରାଜତ୍ୱ କରୁଥିଲେ । ଉକ୍ତ ବ୍ରାହ୍ମଣମାନେ ସେହି ରାଜାଙ୍କ ନିକଟକୁ ଗଲେ । ଶିବ, ବ୍ରହ୍ମା ଓ ଅନ୍ୟାନ୍ୟ ଦେବତାମାନଙ୍କର ଉପାସନା କରୁଥିବାରୁ ପାଣ୍ଡୁଙ୍କୁ ସେହି ବ୍ରାହ୍ମଣମାନେ ଅତ୍ୟନ୍ତ ପ୍ରଶଂସା କଲେ ଏବଂ ସେହି ଦେବତାମାନଙ୍କୁ ଅନାସ୍ଥା ଦେଖାଇ ଜଣେ ମୃତ ବ୍ୟକ୍ତିର ଅସ୍ଥି ପୂଜା କରୁଥିବାରୁ ପାଣ୍ଡୁଙ୍କ ଆଗରେ ଗୁହଶିବଙ୍କର ଘୋର ନିନ୍ଦା ରଚନା କଲେ । ପାଣ୍ଡୁ ଏହା ଶୁଣି ଘୋର ରାଗ କଲେ; କାରଣ ତାହାଙ୍କର ବିସ୍ତର ରାଜ୍ୟର ଜଣେ ସାମାନ୍ୟ ରାଜା ହୋଇ ଗୁହଶିବ ରାଜ୍ୟଧର୍ମର ଅବମାନନା କରୁଥିଲେ । ସେହି ଦାନ୍ତ ସହିତ ଗୁହଶିବଙ୍କୁ ପାଟଳୀପୁତ୍ରକୁ ଧରି ନେବା ନିମନ୍ତେ ପାଣ୍ଡୁ ଚିତ୍ରଯାନ ନାମକ ଜଣେ ସାହସୀ ସାମନ୍ତ ରାଜାଙ୍କୁ କଳିଙ୍ଗ ପଠାଇଲେ । ଚିତ୍ରଯାନ ଦନ୍ତ ଓ ତା'ର ମନ୍ଦିର ଦେଖି ଚମତ୍କୃତ ହୋଇଗଲେ ଏବଂ ଦୈବୀ ମାୟାବଳରେ ସେ ମଧ୍ୟ ନିଜେ ବୌଦ୍ଧ ପାଲଟିଗଲେ । ଯାହାହେଉ, ଗୁହଶିବ ଦୁର୍ବଳ ଥିବାରୁ ଚିତ୍ରଯାନ ସେହି 'ଦାନ୍ତ' ପାଟଳୀପୁତ୍ରକୁ ନେଇଗଲେ । ସେଠାରେ ମଧ୍ୟ ସେହି ଦାନ୍ତ କେତେ ଦୈବୀ ମାୟା ଦେଖାଇବାରୁ ପାଣ୍ଡୁ ନିଜେ ବିଚଳିତ ହୋଇଗଲେ । ତହୁଁ ବ୍ରାହ୍ମଣମାନେ ତାହାଙ୍କୁ ବୁଝାଇଦେଲେ ଯେ ଏହି ସଂସାରରେ ଜନାର୍ଦ୍ଦନଙ୍କର ନାନା ଅବତାର ଅଛି; ଯଥା — ରାମ ଇତ୍ୟାଦି । ଏହି ଅସ୍ଥି (ଦାନ୍ତ) ମଧ୍ୟ ଗୋଟିଏ ଅବତାର । ଏଥିରେ ପାଣ୍ଡୁ ଦାନ୍ତକୁ ଜନାର୍ଦ୍ଦନ ବୋଲି ଜ୍ଞାନ କରି ପୂଜା କଲେ ।

''ପାଣ୍ଡୁଙ୍କ ମୃତ୍ୟୁପରେ ଗୁହଶିବ ପୁନରାୟ ସେ ଦନ୍ତ ଆଣି ଆପଣା ରାଜଧାନୀର ପୂର୍ବ ମନ୍ଦିରରେ ରଖାଇଲେ; କିନ୍ତୁ ଏହା ସେ ଶାନ୍ତିରେ ବହୁ ଦିନ ରଖି ପାରିଲେ ନାହିଁ । ଖୀରଧାର ନାମରେ ଜଣେ ପ୍ରତିବେଶୀ ରାଜା ଏହି ଦାନ୍ତ ନିମନ୍ତେ ଗୁହଶିବଙ୍କ ରାଜ୍ୟକୁ ଆକ୍ରମଣ କଲେ । କିନ୍ତୁ ଖୀରଧାର ପରାସ୍ତ ଓ ନିହତ ହେଲେ । ତତ୍ପରେ ଖୀରଧାରଙ୍କ ପୁତୁରାମାନେ ଏକତ୍ର ହୋଇ ଗୁହଶିବଙ୍କୁ ଆକ୍ରମଣ କଲେ । ଇତିପୂର୍ବେ ଗୁହଶିବ ସ୍ୱୀୟ କନ୍ୟା ହେମମାଳାକୁ (ଦନ୍ତବଂଶର ଶ୍ୟାମ ଦେଶୀୟ ଅନୁବାଦ ଅନୁସାରେ 'ହେମଚନ୍ଦ୍ରା') ଉଜ୍ଜୟିନୀର ରାଜକୁମାର 'ଦନ୍ତକୁମାର'ଙ୍କୁ ବିବାହ ଦେଇଥିଲେ । ଏହି ଯୁଦ୍ଧରେ କାଳେ ମରିଗଲେ ଶତ୍ରୁ ହସ୍ତରେ ପବିତ୍ର ଦାନ୍ତ ପଡ଼ିବ, ଆଶଙ୍କା କରି ଗୁହଶିବ ଦନ୍ତକୁମାରଙ୍କୁ କହିଲେ, ''ମୁଁ ଯଦି ଯୁଦ୍ଧରେ ମରିଯାଏଁ, ତାହାହେଲେ ତୁମ୍ଭେ ଏହି ଦାନ୍ତ ଲୁଚାଇ ନେଇ ସିଂହଳ ରାଜାଙ୍କୁ ଦେଇ ଆସିବ ।'' ଫଳରେ ଗୁହଶିବଙ୍କ ଆଶଙ୍କା କାର୍ଯ୍ୟରେ ପରିଣତ ହେଲା; ଗୁହଶିବ ପ୍ରାଣତ୍ୟାଗ କଲେ । ଦନ୍ତକୁମାର ଓ ହେମମାଳା ଛଦ୍ମବେଶ ଧରି ଦନ୍ତ ନେଇ ପଳାଇବାର ମନସ୍ଥ କଲେ । ପ୍ରଥମରେ ସେମାନେ ଦନ୍ତକୁ ବାଲିରେ ପୋତି ଲୁଚାଇ ରଖିଲେ

ଏବଂ ପରେ ନାନା ଯନ୍ତ୍ରଣା ସହି ଦାନ୍ତ ଘେନି ପଳାଇଗଲେ । ରାସ୍ତାରେ ବହୁ ଜଙ୍ଗଲ, ପର୍ବତ ପାର ହୋଇ ଅଶେଷ ଯନ୍ତ୍ରଣା ସହକାରେ ସେମାନେ ତାମଲିତି (ତାମ୍ରଲିପ୍ତ ବା ତମଲୁକ)ରେ ଉପସ୍ଥିତ ହେଲେ । ତାମଲିକ ବନ୍ଦରରେ ଜାହାଜଟିଏ ସିଂହଳ ଯାତ୍ରା ନିମନ୍ତେ ପ୍ରସ୍ତୁତ ଥିଲା । ଛଦ୍ମବେଶୀ ଦମ୍ପତି ସେହି ଜାହାଜ ନିକଟରେ ଉପସ୍ଥିତ ହୋଇ ଜାହାଜିଆକୁ ବହୁ ଅନୁନୟ ସହକାରେ ପ୍ରାର୍ଥନା କରିବାରୁ ସେ ସନ୍ତୁଷ୍ଟ ହୋଇ ସେମାନଙ୍କୁ ଜାହାଜରେ ଉଠାଇ ଦେଲା ।''

ବୁଦ୍ଧଦେବଙ୍କ ଦାନ୍ତ ସମ୍ବନ୍ଧରେ ବର୍ଣ୍ଣିତ ଉପରଲିଖିତ ଉପାଖ୍ୟାନର ଐତିହାସିକତା ସମ୍ବନ୍ଧରେ ବଡ଼ ସନ୍ଦେହ ହୁଏ ଏବଂ କେହି କେହି ଗ୍ରନ୍ଥକାର ମଧ କହନ୍ତି ଯେ ବୁଦ୍ଧଦେବଙ୍କ ଦାନ୍ତ ବିଷୟ ଇତିହାସରେ ଏପର୍ଯ୍ୟନ୍ତ ଗୋଟିଏ ପ୍ରମାଣିତ ଘଟଣା ସ୍ୱରୂପ ଗୃହୀତ ହୋଇନାହିଁ । ସେ ଦନ୍ତର ଉପାଖ୍ୟାନ ଯାହାହେଉ, ବର୍ତ୍ତମାନ ଦନ୍ତପୁରର ସ୍ଥାନ ନିରୂପଣ କରିବା ଅତ୍ୟନ୍ତ କଷ୍ଟକର । କନିଙ୍ଗହାମ୍ ଗୋଦାବରୀ ତୀରବର୍ତ୍ତୀ ରାଜମହେନ୍ଦ୍ରୀକୁ ଦନ୍ତପୁର ମନେ କରନ୍ତି; କିନ୍ତୁ ଶ୍ରୀ ମନମୋହନ ଗାଙ୍ଗୁଲୀ ପ୍ରମାଣ କରିଅଛନ୍ତି ଯେ ରାଜମହେନ୍ଦ୍ରୀ ଅବଶ୍ୟ 'ରାଜପୁର' ନାମରେ କେତେକ ଦିନ କଳିଙ୍ଗର ରାଜଧାନୀ ଥିଲା; କିନ୍ତୁ ରାଜମହେନ୍ଦ୍ରୀ କଦାପି ଦନ୍ତପୁର ନ ଥିଲା । ପୁଣି ରାଜମହେନ୍ଦ୍ରୀରୁ ଦନ୍ତ ନେଇ ଦନ୍ତକୁମାର ଏତେଦୂର ତାମ୍ରଲିପ୍ତକୁ ଯାଇଥିବା ଅସମ୍ଭବ ବୋଧହୁଏ । ଫରଗୁସନ୍ ପୁରୁଷୋତ୍ତମ ବା ପୁରୀକୁ ଦନ୍ତପୁର ମନେ କରନ୍ତି; କିନ୍ତୁ ପୁରୀ ଗେଜେଟିଅର ଲେଖକ ପୁରୀ ଦନ୍ତପୁର ଥିବାର ଘୋର ସନ୍ଦେହ କରନ୍ତି । ରାଜେନ୍ଦ୍ର ଲାଲ ଫରଗୁସନ୍ଙ୍କ ମତ ଭ୍ରମାତ୍ମକ ପ୍ରମାଣ କରି କହନ୍ତି ଯେ ବର୍ତ୍ତମାନ ବେଙ୍ଗଲ ନାଗପୁର ରେଲଓୟେର ଦାନ୍ତନ ଷ୍ଟେସନ ପାଖରେ ଯେଉଁ ଦାନ୍ତନ ସହର ଅଛି, ପୂର୍ବେ ତାହାକୁ ଦନ୍ତପୁର କହୁଥିଲେ । ଦନ୍ତପୁର ଲୋକ ବ୍ୟବହାରରେ କ୍ରମେ ଦାନ୍ତନ ହୋଇଅଛି ଏବଂ ଏହା ମଧ ତାମ୍ରଲିପ୍ତକୁ ୧୦।୧୨ ମାଇଲ ମଧରେ ଦୂର ।

ରାଜେନ୍ଦ୍ର ଲାଲଙ୍କର ପ୍ରଧାନ ଯୁକ୍ତି ଯେ ଦନ୍ତପୁର ଯଦି ପୁରୀ ବା ତାହା ନିକଟରେ କୌଣସି ସ୍ଥାନ ହୋଇଥାନ୍ତା; ତାହାହେଲେ ଦନ୍ତକୁମାର ସିଂହଳ ଯିବା ନିମନ୍ତେ ଏତେଦୂର ତାମ୍ରଲିପ୍ତକୁ ଯାଇ ନ ଥାନ୍ତେ; ସେ ପୁରୀ ବା ଅନ୍ୟ କୌଣସି ନିକଟବର୍ତ୍ତୀ ବନ୍ଦରରୁ ସୁବିଧାରେ ସିଂହଳ ଯାତ୍ରା କରି ପାରିଥାନ୍ତେ; କିନ୍ତୁ ଏହି ଯୁକ୍ତି ବଡ଼ ସମୀଚୀନ ବୋଧ ହେଉନାହିଁ; କାରଣ ଯେଉଁମାନେ ଏତେ ଭୟରେ ଶତ୍ରୁ ହସ୍ତରୁ ପଳାଇଥିଲେ ଏବଂ ସେଥିନିମନ୍ତେ ଛଦ୍ମବେଶ ପର୍ଯ୍ୟନ୍ତ ମଧ ଧରିଥିଲେ, ସେମାନେ ଧରା ପଡ଼ିବା ଭୟରେ ବହୁଦୂର ତାମ୍ରଲିପ୍ତ ପଳାଇ ଯାଇଥିବା ଅସମ୍ଭବ ନୁହେଁ । ଅବଶ୍ୟ ରାଜମହେନ୍ଦ୍ରୀରୁ ତାମ୍ରଲିପ୍ତ ପଳାଇବା ଅସମ୍ଭବ ହୋଇପାରେ; କିନ୍ତୁ ପୁରୀ ବା ତାହାର ନିକଟବର୍ତ୍ତୀ କୌଣସି ସ୍ଥାନରୁ ଶତ୍ରୁ ହାତରୁ ରକ୍ଷା ପାଇବା ନିମନ୍ତେ ତାମ୍ରଲିପ୍ତ ପଳାଇବା ନିତାନ୍ତ ଅସମ୍ଭବ ନୁହେଁ । ଦନ୍ତକୁମାରଙ୍କର ପଳାୟନ

ବୃତ୍ତାନ୍ତରୁ ମଧ୍ୟ ଜଣାଯାଏ ଯେ ସେ ବହୁ ଗିରି ବନ ଅତିକ୍ରମ କରି ନାନା ଯନ୍ତ୍ରଣା ମଧ୍ୟରେ ତାମ୍ରଲିପ୍ତ ଯାଇଥିଲେ । ଦାନ୍ତନରୁ ୧୦ ମାଇଲ ଦୂର ତାମ୍ରଲିପ୍ତ ଯିବା ନିମନ୍ତେ ଏତେ ଯନ୍ତ୍ରଣା ଭୋଗି ଗିରି ବନ ଅତିକ୍ରମ କରିଥିବା ଅସମ୍ଭବ ବୋଧହୁଏ । ବିଶେଷତଃ ହୁଏନ୍‌ସାଂ ଯେତେବେଳେ ତାମ୍ରଲିପ୍ତଠାରୁ ଜାହାଜରେ ସିଂହଳ ଯାତ୍ରା କରିବାକୁ ବସିଥିଲେ, ଜଣେ ସନ୍ୟାସୀ ତାହାଙ୍କୁ ବୁଝାଇଥିଲେ, "ସିଂହଳକୁ ଯିବାକୁ ହେଲେ ତାମ୍ରଲିପ୍ତଠାରୁ ଏତେଦୂର ସମୁଦ୍ର ଯାତ୍ରା କଲେ ନାନା ବିପଦରେ ପଡ଼ିବାକୁ ହେବ । ପବନ ବଡ଼ ପ୍ରତିକୂଳ ଓ ସ୍ରୋତ ବଡ଼ ଭୟଙ୍କର ଏବଂ ଯକ୍ଷମାନେ ଏହି ପଥରେ ଜଳଯାତ୍ରୀଙ୍କୁ ନାନା ବିପଦରେ ମଧ୍ୟ ପକାନ୍ତି । ଅତଏବ ଦାକ୍ଷିଣାତ୍ୟ ପ୍ରଦେଶର ଦକ୍ଷିଣ-ପୂର୍ବ କୌଣସି ଗୋଟିଏ ବନ୍ଦରରୁ ଯାତ୍ରା କରିବା ବିଶେଷ ସୁବିଧାଜନକ ଏବଂ ସେଠାରୁ ମଧ୍ୟ ଆପଣ ତିନି ଦିନ ଜଳଯାତ୍ରା କରି ସିଂହଳରେ ପହୁଞ୍ଚି ପାରିବେ । ପଥ ମଧ୍ୟରେ ଅବଶ୍ୟ ଆପଣ ବହୁ ଗିରି ଆରୋହଣ ଓ ଉପତ୍ୟକା ଭ୍ରମଣ କରିଯିବେ ସତ; ତଥାପି ଆପଣ ଅଧିକତର ନିରାପଦରେ ଯାତ୍ରା କରି ପାରିବେ ଏବଂ ଏଥିମଧ୍ୟରେ ଆପଣ ଓଡ଼ିଶା ଓ ଅନ୍ୟାନ୍ୟ ଦେଶମାନଙ୍କର ପୁଣ୍ୟ କୀର୍ତ୍ତିମାନ ଦେଖିବାର ସୁବିଧା ପାଇ ପାରିବେ ।"

ଉପରୋକ୍ତ ଉପାଖ୍ୟାନରୁ ବୁଝାଯାଏ ଯେ, ତାମ୍ରଲିପ୍ତଠାରୁ ସିଂହଳ ରାସ୍ତା ଅପେକ୍ଷାକୃତ ଦୁର୍ଗମ ଥିଲା; ସୁତରାଂ ସେହି ବନ୍ଦରରୁ ସମୁଦ୍ର ପାର ହେବା ବିଷୟରେ ଶତ୍ରୁର ସନ୍ଦେହ କରିବାର ଆଶଙ୍କା ଅତି ଅଳ୍ପ ଥିଲା । କେବଳ କଳିଙ୍ଗ ନୁହେଁ, ଓଡ଼ିଶାରେ ମଧ୍ୟ ଶତ୍ରୁ ଦନ୍ତକୁମାରଙ୍କୁ ଇତସ୍ତତଃ ଖୋଜୁଥିବେ, ସନ୍ଦେହ ନାହିଁ । ଏପରି ଅବସ୍ଥାରେ ଛଦ୍ମବେଶୀ ପଳାତକଙ୍କ ପକ୍ଷରେ ଶତ୍ରୁ ହସ୍ତରୁ ରକ୍ଷା ପାଇବା ଆଶାରେ ତାମ୍ରଲିପ୍ତ ବନ୍ଦରକୁ ପଳାଇବା ଅସମ୍ଭବ ନୁହେଁ । ବର୍ଣ୍ଣନାରୁ ଯେପରି ଜଣାଯାଏ, ଶତ୍ରୁ ହୁଏତ ଦକ୍ଷିଣାଞ୍ଚଳବାସୀ ଥିଲେ । ସୁତରାଂ ଦକ୍ଷିଣାଞ୍ଚଳୀୟ କୌଣସି ବନ୍ଦରକୁ ପଳାଇ ଯିବା ଦନ୍ତକୁମାରଙ୍କ ପକ୍ଷରେ ଅଧିକ ବିପଦପୂର୍ଣ୍ଣ ଥିଲା । ଶତ୍ରୁ ଦକ୍ଷିଣାଞ୍ଚଳବାସୀ ହୋଇ ନ ଥିଲେ ମଧ୍ୟ ଦନ୍ତକୁମାରଙ୍କର ସିଂହଳ ଯାତ୍ରା ନିମନ୍ତେ ଦାକ୍ଷିଣାତ୍ୟର କୌଣସି ବନ୍ଦର ପ୍ରତି ଶତ୍ରୁର ଯେତେ ସନ୍ଦେହ ହେବାର କଥା, ତାମ୍ରଲିପ୍ତ ବନ୍ଦର ପ୍ରତି ସେତେ ହୋଇ ନ ଥିବ । ଦନ୍ତକୁମାର କଦାପି ଦନ୍ତପୁର ବା ତାହାର ନିକଟବର୍ତ୍ତୀ କୌଣସି ବନ୍ଦରରୁ ସିଂହଳ ଯାଇ ପାରି ନ ଥାନ୍ତେ; କାରଣ ଶତ୍ରୁ ସେହି ସ୍ଥାନମାନଙ୍କରେ ବିଶେଷ ତତ୍ପର ଥିବେ । ପୁଣି ତାମ୍ରଲିପ୍ତରୁ ସିଂହଳ ରାସ୍ତା ଶତ୍ରୁ ରାଜ୍ୟର କୌଣସି ବନ୍ଦରଠାରୁ ଅପେକ୍ଷାକୃତ ଦୂରବର୍ତ୍ତୀ; ସୁତରାଂ ଶତ୍ରୁ ଜାହାଜ ଯଦି ସମୁଦ୍ର ମଧ୍ୟରେ ଖୋଜୁଥିବ, ତାହାହେଲେ ତାହାର ଦୃଷ୍ଟିରୁ ଅବ୍ୟାହତି ପାଇବାରେ ତାମ୍ରଲିପ୍ତ ରାସ୍ତା ମଧ୍ୟ ଦୂର ହେତୁରୁ ଅପେକ୍ଷାକୃତ ନିରାପଦ ।

ଦାନ୍ତନରେ ଦନ୍ତପୁର ଏବଂ ଦନ୍ତର ସୁରମ୍ୟ ମନ୍ଦିର ଥିବାର କୌଣସି ଦର୍ଶକ ଲେଖି ନାହାନ୍ତି । ପୁଣି ଦାନ୍ତନ ଯଦି ଦନ୍ତପୁର ହୋଇଥାନ୍ତା, ତାହାହେଲେ ଚୀନ ପରିବ୍ରାଜକ

ଫାହିଆନ୍ ଅବଶ୍ୟ ତାହାର ଉଲ୍ଲେଖ କରିଥାନ୍ତେ । କାରଣ ଦନ୍ତ ସିଂହଳକୁ ଯିବାର ୧୦।୧୫ ବର୍ଷ ମଧ୍ୟରେ ସେ ଦାନ୍ତନ ନିକଟବର୍ତ୍ତୀ ତାମ୍ରଲିପ୍ତ ପର୍ଯ୍ୟନ୍ତ ଆସିଥିଲେ ଏବଂ ତାମ୍ରଲିପ୍ତଠାରୁ ସିଂହଳ ଯାତ୍ରା କଲେ; ଓଡ଼ିଶାକୁ ଆଦୌ ଆସି ନ ଥିଲେ । ସୁତରାଂ ଅନୁମାନ କରାଯାଏ ଯେ, ଦନ୍ତପୁର ତାମ୍ରଲିପ୍ତର ଦକ୍ଷିଣ-ପଶ୍ଚିମରେ ବହୁଦୂରରେ ଥିଲା ଏବଂ ଫାହିଆନ୍ ସେତେଦୂର ଯିବା ଶ୍ରେୟ ମନେ କରି ନ ଥିଲେ । ବିଶେଷତଃ ବୌଦ୍ଧକେନ୍ଦ୍ର ଓ ବୌଦ୍ଧାବଶେଷ ଖୋଜି ବୁଲିବା ତାହାଙ୍କ ପର୍ଯ୍ୟଟନର ଯେପରି ମୁଖ୍ୟ ଉଦ୍ଦେଶ୍ୟ ଥିଲା, ଦନ୍ତପୁର ବହୁ ଦୂରବର୍ତ୍ତୀ ହୋଇ ନ ଥିଲେ ସେହି ସୁ-ପ୍ରସିଦ୍ଧ ବୌଦ୍ଧକେନ୍ଦ୍ର ଦେଖିବାକୁ ସେ ଅବଶ୍ୟ ଯାଇଥାନ୍ତେ ।

ଦନ୍ତପୁର କଳିଙ୍ଗର ରାଜଧାନୀ ଥିବାର ଦନ୍ତର ଉପାଖ୍ୟାନ ଓ 'ନିକାୟ'ରୁ ଜଣାଯାଏ; ଦାନ୍ତନ କଦାପି କଳିଙ୍ଗର ରାଜଧାନୀ ହୋଇ ନ ଥିବ । କଳିଙ୍ଗ ଉତ୍ତର ସୀମାରେ ବଡ଼ ହୋଇ ମହାନଦୀ ବା ବୈତରଣୀ ପର୍ଯ୍ୟନ୍ତ ବିସ୍ତୃତ ଥାଇପାରେ । ଦାନ୍ତନ ବରଂ ଓଡ଼ିଶାର ପ୍ରାୟ ଉତ୍ତର ସୀମା ଥିଲା । ସୁତରାଂ ଦାନ୍ତନ ଦନ୍ତପୁର ହୋଇଥିବା ନିତାନ୍ତ ଅସମ୍ଭବ । କେବଳ ଆକ୍ଷରିକ ସମ୍ବନ୍ଧ ଉପରେ ଐତିହାସିକ ସତ୍ୟ ପ୍ରତିଷ୍ଠିତ ହୋଇ ନ ପାରେ ।

ଦନ୍ତର ଉପାଖ୍ୟାନରୁ ଜଣାଯାଏ ଯେ, କ୍ଷେମ ବୁଦ୍ଧଦେବଙ୍କ ଦନ୍ତ ନେଇ କଳିଙ୍ଗ ରାଜା ବ୍ରହ୍ମଦତ୍ତଙ୍କୁ ତାହାଙ୍କର ରାଜଧାନୀ ଦନ୍ତପୁରରେ ଦେଇଥିଲେ । ସୁତରାଂ ଦାନ୍ତ ଆସିବା ପୂର୍ବରୁ ରାଜଧାନୀ ଦନ୍ତପୁର ନାମରେ ଖ୍ୟାତ ଥିଲା । ପରେ ଲୋକେ ଦାନ୍ତ ସହିତ ସମ୍ବନ୍ଧ ଲଗାଇ ଦନ୍ତପୁର ଅର୍ଥ କଲେ । ପୁଣି ଦନ୍ତର ସମ୍ବନ୍ଧ ହେତୁ ଦନ୍ତପୁର ନାମ ପ୍ରଥମରୁ ହୋଇଥିବା ବିରୁଦ୍ଧରେ ଆପତ୍ତି ଏହି ଯେ ଦନ୍ତ ଓ ତାହାର ଉପାଖ୍ୟାନକୁ ଅଦ୍ୟାବଧି ଇତିହାସ ଲେଖକମାନେ ଐତିହାସିକ ସତ୍ୟ ବୋଲି ଗ୍ରହଣ କରି ନାହାନ୍ତି । ଏପରି ସ୍ଥଳେ ଦନ୍ତ ନାମ ଅନୁସାରେ ଦନ୍ତପୁର ଆଖ୍ୟା ହୋଇଥିବା ସ୍ୱୀକାର କରାଯାଇ ନ ପାରେ । ଦନ୍ତପୁରର ମୌଳିକ ନାମ 'ଓଦନ୍ତପୁର' ଥିବାର ଶ୍ରୀ ବିଷବ୍ ସ୍ୱରୂପ କହିଅଛନ୍ତି । ଓଦନ୍ତପୁରର ଅର୍ଥ ଓଦ୍ (ଓଡ୍ର ବା ଓଡ଼ିଶା)ର ଅନ୍ତ (ଶେଷ ବା ସୀମାନ୍ତ)ରେ ଅବସ୍ଥିତ ପୁର ବା ନଗର । ଅର୍ଥାତ୍ ଏହା ଓଡ୍ର ଦେଶର ସୀମାରେ ଅବସ୍ଥିତ ଥିବାରୁ ଏହାର ନାମ ଓଦନ୍ତପୁର ହୋଇଥିଲା । ସୁତରାଂ ପ୍ରଥମରେ ଏହା କଳିଙ୍ଗ ରାଜ୍ୟର ନଗର ନ ହୋଇ ବରଂ ଓଡ଼ିଶାର ଥିଲା । ସେତେବେଳେ ଓଡ଼ିଶା ଓ କଳିଙ୍ଗ ମଧ୍ୟରେ କୌଣସି ନିର୍ଦ୍ଦିଷ୍ଟ ସ୍ଥାୟୀ ସୀମା ନ ଥିଲା । ଓଡ଼ିଶା କେତେବେଳେ କଳିଙ୍ଗ ମଧ୍ୟକୁ ଏବଂ କଳିଙ୍ଗ ମଧ୍ୟ କେତେବେଳେ ଓଡ଼ିଶା ମଧ୍ୟକୁ ମାଡି ଯାଉଥିଲା । କୌଣସି ସ୍ଥାୟୀ ନିର୍ଦ୍ଦିଷ୍ଟ ସୀମା ନ ଥିବାରୁ ଇତିହାସଲେଖକମାନେ ବର୍ତ୍ତମାନ ଦୁଇ ପ୍ରଦେଶର ପ୍ରକୃତ ସୀମା ବାହାର କରିବାରେ ନାନା ମତ ଖ୍ୟାପନ କରନ୍ତି । ସୁତରାଂ ଓଦନ୍ତପୁର ପ୍ରଥମରେ ଓଡ଼ିଶାର ଅନ୍ତର୍ଗତ ହୋଇଥିଲେ ସୁଦ୍ଧା ଓଡ଼ିଶାର ସୀମାରେ ଥିବାରୁ କେତେବେଳେ ଏହା କଳିଙ୍ଗର ଅନ୍ତର୍ଭୁକ୍ତ ହୋଇଥିଲା ଏବଂ ଦନ୍ତ ଯେତେବେଳେ ଏହିଠାରେ ଥିଲା, ଓଦନ୍ତପୁର କଳିଙ୍ଗର ରାଜଧାନୀ ଥିଲା । କଳିଙ୍ଗର ରାଜା ଓଡ଼ିଶାର ନଗର ଓ ଦନ୍ତପୁରର ନାମ ବଦଳାଇ

ନୂତନ ନାମ ଦେଇଥିବା ସମ୍ଭବ; କାରଣ ଓଦନ୍ତପୁରରେ ଓଡ଼ିଶାର ଚିହ୍ନ ରହିଥିଲା । ସୁତରାଂ କଳିଙ୍ଗ ରାଜା ଓଦନ୍ତପୁରର ଅତି ସାମାନ୍ୟ ପରିବର୍ତ୍ତନ କରାଇ 'ଦନ୍ତପୁର' ଆଖ୍ୟା ଦେଲେ ଏବଂ ଆପଣାର ବିଜୟ ଚିହ୍ନ ସ୍ୱରୂପ ସେହିଠାରେ ରାଜଧାନୀ ସ୍ଥାପନ କରିଥିଲେ ।

ଦନ୍ତ ଉପାଖ୍ୟାନରେ ଯେପରି ବର୍ଣ୍ଣିତ ଅଛି, କଳିଙ୍ଗର ରାଜା ଗୁହଶିବଙ୍କ ମୃତ୍ୟୁ ପରେ କଳିଙ୍ଗ ଓଡ଼ିଶାର ଅନ୍ତର୍ଭୁକ୍ତ ହୋଇଥିଲା । ଏହି ଉପାଖ୍ୟାନ ବିଶ୍ୱାସ୍ୟ ହେଉ ବା ନ ହେଉ ଏହା ଅବଶ୍ୟ ସ୍ୱୀକାର କରବାକୁ ହେବ ଯେ ଚତୁର୍ଥ ଶତାବ୍ଦୀ ମଧ୍ୟରେ ଓଡ଼ିଶାରେ କେଶରୀ ରାଜତ୍ୱ ଆରମ୍ଭ ହେବା ପୂର୍ବରୁ ସମୁଦାୟ କଳିଙ୍ଗ ଓଡ଼ିଶାର ଅନ୍ତର୍ଭୁକ୍ତ ହୋଇ ନ ଥିଲେ ମଧ୍ୟ ତାହାର ଉତ୍ତର ସୀମା ବହୁଦୂର ପର୍ଯ୍ୟନ୍ତ ଦକ୍ଷିଣକୁ ଘୁଞ୍ଚି ଯାଇଥିଲା । ସୁତରାଂ କଳିଙ୍ଗର ରାଜଧାନୀ ଦନ୍ତପୁର ଓଡ଼ିଶା ରାଜାଙ୍କ ହସ୍ତରେ ପଡିଥିଲା । ଓଡ଼ିଶା ରାଜା ଦନ୍ତପୁର ନାମ ବଦଳାଇ ତାହାର ଅନ୍ୟ ଗୋଟିଏ ନାମ ନିଜର କରି ରଖିଥିଲେ । କୋଣାର୍କ ନିଜେ ପଦ୍ମକ୍ଷେତ୍ର, କୋଣାର୍କ ମନ୍ଦିର ମଧ୍ୟ ପଦ୍ମଗଣ୍ଡ ଉପରେ ନିର୍ମିତ ହୋଇଥିଲା ଏବଂ କୋଣାର୍କ କ୍ଷେତ୍ରର ସମସ୍ତ ଦେବାଳୟମାନଙ୍କର ଚୂଳରେ ପଦ୍ମ, ଶଙ୍ଖ ସ୍ୱରୂପ ଥିଲା । ପୁଣି ଏ ସମସ୍ତ ଉପରେ ପଦ୍ମକ୍ଷେତ୍ରର ନଦୀର ନାମ ଚିତ୍ରୋତ୍ପଳା । ଏପରି ସ୍ଥଳେ 'ଦନ୍ତପୁର' ପରିବର୍ତ୍ତରେ 'ଚିତ୍ରୋତ୍ପଳା' ପରି ଗୋଟିଏ ସୁନ୍ଦର ଓ ସ୍ୱତନ୍ତ୍ର ନାମ ଆପଣାର ବିଜୟ ଚିହ୍ନସ୍ୱରୂପ ରଖିଥିବା ଓଡ଼ିଶା ରାଜାଙ୍କ ପକ୍ଷରେ ଯଥେଷ୍ଟ ସମ୍ଭବ । ସୁତରାଂ ହୁଏନ୍‌ସାଂ ଯାହାକୁ 'ଚେଳିତାଲୋ' ବୋଲି ଦେଖି ବର୍ଣ୍ଣନା କରିଛନ୍ତି, ତାହା ପ୍ରଥମରେ 'ଓଦନ୍ତପୁର', ପରେ 'ଦନ୍ତପୁର' ଏବଂ ପରିଶେଷରେ 'ଚିତ୍ରୋତ୍ପଳା' ନାମରେ ପରିଚିତ ହୋଇଥିଲା ।

ଏହି ଚିତ୍ରୋତ୍ପଳା ବ୍ୟତୀତ ଦନ୍ତପୁର ଅନ୍ୟତ୍ର ହୋଇଥିବା ଅସମ୍ଭବ । ଦନ୍ତପୁର ଦକ୍ଷିଣ-ପୂର୍ବ ସମୁଦ୍ରକୂଳରେ ଥିବାର ରିଜ୍ ଡେଭିଡ଼ସ୍ 'ନିକାୟ' ଅନୁସାରେ କହିଅଛନ୍ତି । ଦକ୍ଷିଣ-ପୂର୍ବ ସମୁଦ୍ର କୂଳରେ ପୁରୀ ଓ ଏହି ଚିତ୍ରୋତ୍ପଳା ବ୍ୟତୀତ ଅନ୍ୟ କୌଣସି ବିଖ୍ୟାତ ନଗର ନ ଥିଲା କି ନାହିଁ ସନ୍ଦେହ । ଦାନ୍ତନ ସମୁଦ୍ର କୂଳବର୍ତ୍ତୀ ନୁହେଁ କି ରାଜମହେନ୍ଦ୍ରୀ ମଧ୍ୟ ହୋଇଥିବା ଅସମ୍ଭବ । ସୁତରାଂ ଦନ୍ତପୁର ପୁରୀ କିମ୍ବା ଚିତ୍ରୋତ୍ପଳା ଥିଲା । ପୂର୍ବେ ମୁଁ ଗେଜେଟିଅର ଲେଖକଙ୍କ ମତ ଉଦ୍ଧାର କରି କହିଅଛି ଯେ ପୁରୀରେ ଦନ୍ତପୁର ନ ଥିଲା । ଦନ୍ତପୁର ଯଦି ପୁରୀ ହୋଇଥାନ୍ତା, ହୁଏନ୍‌ସାଂ ଅବଶ୍ୟ ଚିତ୍ରୋତ୍ପଳାରୁ ପୁରୀ ଯାଇଥାନ୍ତେ । ଦନ୍ତ ଲଙ୍କାକୁ ଯିବାର ୨୦୦ ବର୍ଷ ମଧ୍ୟରେ ହୁଏନ୍‌ସାଂ ଓଡ଼ିଶା ଭ୍ରମଣ କରିଥିଲେ । ନିଜେ ସୁବିଖ୍ୟାତ ରାଜଧାନୀ ଦନ୍ତପୁର ଏବଂ ତହିଁରେ ଥିବା ଦନ୍ତର ସୁରମ୍ୟ ମନ୍ଦିରର ଅବଶେଷ ସୁଦ୍ଧା ଦେଖିବା ନିମନ୍ତେ ହୁଏନ୍‌ସାଂ ଚେଳିତାଲୋଠାରୁ ବାଟ ୨୦ ମାଇଲ ମାତ୍ର ଅକ୍ଳେଶରେ ଯାଇ ପାରିଥାନ୍ତେ । ହୁଏନ୍‌ସାଂ ବୌଦ୍ଧଧର୍ମର କେନ୍ଦ୍ର ଓ ଅବଶେଷ ଖୋଜି ବୁଲୁଥିଲେ ଏବଂ ଭାରତର ନାନାସ୍ଥାନରେ ବୌଦ୍ଧମନ୍ଦିର, ଗ୍ରନ୍ଥ ଓ ସ୍ଥାନର ଅବଶେଷ ଦେଖି ବର୍ଣ୍ଣନା କରି ଅଛନ୍ତି । ଦନ୍ତପୁର ପରି ବିଖ୍ୟାତ ବୌଦ୍ଧସ୍ଥଳୀ ଚିତ୍ରୋତ୍ପଳା ବ୍ୟତୀତ ଅନ୍ୟତ୍ର ଥିଲେ ହୁଏନ୍‌ସାଂ

ଅବଶ୍ୟ ସେଠାକୁ ଯାଇଥାନ୍ତେ ଏବଂ ଦନ୍ତର ମନ୍ଦିର ଓ ଦନ୍ତପୁରର ଅବଶେଷ ନିଶ୍ଚୟ ଦେଖି ବର୍ଣ୍ଣନା କରିଥାନ୍ତେ ।

ପୂର୍ବେ କୁହାଯାଇଅଛି ଯେ, କାଦୁଆ ଓ ଚନ୍ଦ୍ରଭାଗାର ଯୋଗସ୍ଥଳରେ ଚିତ୍ର ଓ ଉତ୍ପଳା ନାମରେ ଦୁଇଟି ଗ୍ରାମ ଅଛି । ସେହି ଗ୍ରାମ ଦ୍ୱୟର ନିକଟରେ 'ଓଟାଙ୍ଗ' ଓ 'ଦନ୍ତୀର' ନାମରେ ମଧ୍ୟ ଅନ୍ୟ ଦୁଇଟି ଗ୍ରାମ ଅଛି । ନାମରେ ସାମ୍ୟ ଦେଖିବାକୁ ହେଲେ ଏହି ଓଟାଙ୍ଗ ଓ ଦନ୍ତୀର ନାମକ ଦୁଇଟି ଗ୍ରାମ ପୁରାତନ ଓଦନ୍ତପୁର ବା ଦନ୍ତପୁରର ଅତି କ୍ଷୀଣ ଅବଶେଷ ବୋଲିବାକୁ ହେବ ।

ଅତଏବ ଏହା ବିଶ୍ୱାସ କରିବାକୁ ହେବ ଯେ କୋଣାର୍କ ତାହାର ନିକଟବର୍ତ୍ତୀ ଅଞ୍ଚଳ ଧରି ଗୋଟିଏ ପ୍ରଧାନ ନଗର ଥିଲା । ଏହିଠାରେ ଦନ୍ତପୁର ଥିଲା ଏବଂ କେତେ କାଳ ପରେ ଦନ୍ତପୁର ପରିବର୍ତ୍ତରେ ଚିତ୍ରୋତ୍ପଳା ନାମରେ ଏ ସ୍ଥାନ ପରିଚିତ ହୋଇଥିଲା । ରାଜେନ୍ଦ୍ର ଲାଲ ମିତ୍ର ମଧ୍ୟ ସ୍ୱୀକାର କରନ୍ତି ଯେ, କୋଣାର୍କ ଗୋଟିଏ ବୌଦ୍ଧକେନ୍ଦ୍ର ଥିଲା ଏବଂ ଏହା ସମୁଦ୍ରରୁ ବର୍ତ୍ତମାନ ଅପେକ୍ଷା ନିକଟରେ ଥିଲା; ବର୍ତ୍ତମାନ ସମୁଦ୍ର ଦୂରକୁ ଘୁଞ୍ଚି ଯାଇଅଛି । ଏମନ୍ତ କି ଆବୁଲଫଜଲଙ୍କ ସମୟ ପର୍ଯ୍ୟନ୍ତ ମଧ୍ୟ ଏହା ଗୋଟିଏ ସମୃଦ୍ଧିଶାଳୀ ନଗର ଥିଲା । ଦ୍ୱିତୀୟ ଅଧ୍ୟାୟ ଶେଷରେ କୁହାଯାଇଅଛି ଯେ, ମୁସଲମାନମାନେ ମଧ୍ୟ ଏହି ସ୍ଥାନକୁ ପରମ ପବିତ୍ର ଜ୍ଞାନ କରୁଥିଲେ । ସୁତରାଂ ଏହା ସର୍ବଧର୍ମର ପବିତ୍ର ସ୍ଥାନ ଥିଲା । କ୍ରମେ କ୍ରମେ ବୌଦ୍ଧ ପ୍ରଭାବ କ୍ଷୀଣ ହୋଇ ଶେଷରେ ଏକାବେଳକେ ଲୁପ୍ତ ହେଲା । ଚିତ୍ରୋତ୍ପଳା ନିକଟରେ ଯେଉଁ ବୌଦ୍ଧ ମନ୍ଦିରମାନ ଥିଲା ତାହା କ୍ରମେ କ୍ରମେ କାଳଗର୍ଭରେ ଲିଭିଗଲା । କୋଣାର୍କ ପୁଣି ହିନ୍ଦୁ ଧର୍ମର ପୀଠ ହେବାକୁ ଆରମ୍ଭ କଲା ଏବଂ ଯେପରି ଏକାମ୍ରକାନନ ପରିବର୍ତ୍ତରେ ଭୁବନେଶ୍ୱର, ପୁରୀ ପରିବର୍ତ୍ତରେ ଜଗନ୍ନାଥ ନାମ ହୋଇଅଛି ଓ ହେଉଅଛି, ସେହିପରି କୋଣାର୍କ ଦେବଙ୍କର ଅଧିଷ୍ଠାନ ସଙ୍ଗେ ସଙ୍ଗେ ଚିତ୍ରୋତ୍ପଳା ପରିବର୍ତ୍ତରେ କୋଣାର୍କ ନାମ ବିଖ୍ୟାତ ହେଲା । କୋଣାର୍କ ଗୋଟିଏ ବିଖ୍ୟାତ ଓ ସମୃଦ୍ଧିଶାଳୀ ନଗର ହୋଇ ନ ଥିଲେ ପୃଥିବୀର ସର୍ବୋତ୍କୃଷ୍ଟ ମନ୍ଦିର କଦାପି ଗୋଟିଏ ନିର୍ଜନ ପ୍ରାନ୍ତରରେ ନିର୍ମିତ ହୋଇ ନ ଥାନ୍ତା । ଶ୍ରୀଯୁକ୍ତ ମନମୋହନ ଗାଙ୍ଗୁଲୀ ଯଥାର୍ଥରେ କହିଅଛନ୍ତି ଯେ, 'ପ୍ରାଚୀମାହାତ୍ମ୍ୟ' ପଢ଼ିଲେ ଜଣାଯାଏ କି ପ୍ରାଚୀ ନଦୀ କୂଳରେ ସମୃଦ୍ଧିଶାଳୀ ନଗର ଓ ଗ୍ରାମମାନ ଏବଂ ତହିଁରେ ସୁଦୃଢ଼ ମନ୍ଦିରମାନ ଥିଲା । ସୁତରାଂ ପ୍ରାଚୀନଦୀର ବିଶେଷ ନିକଟବର୍ତ୍ତୀ ଏବଂ ଗୋଟିଏ ପ୍ରସିଦ୍ଧ କ୍ଷେତ୍ର ଓ ତହିଁରେ ସମସ୍ତ ପୃଥିବୀର ଅଦ୍ୱିତୀୟ ବିରାଟ ମନ୍ଦିର ଥିବାରୁ ଯଥାର୍ଥରେ ଅନୁମାନ କରାଯାଏ ଯେ, କୋଣାର୍କ ସର୍ବଦିଗରେ ସୁବିଦିତ ଗୋଟିଏ ବୃହତ୍ ଓ ସମୃଦ୍ଧିଶାଳୀ ନଗର ଥିଲା ।

ଡାକ୍ତର ରାଜେନ୍ଦ୍ର ଲାଲ ମଧ୍ୟ କେତେକ ସ୍ଥାନରେ ଇଟା ପ୍ରଭୃତି ଜମାଥିବାର ଦେଖି କହିଅଛନ୍ତି ଯେ, ଏହି ସ୍ଥାନରେ ଗୋଟିଏ ପ୍ରସିଦ୍ଧ ନଗର ଥିଲା । ତାହା ହୋଇ ନ ଥିଲେ,

ଓଡ଼ିଶାର ବୃହତ୍ତମ ଓ ସର୍ବଶ୍ରେଷ୍ଠ ମନ୍ଦିର ଏହିପରି ନିର୍ଜନ ପ୍ରାନ୍ତରରେ କଦାପି ନିର୍ମିତ ହୋଇ ନ ଥାନ୍ତା ।

ଉପରୋକ୍ତ ପ୍ରମାଣ ଅନୁସାରେ କୋଣାର୍କର ଉତ୍ପତ୍ତି ସମୟ ନିରୂପଣ କରିବା ଅପେକ୍ଷାକୃତ ସହଜ ବୋଧହୁଏ । ବୁଦ୍ଧଦେବଙ୍କ ଦନ୍ତର ଆଗମନ ପୂର୍ବରୁ ଦନ୍ତପୁର ବଡ଼ ପ୍ରସିଦ୍ଧ ନଗର ଥିଲା ଏବଂ ବୁଦ୍ଧଦେବଙ୍କ ସମୟରେ ଏହା ଏତେ ପ୍ରସିଦ୍ଧ ଥିଲା ଯେ, ଦନ୍ତର ନିରାପଦ ଅବସ୍ଥାନ ନିମନ୍ତେ ଭାରତର ଅନ୍ୟାନ୍ୟ ସ୍ଥାନ ଅପେକ୍ଷା ସୁଦୂର କଳିଙ୍ଗ ରାଜଧାନୀ ଦନ୍ତପୁର ଅଧିକ ଉପଯୁକ୍ତ ମନୋନୀତ ହୋଇଥିଲା । ଏହି ନଗରର ନାମ ଦନ୍ତପୁର ହେବାର ବହୁକାଳ ପୂର୍ବରୁ ଏହା ଓଦନ୍ତପୁର ନାମରେ ବିଖ୍ୟାତ ଥିଲା । ସୁତରାଂ ଓଦନ୍ତପୁରର ଉତ୍ପତ୍ତି ନିମନ୍ତେ ବୁଦ୍ଧଦେବଙ୍କର ବହୁକାଳ ପୂର୍ବକୁ ଯିବାକୁ ହେବ । ପ୍ରଥମ ଅଧ୍ୟାୟରେ ବର୍ଣ୍ଣିତ ଶାମ୍ବ ଉପାଖ୍ୟାନରେ ଲେଖା ଯାଇଅଛି ଯେ, ଶାକଦ୍ୱୀପୀ ବ୍ରାହ୍ମଣ ପ୍ରଥମରେ ସୂର୍ଯ୍ୟଦେବଙ୍କର ସେବକ ରୂପେ ନିଯୁକ୍ତ ହୋଇଥିଲେ । ଉକ୍ତ ଅଧ୍ୟାୟରେ ମୁଁ କହିଅଛି ଯେ, ବୌଦ୍ଧଯୁଗର ବହୁକାଳ ପୂର୍ବରୁ ଶାକଦ୍ୱୀପବାସୀ ଭାରତୀୟ ଆର୍ଯ୍ୟ ସମାଜରେ ପ୍ରବେଶ କରି ସମାଜର ଅଙ୍ଗୀଭୂତ ହେଉଥିଲେ । ଏହା ମୈତ୍ରେୟ ବନର କଥା । ଓଦନ୍ତପୁର ନଗର ସ୍ଥାପିତ ହେବାର ବହୁକାଳ ପୂର୍ବରୁ ମୈତ୍ରେୟ ବନର ଖ୍ୟାତି ହୋଇଥିଲା । କାରଣ ଗୋଟିଏ ଜଙ୍ଗଲ ସ୍ଥାନରେ କାଳକ୍ରମେ ଗୋଟିଏ ସମୃଦ୍ଧିଶାଳୀ ନଗର ସ୍ଥାପିତ ହେବା ନିମନ୍ତେ ବହୁକାଳ ଆବଶ୍ୟକ । ସୁତରାଂ ମୈତ୍ରେୟ ବନରେ ଶାମ୍ବଙ୍କ ଦ୍ୱାରା ସୂର୍ଯ୍ୟ ପ୍ରତିଷ୍ଠାର ଯେଉଁ ସମୟ (ଖ୍ରୀଷ୍ଟପୂର୍ବ ଊନବିଂଶ ଶତାବ୍ଦୀ) ପ୍ରଥମ ଅଧ୍ୟାୟରେ ସ୍ଥିର କରାଯାଇଅଛି ଏବଂ ଶ୍ରୀ ବିଷଦ୍ ସ୍ୱରୂପ ମଧ୍ୟ ଯାହାକୁ ନାନା ଯୁକ୍ତି ଦ୍ୱାରା ସମର୍ଥନ କରିଅଛନ୍ତି, ତାହା ନିତାନ୍ତ ଅସମ୍ଭବ ବୋଧ ହୁଏନାହିଁ । ଅତଏବ କୋଣାର୍କ ମୈତ୍ରେୟ ବନରୁ ଆରମ୍ଭ କରି ଅଦ୍ୟାବଧି ପ୍ରାୟ ଚାରି ସହସ୍ର ବର୍ଷ ପର୍ଯ୍ୟନ୍ତ ନାନା ପରିବର୍ତ୍ତନ ମଧ୍ୟରେ ଆପଣାର ସୁମହତ୍ ଐତିହାସିକ ଗୌରବରେ ମହୀୟାନ୍ ହୋଇ ଆସିଅଛି କହିବା ବାହୁଲ୍ୟ ମାତ୍ର ।

* * * * * * *

# ଚତୁର୍ଥ ଅଧ୍ୟାୟ

## ମନ୍ଦିର-ବର୍ଣ୍ଣନା

ଓଡିଶାର ପ୍ରଧାନ ପ୍ରଧାନ ଦେବାଳୟମାନ ପ୍ରାୟ ଏକ ଛାଞ୍ଚରେ ଗଢ଼ା — ଆକାରଗତ ପାର୍ଥକ୍ୟ କାହାରି ନାହିଁ କହିଲେ ଚଳେ । ଅବଶ୍ୟ ମନ୍ଦିରମାନଙ୍କର ଶିଳ୍ପ ଓ ଅଂଶଗତ ବିଭିନ୍ନତା ନାନା ସ୍ଥାନରେ ବହୁତ ଦେଖାଯାଏ ସତ; ତଥାପି ଆକୃତିରେ ସମସ୍ତ ମନ୍ଦିର ପ୍ରାୟ ସମାନ । ପୁରୀ ଓ ଭୁବନେଶ୍ୱର ମନ୍ଦିରମାନଙ୍କର ଆକାର ଓ ଗଠନ ଏବଂ ବିଭିନ୍ନ ଅଂଶମାନଙ୍କର ପରସ୍ପର ସହିତ ଅନୁପାତ କୋଣାର୍କରେ ପ୍ରାୟ ସମାନ ଦେଖାଯାଏ । ସେ ସ୍ଥାନମାନଙ୍କରେ ଯେପରି, କୋଣାର୍କରେ ମଧ୍ୟ ସେହିପରି ଗୋଟିଏ ଦେଉଳ ବା ବିମାନ ଏବଂ ତାହାର ସମ୍ମୁଖରେ ମୁଖଶାଳା ବା ଜଗମୋହନ ଅଛି । ତେବେ ପ୍ରଭେଦ ଏତିକି ଯେ ପୁରୀ ଓ ଭୁବନେଶ୍ୱର ପ୍ରଭୃତିରେ ନାଟ ମନ୍ଦିର ଯେପରି ମୁଖଶାଳା ଓ ଦେଉଳ ସଙ୍ଗେ ଲାଗି ଏକ ପୀଠ ଉପରେ ଗଢ଼ା ହୋଇଅଛି, କୋଣାର୍କରେ ସେପରି ନୁହେଁ । କୋଣାର୍କର ନାଟ ମନ୍ଦିର ଦେଉଳ ଓ ମୁଖଶାଳାର କିଛି ଦୂର ସମ୍ମୁଖରେ ଅନ୍ୟ ଗୋଟିଏ ସ୍ୱତନ୍ତ୍ର ପୀଠ ଉପରେ ଅବସ୍ଥିତ ।

ଗଠନ ବିଷୟରେ କୋଣାର୍କର ଅନ୍ୟ ଗୋଟିଏ ପାର୍ଥକ୍ୟ ଏହି ଯେ, କୋଣାର୍କ ଦେଉଳ ଓ ମୁଖଶାଳା ଉଭୟ ଗୋଟିଏ ରଥ ଆକାରରେ ଗଢ଼ା ହୋଇଅଛି । ପୀଠ ଦେହରେ ୨୪ଟି ଚକ ଏବଂ ମୁଖଶାଳାର ସମ୍ମୁଖରେ ୭ ଘୋଡା । ଶାସ୍ତ୍ରରେ ବର୍ଣ୍ଣିତ ଅଛି, ସୂର୍ଯ୍ୟଦେବ ଗୋଟିଏ ସପ୍ତାଶ୍ୱ ରଥ ଉପରେ ବସି ପୃଥିବୀ ପରିଭ୍ରମଣ କରୁଅଛନ୍ତି । କେହି କେହି ଆଧୁନିକ ସମାଲୋଚକ ଏହି ସପ୍ତାଶ୍ୱକୁ ସୂର୍ଯ୍ୟଙ୍କ ଚତୁର୍ଦ୍ଦିଗରେ ପ୍ରଦକ୍ଷିଣ କରୁଥିବା ସପ୍ତଗ୍ରହ ମନେ କରନ୍ତି ଏବଂ କେହି କେହି ମଧ୍ୟ କହନ୍ତି, ସୂର୍ଯ୍ୟଙ୍କ ଶୁକ୍ଳ ଆଲୋକ ରକ୍ତ, ପୀତ, ନୀଳ ପ୍ରଭୃତି ସପ୍ତମୌଳିକ ବର୍ଣ୍ଣର ସମବାୟ ହୋଇଥିବାରୁ ସୂର୍ଯ୍ୟଙ୍କ ରଥରେ ସପ୍ତାଶ୍ୱର କଳ୍ପନା କରାଯାଇଅଛି । ତେବେ ସପ୍ତାଶ୍ୱକୁ ସପ୍ତଗ୍ରହ ଅପେକ୍ଷା ସପ୍ତମୌଳିକ ବର୍ଣ୍ଣ ମନେ କରିବା ଅଧିକ ସଂଗତ ବୋଧ ହେଉଅଛି; କାରଣ କୌଣସି କୌଣସି ସ୍ଥାନରେ ମଧ୍ୟ ଉଲ୍ଲେଖ ଅଛି ଯେ, ସୂର୍ଯ୍ୟଙ୍କ ରଥରେ ଗୋଟିଏ ମାତ୍ର ଶୁଭ୍ର ଅଶ୍ୱ ଏବଂ ତାହାର ସାତୋଟି ମସ୍ତକ । ପୁଣି ଅଶ୍ୱ ଓ ରଶ୍ମି ଏକ 'ଅଶ୍' ଧାତୁରୁ ନିଷ୍ପନ୍ନ ହୋଇଅଛି । 'ଅଶ୍' ଧାତୁର ଅର୍ଥ ବ୍ୟାପିବା । ଏହା ସ୍ପଷ୍ଟ ଭାବରେ ବୁଝାଇ ଦେଉଅଛି ଯେ, ଶୁକ୍ଳ ଆଲୋକର ସପ୍ତମୌଳିକ ବର୍ଣ୍ଣ ପ୍ରକାଶ କରିବା ନିମନ୍ତେ ସୂର୍ଯ୍ୟଙ୍କ ରଥରେ ଅଶ୍ୱର କଳ୍ପନା କରାଯାଇଅଛି । ସୁତରାଂ ଉପରୋକ୍ତ ସପ୍ତାଶ୍ୱକୁ

ସପ୍ତଗ୍ରହ ଅପେକ୍ଷା ସୂର୍ଯ୍ୟ କିରଣରେ ମିଶ୍ରିତ ସପ୍ତମୌଳିକ ବର୍ଣ୍ଣ ଧରିବା ଅଧିକ ସମୀଚୀନ ବୋଧହୁଏ ।

ଶାସ୍ତ୍ରରେ ପୁଣି ଲେଖାଅଛି, ସୂର୍ଯ୍ୟଙ୍କ ରଥରେ ଗୋଟିଏ ମାତ୍ର ଚକ । ସମାଲୋଚକମାନେ ଅର୍ଥ କରନ୍ତି ଯେ ସପ୍ତାଶ୍ୱ ବା ସପ୍ତଗ୍ରହ ଏକ ବୃତ୍ତାଭାସ ନିୟମର (law of elliptical motion) ଅଧୀନ ହୋଇ ସୂର୍ଯ୍ୟ ଚତୁର୍ଦ୍ଦିଗରେ ବୁଲୁଅଛନ୍ତି ଏବଂ ଅନ୍ୟମାନେ ମଧ କହନ୍ତି, ସପ୍ତମୌଳିକ ବର୍ଣ୍ଣ ଏକ ନିୟମରେ ମିଶ୍ରିତ ହୋଇ ଶୁକ୍ଳ ଆଲୋକ ଉତ୍ପନ୍ନ କରେ । ସୂର୍ଯ୍ୟ ରଥର ଏକ ଚକ୍ର ସହିତ ଗ୍ରହମାନଙ୍କ ଭ୍ରମଣ ନିୟମର କୌଣସି ମୁଖ୍ୟ ସମ୍ପର୍କ ଥିଲା ପରି ଜଣାଯାଏ ନାହିଁ । ପୁଣି ସପ୍ତମୌଳିକ ଆଲୋକର ମିଶ୍ରଣ ନିୟମ ସପ୍ତାଶ୍ୱର ଲଗାମ କିମ୍ବା ସାରଥିଙ୍କୁ ଅନ୍ୟ କୌଣସି ପ୍ରକାରରେ କଳ୍ପନା କରିବା ଦ୍ୱାରା ଆହୁରି ସୁନ୍ଦର ବୁଝାଇ ଦିଆଯାଇ ପାରିଥାନ୍ତା । ବସ୍ତୁତଃ ସୂର୍ଯ୍ୟଙ୍କ ସାରଥି ଅରୁଣ । ଅରୁଣର ଅର୍ଥ ରକ୍ତ ବର୍ଣ୍ଣ ଏବଂ ସୂର୍ଯ୍ୟଙ୍କର ଶୁଭ୍ର ଆଲୋକ ସପ୍ତମୌଳିକ ବର୍ଣ୍ଣରେ ବିଭକ୍ତ ହୋଇ ପ୍ରତିଫଳିତ ହେଲାବେଳେ ରକ୍ତ ଆଲୋକ ଆଦ୍ୟରେ ଥିବାର ଦେଖାଯାଏ । ସୁତରାଂ ସୂର୍ଯ୍ୟଙ୍କ ରଥରେ ଏକ ଚକ୍ର କଳ୍ପନାରୁ ଅନୁମାନ କରାଯାଏ ଯେ, ସୂର୍ଯ୍ୟ ନିଜେ ଏକ ନିୟମର ବଶବର୍ତ୍ତୀ ହୋଇ ବିଶ୍ୱଭ୍ରମଣ କରୁଅଛନ୍ତି । ସେ ଯାହାହେଉ, କୋଣାର୍କରେ କିନ୍ତୁ ୨୪ଟି ଚକ । ମନୁଷ୍ୟ ଏକ ଚକ ଉପରେ ରଥ କଳ୍ପନା କରିପାରେ; କିନ୍ତୁ ବାସ୍ତବ ରାଜ୍ୟରେ ଗୋଟିଏ ରଥ ବା ମନ୍ଦିର ଏକ ଚକ ଉପରେ ତିଆରି କରିବା ଅସମ୍ଭବ । ସୁତରାଂ କୋଣାର୍କ ଶିଳ୍ପୀ ଏକ ଚକ ପରିବର୍ତ୍ତରେ ୨୪ଟି ଚକ ତିଆରି କରିଅଛନ୍ତି । ଶିଳ୍ପୀଙ୍କର ଏହି ଶାସ୍ତ୍ରୋକ୍ତ ନିୟମ ଭଙ୍ଗ ମଧ ନିତାନ୍ତ ନିରର୍ଥକ ବୋଧ ହୁଏନାହିଁ । ଏହା ମଧ କୁହାଯାଇପାରେ ଯେ, ବାରଟି ରାଶି ଦ୍ୱାରା ଆକାଶ-ପଥ ବିଭକ୍ତ । ବିଶ୍ୱଭ୍ରମଣ ନିମନ୍ତେ ସୂର୍ଯ୍ୟଙ୍କୁ ଏହି ବାର ବିଭାଗ ପାର ହେବାକୁ ହୁଏ । କୋଣାର୍କ ମନ୍ଦିରର ୨୪ ଗୋଟା ଅର୍ଥାତ୍ ୧୨ ଯୋଡ଼ା ଚକ ସୂର୍ଯ୍ୟଙ୍କ ପଥର ଏହି ବାର ବିଭାଗ ବ୍ୟକ୍ତ କରୁଅଛି । ଶ୍ରୀଯୁକ୍ତ ବିଷଦ୍ ସ୍ୱରୂପ ମଧ ଅନୁମାନ ପ୍ରତି ଯଥେଷ୍ଟ ଆସ୍ଥା ଦେଖାଇ ଅଛନ୍ତି * ।

କୋଣାର୍କ ମନ୍ଦିରର ଆମୂଳଚୂଳ ବର୍ଣ୍ଣନା କରିବା ବର୍ତ୍ତମାନ ଅବସ୍ଥାରେ ଯେ କୌଣସି ଲେଖକ ପକ୍ଷରେ ଅତି ଅସାଧ ବ୍ୟାପାର । କେବଳ ପ୍ରାଚୀନ ଶିଳ୍ପ ବିଷୟରେ ଆମ୍ଭେମାନେ ଏକାବେଳକେ ଯେ ଅଜ୍ଞାତ ପୂର୍ବପୁରୁଷମାନଙ୍କର ଅଦ୍ଭୁତ କଳା କୌଶଳକୁ ଆମ୍ଭର ବୋଲି କହିବାକୁ ଆମ୍ଭେମାନେ ଯେ ନିତାନ୍ତ ଅସମର୍ଥ ତାହା ନୁହେଁ, ଖଣ୍ଡିଏ ସୁଦ୍ଧା ଓଡ଼ିଶାର ଶିଳ୍ପ ଗ୍ରନ୍ଥ ଏପର୍ଯ୍ୟନ୍ତ ପ୍ରକାଶିତ ହୋଇ ପାରିନାହିଁ । ଶିଳ୍ପ ବିଶେଷର ଅର୍ଥ କରିବା ତେଣେ ଥାଉ, ତାହାର ନାମ ପର୍ଯ୍ୟନ୍ତ ବର୍ତ୍ତମାନ ଆମ୍ଭମାନଙ୍କ ପ୍ରତି ସଂପୂର୍ଣ୍ଣ ଅପରିଚିତ । ଓଡ଼ିଶାର ଯେ କୌଣସି ମନ୍ଦିରର ଶିଳ୍ପରେ କେତେ ଜ୍ଞାନ ଅନୁଭବ ଓ ଚିନ୍ତାର ବିକାଶ ପାଇଅଛି, ତାହାର କଳ୍ପନା

* Konarka P.19

କରିବା ଆମ୍ଭପକ୍ଷରେ ଏକାବେଳକେ ଅସମ୍ଭବ । ପୁଣି ଶିଳ୍ପ ବିଷୟରେ କୋଣାର୍କ ସର୍ବମୁଖରେ ସର୍ବଶ୍ରେଷ୍ଠ ବୋଲି ପ୍ରଶଂସିତ ହୋଇଅଛି; ସୁତରାଂ ତାହାର କଳା କୌଶଳର ଅର୍ଥ କରିବାରେ ଯେ କୌଣସି ଲେଖକର ଚେଷ୍ଟା ବିଫଳ ହେବା ସ୍ୱାଭାବିକ । କାରଣ କୋଣାର୍କ କେବଳ ଏକ ଯୁଗ ବା ଶତାବ୍ଦୀର କାର୍ଯ୍ୟ ନୁହେଁ, ଏହା ଯୁଗ ଯୁଗ ବ୍ୟାପୀ ସାଧନାର ଫଳ । ଏଥିରେ ଓଡ଼ିଆ ଶିଳ୍ପର ଉନ୍ନତି ଓ ବିକାଶର ପରାକାଷ୍ଠା ଯେପରି ଦେଖାଯାଇଅଛି, ଏହାର ପ୍ରତ୍ୟେକ କାମ ସେହିପରି ଇତିହାସର ଆରମ୍ଭରୁ ବହୁତ ଜ୍ଞାନ ଓ ଅନୁଭବ ଏକତ୍ର ପୁଞ୍ଜୀଭୂତ କରିଅଛି । ଏହାର ପ୍ରତ୍ୟେକ ଲତା-ପତ୍ରର କାମ ଦେଖିଲେ ସମାଲୋଚକର ମନ ଯେପରି ଏକ ଖଣ୍ଡ ପ୍ରସ୍ତରରେ ଆବଦ୍ଧ ନ ରହି କଳ୍ପନାର ଅନନ୍ତ ସ୍ରୋତରେ ଭାସମାନ ହୁଏ, ଶିଳ୍ପର କ୍ରମିକ ଉନ୍ନତି, ଶିଳ୍ପୀର କଠୋର ସାଧନା, ଗଭୀର ଚିନ୍ତା ଓ ଯୁଗ ଯୁଗବ୍ୟାପୀ ଅନୁଭବ ସେହିପରି ମାନସ କ୍ଷେତ୍ରରେ ଉଦିତ ହୋଇ ଦର୍ଶକ-ହୃଦୟ ଏକାବେଳକେ ସ୍ତବ୍ଧ କରିଦିଏ । କୋଣାର୍କରେ ଯେଉଁ ଗୋଟିଏ ଗୋଟିଏ କାରୁକାର୍ଯ୍ୟ ଦେଖିବାକୁ ମିଳେ, ତାହାର ପଶ୍ଚାଦ୍‌ଭାଗରେ ଅସୀମ ଜ୍ଞାନରାଶି ଭାରତୀୟ ଚିନ୍ତାର ଆରମ୍ଭ ଯୁଗରୁ ବିସ୍ତୃତ ରହିଥିବାର ଦେଖାଯାଏ । କେତେ ଜାତୀୟ ପ୍ରଥା, କେତେ ପାରିବାରିକ ଉତ୍ସବ, କେତେ ଧର୍ମ ସମସ୍ୟା ଓ ନିଭୃତ ସାଧନା କୋଣାର୍କର ସର୍ବତ୍ର ପ୍ରତିଫଳିତ ରହିଅଛି, ସେ ସମସ୍ତର ବର୍ଣ୍ଣନା ଏହି କ୍ଷୁଦ୍ର ଗ୍ରନ୍ଥ ଓ ଦୁର୍ବଳ ଲେଖନୀ ପକ୍ଷରେ ନିତାନ୍ତ ଅସମ୍ଭବ ।

ଉପରୋକ୍ତ ସମସ୍ତ ଅସୁବିଧା ମଧ୍ୟରେ ଆହୁରି ବିଶେଷ କଥା ଯେ, କୋଣାର୍କ ମନ୍ଦିରର ଅତି ଅଳ୍ପ ମାତ୍ର ଅଂଶ ବର୍ତ୍ତମାନ ଅଛି । ସେହି ଅଳ୍ପ ଅଂଶର ବର୍ଣ୍ଣନା ମଧ୍ୟ ବର୍ତ୍ତମାନ କେବଳ କେତେକ ସୁବିଧାଜନକ ହୋଇଅଛି । ଷ୍ଟର୍ଲିଙ୍ଗ, ଫରଗୁସନ, ହଣ୍ଟର ଓ ରାଜେନ୍ଦ୍ର ଲାଲ ପ୍ରଭୃତି କୋଣାର୍କ ଦେଖିଲାବେଳକୁ ମନ୍ଦିର ଭାଙ୍ଗି ବାଲି ପଥରରେ ପୋତି ହୋଇ ପଡିଥିଲା । ସୁତରାଂ ବର୍ତ୍ତମାନ ଦର୍ଶକମାନେ ମନ୍ଦିରର ଯେତେ ଦେଖିବାକୁ ପାଆନ୍ତି, ସେମାନେ ସେତେ ମଧ୍ୟ ପାଇ ନ ଥିଲେ । ସେମାନଙ୍କ ପୂର୍ବରୁ ଆବୁଲଫଜଲ ପ୍ରଥମରେ କୋଣାର୍କ ବର୍ଣ୍ଣନା ଲେଖିଥିଲେ । ସେ ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର ଶେଷାଂଶରେ ଓଡ଼ିଶା ଭ୍ରମଣ କରିଥିଲେ । ସେ ନିଜେ କୋଣାର୍କ ଦେଖି ନ ଥିଲେ; ଯାହା ଶୁଣିଥିଲେ, ତାହା କେବଳ ତାହାଙ୍କ ସୁବିଖ୍ୟାତ ଗ୍ରନ୍ଥ 'ଆଇନୀ ଆକବରୀ' *ରେ ଲେଖି ଯାଇ ଅଛନ୍ତି ।

ଜଗନ୍ନାଥଙ୍କ ନିକଟରେ ସୂର୍ଯ୍ୟ ମନ୍ଦିର ଅବସ୍ଥିତ । ଏହାର ନିର୍ମାଣରେ ଓଡ଼ିଶାର ବାର ବର୍ଷର ସମସ୍ତ ରାଜସ୍ୱ ** ବ୍ୟୟ ହୋଇଥିଲା । ଏହି ବିରାଟ ମନ୍ଦିର ଦେଖି କେହି

* "Aini Akabari" – Gladwin's Translation. Vol. II. P.15.

** ବାର ବର୍ଷର ରାଜସ୍ୱର ଆଧୁନିକ ମୂଲ୍ୟ –

କେଶରୀ ରାଜତ୍ୱରେ ଓଡ଼ିଶା ୧୧୦୦୦ ବର୍ଗ ମାଇଲ ଏବଂ ଗଙ୍ଗବଂଶୀୟ ଅନଙ୍ଗଭୀମ ଦେବଙ୍କ ସମୟରେ ଓଡ଼ିଶାର ଆୟତନ ବଢ଼ି ୧୩୯୪୦୭ ବର୍ଗ ମାଇଲ ହୋଇଥିଲା । କେଶରୀ

ଆଶ୍ଚର୍ଯ୍ୟାନ୍ୱିତ ନ ହୋଇ ରହି ପାରିବେ ନାହିଁ । ଏହି ମନ୍ଦିରର ଚତୁର୍ଦ୍ଦିଗରେ ଯେଉଁ ପ୍ରାଚୀର ଅଛି, ତାହା ୧୫୦ ହାତ ଉଚ୍ଚ ଏବଂ ୧୯ ହାତ ମୋଟ । ଏହି ପ୍ରାଚୀର ଦେହରେ ତିନୋଟି ଦ୍ୱାର । ପୂର୍ବ ଦ୍ୱାରରେ ଦୁଇଟି ସୁନ୍ଦର ହାତୀ ଏବଂ ପ୍ରତ୍ୟେକେ ଶୁଣ୍ଢରେ ଜଣେ ଜଣେ ମନୁଷ୍ୟ ଧରିଛନ୍ତି । ପଶ୍ଚିମରେ ପୂର୍ଣ୍ଣ ଭାବରେ ସୁସଜ୍ଜିତ ବଡ଼ ଆଶ୍ଚର୍ଯ୍ୟଜନକ ଦୁଇଟି ଅଶ୍ୱାରୋହୀ ସହିତ ଠିଆ ରହିଅଛି । ଉତ୍ତର ଦ୍ୱାର ଉପରେ ଦୁଇଟି ବାଘର ମୂର୍ତ୍ତି, ବାଘ ଦୁଇଟି ଦୁଇଟି ହାତୀ ମାରି ତା' ଉପରେ ବସିଅଛି । ପୂର୍ବ ଦ୍ୱାର ସମ୍ମୁଖରେ ୫୦ ଗଜ ଲମ୍ବ କଳା ପଥରର ଗୋଟିଏ ଅଷ୍ଟଭୁଜ ଖମ୍ବ ଅଛି । ପାହାଚ୍ ନଅଟି । ଏହା ପାର ହୋଇଗଲେ ଗୋଟିଏ ବିସ୍ତୃତ ପ୍ରାଙ୍ଗଣ ପଡ଼େ । ଏଥିରେ ଗୋଟିଏ ପ୍ରକାଣ୍ଡ ପ୍ରସ୍ତର ତୋରଣ ଅଛି । ଏହି ତୋରଣ ଉପରେ ସୂର୍ଯ୍ୟ ଓ ଅନ୍ୟାନ୍ୟ ଗ୍ରହମାନଙ୍କର ମୂର୍ତ୍ତି ଖୋଳା ହୋଇଛି । ଏହାର ଚତୁର୍ଦ୍ଦିଗରେ ନାନା ଶ୍ରେଣୀର ଭକ୍ତଙ୍କ ମୂର୍ତ୍ତି ନିର୍ମିତ ହୋଇଅଛି ଏବଂ ସେହି ମୂର୍ତ୍ତିମାନଙ୍କରେ ମନୁଷ୍ୟ ମନର ବିଭିନ୍ନ

---

ରାଜତ୍ୱରେ ବାର୍ଷିକ ରାଜସ୍ୱ ୧୫ ଲକ୍ଷ ମାଢ଼ ସ୍ୱର୍ଣ୍ଣ ଏବଂ ଅନଙ୍ଗଭୀମ ଦେବଙ୍କ ସମୟରେ ୩୫ ଲକ୍ଷ ମାଢ଼ ସ୍ୱର୍ଣ୍ଣ ଥିଲା (ମାଦଳାପାଞ୍ଜି) । ଭୂମିରୁ ଆୟ ୩୫ ଲକ୍ଷ ମାଢ଼ ସ୍ୱର୍ଣ୍ଣ ଓ ଜଙ୍ଗଲାଦିରୁ ରାଜସ୍ୱ ଆଦାୟ ୧୨ ଲକ୍ଷ ୮୮ ହଜାର ମାଢ଼ ସ୍ୱର୍ଣ୍ଣ । ମୋଟ ରାଜସ୍ୱ ୪୭୮୮୦୦୦ ମାଢ଼ ସ୍ୱର୍ଣ୍ଣ; ଅର୍ଥାତ୍ ୨୩୯୪୦୦୦ ତୋଳା ସ୍ୱର୍ଣ୍ଣ । ସ୍ୱର୍ଣ୍ଣ ରୌପ୍ୟର ଅନୁପାତ ଆଲ୍ଲାଉଦ୍ଦିନ ଖିଲିଜୀଙ୍କ ଶାସନ କାଳରେ ୧ କୁ ୧୦ ଥିଲା । ୨୩୯୪୦୦୦ ତୋଳା ସୁନା ସେତେବେଳେ ୨ କୋଟି ୩୯ ଲକ୍ଷ ୪୦ ହଜାର ଭରି ରୁପା । ବର୍ତ୍ତମାନ ଟଙ୍କାରେ ଶତକରା ୫୪ ରୁପା ଥାଏ । ସୁତରାଂ ୨୩୯୪୦୦୦୦ × ୧୦୦/୫୪ = ୧୩୩୦୦୦୦୦୦/୩ = ୪୪୩୩୩୩୩୩-୧/୩ ଟଙ୍କା, ଉତ୍କଳର ଏକ ବର୍ଷର ରାଜସ୍ୱ । ୧୨ ବର୍ଷର ରାଜସ୍ୱ ୫୩ କୋଟି ୨୦ ଲକ୍ଷ ଟଙ୍କା କୋଣାର୍କରେ ବ୍ୟୟିତ ହୋଇଗଲା । (ଲେଖକଙ୍କ ପ୍ରଣୀତ ଉତ୍କଳ ଇତିହାସ)

ସୁତରାଂ ଅନଙ୍ଗଭୀମ ଦେବଙ୍କ ରାଜସ୍ୱର ପରିମାଣ ତାହାଙ୍କ ପୁତ୍ର କୋଣାର୍କ-ନିର୍ମାତା ନରସିଂହ ଦେବଙ୍କ ସମୟରେ ଅଧିକ ନ ଥିଲେ ମଧ ସମାନ ଥିବାର ଧରାଯାଇପାରେ । ୩୫ ଲକ୍ଷ ମାଢ଼ = ୧୭ ଲକ୍ଷ ୫୦ ହଜାର ତୋଳା ସଙ୍ଗେ ସମାନ । ସେତେବେଳେ ସୁନା ଓ ରୁପାର ଅନୁପାତ ୧କୁ ୧୦ ଧରା ଯାଇପାରେ । କାରଣ ଆକବରଙ୍କ ସମୟରେ ୧ କୁ ୯.୪ ଥିଲା ଏବଂ ଆଲ୍ଲାଉଦ୍ଦିନ ଖିଲିଜୀଙ୍କ ବେଳେ ୧ କୁ ୧୦ ଥିଲା (ହଣ୍ଟର) । ସୁତରାଂ ୧୭ ଲକ୍ଷ ୫୦ ହଜାର ତୋଳା ସୁନା = ୧ କୋଟି ୭୫ ଲକ୍ଷ ତୋଳା ରୁପା । ହଣ୍ଟରଙ୍କ ସମୟରେ ଟଙ୍କାରେ ୧୮୦ ଗ୍ରେନ୍ ପରିବର୍ତ୍ତରେ ୧୬୫ ଗ୍ରେନ୍ ବିଶୁଦ୍ଧ ରୁପା ଥାଏ ଅର୍ଥାତ୍ ତୋଳାରେ ୧୫ ଗ୍ରେନ୍ ବା ୧୫/୧୮୦ = ୧/୧୨ ଭାଗ ରୁପା କମ୍ ଥାଏ (ହଣ୍ଟର) । ସୁତରାଂ ୧ କୋଟି ୭୫ ଲକ୍ଷ ତୋଳା ରୁପା ବର୍ତ୍ତମାନ ଟଙ୍କାରେ ହେବ (୧,୭୫,୦୦୦୦୦+୧,୭୫,୦୦୦୦୦×୧/୧୨ =. ୧,୭୫,୦୦୦୦୦ + ୧୪୫୮୩୩୩-୧/୩) = ୧୮୯୫୮୩୩୩-୧/୩ ଟଙ୍କା ବାର୍ଷିକ ରାଜସ୍ୱ । ସୁତରାଂ ୧୨ ବର୍ଷର ରାଜସ୍ୱ ୨୨ କୋଟି ୭୫ ଲକ୍ଷ ଟଙ୍କା କୋଣାର୍କରେ ବ୍ୟୟିତ ହୋଇଥିଲା । ଶ୍ରୀଯୁକ୍ତ ମନମୋହନ ଗାଙ୍ଗୁଲି ଏହି ବାର୍ଷିକ ରାଜସ୍ୱ ୩ କୋଟି ଟଙ୍କା ଧରିଛନ୍ତି । (Orissa and Her Remains, P. 483)

ଭାବ ସୁନ୍ଦର ଭାବରେ ବିକାଶ ପାଇଅଛି । ସେମାନଙ୍କ ମଧ୍ୟରୁ କେହି ଆଣ୍ଠୁ ମାଡ଼ି ବସିଅଛି, କେହି ଅବା ମୁଣ୍ଡ ଉପରେ ଠିଆ ରହିଅଛି, କେହି ସାଷ୍ଟାଙ୍ଗ ପ୍ରଣିପାତ କରୁଅଛି, କେହି ହସୁଅଛି, କେହି ପୁଣି କାନ୍ଦୁଅଛି ଏବଂ କେହି ଅବା ଅବାକ୍ ହୋଇ ରହିଅଛି । ଏମାନଙ୍କ ବ୍ୟତୀତ କେତେ ଗାୟକ ଅଛନ୍ତି । ଯେଉଁ ଜୀବଜନ୍ତୁ ମନୁଷ୍ୟ କେବେ କଳ୍ପନା ବ୍ୟତୀତ ଅନ୍ୟତ୍ର ଦେଖି ନ ଥିବ, ସେହିପରି କେତେକଙ୍କର ମୂର୍ତ୍ତି ମଧ୍ୟ ଅଛି । କଥିତ ଅଛି ୭୩୦ ବର୍ଷ ପୂର୍ବେ ରାଜା ନରସିଂହ ଦେବ ଏହି ପ୍ରକାଣ୍ଡ ମନ୍ଦିର ନିର୍ମାଣ କରି ଭବିଷ୍ୟତ ବଂଶଧରଙ୍କ ସକାଶେ ଗୋଟିଏ ଯଶଃ ମନ୍ଦିର ରଖି ଯାଇଥିଲେ । ଏହି ମନ୍ଦିର ନିକଟରେ ୨୮ଟି ଅନ୍ୟାନ୍ୟ ମନ୍ଦିର ଅଛି; ଉତ୍ତର ଦ୍ୱାର ସମ୍ମୁଖରେ ୬ଟି ଏବଂ ପ୍ରାଙ୍ଗଣର ବାହାରେ ୨୨ଟି । ଏହି ପ୍ରତ୍ୟେକ ମନ୍ଦିରର ସ୍ୱତନ୍ତ୍ର ସ୍ୱତନ୍ତ୍ର ପୁରାବୃତ୍ତ ରହିଛି । *

ଆବୁଲଫଜଲଙ୍କ ଉପରୋକ୍ତ ବର୍ଣ୍ଣନାରେ କେତେକ ଅସତ୍ୟ ଲେଖାଅଛି । ଏହି ଅଧ୍ୟାୟ ଏବଂ ଏହାର ପରବର୍ତ୍ତୀ ଅଧ୍ୟାୟମାନଙ୍କର ବର୍ଣ୍ଣନାରୁ ଆବୁଲଫଜଲଙ୍କ ବର୍ଣ୍ଣନାର ସତ୍ୟାସତ୍ୟ ଧରା ପଡ଼ିବ ।

## ପୀଠ, ପୃଷ୍ଠ ବା ଉପାନ

ପୂର୍ବେ କୁହାଯାଇଅଛି ଯେ, ଦେଉଳ ଓ ମୁଖଶାଳା ଗୋଟିଏ ପୀଠ ଉପରେ ନିର୍ମିତ । ଏହିପରି ସୁନ୍ଦର ଓ ଉଚ୍ଚ ପୀଠ ଭୁବନେଶ୍ୱର ଓ ପୁରୀରେ ଦେଖାଯାଏ ନାହିଁ । କୋଣାର୍କ ମନ୍ଦିରର ଏହା ଗୋଟିଏ ବିଶେଷତ୍ୱ । ଏହାଦ୍ୱାରା ସମୁଦାୟ ମନ୍ଦିରର ସୌନ୍ଦର୍ଯ୍ୟ ଯେପରି ବଢ଼ିଲା ପରି ଦେଖାଯାଏ, ସେହିପରି ମଧ୍ୟ ମନ୍ଦିର ଦୃଢ଼ ଓ ଶକ୍ତ ହେଲା ପରି ବୋଧହୁଏ । ୧ ଫୁଟ ଉଚ୍ଚ ଗୋଟିଏ ତଳ ପତ୍ତନ ଉପରେ ପୀଠ ନିର୍ମିତ । ଚତୁର୍ଦ୍ଦିଗରେ ସେହି ତଳ ପତ୍ତନ ମୁଖରେ ଏକାଦିକ୍ରମେ ଏକଶ୍ରେଣୀ ଅତି ସୁନ୍ଦର ହାତୀ ମୂର୍ତ୍ତି ଖୋଳା ହୋଇଅଛି । ସ୍ଥାନେ ସ୍ଥାନେ ଦୁଇ ହାତୀ ମଧ୍ୟରେ ଶିକାର ଓ ମନୁଷ୍ୟର ପାରିବାରିକ ଜୀବନର ଦୃଶ୍ୟ ମଧ୍ୟ ଦେଖାଯାଏ । ଏହି ତଳ ପତ୍ତନ ଉପରେ ପୀଠ, ଚକ ଓ ଘୋଡାମାନ ସ୍ଥାପିତ ।

ଏହି ପୀଠ ଦୁଇ ଭାଗରେ ବିଭକ୍ତ; ଯଥା :—

| | |
|---|---|
| ତଳ ପୀଠ | ୧୩ ଫୁଟ । ୩ ଇଞ୍ଚ ଉଚ୍ଚ |
| ଉପର ପୀଠ ବା ଖୁରପୃଷ୍ଠ | ୨ ଫୁଟ । ୩ ଇଞ୍ଚ ଉଚ୍ଚ |
| | ମୋଟ ୧୫ ଫୁଟ । ୬ ଇଞ୍ଚ |

* 'ଆଇନୀ ଆକବରୀ'ର ଅନ୍ୟ ଅନୁବାଦରେ (by Blochman and Jarrett) ଲେଖାଅଛି ''ଏ ପ୍ରତ୍ୟେକଙ୍କର ସ୍ୱତନ୍ତ୍ର ଉପାଖ୍ୟାନ ଅଛି ।''

ଅତଏବ ତଳ ପଭନ ସହିତ ସମୁଦାୟ ପୀଠର ଉଚ୍ଚତା (୧ଫୁଟ + ୧୫ ଫୁଟ । ୬ ଇଞ୍ଚ) ୧୬ ଫୁଟ ୬ ଇଞ୍ଚ; ଅର୍ଥାତ୍ ଭୂମିରୁ ୧୬ ଫୁଟ ୬ ଇଞ୍ଚ ଉଚ୍ଚରେ ଦେଉଳ ଓ ମୁଖଶାଳା ନିର୍ମିତ । ଦେଉଳ ଓ ମୁଖଶାଳାର ଚତୁର୍ଦ୍ଦିଗରେ ତଳ ପୀଠ ଉପରେ ଗୋଟିଏ ବିସ୍ତୃତ ବାରଣ୍ଡା ଅଛି । ଏହାର ଓସାର ୮ ଫୁଟ ଓ ୧୨ ଫୁଟ ମଧ୍ୟରେ ।

ତଳ ପୀଠ ପାଞ୍ଚ ଭାଗରେ ବିଭକ୍ତ; ଯଥା :—

ଜଙ୍ଘା, ବରାଣ୍ଡି, ବନ୍ଧନା, ଉପର ବରାଣ୍ଡି ଓ ଉପର ଜଙ୍ଘା । ଏମାନଙ୍କର ପରିମାଣ ଯଥା : —

| | | |
|---|---|---|
| ତଳ ଜଙ୍ଘା | - - - | ଫୁ ୨ । ୧୧ ଇଞ୍ଚ |
| ତଳ ବରାଣ୍ଡି | - - - | ଫୁ ୨ । ୯ ଇଞ୍ଚ |
| ବନ୍ଧନା | - - - | ଫୁ ୧ । ୦ ଇଞ୍ଚ |
| ଉପର ବରାଣ୍ଡି | - - - | ଫୁ ୩ । ୧୦ ଇଞ୍ଚ |
| ଉପର ଜଙ୍ଘା | - - - | ଫୁ ୨ । ୯ ଇଞ୍ଚ |
| | ମୋଟ | ଫୁଟ ୧୩ । ୩ ଇଞ୍ଚ |

ଜଙ୍ଘା ସାଧାରଣତଃ ପାଞ୍ଚ ଭାଗରେ ବିଭକ୍ତ । ଏହିହେତୁ ଏହାକୁ 'ପଞ୍ଚକର୍ମ' ବା 'ପାଞ୍ଚକାମ' କହନ୍ତି । ତଳଆଡୁ ଆରମ୍ଭ କରି ପାଞ୍ଚ ବିଭାଗର ନାମ ପାଦ, କୁମ୍ଭ, ପଟା, କଣି ଓ ବସନ୍ତ । ପ୍ରତ୍ୟେକ କାମର ଗଠନର ଆକାର ଅନୁସାରେ ଏହିପରି ନାମକରଣ ହୋଇଅଛି । ପାଦର ମୁଖରେ ସୁନ୍ଦର ଲତାକାମ, ଉପରେ ମାରଣୀ ଓ ତହିଁରେ ଓଲଟା ପଦ୍ମ ପାଖୁଡାର କାମ । ପାଦ ଉପରେ କୁମ୍ଭ । କୁମ୍ଭରେ କୌଣସି କାମ ନାହିଁ; ସୁତରାଂ ଏହା ପାଦ ଓ ପଟା ମଧ୍ୟରେ ଗୋଟିଏ ଅତି ସୁନ୍ଦର ବ୍ୟବଧାନ ସ୍ୱରୂପ ହୋଇଅଛି । ପଟାରେ ପତ୍ରଲତାର କାମ ଏବଂ ଏହି ଲତା ମଧ୍ୟରେ ସ୍ଥାନେ ସ୍ଥାନେ ନାନା ଜୀବଜନ୍ତୁଙ୍କର ଦୃଶ୍ୟ ମଧ୍ୟ ଅଛି । କଣିରେ କୌଣସି କାମ ନାହିଁ ଏବଂ ବସନ୍ତରେ ପାଦ ପରି ଫୁଲ ଲତାର କାମ (୧) । ସମୁଦାୟ ଜଙ୍ଘାରେ ସମାନ ସମାନ ବ୍ୟବଧାନରେ ଲମ୍ବ ଭାବରେ ନାନା ଲତାକାମ ମଣ୍ଡିତ ଅତି ସୁନ୍ଦର ଖମ୍ବମାନ ଅଛି ।

---

(୧) ଲତା କାମ ଶିଳ୍ପ ଶାସ୍ତ୍ରରେ ଚାରି ପ୍ରକାର ଯଥା :—

(କ) ଫୁଲ ଲତା, ଯେଉଁ ଲତାରେ ଫୁଲ କାମ ଅଧିକ ।

(ଖ) ଲଟି ଲତା, ଯେଉଁ ଲତାରେ ଲଟି ପରି ଫୁଲ ଓ ଶାଖା ଥାଏ ।

(ଗ) ପତ୍ର ଲତା, ଯହିଁରେ ପତ୍ର ଗହଳ ।

(ଘ) ବନ ଲତା, ଯହିଁରେ ପତ୍ର ମୋଟା ଓ ବହଳ ।

ତଳଜଙ୍ଘା ଉପରେ ତଳ ବରାଣ୍ଡି । ଜଙ୍ଘା ଓ ବନ୍ଧନା ମଧ୍ୟରେ ଭିତରକୁ ପଶି ଯାଇଥିବା ଅଂଶକୁ ବରାଣ୍ଡି କହନ୍ତି । ବରାଣ୍ଡି ପାଗ ବା ଖମ୍ଭଦ୍ୱାରା କେତେଗୁଡିଏ କ୍ଷୁଦ୍ର କ୍ଷୁଦ୍ର କୋଠରୀରେ ବିଭକ୍ତ । ଏହି ପାଗଗୁଡିକ ପୀଢ଼ ଦେଉଳ ଆକାରରେ ନିର୍ମିତ । ଏଥିମଧ୍ୟରୁ କେତେକ ଶାର୍ଦ୍ଦୂଳ ସ୍ତମ୍ଭ ଏବଂ ପ୍ରତ୍ୟେକ ଶାର୍ଦ୍ଦୂଳ ସ୍ତମ୍ଭ ପାଖରେ ନାଗ ସ୍ତମ୍ଭ । ଏହି ନାଗ ସ୍ତମ୍ଭରେ ନାଗକନ୍ୟାମାନଙ୍କର ଅଣ୍ଟାଠାରୁ ସର୍ପାକାର ହୋଇଅଛି । ସର୍ପର ଶରୀର ଅତି ସୂକ୍ଷ୍ମ କାମରେ ମଣ୍ଡିତ । ଏହା ବ୍ୟତୀତ କେତେକ ପାଗରେ ମଧ୍ୟ କେବଳ ସ୍ତ୍ରୀ ମୂର୍ତ୍ତି ଅଛି । ଦୁଇ ପାଗର ମଧ୍ୟବର୍ତ୍ତୀ ସ୍ଥାନରେ ଜାଲି କାମ । ଏହିରୂପେ ବରାଣ୍ଡିର ପ୍ରତ୍ୟେକ ଇଞ୍ଚ ନାନା କାରୁକାର୍ଯ୍ୟରେ ପରିପୂର୍ଣ୍ଣ ହୋଇଅଛି ।

ଏହି ବରାଣ୍ଡି ଉପରେ ବନ୍ଧନା । ବନ୍ଧନା ଗୋଟିଏ ବନ୍ଧ ସଦୃଶ ପୀଠର ଚତୁର୍ଦ୍ଦିଗରେ ବୁଲି ଉପର ବରାଣ୍ଡି ଓ ତଳ ବରାଣ୍ଡିର ଲମ୍ୱାକାର କାମ ମଧ୍ୟରେ ଗୋଟିଏ ସୁନ୍ଦର ବ୍ୟବଧାନ ସ୍ୱରୂପ ହୋଇଅଛି । ବନ୍ଧନାକୁ 'ତ୍ରିକର୍ମ' ବା 'ତିନି କାମ' କହନ୍ତି; କାରଣ ଏଥିରେ ପାଦ, ଡୋରୀ ଓ ପଟା ଏହି ତିନି କାମ ଥାଏ । ପାଦରେ ଲତା କାମ ଓ ମଧ୍ୟେ ମଧ୍ୟେ ଜୀବଜନ୍ତୁଙ୍କର ଦୃଶ୍ୟ । ଡ଼ୋରୀରେ ମାଳା କାମ ଏବଂ ତଳ ଓ ଉପର ପାଖରେ ପଦ୍ମ ପାଖୁଡ଼ାର କାମ ଏବଂ ପଟାରେ ପାଦ ପରି ଲତା ଓ ଜୀବଜନ୍ତୁଙ୍କର କାମ । ଡୋରୀ ଗୋଟିଏ ସୂକ୍ଷ୍ମ ଧାର ସ୍ୱରୂପ ପଟା ଓ ପାଦର କାମକୁ ପରସ୍ପରଠାରୁ ବିଛିନ୍ନ କରୁଅଛି ।

ବନ୍ଧନା ଉପରେ ଉପର ବରାଣ୍ଡି । ଏହି ବରାଣ୍ଡି ମଧ୍ୟ ତଳ ବରାଣ୍ଡି ପରି କେତେଗୁଡ଼ିଏ ପାଗ ଦ୍ୱାରା ଅନେକ କୋଠରୀରେ ବିଭକ୍ତ ହୋଇଅଛି; କିନ୍ତୁ ପ୍ରଭେଦ ଏହି ଯେ ଏଥିରେ କୋଠରୀଗୁଡିକ ଅପେକ୍ଷାକୃତ ପ୍ରଶସ୍ତ ଏବଂ ପାଗଗୁଡିକ ତଳ ବରାଣ୍ଡି ପରି ମନ୍ଦିର ଆକାରରେ ନ ହୋଇ ବରଂ ଆୟତାକାରରେ ହୋଇଅଛି ଏବଂ ସେମାନଙ୍କର ଉପରିଭାଗରେ ନାନା ଲତା ଓ ଫୁଲର ଅତି ଚମତ୍କାର ସୂକ୍ଷ୍ମ କାମ ରହିଅଛି । ଏହି ଲତା କାମ ମଧ୍ୟରେ ହରିଣ ପ୍ରଭୃତି ଜୀବଜନ୍ତୁଙ୍କର ମୂର୍ତ୍ତି ମଧ୍ୟ ଦେଖାଯାଏ । ପ୍ରତ୍ୟେକ ପାଗର ତଳ ଭାଗରେ ମାରଣୀର କାମ ଏବଂ ତାହା ପଦ୍ମ ପାଖୁଡାରେ ଚିତ୍ରିତ । ଏହାକୁ ପାଗର ପାଦ କୁହାଯାଇ ପାରେ । ପାଦ ଉପରେ ପ୍ରତ୍ୟେକ ପାଗ ବା ଖମ୍ଭ ଦେହରେ ପୁଣି କୁମ୍ଭ ଓ ବସନ୍ତ ମଧ୍ୟ ଅଛି । ପାଦ ଓ ବସନ୍ତ ଉଭୟର ସମ୍ମୁଖ ଭାଗ ଲତା କାମରେ ପୂର୍ଣ୍ଣ । ଦୁଇ ପାଗ ମଧ୍ୟବର୍ତ୍ତୀ କୋଠରୀ ବା ଖୋପରେ ତିନି ଚାରିଟି ଲେଖାଏଁ ମୂର୍ତ୍ତି ଅଛି । ସେହି ମୂର୍ତ୍ତି ଗୁଡିକ ଏପରି ସୁନ୍ଦର ଯେ ଦେଖିଲେ ମନ ହଠାତ୍ ମୁଗ୍ଧ ହୋଇଯାଏ । ସେଥିମଧ୍ୟରୁ ଅଧିକାଂଶ ମୂର୍ତ୍ତି ଅଶ୍ଳୀଳ । ଯେଉଁ ଗୁଡିକ ଅଶ୍ଳୀଳ ନୁହେଁ, ସେମାନଙ୍କ ମଧ୍ୟରୁ କେତୋଟିର ଉଲ୍ଲେଖ କରାଗଲା :–

୧ । ଶିକାର ଦୃଶ୍ୟ – ଜଣେ ଅଶ୍ୱାରୋହୀ ଘୋଡା ଉପରେ ବସି ଅଛନ୍ତି ଏବଂ ଗୋଟିଏ ବାଘ ଓ ଗୋଟିଏ ହରିଣ ମାରି ତଳେ ପକାଇ ଦେଇଅଛନ୍ତି । ଏହି ଦୃଶ୍ୟଟି ପ୍ରାୟ ନଷ୍ଟ ହୋଇ ଗଲାଣି । ଏଥିରେ ବିଶେଷ କୌତୂହଳର କଥା ଏହି ଯେ ଓଡ଼ିଶାର ଅନ୍ୟତ୍ର ବାଘ

ମୂର୍ତ୍ତି ପ୍ରାୟ ଦେଖାଯାଏ ନାହିଁ ଏବଂ ସେହି କୋଣାର୍କରେ ମଧ୍ୟ ଅନ୍ୟ ସ୍ଥାନରେ ବାଘ ଆଉ ଦେଖିବାକୁ ମିଳିଲା ନାହିଁ ।

୨ । ରାଜଦରବାର ଦୃଶ୍ୟ – ରାଜା ଗୋଟିଏ ହାତୀ ଉପରେ ବସି ଅଛନ୍ତି ଏବଂ କେତେକ ଜଣ ବ୍ୟକ୍ତି ଲମ୍ବା ପୋଷାକ (ଚପକନ) ପିନ୍ଧି ଆଗରେ ଠିଆ ହୋଇ ରାଜାଙ୍କୁ ଗୋଟିଏ ଜନ୍ତୁ ଉପହାର ଦେଉଅଛନ୍ତି । ଜନ୍ତୁଟି ଓଟ ପରି ଦେଖାଯାଏ; କିନ୍ତୁ ତାହାର ଶିଙ୍ଗ ଅଛି ।

୩ । ଉପାସନା ଦୃଶ୍ୟ – ଏହି ଦୃଶ୍ୟଟି ବିଶେଷ କୌତୂହଳଜନକ । ଦୁଇଟି କାରୁଖଚିତ ପୀଠ ଉପରେ ଶିବଲିଙ୍ଗ, ଜଗନ୍ନାଥ ଓ ମହିଷାସୁରମର୍ଦ୍ଦିନୀ ଦୁର୍ଗା ସ୍ଥାପିତ ଅଛନ୍ତି । ଜଣେ ରାଜା ତାହାଙ୍କ ହସ୍ତୀ ଓ ଅନୁଚରମାନଙ୍କ ସହିତ ଉପାସନା ନିମନ୍ତେ ଦଣ୍ଡାୟମାନ । ବର୍ତ୍ତମାନ ଏହି ଦୃଶ୍ୟଟି ଗଭର୍ଣ୍ଣମେଣ୍ଟଙ୍କର ନୂତନ ନିର୍ମିତ ଘରେ ଯତ୍ନରେ ରକ୍ଷିତ ଅଛି । ଅଷ୍ଟମ ଅଧ୍ୟାୟରେ ଦଶମ ମୂର୍ତ୍ତିରେ ଏହି ଦୃଶ୍ୟର ଆଲୋଚନା ହେବ ।

ଉପରୋକ୍ତ ବରାଣ୍ଡି ଉପରେ ଉପର ଜଙ୍ଘାର କାମ । ଉପର ଜଙ୍ଘା ସାଧାରଣତଃ ପଟା, ପେଣୀ, କଣି, ବସନ୍ତ, କଣି, ପେଣୀ ଓ ବସନ୍ତ ଏହି ସାତ କାମରେ ବିଭକ୍ତ; ତେଣୁ ଏହାକୁ 'ସପ୍ତକର୍ମ' ବା 'ସାତ କାମ' କହନ୍ତି । ସର୍ବତ୍ର ଏହିପରି ସାତ କାମ ଦେଖାଯାଏ ନାହିଁ । କୋଣାର୍କ ମୁଖଶାଳା ବାଡ଼ର ଉପର ଜଙ୍ଘାରେ ଦଶ କାମ (୬ଷ୍ଠ ଅଧ୍ୟାୟ) ଏବଂ ପୀଠର ଉପର ଜଙ୍ଘାରେ ତିନି କାମ । ଏହି ତିନି କାମ ମଧ୍ୟରୁ ପ୍ରଥମରେ ହାତୀ ଓ ଯୁଦ୍ଧର ନାନା ପ୍ରକାର ଦୃଶ୍ୟ ଦେଖାଯାଏ । ମଧ୍ୟରେ ମଧୁଚକ୍ର ପରି ଜାଲିକାମ ଏବଂ ତାହା ପ୍ରଥମ ଓ ତୃତୀୟ କାମଠାରୁ ସାମାନ୍ୟ ଭିତରକୁ ପଶି ଯାଇଅଛି । ତୃତୀୟ କାମ ଭାଙ୍ଗିଯିବାରୁ ଆଉ ପ୍ରାୟ ଦେଖାଯାଏ ନାହିଁ । ସେଥିରେ ହାତୀ କାମ ଥିବାର ଲେଖକମାନେ ଅନୁମାନ କରନ୍ତି । ପୀଠଟି ନାନା ସ୍ଥାନରେ ବହୁତ ଭାଙ୍ଗିଗଲାଣି । ବିଶେଷତଃ ପଶ୍ଚିମ ପାଖରେ ଏହାର କାମ ପ୍ରାୟ ନାହିଁ । କେବଳ ମୁଖଶାଳା ତଳେ ଏହା ଅକ୍ଷୁର୍ଣ୍ଣ ଥିଲା ପରି ଦେଖାଯାଏ ।

**ଚକ** — କୋଣାର୍କ ମନ୍ଦିର ସୂର୍ଯ୍ୟଙ୍କ ରଥ ଆକାରରେ ନିର୍ମିତ ହୋଇଥିବାର ପୂର୍ବେ କୁହାଯାଇଅଛି । ଏହି ପୀଠ ଦେହରେ ନିମ୍ନଲିଖିତ କ୍ରମେ ୨୪ଟି ଚକ ଅଛି :—

| | | | |
|---|---|---|---|
| ବଡ଼ ଦେଉଳର | ଦକ୍ଷିଣ ପାଖରେ | ଚକ | ୬ |
| ବଡ଼ ଦେଉଳର | ଉତ୍ତର ପାଖରେ | ଚକ | ୬ |
| ମୁଖଶାଳାର | ଦକ୍ଷିଣ ପାଖରେ | ଚକ | ୪ |
| ମୁଖଶାଳାର | ଉତ୍ତର ପାଖରେ | ଚକ | ୪ |
| ମୁଖଶାଳାର ପୂର୍ବ ପାହାଚରେ | ଦକ୍ଷିଣ ପାଖରେ | ଚକ | ୨ |
| ମୁଖଶାଳାର | ଉତ୍ତର ପାଖରେ | ଚକ | ୨ |
| | ମୋଟ | ଚକ | ୨୪ |

ଚକ ତଳ ପଉନ ଉପରେ ଅବସ୍ଥିତ । ତାହାର ବ୍ୟାସ ୯ ଫୁଟ ୯ ଇଞ୍ଚ । ଚକର ତୁମ୍ବ ଦେହରେ ଆଠଟା ମୋଟା ଓ ଆଠଟା ସରୁ ଅର ଖଞ୍ଜା ଅଛି । ତୁମ୍ବର ବ୍ୟାସ ୧ ଫୁଟ ୧୦ ଇଞ୍ଚ । ତୁମ୍ବ ଭିତରୁ ଅଖଚୂଳୀ ୧୧ ଇଞ୍ଚ ବାହାରକୁ ବାହାରିଛି । ଅଖଚୂଳୀର ବ୍ୟାସ ୯ ଇଞ୍ଚ । ପ୍ରତ୍ୟେକ ଅର ପଇଠାରୁ ତୁମ୍ବ ପର୍ଯ୍ୟନ୍ତ ୩ ଫୁଟ ୩ ଇଞ୍ଚ ଲମ୍ବ । ଚକମାନଙ୍କ ମଧ୍ୟରୁ କେତେକ ଭାଙ୍ଗି ଯାଇ ପ୍ରାୟ ଦେଖାଯାଏ ନାହିଁ । କେତେକ ପୁଣି ଭାଙ୍ଗିଗଲା ପରି ହେଲାଣି । କେବଳ ଦକ୍ଷିଣ ପାଖରେ ୪ ଏବଂ ଉତ୍ତର ପାଖରେ ୩ ଚକ ଅକ୍ଷୁର୍ଣ୍ଣ ଅଛି । ଚକର ସୌନ୍ଦର୍ଯ୍ୟ ବର୍ଣ୍ଣନାତୀତ । ଅନିକିଳୀଠାରୁ ଆରମ୍ଭ କରି ପଇର ଶେଷ ଭାଗ ପର୍ଯ୍ୟନ୍ତ ପ୍ରତ୍ୟେକ ଅଂଶ ସୂକ୍ଷ୍ମ କାରୁକାର୍ଯ୍ୟରେ ପୂର୍ଣ୍ଣ । ମୋଟା ଅରଗୁଡ଼ିକ ପଇ ଏବଂ ତୁମ୍ବ ପାଖରୁ ମଧ୍ୟ ଆଡ଼କୁ କ୍ରମେ କ୍ରମେ ଅଧିକ ମୋଟା ହୋଇଅଛି ଏବଂ ସେହି ମୋଟା ସ୍ଥାନରେ ପ୍ରତ୍ୟେକ ଅରରେ ଭିନ୍ନ ଭିନ୍ନ କାମ ଦେଖାଯାଏ । କୌଣସିଠାରେ ଅଶ୍ୱାରୋହୀ ଏବଂ କୌଣସିଠାରେ ହାତୀ ଉପରେ ମାହୁନ୍ତ ବସି ରହିଅଛି । କେତେକ ଅରରେ ମଧ୍ୟ ଅଶ୍ଳୀଳ ମୂର୍ତ୍ତି ଅଛି । କୌଣସି କୌଣସି ଅରରେ ଖଟ ଓ ତକିଆ ସହିତ ଜଣେ ରାଜା ବସିଅଛନ୍ତି ଏବଂ ଜଣେ ଅଧେ ଅନୁଚର ପାଖରେ ଠିଆ ହୋଇ ରହିଛନ୍ତି । ଅରର ଅନ୍ୟାନ୍ୟ ଅଂଶରେ ନାନା ଲତା କାମ । ସରୁ ଅର ଗୁଡ଼ିକ ମାଳାକାରରେ ଉଚ୍ଚ ନୀଚ ହୋଇଅଛି । ତୁମ୍ବ ଓ ଅଖଚୂଳୀର ଉପରିଭାଗ ପଦ୍ମ ପାଖୁଡ଼ାରେ ମଣ୍ଡିତ । ଅଖଚୂଳୀର ମୁଖରେ ଭିନ୍ନ ଭିନ୍ନ ଚକରେ ଭିନ୍ନ ଭିନ୍ନ କାମ ଦେଖାଯାଏ । କେତେକରେ ଗଜଲକ୍ଷ୍ମୀ ମୂର୍ତ୍ତି ଅର୍ଥାତ୍ ମଧ୍ୟରେ ଗୋଟିଏ ଲକ୍ଷ୍ମୀ ମୂର୍ତ୍ତି ପଦ୍ମାସନରେ ବସି ରହିଛନ୍ତି ଏବଂ ଦୁଇ ପାଖରେ ଦୁଇଟି ହାତୀ ଠିଆ ହୋଇ ରହି ତାହାଙ୍କ ମସ୍ତକରେ ଜଳ ଢ଼ାଳୁଅଛି । କୌଣସି କୌଣସି ଅଖଚୂଳୀରେ ମଧ୍ୟ ନୃସିଂହ ମୂର୍ତ୍ତି ଜଙ୍ଘ ଉପରେ ହିରଣ୍ୟ କଶ୍ୟପକୁ ରଖି ବିଦାରଣ କରୁଅଛି । ଏହିରୂପେ ପ୍ରତ୍ୟେକ ଅଖଚୂଳୀର କାମ ପରସ୍ପରଠାରୁ ଭିନ୍ନ ।

ଅଖଚୂଳୀରେ ଯେ ଅନିକିଳୀ ଅଛି, ତାହାର କାମ ମଧ୍ୟ ଅତିଶୟ ସୁନ୍ଦର । ପଇର ତଳ ଓ ସୀମାରେ ମାଳା କାମ ଏବଂ ଏହି ମାଳା ମଧ୍ୟରେ ଡାଳି କାମ । ସେହି ଡାଳି ମଧ୍ୟରେ ସ୍ଥାନେ ସ୍ଥାନେ ମନୁଷ୍ୟ ଓ ଜୀବଜନ୍ତୁଙ୍କର କାମ ମଧ୍ୟ ଦେଖାଯାଏ । ପଇର ଉପରି ଭାଗ ଓ ନିମ୍ନ ଭାଗ ଉଭୟ ନାନା ଲତା କାମରେ ମଣ୍ଡିତ । ଏହାକୁ ପତ୍ର ଲତା କୁହାଯାଇ ପାରେ । ଏହିରୂପେ ଚକର ପ୍ରତ୍ୟେକ ଅଂଶର କାମ ଯେପରି ସୁନ୍ଦର ଓ ପ୍ରୀତିକର, ସମୁଦାୟ ଚକଟି ମୋଟରେ ସେହିପରି ମନୋମୁଗ୍ଧକର ହୋଇଅଛି ।

ପୀଠ ଉପରେ ୮ ଫୁଟରୁ ୧୨ ଫୁଟ ପର୍ଯ୍ୟନ୍ତ ବିସ୍ତୃତ ବାରନ୍ଦା ଛାଡ଼ି ୨ ଫୁଟ ୩ ଇଞ୍ଚ ଉଚ୍ଚତାରେ ଖୁରପୃଷ୍ଠ ଆରମ୍ଭ ହୋଇଅଛି । ଏହି ଖୁରପୃଷ୍ଠ ଉପରେ ଦେଉଳ ଓ ମୁଖଶାଳା ଉଭୟ ନିର୍ମିତ । ଏହି ଖୁରପୃଷ୍ଠକୁ 'ପଦ୍ମ ପୃଷ୍ଠ' ମଧ୍ୟ କୁହାଯାଏ । ପୀଠର ପାଦ ଯେପରି,

ସେହିପରି ଆକାରରେ ଦୁଇ ସ୍ତର ପଥରରେ ଏହି ପୀଠ ନିର୍ମିତ । ଏହି ଦୁଇ ସ୍ତର ପଥରର ସମ୍ମୁଖ ଭାଗରେ ଅତି ସୁନ୍ଦର ତାଳି କାମ ଅଛି ଏବଂ ଉପରିଭାଗ ମାରଣୀ ଆକାରରେ ଭିତରଆଡ଼କୁ କ୍ରମେ କ୍ରମେ ଉଚ୍ଚ ହୋଇ ଯାଇଅଛି । ଏହା ଦେହରେ ଓଲଟା ପଦ୍ମ ପାଖୁଡ଼ାର ସୁରମ୍ୟ ଚିତ୍ର ଖୋଳା ହୋଇଅଛି । ଏହି ଦୁଇ ସ୍ତର ପଥରର ମଧ୍ୟବର୍ତ୍ତୀ ସ୍ଥାନରେ ମଧୁଚକ୍ର ପରି ଜାଲି କାମ ଅଛି । ଏହି ପଦ୍ମ ପୃଷ୍ଠ ଉପରେ ଦେଉଳ ଓ ମୁଖଶାଳା ଉଭୟ ନିର୍ମିତ ।

*******

# ପଞ୍ଚମ ଅଧ୍ୟାୟ

## ମନ୍ଦିର-ବର୍ଣ୍ଣନା

### ବଡ଼ ଦେଉଳ

ବଡ଼ ଦେଉଳ ସାଧାରଣତଃ 'ବିମାନ' ବା 'ଦେଉଳ' ନାମରେ କଥିତ ହୁଏ । ଏହା ମୁଖଶାଳାର ପଶ୍ଚିମରେ ଅବସ୍ଥିତ । ଏହାର ସ୍ୱତନ୍ତ୍ର ଦ୍ୱାର ନ ଥାଏ । କେବଳ ମୁଖଶାଳାରୁ ଏହା ଭିତରକୁ ଯିବାର ଗୋଟିଏ ମାତ୍ର ଦ୍ୱାର । କୋଣାର୍କ ବଡ଼ ଦେଉଳ ବର୍ତ୍ତମାନ ଭାଙ୍ଗି ପଡ଼ିଛି । ଦେଉଳ ଭିତର ଚଟାଣ ଉପରୁ ୩୦ ଫୁଟ ମାତ୍ର ଉଚ୍ଚରେ ବାଡ଼ର କେତେକ ଅଂଶ ମାତ୍ର ଠିଆହୋଇ ରହିଅଛି । ଯାହା କିଛି ଅଛି, ତହିଁରୁ ଦେଉଳର ବିରାଟ ଆକାର, ସୁନ୍ଦର ଓ ସୁସ୍ପଷ୍ଟ କାରୁକାର୍ଯ୍ୟ ପରିଷ୍କାର ଅନୁମାନ କରାଯାଏ । ପୁରୀ ଓ ଭୁବନେଶ୍ୱରର ବଡ଼ ଦେଉଳ ଉପରେ ଏହାର ଯେ ବିଶେଷତ୍ୱ ତାହା ଏହି ଭଗ୍ନାବଶେଷ ଦେଖିବା ମାତ୍ରେ ସୁନ୍ଦର ବୁଝିପଡେ । ଭୁବନେଶ୍ୱର ବଡ଼ ଦେଉଳର ବାଡ଼ ଅଂଶ ଯେପରି ବିଭକ୍ତ, କୋଣାର୍କ ବଡ଼ ଦେଉଳର ବାଡ଼ ମଧ ସେହିପରି ଜଙ୍ଘା, ବରାଣ୍ଡି, ବନ୍ଧନା ପ୍ରଭୃତି ପାଞ୍ଚ ଭାଗରେ ବିଭକ୍ତ ଏବଂ ଭୁବନେଶ୍ୱର ଦେଉଳରେ ଯେଉଁ ବିଭାଗରେ ଯେଉଁ କାମ, କୋଣାର୍କ ଦେଉଳରେ ମଧ ସେହିପରି । ତଥାପି କୋଣାର୍କର ବିଶେଷତ୍ୱ ଏହି ଯେ ଦେଉଳର ବିରାଟ ଆକାର ହେତୁ ପ୍ରତ୍ୟେକ କାରୁକାର୍ଯ୍ୟ ଯେପରି ସୁସ୍ପଷ୍ଟ ଭାବରେ ଖୋଦିତ, ସେହିପରି ମଧ ଅତି ସୁନ୍ଦର ଓ ସୂକ୍ଷ୍ମ ହୋଇ ପାରିଅଛି । ଆକାର ବଡ଼ ହେବାରୁ ଶ୍ରମଲାଘବ ସଙ୍ଗେ ସଙ୍ଗେ ସୁନା ରୂପାର କାମ ପରି କାରୁକାର୍ଯ୍ୟର ସୂକ୍ଷ୍ମତା ଶିଳ୍ପୀ ଅତି ଆଶ୍ଚର୍ଯ୍ୟ ଭାବରେ ଦେଖାଇ ପାରିଅଛି ।

ପୂର୍ବବର୍ତ୍ତୀ ଅଧାୟରେ କୁହାଯାଇ ଅଛି ଯେ, ପୀଠ ଉପରେ ୮ ଫୁଟରୁ ୧୨ ଫୁଟ ପର୍ଯ୍ୟନ୍ତ ବାରଣ୍ଡା ଛାଡି ଦେଇ ଦୁଇ ପ୍ରସ୍ତ ପଦ୍ମ ପୃଷ୍ଠ ଏବଂ ତାହା ଉପରେ ଦେଉଳ ଓ ମୁଖଶାଳା ଉଭୟ ନିର୍ମିତ ।

ପୁରୀ ଓ ଭୁବନେଶ୍ୱର ପ୍ରଭୃତି ଦେଉଳ ପରି କୋଣାର୍କ ଦେଉଳ ପଞ୍ଚ ରଥ ଅର୍ଥାତ୍ ଦେଉଳର ପ୍ରତ୍ୟେକ ପାଖ ପାଞ୍ଚଟି ରଥ ବା ପାଗ ବା ଖଣ୍ଡ ଆକାରରେ ବିଭକ୍ତ * ।

---

* ଏହି ପାଗର ସଂଖ୍ୟାନୁସାରେ ଦେଉଳ ଏକରଥ, ତ୍ରିରଥ, ପଞ୍ଚରଥ, ସପ୍ତରଥ ଓ ନବରଥ ଏହି ପାଞ୍ଚ ଶ୍ରେଣୀରେ ବିଭକ୍ତ । ଏଥି ମଧ୍ୟରୁ ନବରଥ ଦେଉଳ ଓଡ଼ିଶାରେ ଆଦୌ ଦେଖାଯାଏ ନାହିଁ । କେବଳ 'ଶାଡ଼ୀ ଦେଉଳ' ବ୍ୟତୀତ ସପ୍ତରଥ ଦେଉଳ ମଧ ଓଡ଼ିଶାରେ

ମଧପାଗର ନାମ 'ରାହାପାଗ' । ଏହାର ଦୁଇ ପାଖର ପାଗ ଦ୍ୱୟର ନାମ 'ଅନର୍ଥ ପାଗ' ଏବଂ ଶେଷ ଦୁଇ ପାଗର ନାମ 'କୋଣକ ପାଗ' । ଏହି ପାଗ ବିଭାଗ ଦେଉଳର ଆରମ୍ଭରୁ ବେକୀ ପର୍ଯ୍ୟନ୍ତ ସମାନ ଭାବରେ ଦେଖାଯାଏ ।

ଦେଉଳର ତଳଆଡ଼ୁ ପ୍ରଥମ ଭାଗର ନାମ ବାଡ଼ । ଏହି ଅଂଶର ଶେଷ ପର୍ଯ୍ୟନ୍ତ ଦେଉଳର କାନ୍ଥ ପୂର୍ଣ୍ଣ ଲମ୍ୱ ଭାବରେ ତିଆର ହୋଇ ଉଠେ । ସବୁ ଶ୍ରେଣୀର ଦେଉଳରେ ଏହି ବାଡ଼ ଥାଏ । ଏହି ବାଡ଼ ଉପରୁ ଦେଉଳର ଚାଳ ବା ଛାତ ଆରମ୍ଭ ହୁଏ । ଚାଳର ନାମ ଓ ଗଠନ ଅନୁସାରେ ଦେଉଳର ନାମକରଣ ହୁଏ । କୋଣାର୍କରେ ରେଖ ଓ ପୀଢ଼ ଏହି ଦୁଇ ଶ୍ରେଣୀର ଛାତ ଦେଖାଯାଏ । ବଡ଼ ଦେଉଳକୁ ରେଖ ଦେଉଳ ଏବଂ ମୁଖଶାଳାକୁ ପୀଢ଼ ଦେଉଳ କହନ୍ତି । ପୀଢ଼ ଦେଉଳର ଛାତରେ ଏକ ପ୍ରସ୍ତ ପୀଢ଼ ଉପରେ ଅନ୍ୟ ପ୍ରସ୍ତ ପୀଢ଼ କ୍ରମେ କ୍ରମେ ଭିତରକୁ ମଡ଼ା ହୋଇ ପଡ଼ୁ ପଡ଼ୁ ଶେଷରେ ଚାଳ ବନ୍ଦ ହୋଇଯାଏ; ଅର୍ଥାତ୍ ପୀଢ଼ ଦେଉଳର ଭିତର ପାଖ ଗୋଟିଏ ଓଲଟା ଶିଡ଼ି ବା ପାହାଚ ପରି ଦେଖାଯାଏ; କିନ୍ତୁ ରେଖ ଦେଉଳରେ କୌଣସି ଖଣ୍ଡିଏ ପଥର ତାହାର ତଳ ପଥରଠାରୁ ଭିତରକୁ ବାହାରି ନ ପଡ଼ି ବରଂ ଏକ ରେଖାରେ ଆଦ୍ୟରୁ ଶେଷ ପର୍ଯ୍ୟନ୍ତ ଗଢ଼ା ହୋଇଥାଏ; କିନ୍ତୁ ମୋଟରେ କାନ୍ଥଟି ଭିତରଆଡ଼କୁ କ୍ରମ ବକ୍ର ହେଉ ହେଉ ପରେ ଦେଉଳ ମୁଦି ହୋଇଯାଏ । ଭୁବନେଶ୍ୱର ଓ ପୁରୀର ବଡ଼ ଦେଉଳ, କୋଣାର୍କ ପରି ରେଖ ଦେଉଳ । ପରେ ଏହି ରେଖାଂଶ ଉପରେ ବେକୀ, ଆମଳକଶିଳା, ଖପୁରୀ ପ୍ରଭୃତି ବସେ ।

ବଡ଼ ଦେଉଳର ବାଡ଼ ଉପରୋକ୍ତ ପଦ୍ମ ପୃଷ୍ଠ ଉପରୁ ଆରମ୍ଭ ହୋଇଅଛି । ଏହି ବାଡ଼ର ସମୁଦାୟ ଅଂଶ ବର୍ତ୍ତମାନ ନାହିଁ । ଯାହା ଅବା ଅଛି, ତାହା ନାନା ସ୍ଥାନରେ ଏପରି ଭାଙ୍ଗି ଯାଇଅଛି ଯେ, ସେଥିରୁ କାମର ବର୍ଣ୍ଣନା କରିବା ଅସାଧ । ତଥାପି ଯେଉଁ ଅଂଶ ଅକ୍ଷୁର୍ଣ୍ଣ ଅଛି, ତହିଁରୁ ଅନ୍ୟାନ୍ୟ ଅଂଶର କାମ କେତେକ ଅନୁମାନ କରାଯାଇପାରେ ।

ପୀଠ ପରି ବାଡ଼ ମଧ ପାଞ୍ଚ ଭାଗରେ ବିଭକ୍ତ; ଯଥା :— ଜଙ୍ଘା, ବରାଣ୍ଡି, ବନ୍ଧନା, ଉପର ବରାଣ୍ଡି ଓ ଉପର ଜଙ୍ଘା । ଜଙ୍ଘାର ଉଚ୍ଚତା ୧୩ ଫୁଟ ୬ ଇଞ୍ଚ ଏବଂ ଏହା ଦେହରେ ଯଥା ନିୟମରେ ପାଞ୍ଚ କାମ ଅଛି; ଯଥା :— ପାଦ, କୁମ୍ଭ, ପଟା, କଣି ଓ ବସନ୍ତ । ପୀଠ ଜଙ୍ଘା ପରି ବାଡ଼ ଜଙ୍ଘାର ବିଭିନ୍ନ ଅଂଶର କାମ ପ୍ରାୟ ସମାନ । ପାଦରେ ଲତା ଏବଂ ଏହାର ଉପରି ଭାଗ ମାରଣୀରେ ଓଲଟ ପଦ୍ମ ପାଖୁଡ଼ାର କାମ । ମଧରେ କେବଳ ଗୋଟିଏ ଡ଼ୋରୀ ଛଡ଼ା କୁମ୍ଭରେ ଅନ୍ୟ କୌଣସି କାମ ନାହିଁ ଏବଂ ଏହାଦ୍ୱାରା ଶିଳ୍ପୀ ତଳେ ପାଦର କାମ ଓ

---

ନାହିଁ । ଏକରଥ ଦେଉଳକୁ ଚଉରସ ଅର୍ଥାତ୍ ଚତୁର୍ଭୁଜାକାର କୁହାଯାଇପାରେ; ଯଥା :— ବୈତାଳ ଦେଉଳ । ପରଶୁରାମେଶ୍ୱର ଦେଉଳ ଛଡା ତ୍ରିରଥ ଦେଉଳ ମଧ ବଡ଼ କ୍ୱଚିତ୍ ଦେଖାଯାଏ । ପଞ୍ଚରଥ ଦେଉଳ ପ୍ରାୟ ସର୍ବତ୍ର ନିର୍ମିତ ହୋଇଅଛି ।

ଉପରେ ପଟା କାମ ମଧ୍ୟରେ ଅତି ସୁନ୍ଦର ଭାବରେ ବୈଷମ୍ୟ ନୀତି ପ୍ରବେଶ କରାଇଅଛି । ପଟାରେ ପତ୍ର ଲତାର ସୁନ୍ଦର କାମ, ପୀଠ ଜଙ୍ଘାର କଣି ଅତି ସୂକ୍ଷ୍ମ ଥିବାରୁ ତହିଁରେ କୌଣସି କାମ ନାହିଁ । କିନ୍ତୁ ଦେଉଳ ଜଙ୍ଘାର କଣି ଅପେକ୍ଷାକୃତ ମୋଟା । ସୁତରାଂ ବୈଷମ୍ୟର ମାତ୍ରା ଯଥା ଅନୁପାତରେ ରଖିବା ନିମନ୍ତେ କଣି ଅଳଂକୃତ ହୋଇଅଛି । କଣିର ଉପର ଓ ତଳ ପାଖରେ ପଦ୍ମ ପାଖୁଡାର କାମ ଏବଂ ଦୁଇ ପାଖ ପଦ୍ମ ପାଖୁଡା ମଧ୍ୟରେ ସୁନ୍ଦର ମାଳା କାମ । ବସନ୍ତରେ ପାଦ ପରି ଲତାର କାମ । ଉପରୋକ୍ତ ପଦ୍ମ ପୃଷ୍ଠର ସମାନ୍ତର ଭାବରେ ଜଙ୍ଘାର ପ୍ରତ୍ୟେକ କାମ ଦେଉଳର ଚତୁର୍ଦ୍ଦିଗରେ ବୁଲିଅଛି; ସୁତରାଂ ଏହା ଦେହରେ ବୈଷମ୍ୟର ଖେଳା ଦେଖାଇବା ନିମନ୍ତେ ଶିଳ୍ପୀ ଲମ୍ବ ଭାବରେ କେତେଗୁଡିଏ ପୀଢ଼ ଦେଉଳ ଖମ୍ବ ସ୍ୱରୂପ ତିଆରି କରିଅଛି । ସମାନ ସମାନ ବ୍ୟବଧାନରେ ଜଙ୍ଘାର ତଳଠାରୁ ଉପର ପର୍ଯ୍ୟନ୍ତ ଏହି ପୀଢ଼ ଦେଉଳ ଗୁଡିକ ନିର୍ମିତ ହୋଇଅଛି ଏବଂ ଏହାର ପ୍ରତ୍ୟେକ ଅଂଶ କାରୁକାର୍ଯ୍ୟରେ ପରିପୂର୍ଣ୍ଣ ।

**ଶାକର** – ତଳ ଜଙ୍ଘା ଉପର ତଳ ବରାଣ୍ଡି ବା ଶାକର । ଏହି ବରାଣ୍ଡିଠାରୁ ବାଢ଼ ସମ୍ପୂର୍ଣ୍ଣ ପ୍ରାୟ ଭାଙ୍ଗି ଯାଇଅଛି । କେବଳ ମୁଖଶାଳା ପାକକୁ ବରାଣ୍ଡି, ବନ୍ଧନା ଓ ଉପର ବରାଣ୍ଡିର କିଛି ଅଂଶ ମାତ୍ର ଦେଖାଯାଏ । ବରାଣ୍ଡି ସାଧାରଣତଃ ଚାରି ଭାଗରେ ବିଭକ୍ତ; ଯଥା :– ଖୁରପୃଷ୍ଠ, ବାଢ଼, ଚାଳ ଓ ମସ୍ତକ । ବରାଣ୍ଡି ତଳ ଭାଗରେ ଖୁରପୃଷ୍ଠ ବା ଉପରେ ପୀଠ । ଏଥିରେ ମାଳା କାମ; ତାହା ଉପରେ ବରାଣ୍ଡି ଦେହରେ ବାଢ଼ । ରାହା ପାଗର ଏହି ବରାଣ୍ଡି ଦେହରେ ବାଢ଼ରେ ଦେଉଳର ଉତ୍ତର, ଦକ୍ଷିଣ ଓ ପଶ୍ଚିମ ପାଖରେ ପାର୍ଶ୍ୱ ଦେବତା ସ୍ୱରୂପ ସୂର୍ଯ୍ୟନାରାୟଣ ତିନି ମୂର୍ତ୍ତି ଅଦ୍ୟାପି ଅଛନ୍ତି । କୋଣକ ଓ ଅନର୍ଥ ପାଗ ମଧ୍ୟ ବରାଣ୍ଡିରେ ଓଲଟା ଶିକାରୀ ସିଂହ ହାତୀ ଉପରେ ପଛ ଗୋଡ଼ରେ ଠିଆ ରହି ଆଗ ଗୋଡ଼ ଦୁଇଟି ଟେକି ରଖିଥାଏ । ଏହାର ପାରିଭାଷିକ ନାମ 'ଓଲଟା ଗଜ-ବିରାଜ ସିଂହ' । ଅନର୍ଥ ଓ ରାହା ପାଗ ମଧ୍ୟରେ ବରାଣ୍ଡିରେ ଯେ ଶାର୍ଦ୍ଦୂଳ ମୂର୍ତ୍ତି ଅଛି, ତାହାର ନାମ 'ଓଲଟା ଗଜସିଂହ' । ଗୋଟିଏ ଶିକାରୀ ସିଂହ ଆଗ ଗୋଡ଼ ଉପରକୁ ଟେକି ରଖି ପଛ ଗୋଡ଼ରେ ଗୋଟିଏ ଓଲଟା ହାତୀ ଉପରେ ଠିଆ ହୋଇ ରହିଅଛି ଏବଂ ହାତୀଟି ଶୁଣ୍ଢରେ ଗୋଟିଏ ପୁରୁଷ (ସ୍ଥାନେ ସ୍ଥାନେ ମଧ୍ୟ ସ୍ତ୍ରୀ) ଧରିଅଛି । ବର୍ତ୍ତମାନ ଏହାର ଅତି ଅଳ୍ପ ଅଂଶ ମାତ୍ର ଦେଖିବାକୁ ମିଳେ । ଏହି ପ୍ରତ୍ୟେକ ଶାର୍ଦ୍ଦୂଳ ମୂର୍ତ୍ତି ଗୋଟିଏ ଗୋଟିଏ ପୀଢ଼ ଦେଉଳର ବରାଣ୍ଡି ଅଂଶରେ ଥିଲେ । ଏହା ଉପରେ ସେହି କ୍ଷୁଦ୍ର ଦେଉଳର ଚାଳ ଏବଂ ଚାଳ ଉପରେ ମସ୍ତକ ଅଛି ।

**ବନ୍ଧନା** – ପୀଠ ପରି ଦେଉଳ ବାଢ଼ର ବନ୍ଧନା ତ୍ରିକର୍ମ ନୁହେଁ । ଏଥିରେ ପାଞ୍ଚ କାମ ଅଛି; ଅର୍ଥାତ୍ ପାଦ, ଡ଼ୋରୀ, ପଟା, ଡ଼ୋରୀ ଓ ପଟା । ପାଦରେ ଲତା ଓ ପଦ୍ମ ପାଖୁଡ଼ାର କାମ । ଡ଼ୋରୀରେ କାମ ନ ଥାଏ । ପଟାରେ ପାଦ ପରି ଲତା କାମ । ସେହିପରି ଉପର ପଟା ମଧ୍ୟ ଅଳଂକୃତ । ବନ୍ଧନା ଦେଉଳ ବାଢ଼ର ଚତୁର୍ଦ୍ଦିଗରେ ସମାନ ଭାବରେ ବୁଲିଥିଲା ।

**ଉପର ବରାଣ୍ଡି ବା ଶିକାର** – ବନ୍ଧନା ଉପରେ ଉପର ବରାଣ୍ଡି ବା ଶିକାର । ଏହି ଶିକାରର ଅତି ଅଳ୍ପ ଅଂଶ ମାତ୍ର ମୁଖଶାଳା ପାଖରେ ଦେଖାଯାଏ । ମୁଖଶାଳାର ଉପର ବରାଣ୍ଡିରେ ନାନା ଅଶ୍ଳୀଳ ମୂର୍ତ୍ତି ଥିବାର ଦେଖି ଶ୍ରୀ ବିଷନ୍ ସ୍ୱରୂପ ଅନୁମାନ କରନ୍ତି ଯେ ଦେଉଳର ସେହି ବରାଣ୍ଡିରେ ମଧ୍ୟ ଅଶ୍ଳୀଳ ମୂର୍ତ୍ତିମାନ ଥିଲା; କିନ୍ତୁ ଏ ଅନୁମାନ ଯଥାର୍ଥ ନୁହେଁ । ପୁରୀ ଓ ଭୁବନେଶ୍ୱର ମନ୍ଦିର ଦେଖିଲେ ଜଣାଯାଏ ଯେ, କେବଳ ମୁଖଶାଳାରେ ହିଁ ଅଶ୍ଳୀଳ ମୂର୍ତ୍ତି ଥାଏ, ବଡ଼ ଦେଉଳରେ ଆଦୌ ନ ଥାଏ । କୋଣାର୍କରେ କଦାପି ଏହାର ବ୍ୟତିକ୍ରମ ହୋଇ ନ ଥିଲା । ବାସ୍ତବରେ ମୁଖଶାଳା ପାଖକୁ ଦେଉଳ ବାଡ଼ର ଉପର ବରାଣ୍ଡିର ଯେଉଁ ଅଂଶ ଅଦ୍ୟାପି ଅଛି, ତହିଁରେ ଅଶ୍ଳୀଳ ମୂର୍ତ୍ତି ପରିବର୍ତ୍ତରେ ଗୋଟିଏ ଆପାଦ-ମସ୍ତକ ସଖୀ ମୂର୍ତ୍ତି ଦେଖାଯାଏ । ବୋଧହୁଏ, ଦେଉଳର ଆଠଟି ଅନର୍ଥ ପାଗରେ ଅଷ୍ଟସଖୀଙ୍କର ମୂର୍ତ୍ତି ଥିଲା ।

ଦେଉଳ ଓ ମୁଖଶାଳାର ବିଭିନ୍ନ ଅଂଶ ସମାନ ଉଚ୍ଚ ନୁହେଁ; ତେଣୁ ଦୁହିଁଙ୍କର କାମ ପୃଥକ ରଖିବା ନିମନ୍ତେ ମଧ୍ୟରେ ବ୍ୟବଧାନ ଅଛି । ଏହି ବ୍ୟବଧାନ ଅଂଶଟିର କାମ ପଦ୍ମ ପୀଠ ସହିତ ସମାନ୍ତର ଭାବରେ ନ ହୋଇ ବରଂ ଲମ୍ବ ଭାବରେ ହୋଇଅଛି । ଏଥିରେ ନାନା ଲତା କାମ ଖମ୍ବ ଆକାରରେ ଦେଖାଯାଏ । ଏହାର ଉପରିଭାଗ ଆଦୌ ନାହିଁ; କେବଳ ତଳ ଭାଗରେ ଗୋଟିଏ ଅଦ୍ଭୁତ ଶାର୍ଦ୍ଦୂଳ ମୂର୍ତ୍ତି ଦେଖାଯାଏ । ଗୋଟିଏ ଉନ୍ମତ୍ତ ସିଂହ ମୂର୍ତ୍ତି ପଛ ଗୋଡ଼ରେ ହାତୀ ଉପରେ ଠିଆ ହୋଇ ରହିଛି । ସିଂହର ମୁଖରେ ଲଗାମ ଅଛି ଏବଂ ଜଣେ ସ୍ତ୍ରୀ ସିଂହ ପିଠି ଉପରେ ବସି ସେହି ଲଗାମ ଧରିଛି । ଲଗାମର ଶିକୁଳି ମାଳେ ମଧ୍ୟ ଝୁଲି ପଡ଼ିଅଛି । ସିଂହ ନାକ ଓ କାନ ଏପରି ଟରାଟି ରଖିଛି ଯେ ଦେଖିଲା ମାତ୍ରେ ମନରେ ଭୟ ଜନ୍ମେ । ଏହାର ନାମ 'ଛିଡ଼ାଉଡ଼ାଗଜସିଂହ' ଏବଂ ଏହା ଦେଉଳର ଅନ୍ୟ କୌଣସିଠାରେ ଦେଖାଯାଏ ନାହିଁ । ସିଂହର ଲୋମ ଓ ଶିକୁଳିର କାମ ସମ୍ପୂର୍ଣ୍ଣ ସ୍ୱାଭାବିକ ବୋଧହୁଏ । ଉନ୍ମତ୍ତ ସିଂହ ପିଠି ଉପରେ ଲଗାମ ଧରି ସ୍ତ୍ରୀ ଜଣେ ବସିଥିବାର ଦେଖିଲେ ସ୍ୱତଃ ଜଣାଯାଏ ଯେ, ସେ ଯୁଗରେ ପୁରୁଷମାନେ ଯେପରି ବୀରଭାବରେ ଉନ୍ମତ୍ତ ଥିଲେ, ସ୍ତ୍ରୀମାନେ ମଧ୍ୟ ସେମାନଙ୍କର ସହଜାତ କୋମଳ ଜନନୀ ଓ ପତ୍ନୀଭାବ ସତ୍ତ୍ୱେ ମଧ୍ୟେ ମଧ୍ୟେ ବୀରଭାବର ଉନ୍ମାଦ ଅନୁଭବ କରୁଥିଲେ । ଅବଶ୍ୟ ଏହି ଦୃଶ୍ୟ କାଳ୍ପନିକ ସତ; ତଥାପି କଳ୍ପନା ମଧ୍ୟ ବାସ୍ତବ ରାଜ୍ୟର ଅନୁଭୂତିର ଅପେକ୍ଷା ରଖେ । ଏକ ପାଖରେ ସିଂହ ଉପରେ ସ୍ତ୍ରୀ ମୂର୍ତ୍ତି ଓ ଅପର ପାଖରେ ପୁରୁଷ ମୂର୍ତ୍ତି ଥିବାର ଦେଖାଯାଏ ।

**ପାର୍ଶ୍ୱ ଦେବତା** – ଓଡ଼ିଶାର ସକଳ ଶ୍ରେଣୀର ମନ୍ଦିରରେ ପାର୍ଶ୍ୱ ଦେବତା ଥାନ୍ତି । ଶିବ ଦେଉଳର ଉତ୍ତରରେ ପାର୍ବତୀ, ପୂର୍ବରେ କାର୍ତ୍ତିକେୟ ଏବଂ ଦକ୍ଷିଣରେ ଗଣେଶ ଏବଂ ବିଷ୍ଣୁ ମନ୍ଦିରର ଉତ୍ତରରେ ବାମନ, ପଶ୍ଚିମରେ ନୃସିଂହ ଏବଂ ଦକ୍ଷିଣରେ ବରାହ, ଏହିପରି ବିଷ୍ଣୁଙ୍କର ତିନି ଅବତାର ଥାନ୍ତି । ସେହିପରି କୋଣାର୍କ ଦେଉଳର ରାହାପାଗର ତଳ ବରାଣ୍ଡି

ବା ଶାକର ଦେହରେ ପାର୍ଶ୍ୱ ଦେବତା ସ୍ୱରୂପ ତିନୋଟି ଅତି ମନୋହର ସୂର୍ଯ୍ୟ ନାରାୟଣ ମୂର୍ତ୍ତି ଅଦ୍ୟାପି ରହିଅଛି । ଏହି ପ୍ରତ୍ୟେକ ମୂର୍ତ୍ତି ସମ୍ମୁଖରେ ଅଗଣା ପରି ଗୋଟିଏ ଗୋଟିଏ ପ୍ରଶସ୍ତ ଛାତ ଏବଂ ସେହି ଛାତ ତଳେ ଗୋଟିଏ ଗୋଟିଏ କୋଠରୀ ଅଛି ।

ଦକ୍ଷିଣ ଦିଗ – ପ୍ରାୟ ୨୨ ଫୁଟ ଓସାରରେ ଦୁଇଟି ପାହାଚ ଦେଇ ପୂର୍ବ ଓ ପଶ୍ଚିମ ଦିଗରୁ ଦକ୍ଷିଣ ଦିଗର ସୂର୍ଯ୍ୟନାରାୟଣ ବିଗ୍ରହ ନିକଟକୁ ଉଠିବାକୁ ହୁଏ । ଏହି ସୂର୍ଯ୍ୟବିଗ୍ରହ ସମ୍ମୁଖରେ ଯେଉଁ ଖୋଲା ସ୍ଥାନ ଛାତ ସଦୃଶ ଅଛି, ତାହା ଉତ୍ତର-ଦକ୍ଷିଣରେ ୧୯ ଫୁଟ ୭ ଇଞ୍ଚ ଲମ୍ବା । ଏହା ତଳେ ଯେଉଁ କୋଠରୀ ଅଛି ତାହାର ଆୟତନ ଉତ୍ତର-ଦକ୍ଷିଣରେ ୧୧ ଫୁଟ ୫ ଇଞ୍ଚ ଏବଂ ପୂର୍ବ-ପଶ୍ଚିମରେ ୬ ଫୁଟ ୯୨ ଇଞ୍ଚ । କୋଠରୀ ଭିତରେ ଗୋଟିଏ ଦେବ ମୂର୍ତ୍ତି ଅଛି । କୋଠରୀର ସମ୍ମୁଖ ଦ୍ୱାର ଉପରେ ଗୋଟିଏ ନବଗ୍ରହ ପାଟ ଅଛି । ଦ୍ୱାରର ଦୁଇ ପାଖରେ ଦ୍ୱାରପାଳ ମୂର୍ତ୍ତି ଥିଲା, ବର୍ତ୍ତମାନ ନାହିଁ । ଏହି ଦ୍ୱାର ସମ୍ମୁଖରେ ଗୋଟିଏ ମୁଖଶାଳା ଥିଲା । ମୁଖଶାଳାର ପରିମାଣ ୧୩ ଫୁଟ ୯ ଇଞ୍ଚ ଲମ୍ବ ଏବଂ ୯ ଫୁଟ ୪ ଇଞ୍ଚ ଓସାର । ଏହି ମୁଖଶାଳାର କାନ୍ଥ ବର୍ତ୍ତମାନ ୧୧ ଫୁଟ ୯ ଇଞ୍ଚ ପର୍ଯ୍ୟନ୍ତ ଉଚ୍ଚ ଅଛି । କାନ୍ଥରେ ବିଭିନ୍ନ ବିଭାଗର କାମ ଦେଉଳର ବାଡ଼ ସଙ୍ଗେ ସମାନ । ଏହି ସମୁଦାୟ ନେଇ ୩୬ ଫୁଟ ଲମ୍ବ ଓ ଓସାରରେ ଗୋଟିଏ ଦେଉଳ ଥିଲା । ଏହା ପଞ୍ଚରଥ ପୀଢ଼ ଦେଉଳ ଥିବାର ଅନୁମାନ ହୁଏ; କାରଣ ପୁରୀ ଦେଉଳର ପାର୍ଶ୍ୱ ଦେବତା ମନ୍ଦିର ପଞ୍ଚରଥ ପୀଢ଼ ଦେଉଳ । କାନ୍ଥର ବିଭିନ୍ନ ବିଭାଗର ଅନୁପାତରୁ ଜଣାଯାଏ ଯେ, ଏହା ପ୍ରାୟ ୧୫ ଫୁଟ ପର୍ଯ୍ୟନ୍ତ ଉଚ୍ଚ ହୋଇ ସୂର୍ଯ୍ୟ ମୂର୍ତ୍ତିଙ୍କ ମସ୍ତକ ଉପର ପର୍ଯ୍ୟନ୍ତ ଉଠିଥିଲା । ସୂର୍ଯ୍ୟମୂର୍ତ୍ତି ଉପରେ ଯେଉଁ ଛାତ ଥିଲା, ତାହା ଏହି ପୀଢ଼ ଦେଉଳକୁ ଲାଗିଥିଲା । ଏହି ଦେଉଳର ତିନି ପାଖରେ ଦ୍ୱାର ଥିଲା । ପଛ ଦ୍ୱାର ବାଟେ ସୂର୍ଯ୍ୟନାରାୟଣ ମୂର୍ତ୍ତିଙ୍କ ପାଖକୁ ଯିବାକୁ ହେଉଥିଲା; କାରଣ ପାହାଚ ପଛ ଦ୍ୱାର ପାଖକୁ ତିଆର ହୋଇଅଛି । ଶ୍ରୀ ବିଷବ୍ ସ୍ୱରୂପ କହନ୍ତି ଯେ ସୂର୍ଯ୍ୟ ମୂର୍ତ୍ତିଙ୍କ ସମ୍ମୁଖରେ ୪ ଫୁଟ ୫ ଇଞ୍ଚ ପ୍ରସ୍ଥରେ ଗୋଟିଏ ବାରଣ୍ଡା ଥିଲା । ସମୁଦାୟ ମନ୍ଦିରଟିର ଉଚ୍ଚତା ପୀଠ ଉପରୁ ପ୍ରାୟ ୪୫ ଫୁଟ ପର୍ଯ୍ୟନ୍ତ ଥିଲା ।

ଦକ୍ଷିଣ ପାର୍ଶ୍ୱର ସୂର୍ଯ୍ୟନାରାୟଣ ମୂର୍ତ୍ତି କଳା ମୁଗୁନି ପଥରରେ ଗଢ଼ା । ମୂର୍ତ୍ତିଟି ଠିଆ ହୋଇ ରହିଅଛି । ମସ୍ତକରେ ମୁକୁଟ ନାହିଁ, ସନ୍ନ୍ୟାସୀମାନଙ୍କ ପରି ଜଟା ଗୁଡ଼ିଆ ହୋଇ ବନ୍ଧାଅଛି ଏବଂ କପାଳ ଉପରକୁ ଜଟା ତଳେ ଗୋଟିଏ ଅଳଂକୃତ ପଟା ଅଛି । କାନ୍ଧର ପଇତାରେ ଅତି ସୁନ୍ଦର ସୂକ୍ଷ୍ମ କାମ ଦେଖାଯାଏ । ନାକ ଓ ବେକରେ ଯେ ଅଳଂକାର ଦିଆ ଯାଇଅଛି, ତାହାର କାମ ସୁନା ରୂପାର କାମଠାରୁ କୌଣସିମତେ ମୋଟା ହେବନାହିଁ । ଫେରି ମାରିଲା ପରି ଲୁଗା ପିନ୍ଧା ଅଛି । ଲୁଗା ଦେହର କାମ ଅତି ସୂକ୍ଷ୍ମ ଓ ଚମତ୍କାର । ଲୁଗା ଉପରେ ଗୋଟିଏ କଟିବନ୍ଧ ଅଛି ଏବଂ ତହିଁରୁ ଶିକୁଳିମାଳ ଆଣ୍ଠୁ ପର୍ଯ୍ୟନ୍ତ ଝୁଲି ପଡ଼ିଛି । ଆଣ୍ଠୁ ଦୁଇଟି, ନାଭିମଣ୍ଡଳ ଓ ସ୍ତନ ଅତି ସୁନ୍ଦର ଭାବରେ ଶିଳ୍ପୀ ଦେଖାଇ ପାରିଅଛି । ମନୁଷ୍ୟ ମୂର୍ତ୍ତି

ଦେହରେ ମାଂଶପେଶୀ ଦେଖାଇ ପାରି ନାହାନ୍ତି ବୋଲି ଯେଉଁମାନେ ଓଡ଼ିଆ ଶିଳ୍ପୀମାନଙ୍କୁ ଦୋଷ ଦିଅନ୍ତି, ସେମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଏହି ଆଣ୍ଠୁ, ନାଭି ପ୍ରଭୃତିର ଦୃଶ୍ୟ ଯଥେଷ୍ଟ ବୋଧହୁଏ । ପାଦରେ ଆଣ୍ଠୁ ତଳ ପର୍ଯ୍ୟନ୍ତ ବୁଟ୍ ଯୋତା ବା ମୋଜା ପିନ୍ଧା ଅଛି ।

ଯେଉଁ ଦେବୀ ବା ସିଂହାସନ ଉପରେ ସୂର୍ଯ୍ୟ ମୂର୍ତ୍ତି ଠିଆ ହୋଇ ରହିଅଛି, ତାହାର ବାମ ପାଖକୁ ଖୋଳ ମଧ୍ୟରେ ଗୋଟିଏ ତରବାରୀ ଅଛି । ସୂର୍ଯ୍ୟ ମୂର୍ତ୍ତିର ହାତ ଦୁଇଟି ଭାଙ୍ଗି ଯାଇଛି । ବାମ ପାଖରେ ଗୋଟିଏ ଫୁଟିଲା ପଦ୍ମ ଅଛି; ତାହା ବାମ ହାତରେ ଧରା ହୋଇଥିଲା । ସେହିପରି ଦକ୍ଷିଣ ହାତରେ ମଧ ଗୋଟିଏ ପଦ୍ମ ଥିଲା । ସେ ହାତ ଓ ପଦ୍ମ ଉଭୟ ଭାଙ୍ଗି ଯାଇଅଛି ।

ମୂର୍ତ୍ତିର ସିଂହାସନ ପାଞ୍ଚ ପାଗ ବା ରଥରେ ବିଭକ୍ତ ଏବଂ ପ୍ରତି ପାଗ ଶେଷରେ ସରୁ ସରୁ ଅଷ୍ଟାଭଙ୍ଗୀ ଖମ୍ବମାନ ଅଛି । ସିଂହାସନର ବରାଣ୍ଡି ଦେହରେ ସ୍ତ୍ରୀମାନେ ନାନା ବାଦ୍ୟଯନ୍ତ୍ର ଧରି ନୃତ୍ୟ ଗୀତ କରୁଅଛନ୍ତି । ସେମାନଙ୍କ ତଳେ ଅତି ସୁନ୍ଦର ସପ୍ତାଶ୍ୱ ଅଛି । ସିଂହାସନ ଉପରେ ସୂର୍ଯ୍ୟ ମୂର୍ତ୍ତିର ପାଦ ତଳେ ପାଦହୀନ * ଅରୁଣ ସାରଥି ସ୍ୱରୂପ ବାମ ହାତରେ ସମୁଦାୟ ଘୋଡ଼ାର ଲଗାମ ଏବଂ ଦକ୍ଷିଣ ହାତରେ ଘୋଡ଼ା କରଡ଼ା ଧରି ବସିଅଛି । ଘୋଡା ଲଗାମର କାମ ଅତି ସୂକ୍ଷ୍ମ ଓ ମନୋହର ହୋଇଅଛି ।

୩ ଫୁଟ ଉଚ୍ଚତାର ଦୁଇଟି ସୈନିକ ପୁରୁଷ ସୂର୍ଯ୍ୟମୂର୍ତ୍ତିର ଦୁଇ ପାଖରେ ଦଣ୍ଡାୟମାନ । ଦକ୍ଷିଣ ପାଖ ମୂର୍ତ୍ତିର ଦକ୍ଷିଣ ହାତରେ ଖଡ୍‌ଗ ଓ ବାମ ହାତରେ ଢ଼ାଲ ଏବଂ ବାମପାଖ ମୂର୍ତ୍ତିର ବାମ ହାତରେ ଧନୁ । ଏହି ଦୁଇ ମୂର୍ତ୍ତି ଓ ସୂର୍ଯ୍ୟ ମଧ୍ୟରେ ୧ ଫୁଟ ୬ ଇଞ୍ଚ ଉଚ୍ଚତାର ଦୁଇଟି ଦାଢ଼ିଆ ଭକ୍ତ । ଏହି ଭକ୍ତଙ୍କ ପାଖରେ ଓ ସୂର୍ଯ୍ୟମୂର୍ତ୍ତିର ଦୁଇପାଖରେ ୧ ଫୁଟ ୫ ଇଞ୍ଚତାର ଦୁଇ ଜଣ ଋଷି ଅଛନ୍ତି । ଉପରୋକ୍ତ ସୈନିକ ପୁରୁଷଙ୍କ ମସ୍ତକ ଉପରେ ସୂର୍ଯ୍ୟମୂର୍ତ୍ତିର ଦୁଇପାଖରେ ଦୁଇ ଦୁଇଟି ସ୍ତ୍ରୀ ମୂର୍ତ୍ତି ଅଛି । ଶ୍ରୀ ବିଷନ୍ ସ୍ୱରୂପ ଅନୁମାନ କରନ୍ତି ଯେ, ଏହି ଚାରି ସ୍ତ୍ରୀ-ମୂର୍ତ୍ତି ମଧ୍ୟରୁ ଦୁଇଟି ସୂର୍ଯ୍ୟଙ୍କର ପତ୍ନୀ – ଛାୟା ଓ ସଞ୍ଜ୍ଞା ଏବଂ ଅପର ଦୁଇଟି ତାହାଙ୍କର କନ୍ୟା ସାବିତ୍ରୀ ଓ ଗାୟତ୍ରୀ । ସୈନିକ ଠାରୁ ଆରମ୍ଭ କରି ଏହି ସ୍ତ୍ରୀ-ମୂର୍ତ୍ତି ପର୍ଯ୍ୟନ୍ତ ସମସ୍ତେ ଗୋଟିଏ ଦେଉଳ ମଧ୍ୟରେ ଥିଲା ପରି ନିର୍ମିତ ହୋଇଅଛନ୍ତି ଏବଂ

---

* କଦ୍ରୁ ଓ ବିନତା ଦୁଇ ଭଉଣୀ କଶ୍ୟପଙ୍କର ବହୁ ସେବା କରି ବର ପାଇଥିଲେ । ତାହାନୁସାରେ କଦ୍ରୁ ସହସ୍ରେ ଡିମ୍ବ ଏବଂ ବିନତା ଦୁଇ ଡିମ୍ବ ପ୍ରସବ କଲେ । କାଳକ୍ରମେ କଦ୍ରୁର ଡିମ୍ବ ମଧ୍ୟରୁ ସମସ୍ତ ନାଗ ଜନ୍ମିଲେ । କଦ୍ରୁକୁ ସହସ୍ରେ ସନ୍ତାନର ଜନନୀ ଦେଖି ବିନତାର ଈର୍ଷା ହେଲା ଏବଂ ପରୀକ୍ଷା ସ୍ୱରୂପ ଅକାଳରେ ଆପଣାର ଗୋଟିଏ ଡିମ୍ବ ଭାଙ୍ଗି ଦେଲା । ଦେଖିଲାବେଳକୁ ଅରୁଣ ଅର୍ଦ୍ଧାଙ୍ଗବିହୀନ ହୋଇ ପକ୍ଷୀ ଆକାରରେ ଜନ୍ମ ହେଲା । ସେହି ହେତୁରୁ ଅରୁଣ ସର୍ବତ୍ର ପାଦହୀନ ପକ୍ଷୀ ସ୍ୱରୂପ ଗଠିତ ହୁଏ । (ମହାଭାରତ, ଆଦିପର୍ବ, ୧୬ଶ ଅଧ୍ୟାୟ)

ସେମାନଙ୍କ ଉପରେ ଦେଉଳର ତିନି ପ୍ରସ୍ତ ପିଢ଼ ଅଛି । ସେହି ପୀଢ଼ ଉପରୁ ଗୋଟିଏ ତ୍ରିରଙ୍ଗ ତୋରଣ ପଛଆଡ଼େ ସୂର୍ଯ୍ୟମୂର୍ତ୍ତିର ମସ୍ତକ ଉପରେ ମେହେରାବି ପରି ତିଆରି ହୋଇଅଛି । ଉକ୍ତ ଦେଉଳ ପୀଢ଼ ଉପରେ ତୋରଣ ଦେହରେ ସୂର୍ଯ୍ୟ ମୂର୍ତ୍ତିର ବାମ କାନ୍ଧ ପାଖରେ ବ୍ରହ୍ମା ଓ ଦକ୍ଷିଣ କାନ୍ଧ ପାଖରେ ବିଷ୍ଣୁ ମୂର୍ତ୍ତି ଅଛନ୍ତି । ବ୍ରହ୍ମାଙ୍କର ଚାରି ମୁଖ ଓ ପ୍ରତ୍ୟେକ ମୁଖରେ ଦାଢ଼ି ଏବଂ ବିଷ୍ଣୁଙ୍କର ଚାରି ହାତ ଓ ହାତରେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଅଛି । ଉଭୟେ ପଦ୍ମ ଆସନ ଉପରେ ବସିଅଛନ୍ତି । ଏମାନଙ୍କ ଉପରକୁ କେତେ ଗୁଡ଼ିଏ ସ୍ତ୍ରୀ-ମୂର୍ତ୍ତି ବେହେଲା, ବୀଣା, ପଖୋଜ ପ୍ରଭୃତି ନାନା ବାଦ୍ୟଯନ୍ତ ସହ ନୃତ୍ୟ ଗୀତ କରୁଅଛନ୍ତି । ସର୍ବୋପରି ଅପ୍‌ସରାମାନେ ହାତରେ ମାଳା ଧରି ଉଡୁଅଛନ୍ତି । ତୋରଣର ଅଗ୍ରଭାଗରେ ସୂର୍ଯ୍ୟମୂର୍ତ୍ତିର ମସ୍ତକ ଉପରେ ଗୋଟିଏ ରାହୁ ମୁଖ । ଏହିପରି ରାହୁମୁଖର ପାରିଭାଷିକ ନାମ 'କୀର୍ତ୍ତିମୁଖ' । କୀର୍ତ୍ତିମୁଖର ଦୁଇପାଖରେ ଦୁଇଜଣ ଗନ୍ଧର୍ବ ଉଡ଼ି ଶଙ୍ଖ ବଜାଉ ଅଛନ୍ତି ।

ସୂର୍ଯ୍ୟମୂର୍ତ୍ତି ସିଂହାସନ ଓ ତୋରଣ ପ୍ରଭୃତି ସହିତ ଗୋଟିଏ କଳା ମୁଗୁନି ପଥର । ପଥରର ଆୟତନ ୧୨ ଫୁଟ ୬ ଇଞ୍ଚ ଲମ୍ବ, ୫ ଫୁଟ ୧୧ ଇଞ୍ଚ ଓସାର ଏବଂ ୨ ଫୁଟ ୬ ଇଞ୍ଚ ମୋଟା । ସୂର୍ଯ୍ୟମୂର୍ତ୍ତିର ମସ୍ତକ କେଶଠାରୁ ପାଦ ପର୍ଯ୍ୟନ୍ତ ୮ ଫୁଟ ୨୪ ଇଞ୍ଚ ।

ପଶ୍ଚିମ ଦିଗ – ପଶ୍ଚିମ ଦିଗର ସୂର୍ଯ୍ୟନାରାୟଣ ବିଗ୍ରହ ସମ୍ମୁଖରେ ଯେଉଁ ଛାତ ଅଛି ତାହା ଦକ୍ଷିଣ ଦିଗ ଛାତ ଅପେକ୍ଷା ସାମାନ୍ୟ ଛୋଟ ଜଣାଯାଏ । ଏହାର ଲମ୍ବ ୧୭ ଫୁଟ ୩ ଇଞ୍ଚ । ବଡ଼ ଦେଉଳର କାନ୍ଥର ଭିତର ସୀମାଠାରୁ ଛାତର ପଶ୍ଚିମ ପ୍ରାନ୍ତ ପର୍ଯ୍ୟନ୍ତ ୪୦ ଫୁଟ ୧ ଇଞ୍ଚ । ସୁତରାଂ ବଡ଼ ଦେଉଳର କାନ୍ଥ ବାଡ଼ ଅଂଶର ରାହାପାଗ ବରାଣ୍ଡିଠାରେ ୨୨ ଫୁଟ ୧୦ ଇଞ୍ଚ ମୋଟା । ଦକ୍ଷିଣ ଦିଗ ପରି ଦୁଇଟି ପାହାଚ ଦକ୍ଷିଣ ଓ ଉତ୍ତର ଦିଗରୁ ସୂର୍ଯ୍ୟନାରାୟଣ ବିଗ୍ରହ ନିକଟକୁ ଲାଗିଅଛି । ଛାତ ତଳ କୋଠରୀର ଲମ୍ବା ୧୧ ଫୁଟ ୧ ଇଞ୍ଚ ଓ ଓସାର ୬ ଫୁଟ ୯ ଇଞ୍ଚ । ଅନ୍ୟାନ୍ୟ ସମସ୍ତ ବିଷୟରେ ଏହା ଦକ୍ଷିଣ ଦିଗ ପାର୍ଶ୍ୱମନ୍ଦିର ସଙ୍ଗେ ସମାନ ଥିଲା । ତେବେ ଦକ୍ଷିଣ ଦିଗ ମନ୍ଦିରର କାନ୍ଥ ଅଛି; କିନ୍ତୁ ଏଥିରେ କାନ୍ଥ ସମୁଦାୟ ଅଛି । କୋଠରୀର ଦ୍ୱାର ଉପର ନବଗ୍ରହ ସାମାନ୍ୟ ମାତ୍ର ପାଟ ବର୍ତ୍ତମାନ ଅଛି ।

ଦକ୍ଷିଣ ଦିଗପରି ପଶ୍ଚିମ ଦିଗ ରାହାପାଗ ବରାଣ୍ଡି ବା ଶାକରରେ ଗୋଟିଏ ଅପେକ୍ଷାକୃତ ବୃହଦ୍ ସୂର୍ଯ୍ୟନାରାୟଣ ମୂର୍ତ୍ତି ଅଛି । ସେହିପରି କାରୁକାର୍ଯ୍ୟଖଚିତ ସୁନ୍ଦର ଲୁଗା ଓ ବୁଟ୍ ଯୋତା ପିନ୍ଧା ଅଛି । ସିଂହାସନର ବରାଣ୍ଡିରେ ଘୋଡ଼ା ସାତୋଟି ଅଛି; କିନ୍ତୁ ଅରୁଣମୂର୍ତ୍ତି ଭାଙ୍ଗି ଯାଇଛି । ଦକ୍ଷିଣ ପାର୍ଶ୍ୱ ମୂର୍ତ୍ତି ପରି ଏହି ମୂର୍ତ୍ତିର ମସ୍ତକରେ ଜଟାଭାର ନ ଥାଇ ଗୋଟିଏ ନାନା ସୂକ୍ଷ୍ମ ଅଳଂକାର ଖଚିତ ଅତି ସୁନ୍ଦର ମୁକୁଟ ଅଛି । ଏହି ସୂର୍ଯ୍ୟମୂର୍ତ୍ତିର ପାର୍ଶ୍ୱମୂର୍ତ୍ତିଗୁଡ଼ିକ ଦକ୍ଷିଣ ପାର୍ଶ୍ୱ ପରି ଯଥାସ୍ଥାନରେ ଅଛନ୍ତି । କେବଳ ଦକ୍ଷିଣ ପାର୍ଶ୍ୱରେ ଯେପରି ବିଷ୍ଣୁ ଶଙ୍ଖ, ଚକ୍ର, ଗଦା, ପଦ୍ମ ଧରିଛନ୍ତି ଏଠାରେ ସେରୂପ ବିଷ୍ଣୁ ମୂର୍ତ୍ତି ନାହାନ୍ତି । ଏହି

ମୂର୍ତ୍ତିର ଶଙ୍ଖାଦି ଚିହ୍ନ ନାହିଁ; ଏହା କି ମୂର୍ତ୍ତି ପରିଷ୍କାର ଜଣାଯାଏ ନାହିଁ । ଅନ୍ୟାନ୍ୟ ସମସ୍ତ ବିଷୟରେ ଏହା ଦକ୍ଷିଣ ପାର୍ଶ୍ୱମୂର୍ତ୍ତି ସହିତ ସମାନ ।

ଶ୍ରୀ ମନମୋହନ ଗାଙ୍ଗୁଲୀ ପଶ୍ଚିମ ଓ ଦକ୍ଷିଣ ପାର୍ଶ୍ୱସ୍ଥ ମୂର୍ତ୍ତିର ଅଙ୍ଗ ପ୍ରତ୍ୟଙ୍ଗର ପରିମାଣ ନିମ୍ନଲିଖିତ ରୂପେ ଦେଇ ଅଛନ୍ତି । *

ପଶ୍ଚିମ ପାର୍ଶ୍ୱର ମୂର୍ତ୍ତି :—

| | |
|---|---|
| ପାଦରୁ ମସ୍ତକ-ମୁକୁଟ ପର୍ଯ୍ୟନ୍ତ | ୯ ଫୁଟ ୬ ଇଞ୍ଚ |
| ପାଦରୁ ଆଣ୍ଠୁ ପର୍ଯ୍ୟନ୍ତ | ୨ ଫୁଟ |
| ଆଣ୍ଠୁଠାରୁ ନାଭି ପର୍ଯ୍ୟନ୍ତ | ୨ ଫୁଟ ୭ ଇଞ୍ଚ |
| ଆଣ୍ଠୁଠାରୁ ଜଙ୍ଘ ପର୍ଯ୍ୟନ୍ତ | ୨ ଫୁଟ |
| ନାଭିଠାରୁ ଛାତି ପର୍ଯ୍ୟନ୍ତ | ୧ ଫୁଟ ୯½ ଇଞ୍ଚ |
| କାନ୍ଧଠାରୁ କହୁଣୀ ପର୍ଯ୍ୟନ୍ତ | ୧ ଫୁଟ ୬ ଇଞ୍ଚ |
| ବୁଟ୍ ସହିତ ପାଦର ଲମ୍ବା | ୧ ଫୁଟ ୧½ ଇଞ୍ଚ |

** ଦକ୍ଷିଣ ପାର୍ଶ୍ୱର ମୂର୍ତ୍ତି :-

| | |
|---|---|
| ପାଦରୁ ମସ୍ତକ ଜଟା ପର୍ଯ୍ୟନ୍ତ | ୮ ଫୁଟ ୨½ ଇଞ୍ଚ |
| ପାଦରୁ ଆଣ୍ଠୁ ପର୍ଯ୍ୟନ୍ତ | ୨ ଫୁଟ |
| ଆଣ୍ଠୁଠାରୁ ନାଭି ପର୍ଯ୍ୟନ୍ତ | ୨ ଫୁଟ ୬½ ଇଞ୍ଚ |
| ଆଣ୍ଠୁଠାରୁ ଜଙ୍ଘ ପର୍ଯ୍ୟନ୍ତ | ୧ ଫୁଟ ୧୦½ ଇଞ୍ଚ |
| ନାଭିଠାରୁ ଛାତି ପର୍ଯ୍ୟନ୍ତ | ୧ ଫୁଟ ୧½ ଇଞ୍ଚ |
| ନାଭିଠାରୁ କାନ୍ଧ ପର୍ଯ୍ୟନ୍ତ | ୧ ଫୁଟ ୭½ ଇଞ୍ଚ |
| କାନ୍ଧଠାରୁ କହୁଣୀ ପର୍ଯ୍ୟନ୍ତ | ୧ ଫୁଟ ୬ ଇଞ୍ଚ |
| ମସ୍ତକଠାରୁ ପାଦ ପର୍ଯ୍ୟନ୍ତ | ୭ ଫୁଟ ୭½ ଇଞ୍ଚ |

ଉତ୍ତର ଦିଗ – ଉତ୍ତର ପାର୍ଶ୍ୱ ସୂର୍ଯ୍ୟନାରାୟଣ ମୂର୍ତ୍ତି ସମ୍ମୁଖରେ ଯେ ଛାତ ଅଛି, ତାହା ୧୨ ଫୁଟ ଲମ୍ବ । ତଳ କୋଠରୀ ୧୦ ଫୁଟ ୧୧ ଇଞ୍ଚ ଲମ୍ବ ଏବଂ ୬ ଫୁଟ ୯ ଇଞ୍ଚ

---

* Orissa and Her Remains P.P. 450-51

** ଏହି ସୂର୍ଯ୍ୟମୂର୍ତ୍ତିକୁ ସପ୍ତତାଳ ମୂର୍ତ୍ତି କହନ୍ତି । ତାଳ ଅର୍ଥ ଚାଖଣ୍ଡ ବା ବୁଢ଼ା ଆଙ୍ଗୁଳିର ଅଗଠାରୁ ମଧମା ଆଙ୍ଗୁଳିର ଶେଷ ପର୍ଯ୍ୟନ୍ତ । ସପ୍ତତାଳ ମୂର୍ତ୍ତିର ଅର୍ଥ ମସ୍ତକର ଶେଷଠାରୁ ଚିବୁକ ପର୍ଯ୍ୟନ୍ତ ଯେତେ ଲମ୍ବା ତାହା ସମୁଦାୟ ମୂର୍ତ୍ତିଟିର ଲମ୍ବାର ସପ୍ତମାଂଶ । ସେହିପରି ମଧ ଅଷ୍ଟତାଳ, ନବତାଳ ଓ ଦଶତାଳ ମୂର୍ତ୍ତି ତିଆର କରାଯାଏ । ଶୁକ୍ରାଚାର୍ଯ୍ୟଙ୍କ ଶୁକ୍ରନୀତିରେ କଳିଯୁଗ ପାଇଁ

ଓସାର । ଏହାର ଦ୍ୱାର ଉପରେ ନବଗ୍ରହ ପାଟ ବର୍ତ୍ତମାନ ମଧ୍ୟ ଅଛି । ବଡ଼ ଦେଉଳର ପାଦୁକ ଏହି କୋଠରୀ ବାଟେ ବୋହିଯାଏ । ପାଦୁକ ନଳା ଶେଷରେ ଗୋଟିଏ କଳା ମୁଗୁନି ପଥରର ସୁନ୍ଦର ମଗର ମୁଖ ଅଛି ।

ଅନ୍ୟାନ୍ୟ ପାର୍ଶ୍ୱ ପରି ଏଠାରେ ମଧ୍ୟ ପୂର୍ବ ପଶ୍ଚିମକୁ ୨ ଫୁଟ ୫ ଇଞ୍ଚ ଓସାରରେ ଦୁଇଟି ପାହାଚ ସୂର୍ଯ୍ୟନାରାୟଣ ମୂର୍ତ୍ତି ନିକଟକୁ ଉଠିଛି । ଏହି ମୂର୍ତ୍ତିର ସମ୍ମୁଖ ଛାତ ଉପରେ ପାର୍ଶ୍ୱ ଦେଉଳର କାଛର ଅବଶେଷ ଆଦୌ ନାହିଁ ।

ଉତ୍ତର ପାର୍ଶ୍ୱର ସୂର୍ଯ୍ୟବିଗ୍ରହ ଅନ୍ୟ ଦୁଇ ପାର୍ଶ୍ୱ ମୂର୍ତ୍ତିଠାରୁ ଭିନ୍ନ । ସେମାନଙ୍କ ପରି ଏହି ମୂର୍ତ୍ତି ସିଂହାସନ ଉପରେ ଠିଆ ନ ରହି ବୀର ବେଶରେ ଗୋଟିଏ ଉନ୍ନତ ଘୋଡ଼ା ଉପରେ ବସିଅଛି । ଘୋଡ଼ାଟି ସମ୍ପୂର୍ଣ୍ଣ ପ୍ରାକୃତିକ ଓ ଜୀବନ୍ତ ପରି ଦେଖାଯାଏ । ସୂର୍ଯ୍ୟ ମୂର୍ତ୍ତି ପରି ଘୋଡ଼ା ମଧ୍ୟ କଳା ମୁଗୁନି ପଥରରେ ତିଆରି ହୋଇଅଛି । ଘୋଡ଼ାର ଜିନ୍, ଅଳଙ୍କାର ଓ ଲଗାମ ନୂଆପରି ଅଛି । ଏହି ସମୁଦାୟ ମୂର୍ତ୍ତିଟି ଘୋଡ଼ା ସହିତ ପାଣି ପବନ ଖାଇ ନାନା ସ୍ଥାନରେ କଳଙ୍କି ହୋଇଗଲାଣି । ଏଥିରେ ସପ୍ତାଶ୍ୱ ଓ ଅରୁଣ ନାହିଁ । ସୂର୍ଯ୍ୟ ମୂର୍ତ୍ତିର ଦକ୍ଷିଣ ବାମ ପାର୍ଶ୍ୱର ମୂର୍ତ୍ତି ଦୁଇଟିର ହାତ ଭାଙ୍ଗି ଯାଇଛି । ଘୋଡ଼ାର ପେଟ ତଳେ ଗୋଟିଏ ନୂଆ ମୁଗୁନି ପଥର ଖଞ୍ଜା ହୋଇଅଛି; ତାହା ହୋଇ ନ ଥିଲେ ଘୋଡ଼ାଟି ମୂର୍ତ୍ତି ସହିତ ପଡ଼ି ଯାଆନ୍ତାଣି । ଘୋଡ଼ା ଆଗ ଗୋଡ଼ ଦୁଇଟିର ଆଶ୍ରୟରେ ପୂର୍ବେ ରହିଥିଲା, ବର୍ତ୍ତମାନ ସେ ଗୋଡ଼ ଦୁଇଟି ଭାଙ୍ଗିଯାଇଛି । ଅନ୍ୟ ସମସ୍ତ ବିଷୟରେ ପଶ୍ଚିମ ଓ ଦକ୍ଷିଣ ପାର୍ଶ୍ୱ ମୂର୍ତ୍ତିପରି ଏହି ମୂର୍ତ୍ତିର ସାଜସଜ୍ଜା ଓ ଉଭୟ ପାର୍ଶ୍ୱର ମୂର୍ତ୍ତିଗୁଡ଼ିକ ସମାନ ।

ଉପରୋକ୍ତ ପାର୍ଶ୍ୱମୂର୍ତ୍ତି ତିନୋଟିର ପରିଚୟ ପାଇବା ନିମନ୍ତେ ନାନା ବିବାଦ ଉପସ୍ଥିତ ହୋଇଅଛି । ଡାକ୍ତର ବ୍ଲକ୍‌ଙ୍କ ମତରେ ଉତ୍ତର ମୂର୍ତ୍ତି ପ୍ରାତଃ ସୂର୍ଯ୍ୟ, ଦକ୍ଷିଣ ମୂର୍ତ୍ତି ମାଧ୍ୟନ୍ଦିନ ସୂର୍ଯ୍ୟ ଏବଂ ପଶ୍ଚିମ ମୂର୍ତ୍ତି ସାୟାହ୍ନ ସୂର୍ଯ୍ୟଙ୍କୁ ବୁଝାଉ ଅଛି । ଶ୍ରୀ ବିଷନ୍ ସ୍ୱରୂପ ଭବିଷ୍ୟ ପୁରାଣ ୧୩୯ ଅଧ୍ୟାୟରୁ 'ଆଦିତ୍ୟ ହୃଦୟ'ର ଉକ୍ତି ଅନୁସରଣ କରି କହନ୍ତି ଯେ ମାଧ୍ୟନ୍ଦିନ ସୂର୍ଯ୍ୟ ଶିବ, ସାୟାହ୍ନ ସୂର୍ଯ୍ୟ ବିଷ୍ଣୁ ଏବଂ ପ୍ରାତଃ ସୂର୍ଯ୍ୟ ବ୍ରହ୍ମା ସ୍ୱରୂପ କଳ୍ପିତ ହୁଅନ୍ତି । ସୁତରାଂ ଡାକ୍ତର ବ୍ଲକ୍‌ଙ୍କ ମତରେ କିଛି ସତ୍ୟ ଥିଲେ ଉତ୍ତର ପାର୍ଶ୍ୱ ସୂର୍ଯ୍ୟ ବ୍ରହ୍ମା ମୂର୍ତ୍ତି ଏବଂ ଦକ୍ଷିଣ ପାର୍ଶ୍ୱ ସୂର୍ଯ୍ୟ ଶିବମୂର୍ତ୍ତି ହୋଇଥାନ୍ତେ; କିନ୍ତୁ ଗଠନରେ ସେପରି କିଛି ହୋଇନାହିଁ । ମୁଁ ଯେତେଦୂର ଦେଖିଛି, କୋଣାର୍କରେ ଶିବମୂର୍ତ୍ତି ଲିଙ୍ଗ ଆକାରରେ କିମ୍ବା ମନୁଷ୍ୟ ଆକାରରେ ହୋଇଅଛି ।

---

**ସପ୍ତତାଳ ମୂର୍ତ୍ତିର ବିଧି ଅଛି । ସତ୍ୟ ଯୁଗରେ ଦଶତାଳ, ତ୍ରେତା ଯୁଗରେ ନବତାଳ ଏବଂ ଦ୍ୱାପର ଯୁଗରେ ଅଷ୍ଟତାଳ ମୂର୍ତ୍ତି ଗଠିତ ହେବାର ବିଧି ଶୁକ୍ର ନୀତିରେ ଅଛି । (ଶ୍ରୀ ମନମୋହନ ଗାଙ୍ଗୁଲୀ ପୃ - ୨୧୦) । ଓଡ଼ିଆ ଶିଳ୍ପୀମାନେ ସପ୍ତତାଳ ମୂର୍ତ୍ତି ସର୍ବତ୍ର ତିଆରି କରି ଶୁକ୍ରନୀତି ଅନୁସାରେ ଅଙ୍ଗ ପ୍ରତ୍ୟଙ୍ଗର ଅନୁପାତ ଠିକ୍ ରଖି ଅଛନ୍ତି ।**

ଯେତେ ମନୁଷ୍ୟାକାର ଶିବମୂର୍ତ୍ତି, ସାପ ସେ ସମସ୍ତଙ୍କର ପଇତା ହୋଇଅଛି । ଦକ୍ଷିଣ ପାର୍ଶ୍ୱ ସୂର୍ଯ୍ୟ ମୂର୍ତ୍ତିର ପଇତା ନାନା ଅଳଙ୍କାର ଖଚିତ ସତ; କିନ୍ତୁ ସାପ ଆକାରରେ ହୋଇନାହିଁ । ଉତ୍ତର ପାର୍ଶ୍ୱର ମୂର୍ତ୍ତି ବୀରବେଶରେ ଘୋଡ଼ା ଉପରେ ଆସୀନ । ବ୍ରହ୍ମା କଦାପି ବୀରବେଶ ଧରି ଘୋଡ଼ା ଉପରେ ବସିବାର ଜଣାଯାଏ ନାହିଁ । ବିଶେଷତଃ ସୂର୍ଯ୍ୟ ମୂର୍ତ୍ତିର ବାମ ପାଖରେ ଚତୁର୍ମୁଖ ବ୍ରହ୍ମା ସ୍ୱତନ୍ତ୍ର ଭାବରେ ବସି ଅଛନ୍ତି । ଡାକ୍ତର ବ୍ଲକ୍ ପୁଣି କହନ୍ତି – ଉତ୍ତର ପାଖର ସୂର୍ଯ୍ୟ ଅରୁଣ ମୂର୍ତ୍ତି; କିନ୍ତୁ ଶ୍ରୀ ବିଷନ୍ ସ୍ୱରୂପ ତାହା ଅସ୍ୱୀକାର କରି କହନ୍ତି ଯେ ଅରୁଣ ଦ୍ୱାଦଶ ସୂର୍ଯ୍ୟର ଅନ୍ୟତମ ହେଲେ ମଧ ପୁରାଣରେ ସେ ସର୍ବତ୍ର ସୂର୍ଯ୍ୟଙ୍କ ସାରଥି ସ୍ୱରୂପ କଳ୍ପିତ । ସୁତରାଂ ସୂର୍ଯ୍ୟଙ୍କ ସହିତ ସମାସୀନ କରି ତାହାଙ୍କୁ କୋଣାର୍କର ପାର୍ଶ୍ୱଦେବତା କରିଥିବା ଅସମ୍ଭବ । ପୁଣି ଅରୁଣ ସର୍ବଦା ପାଦହୀନ ଥିବାର ପୂର୍ବେ କୁହା ଯାଇଅଛି; କିନ୍ତୁ ଉତ୍ତର ଦିଗର ସୂର୍ଯ୍ୟ ମୂର୍ତ୍ତିଙ୍କ ପାଦ ଘୋଡ଼ା ଉପରୁ ଓହଳି ଅଛି ।

ଅତଏବ ଶ୍ରୀ ବିଷନ୍ ସ୍ୱରୂପ ଯଥାର୍ଥରେ ଅନୁମାନ କରନ୍ତି ଯେ ଦକ୍ଷିଣ ସୂର୍ଯ୍ୟ ପୁଷନ୍ ମୂର୍ତ୍ତି । ପୁଷନ୍ ସୂର୍ଯ୍ୟଙ୍କର ନାମ ବିଶେଷ ଏବଂ ପୁଷନ୍ ମସ୍ତକରେ ଜଟା ଧରିଥାନ୍ତି । ଅପର ମୂର୍ତ୍ତି ଦୁଇଙ୍କୁ ସେ ବିଷ୍ଣୁ ଓ ହରିତାଶ୍ୱ ମୂର୍ତ୍ତି ମନେ କରନ୍ତି । ଋଗ୍ ବେଦରେ ସୂର୍ଯ୍ୟଙ୍କୁ ବିଷ୍ଣୁ ଆଖ୍ୟା ଦିଆ ଯାଇଅଛି ଏବଂ ସେ ତିନି ପାଦରେ ବିଶ୍ୱଭ୍ରମଣ କରୁଥିବାର ବର୍ଣ୍ଣନା ଅଛି; ଯଥା :– ଭୂତଳରେ ଅଗ୍ନି, ମରୁତରେ ବିଦ୍ୟୁତ୍ ଏବଂ ଆକାଶରେ ସୂର୍ଯ୍ୟ । ସୁତରାଂ ପଶ୍ଚିମ ଦିଗରେ ବିଷ୍ଣୁ ମୂର୍ତ୍ତି ସୂର୍ଯ୍ୟ ସ୍ୱରୂପ କଳ୍ପିତ ହୋଇ ଅଛନ୍ତି । ଉତ୍ତରର ସୂର୍ଯ୍ୟ ହରିତାଶ୍ୱ ମୂର୍ତ୍ତି; କାରଣ ହରିତ୍ ନାମକ ଅଶ୍ୱରେ ସୂର୍ଯ୍ୟ ବସୁଥିବାର ବର୍ଣ୍ଣନା ଅଛି । ଡାକ୍ତର ବ୍ଲକ୍ଙ୍କ ଅନୁମାନ ଅପେକ୍ଷା ଶ୍ରୀ ବିଷନ୍ ସ୍ୱରୂପଙ୍କ ମତ ବରଂ ଅଧିକ ସମୀଚୀନ ବୋଧହୁଏ ।

ଏହି ପାର୍ଶ୍ୱମୂର୍ତ୍ତିମାନଙ୍କ ଉପରେ ଖଣ୍ଡିଏ ଖଣ୍ଡିଏ ନୂଆ ପଥର ଛାତ ସ୍ୱରୂପ ବର୍ତ୍ତମାନ ଦିଆ ଯାଇଅଛି । କିନ୍ତୁ ଉତ୍ତର ଦିଗର ସୂର୍ଯ୍ୟମୂର୍ତ୍ତି ଯେପରି ପାଣି ପବନ ବାଜି ନଷ୍ଟ ହୋଇ ଯାଉଅଛି, ସେଥିରୁ ଆଶଙ୍କା ହୁଏ ଯେ, ସେମାନଙ୍କ ଉପରେ ଗୋଟିଏ ଗୋଟିଏ ଛାତ ଅଚିରେ ତିଆର କରି ନ ଦେଲେ ଅଳ୍ପକାଳ ମଧରେ ମୂର୍ତ୍ତିଗୁଡ଼ିକ ନଷ୍ଟ ହୋଇଯିବ ।

ଦେଉଳ ଭିତର – ଦେଉଳ ଭିତରୁ କାନ୍ଥ ଲମ୍ବଭାବରେ ଭିତର ଚଟାଣଠାରୁ ୩୦ ଫୁଟ ଉଚ୍ଚତା ପର୍ଯ୍ୟନ୍ତ ବର୍ତ୍ତମାନ ଅଛି । ଚଟାଣରୁ ୪ ଫୁଟ ୧୦ ଇଞ୍ଚ ଉଚ୍ଚରେ ଚାରି କାନ୍ଥ ଦେହରେ ଗୋଟିଏ ତିନିକାମ ବନ୍ଧନା ବୁଲିଅଛି । ଏଥିରେ କୌଣସି କାରୁକାର୍ଯ୍ୟ ନାହିଁ । ବନ୍ଧନା ୬ ଇଞ୍ଚ କାନ୍ଥ ଦେହରୁ ବାହାରି ଅଛି । ଏହି ତିନି କାମର ଓସାର ୨ ଫୁଟ ୬ ଇଞ୍ଚ । କେତେକ ସ୍ଥାନରେ ଏହା ଭାଙ୍ଗି ଯାଇଥିଲା; ବର୍ତ୍ତମାନ ପଥର ଖଞ୍ଜା ହୋଇଅଛି । କାନ୍ଥରେ କୌଣସି କାରୁକାର୍ଯ୍ୟ ନାହିଁ; ବରଂ ୧/୪ ଇଞ୍ଚ ବହଳରେ ଦୁଇ ପ୍ରସ୍ଥ ପଲସ୍ତରା ହୋଇଥିଲା । ଶ୍ରୀ ମନମୋହନ ଗାଙ୍ଗୁଲୀ ସୂକ୍ଷ୍ମଦର୍ଶକ କାଚ ଦ୍ୱାରା ଦେଖି ଅଛନ୍ତି ଯେ ତଳପ୍ରସ୍ଥ ପଲସ୍ତରାରେ

ମୋଟା ଏବଂ ଉପର ପ୍ରସ୍ତରରେ ଅତ୍ୟନ୍ତ ସରୁ ବାଲିକଣା ଅଛି * । ତଳପ୍ରସ୍ତ ନାଲିଆ ଦେଖାଯାଏ ଏବଂ ଉପର ପ୍ରସ୍ତ ବର୍ତ୍ତମାନ ମଧ୍ୟ ସୁନ୍ଦର ଚକ୍ ଚକ୍ ଦିଶେ । କ୍ରମେ କ୍ରମେ ଏହି ପଲସ୍ତରା ଛାଡ଼ି ଯାଉଛି ଏବଂ ବର୍ତ୍ତମାନ ବହୁତ ଛାଡ଼ିଗଲାଣି । ପଥର ସନ୍ଧିମାନଙ୍କରେ ଚୂନ ଢାବ ଦିଆ ଯାଇ ନ ଥିଲା ଏବଂ ପଥରମାନ ପରସ୍ପର ସହିତ ଏଭଳି ସାନ୍ଦ୍ରଭାବରେ ଜଡ଼ିତ ଥିଲା ଯେ, ବର୍ତ୍ତମାନ ଭଗ୍ନ ଅବସ୍ଥାରେ ମଧ୍ୟ ଦୁଇ ପଥରର ବ୍ୟବଧାନ ଗୋଟିଏ ସୂତା ଅପେକ୍ଷା ଅଧିକ ମୋଟା ହେବ ନାହିଁ ।

ଦେଉଳର ଦ୍ୱାର କେବଳ ଗୋଟିଏ । ମୁଖଶାଳା ଭିତରକୁ ଯେ ରାସ୍ତା ଥିଲା, ତାହା ବର୍ତ୍ତମାନ ପଥରରେ ବନ୍ଦ ହୋଇଅଛି । ସୁତରାଂ ସେ ପଥ, ଦ୍ୱାର ଓ ଦ୍ୱାରବନ୍ଧର ବର୍ଣ୍ଣନା ଅସମ୍ଭବ । ଶ୍ରୀ ବିଷନ୍ ସ୍ୱରୂପଙ୍କ ବର୍ଣ୍ଣନାରୁ ** ଜଣାଯାଏ ଯେ ମୁଖଶାଳାରୁ ଦେଉଳ ଭିତରକୁ ଯେଉଁ ଦ୍ୱାର ଥିଲା ତାହା ଲମ୍ବାରେ ୧୪ ଫୁଟ ଏବଂ ଓସାରରେ ୬ ଫୁଟ ୧୦ ଇଞ୍ଚ ଥିଲା । ଏହି ଦ୍ୱାରବନ୍ଧ ମୁଖଶାଳାର ଦ୍ୱାରମାନଙ୍କ ପରି (୬ଷ୍ଠ ଅଧ୍ୟାୟ) କଳା ମୁଗୁନି ପଥରରେ ନାନା କାରୁକାର୍ଯ୍ୟ ଦ୍ୱାରା ଭୂଷିତ ଥିଲା । ମୁଖଶାଳାର ଭିତରର ପଶ୍ଚିମ ପ୍ରାନ୍ତଠାରୁ ୨୪ ଫୁଟ ୬ ଇଞ୍ଚ ଦୂରରେ ଦ୍ୱାରବନ୍ଧ ଥିଲା । ଯେଉଁ ସ୍ଥାନରେ ଏହି ଦ୍ୱାର ଥିଲା, ତାହାର ପ୍ରସାର ୧୫ ଫୁଟ ୯ ଇଞ୍ଚ ଥିଲା । ବର୍ତ୍ତମାନ ଦେଉଳ କାନ୍ଥ ଭିତର ପାଖ ସଙ୍ଗେ ସମାନ କରି ଏବଂ ସେହିପରି ୩ ପ୍ରସ୍ତ ବନ୍ଧନା ବାହାର କରି ଏ ସମସ୍ତ ଗଭର୍ଣ୍ଣମେଣ୍ଟ ମୁଦି ଦେଇଅଛନ୍ତି ।

ଦେଉଳ ଭିତର ଚଟାଣରେ ୫୨ ଇଞ୍ଚ ମୋଟା କଳା ମୁଗୁନି ପଥର ବିଛା ହୋଇଅଛି । ଚଟାଣ ଉତ୍ତର ଦିଗକୁ କ୍ରମନିମ୍ନ । ଉତ୍ତର କାନ୍ଥ ଦେହରେ ପାଦୁକ ନଳା । ଉତ୍ତର-ପଶ୍ଚିମ କୋଣରୁ ଦେଉଳର ଭଙ୍ଗା କାନ୍ଥ ଉପର ଦେଇ ଭିତରକୁ ଆସିବା ନିମନ୍ତେ ଗୋଟିଏ ପାହାଚ ବର୍ତ୍ତମାନ ତିଆର ହୋଇଅଛି । ଚଟାଣ ଗୋଟିଏ ସମଚତୁର୍ଭୁଜ କ୍ଷେତ୍ର; ପ୍ରତ୍ୟେକ ଦିଗରେ ୩୨ ଫୁଟ ୧୦ ଇଞ୍ଚ ଲମ୍ବ ।

ସିଂହାସନ – ଦେଉଳ ମଧ୍ୟରେ ଗୋଟିଏ ସୁଚାରୁ-କାରୁ-ଖଚିତ ଅତି ମନୋହର ସିଂହାସନ ବା ବେଦୀ ବର୍ତ୍ତମାନ ଦେଖାଯାଏ । ପଶ୍ଚିମ କାନ୍ଥରୁ ପ୍ରାୟ ତିନି ଫୁଟ ଛାଡ଼ି ଚଟାଣ ଉପରେ ଏହା ନିର୍ମିତ । ସମୁଦାୟ ସିଂହାସନଟି ୧ ଫୁଟ ମୋଟା ୫ ପ୍ରସ୍ତ କଳା ମୁଗୁନି ପଥରରେ ତିଆରି ହୋଇଅଛି । ଏହା ଉପରେ ସୂର୍ଯ୍ୟନାରାୟଣଙ୍କ ବିଗ୍ରହ ପ୍ରତିଷ୍ଠିତ ଥିଲା । ଦେଉଳ ପରି ମଧ୍ୟ ଏହା ପଞ୍ଚରଥ । ତଳପଉନରେ ୧ ଇଞ୍ଚ ଗଭୀରରେ ଯେ ବରାଣ୍ଡି ଅଛି, ତହିଁରେ ବାମ, ଦକ୍ଷିଣ ଓ ସମ୍ମୁଖରେ ହାତୀକାମ ସମ୍ମୁଖର ମଧ୍ୟ ପାଗର ଚାରି ହାତୀ ଏବଂ ମଧ୍ୟରେ ହାତୀଟିଏ ଆଗ ଗୋଡ଼ ଟେକି ଗୋଟିଏ ଗଛତଳେ ବସିଅଛି । ଏହାର ପଛ ହାତୀ

* Orissa and Her Remains P. 259.

** Konarka P. 28

ଶୁଣ୍ଢରେ ଗଛଟିଏ ଧରିଛି । ଏହାର ଦୁଇ ପାଖ ପାଗରେ ଦୁଇଟି ଲେଖାଏଁ ହାତୀ ଏବଂ ଶେଷ ଦୁଇ ପାଗରେ ୩ଟି ଲେଖାଏଁ ୬ ହାତୀ । ସମୁଦାୟ ହାତୀ ମଧ୍ୟ ପାଗ ଆଡ଼କୁ ମୁହଁ କରି ଅଛନ୍ତି । ପ୍ରତ୍ୟେକ ପାଖରେ ହାତୀର ଉପର ଓ ଦୁଇ ପାଖରେ ମାଳାକାମ । ଏହି ତଳ ପଉନରୁ ୨।୩ ଇଞ୍ଚ ଛାଡ଼ି ଜଙ୍ଘା ଆରମ୍ଭ ହୋଇଅଛି । ଜଙ୍ଘାରେ ପାଦ, କଣି ଓ ବସନ୍ତ ଏହି ତିନି କାମ ଅଛି । ପାଦଠାରୁ ସିଂହାସନ ଉପର ପର୍ଯ୍ୟନ୍ତ ପ୍ରତ୍ୟେକ ପାଗର କୋଣରେ ଆଉ ଗୋଟିଏ ଗୋଟିଏ ଛୋଟ ପାଗ ବାହାରିଛି । ପାଦରେ ଲତା ଓ ମଧ୍ୟେ ମଧ୍ୟେ ନାନା ଜୀବଜନ୍ତୁର କାମ ଅଛି । ଏହି ଲତାକାମର ଉପର ଓ ବାମ ଏବଂ ଦକ୍ଷିଣ ପାଖରେ ମାଳାକାମ, ପାଦର ଉପରି ଭାଗରେ ମାରଣୀ ଓ ଓଲଟା ପଦ୍ମପାଖୁଡ଼ାର ଦୃଶ୍ୟ । କଣିରେ ଫୁଲ ଲତା ଏବଂ ବସନ୍ତର ଲତାକାମ ମଧ୍ୟରେ ହରିଣ, ଠେକୁଆ, ହାତୀ, ବେଙ୍ଗ ପ୍ରଭୃତି ଦେଖାଯାନ୍ତି । ପାଦ ପରି ମାଳାକାମ ବସନ୍ତ ଓ କଣିର ଚାରିପାଖରେ ବୁଲିଛି ।

ମଧ୍ୟପାଗର ମଧ୍ୟସ୍ଥଳରେ ପାଦଠାରୁ କଣି ପର୍ଯ୍ୟନ୍ତ ୧ ଫୁଟ ଉଚ୍ଚ ଓ ୧୦ ଇଞ୍ଚ ଓସାରରେ ଗୋଟିଏ ଦୃଶ୍ୟ ୧ ଇଞ୍ଚ ବାହାରକୁ ବାହାରିଛି । ତାହାର ପାଦରେ ସିଂହାସନ ପାଦପରି ଲତାକାମ ଏବଂ ପାଦ ଉପରେ ବରାଣ୍ଡି ଭଳି ଖୋପ ଅଛି । ଏଥିରେ ଗୋଟିଏ ସୁସଜ୍ଜିତ ହାତୀ ଦକ୍ଷିଣ ମୁଖ ହୋଇ ଠିଆ ହୋଇଛି । ମାହୁନ୍ତ ତଳେ ବସି ହାତୀକୁ କିଛି ଖୁଆଇବା ଭଳି ଥୋଡ଼ପାହାଡ଼ ଧରିଛି । ଶ୍ରୀ ବିଷନ୍ ସ୍ୱରୂପ ଏହି ମନୁଷ୍ୟକୁ ବୁଦ୍ଧଦେବ ମନେ କରନ୍ତି । ପରେ (୧୧ଶ ଅଧ୍ୟାୟରେ) ଏହାର ସବିଶେଷ ଆଲୋଚନା ହେବ । ତଦୁପରେ ସିଂହାସନର ବରାଣ୍ଡି ଅଂଶ । ସମ୍ମୁଖ ପାଗ ବରାଣ୍ଡିରେ ରାଜା ନିଜେ ପୂର୍ଣ୍ଣ ପରିଚ୍ଛଦରେ ଦେବାର୍ଚ୍ଚନ ଅବସ୍ଥାରେ ଅଛନ୍ତି । ବାମ କାଖ ତଳେ ଗୋଟିଏ ତରବାରୀ ଧରାଅଛି । ରାଜାଙ୍କ ପଛରେ ଦୁଇଜଣ ଏବଂ ଆଗରେ ପାଞ୍ଚଜଣ ପାତ୍ର ମନ୍ତ୍ରୀ ଠିଆ ହୋଇଅଛନ୍ତି । ସେବକ ଫୁଲମାଳଟିଏ ଧରି ରାଜାଙ୍କ ବେକରେ ପକାଇବା ଅବସ୍ଥାରେ ନଇଁ ପଡ଼ିଛି । ରାଜାଙ୍କ ହାତ ଭାଙ୍ଗି ଯାଇଛି । ଡାକ୍ତର ବ୍ଲକ୍ ଏହି ରାଜାଙ୍କୁ ନିଜେ ଶାମ୍ବ ବୋଲି ଅନୁମାନ କରନ୍ତି; କିନ୍ତୁ ରାଜା ନରସିଂହ ଦେବଙ୍କ ସମୟରେ ମନ୍ଦିର ଓ ସିଂହାସନ ନିର୍ମିତ ହୋଇଥିବାରୁ ମୁଁ ତାହାଙ୍କୁ ନିଜେ ନରସିଂହ ଦେବ ବୋଲି ଭାବେ । ପୁଣି ଶାମ୍ବ ତାରବାରୀ ଧରି ରାଜବେଶରେ ସୂର୍ଯ୍ୟାର୍ଚ୍ଚନା କରୁଥିବା ଅସମ୍ଭବ ମନେ ବୋଧହୁଏ । କାରଣ ଯେଉଁ ଭକ୍ତିବଳରେ ଏଡ଼େ ମହାବ୍ୟାଧିରୁ ସେ ଆରୋଗ୍ୟ ଲାଭ କରିଥିଲେ, ତହିଁରେ ଏପରି ରାଜସ ବେଶ ସମୀଚୀନ ବୋଧହୁଏ ନାହିଁ । ପରନ୍ତୁ ନରସିଂହ ଦେବ ଜଣେ ଅସାଧାରଣ ବୀର ପୁରୁଷ ଥିଲେ ।

ଏହି ମଧ୍ୟପାଗଠାରୁ ଆରମ୍ଭ କରି ବାମ ଦିଗକୁ ସମସ୍ତ ବରାଣ୍ଡିରେ ସ୍ତ୍ରୀ ମୂର୍ତ୍ତି ଏବଂ ଦକ୍ଷିଣ ଦିଗକୁ ପୁରୁଷ ମୂର୍ତ୍ତି ଧୂପ, ଦୀପ, ଅର୍ଘ୍ୟ, ଚାମର ଏବଂ ଝାଞ୍ଜ ମୃଦଙ୍ଗ ପ୍ରଭୃତି ନାନା ବାଦ୍ୟଯନ୍ତ୍ର ଧରି ଦେବାର୍ଚ୍ଚନ ଉଦ୍ଦେଶ୍ୟରେ ନାନା ନୃତ୍ୟ ଗୀତ କରୁଅଛନ୍ତି । ସମ୍ମୁଖରେ ବାମ କୋଣକ ପାଗରୁ ଉପର ପର୍ଯ୍ୟନ୍ତ ଖଣ୍ଡେ ପଥର ନ ଥିଲା ଏବଂ ନୂଆ ପଥର ଖଣ୍ଡେ ସେ

ସ୍ଥାନରେ ଭୂଷେଇ ଦିଆ ଯାଇଅଛି । ଏଥିରେ ୧୦ଟି ସ୍ତ୍ରୀ ରୂପ ଥିଲା, ବର୍ତ୍ତମାନ ୪ଟି ମାତ୍ର ଅଛି । ଏହି ପୁରୁଷ ଓ ସ୍ତ୍ରୀମାନଙ୍କର ରୂପଲାବଣ୍ୟ ଓ ମୁଖଭଙ୍ଗି ଦେଖିଲେ ମନରେ ଭକ୍ତି ଦ୍ୱିଗୁଣିତ ହୋଇଯାଏ । ପ୍ରତ୍ୟେକ ପାଗର ବରାଣ୍ଡି ଶେଷରେ ଅଣ୍ଡାଭଙ୍ଗା ଖମ୍ବ ଦୁଇଟି ଲେଖାଏଁ ଅଛି । ସିଂହାସନର ସମ୍ମୁଖ ଦୁଇ କୋଣରେ ବରାଣ୍ଡି ଦେହରେ ଓଲଟ ସିଂହ ପଛ ପାଦରେ ଠିଆ ହୋଇ ରହିଛି ଏବଂ କୋଣର ଦୁଇ ପାଖରେ ସିଂହର ପଛ ଜାନୁତଳେ ଦୁଇଟି ହାତୀ ଅଛି । ଠିକ୍ କୋଣ ସ୍ଥାନରେ ସିଂହର ବିକଟାଳ ମୁଖ ପଛକୁ ଓଲଟି ଲାଙ୍ଗୁଳ ଅଗ୍ରଭାଗ ପର୍ଯ୍ୟନ୍ତ ପାଇଛି । ସିଂହାସନର ପଛ ଦୁଇ କୋଣରେ କେବଳ ଗୋଟିଏ ହାତୀ ଉପରେ ଓଲଟ ସିଂହ ଠିଆ ହୋଇଅଛି ।

ଏହି ବରାଣ୍ଡି ଉପରେ ତିନୋଟି କାମ ଅଛି । ପ୍ରଥମରେ ତଳ ବସନ୍ତ ପରି ଲତା ଓ ଜୀବଜନ୍ତୁ କାମ । ଏହା ଉପରେ କଣି ପରି କାରୁକାର୍ଯ୍ୟବିହୀନ ଗୋଟିଏ କାମ । ସର୍ବୋପରି ପାଦ ସମାନ ଲତା କାମ ଓ ଉପରେ ମାରଣୀରେ ଓଲଟ ପଦ୍ମ ପାଖୁଡ଼ାର ଚିତ୍ର ଅଛି । ଦ୍ୱିତୀୟ ଓ ଶେଷ କାମ ମଧ୍ୟରେ ୩ ଇଞ୍ଚ ବ୍ୟବଧାନ ଅଛି । ତାହା ବହୁ ଅଣ୍ଡାଭଙ୍ଗା ଖମ୍ବରେ ଅଳଙ୍କୃତ । ସିଂହାସନର ସମ୍ମୁଖରେ ଯେପରି ଗୋଟିଏ ମାହୁନ୍ତ ସହ ସୁସଜ୍ଜିତ ହାତୀ ମୂର୍ତ୍ତି ଅଛି; ବାମ ଓ ଦକ୍ଷିଣ ପାଖରେ ସେହିପରି ଦୁଇଟି ସମାନ ଦୃଶ୍ୟ ଅଛି । ଏହା କି ଦୃଶ୍ୟ ଜଣାଗଲା ନାହିଁ । ତେବେ ଯୁଦ୍ଧ ଢାଲମାନଙ୍କରେ ଯେପରି ଚିହ୍ନ ସମୟ ସମୟରେ ଥାଏ, ଏହା ସେହିପରି ଜଣାଯାଏ । ଏହା ଉପରେ ଗୋଟିଏ ଗଛରେ ଦୁଇଟି ଓଲଟା ଚଢ଼େଇ ବସିଅଛନ୍ତି । ପଛ ପାଖରେ ସିଂହାସନରେ କୌଣସି କାମ ନାହିଁ ।

ସିଂହାସନ ଲମ୍ବରେ ୧୧ ଫୁଟ, ଓସାରରେ ୭ ଫୁଟ ୬ ଇଞ୍ଚ ଓ ଉଚ୍ଚରେ ୪ ଫୁଟ ୮ ଇଞ୍ଚ । ଦକ୍ଷିଣ ପାଖରେ ସିଂହାସନ ଉପରକୁ କଳା ମୁଗୁନି ପଥରର ପାହାଚ ଥିଲା । ବର୍ତ୍ତମାନ ତଳୁ ତିନି ପାହାଚ ଅଛି । ସିଂହାସନ ଉପରେ ସୂର୍ଯ୍ୟ ନାରାୟଣ ବସିବା ନିମନ୍ତେ ଗୋଟିଏ ପଥର ବେଦୀ ଅଛି । ଏହା ମଧ୍ୟ ସିଂହାସନ ପରି ପଞ୍ଚରଥ ଆକାରରେ କଟା ହୋଇଅଛି । ଏଥିରେ କୌଣସି କାରୁକାର୍ଯ୍ୟ ନାହିଁ । ପଥର ଉପରିଭାଗରେ ପାଦୁକ ବୋହିଯିବା ନିମନ୍ତେ ଖାଲ ଅଛି । ପଥର ଉପରେ ସୂର୍ଯ୍ୟଦେବ କେତେ କାଳ ପ୍ରତିଷ୍ଠିତ ଥିବାରୁ ବର୍ତ୍ତମାନ ପର୍ଯ୍ୟନ୍ତ ସେ ସ୍ଥାନଟି ବିବର୍ଣ୍ଣ ହୋଇଥିବାର ଜଣାପଡ଼େ । ଏହି ବେଦୀ ଖଣ୍ଡେ ପଥର । ଏହାର ପଛ ପାଖରେ ସୂର୍ଯ୍ୟନାରାୟଣ ଆଉଜି ବସିବା ନିମନ୍ତେ ୧ ଫୁଟ ମୋଟାରେ କନ୍ଦା ପଥରର ଗୋଟିଏ ମଣ୍ଡଳୀ ଥିଲା । ଶ୍ରୀ ବିଷନ୍ ସ୍ୱରୂପ ଦେଖିଲା ବେଳକୁ କାନ୍ଥର ଉପରିଭାଗରୁ ଖଣ୍ଡେ ପଥର ଖସି ପଡ଼ିଥିଲା । ମଣ୍ଡଳିଟି ପାଞ୍ଚ ଫୁଟ ଉଚ୍ଚ, ୩ ଫୁଟ ୫ ଇଞ୍ଚ ଓସାର ଓ ୧ ଫୁଟ ମୋଟା ଥିଲା । ବର୍ତ୍ତମାନ କେବଳ ଖଣ୍ଡିଏ ମାତ୍ର ପଥର ଶଙ୍କୁ ସ୍ୱରୂପ ଅଛି । ସିଂହାସନରେ ପଥର ପରସ୍ପରକୁ ଚିପି ରଖିବା ପାଇଁ ଲୁହା ପରିବର୍ତ୍ତରେ ପିତଳ ଚାପୁଆଣି ଲାଗିଥିଲା; ବର୍ତ୍ତମାନ ତାହା କିଛି ନାହିଁ । ଜଣାଯାଏ, ସିଂହାସନ ଥରେ ଭଙ୍ଗା ହୋଇ ଆଉ ଥରେ ଯୋଡ଼ା

ହୋଇ ରଖା ହୋଇଅଛି । ସିଂହାସନମାନଙ୍କରେ ସାଧାରଣତଃ ନାନା ରତ୍ନ ଥାଏ । ସେଥିପାଇଁ ଏହାକୁ 'ରତ୍ନବେଦୀ' ମଧ କହନ୍ତି ।

ଦେଉଳ ଉଚ୍ଚତା – ଦେଉଳ ବାଡ଼ ଅଧରୁ ଭାଙ୍ଗି ଯାଇଛି । ସମୁଦାୟ ବାଡ଼ ଉପରେ ଦେଉଳର ରେଖ ଅଂଶ ଥିଲା । ରେଖ ଉପରେ ବେକୀ, ଚକଡ଼ା ଓ ବେକୀ ଥିଲା । ବେକୀରେ ରାହାପାଗ ଉପରେ ଗରୁଡ ମୂର୍ତ୍ତି ଏବଂ କୋଣକ ପାଗ ଉପରେ ସିଂହ ମୂର୍ତ୍ତି ଥିଲା । ବେକୀ ଉପରେ ଆମଳକ ଶିଳା, ତ୍ରିପଟଧାର ବା କର୍ପୁରୀ ବା ଖପୁରୀ ଥିଲା । ଖପୁରୀ ଉପରେ କଳସ ପାଦ ଓ କଳସ ଏବଂ ଶେଷରେ ଧ୍ୱଜ ପଦ୍ମ ଥିଲା । ଏହି ସମୁଦାୟର ପରିମାଣ ଜାଣିବା ବର୍ତ୍ତମାନ ସହଜ ନୁହେଁ । ତଥାପି ସବୁ ସ୍ଥଳରେ ଦେଉଳମାନଙ୍କ ଗଠନ ସମାନ ଥିବାରୁ ଦେଉଳର ଭିନ୍ନ ଭିନ୍ନ ବିଭାଗର ନିର୍ଦ୍ଦିଷ୍ଟ ଅନୁପାତ ଅଛି । ତହିଁରୁ ମାଦଳାପାଞ୍ଜି ଆଶ୍ରୟରେ ଦେଉଳ ଉଚ୍ଚତା ବର୍ତ୍ତମାନ ସ୍ଥିର କରାଯାଇ ପାରେ ।

ମାଦଳାପାଞ୍ଜିରେ ଲେଖା ଅଛି * ରାଜା ନରସିଂହ ଦେବ କୋଣାର୍କର ଶୂନ୍ୟ ଦେଉଳ ଦେଖି ଜଣେ ମହାପାତ୍ରଙ୍କ ଦ୍ୱାରା ମାପ କରାଇଥିଲେ । କାଠିରେ ମାପ ହୋଇଥିଲା । ମହାରାଜାଙ୍କର ୨୮ ଆଙ୍ଗୁଳିରେ ଏକ କାଠି ହୋଇଥିଲା । ସୁତରାଂ ୨୮ ଆଙ୍ଗୁଳିକୁ ୧ ଫୁଟ ୯ ଇଞ୍ଚ ଧରାଯାଇ ପାରେ ।

| | କାଠି | ଆଙ୍ଗୁଳି | | ଫୁଟ | ଇଞ୍ଚ |
|---|---|---|---|---|---|
| ଚୁମ୍ବକ ଲୋହା | ୧୨ | ୧୪ | = | ୨୧ | ୧୦½ |
| କଳସ ** | ୨ | ୮ | = | ୪ | ୦ |
| ଧ୍ୱଜପଦ୍ମ | ୧ | ୦ | = | ୧ | ୯ |
| ଖପୁରୀ | ୩ | ୬ | = | ୫ | ୭½ |
| ଏଗାର ପଟିକା ? | ୧ | ୧୪ | = | ୨ | ୭½ |
| ଆମଳକଶିଳା ସିଂହ ଠାରୁ ଗରୁଡ଼ ତଳ ପର୍ଯ୍ୟନ୍ତ | ୧୨ | ୦ | = | ୨୧ | ୦ |
| ଗରୁଡ଼ ତଳଠାରୁ ପଦ୍ମ ପୃଷ୍ଠ ପର୍ଯ୍ୟନ୍ତ | ୮୭ | ୧୪ | = | ୧୫୩ | ୧½ |
| ମୋଟରେ ପଦ୍ମପୃଷ୍ଠ ଉପରୁ ଦେଉଳର ଉଚ୍ଚତା | ୧୨୦ କାଠି | | = | ୨୧୦ ଫୁଟ | |

* Konarka P. 8

** ୧୯୦୩-୪ ସାଲର ପ୍ରତ୍ନତତ୍ତ୍ୱ ଅନୁଶୀଳନ ବିଭାଗର ରିପୋର୍ଟରେ ପ୍ରକାଶ ଯେ, କଳସ ୨୫ ଫୁଟ ଉଚ୍ଚ ଥିଲା । ମାଦଳାପାଞ୍ଜିର ମାପ ତାହା ଅନୁସାରେ ସତ୍ୟ ବୋଲି ଜଣାପଡ଼େ ।

ପୂର୍ବବର୍ତ୍ତୀ ଅଧ୍ୟାୟରେ କୁହାଯାଇଅଛି ଯେ, ତଳ ପଭନ ସହିତ ତଳ ପୀଠ ଓ ପଦ୍ମ ପୀଠର ଉଚ୍ଚତା ୧୬ ଫୁଟ ୬ ଇଞ୍ଚ । ସୁତରାଂ ଭୂମି ଉପରୁ ଦେଉଳର ଉଚ୍ଚତା (୨୧୦ ଫୁଟ + ୧୬ ଫୁଟ ୬ ଇଞ୍ଚ) ୨୨୬ ଫୁଟ ୬ ଇଞ୍ଚ * ।

ଶ୍ରୀ ମନମୋହନ ଗାଙ୍ଗୁଲୀ ନାନା ରେଖ ଦେଉଳର ତୁଳନା କରି ତାହାର ବିଭିନ୍ନ ଅଂଶର ପରସ୍ପର ଅନୁପାତ ସ୍ଥିର କରିଅଛନ୍ତି ** । ରେଖ ଦେଉଳରେ ବାଡ଼ର ଉଚ୍ଚତା ଜଙ୍ଘା ଉଚ୍ଚତାର ୧୩/୩ ଗୁଣ । ପୂର୍ବେ ଲେଖାଅଛି, ଜଙ୍ଘାର ଉଚ୍ଚତା ୧୩ ଫୁଟ ୬ ଇଞ୍ଚ; ସୁତରାଂ ବାଡ଼ର ଉଚ୍ଚତା ୫୮ ଫୁଟ ୬ ଇଞ୍ଚ । ରେଖ ଅଂଶ ବାଡ଼ର ଦୁଇ ଗୁଣ ଉଚ୍ଚ; ଅର୍ଥାତ୍ ରେଖ ଓ ବାଡ଼ ଉଭୟ ବାଡ଼ର ୩ ଗୁଣ ଉଚ୍ଚ । ସୁତରାଂ ପଦ୍ମପୃଷ୍ଠ ଉପରୁ ବେକୀ ପର୍ଯ୍ୟନ୍ତ ଦେଉଳ ୧୭୫ ଫୁଟ ୬ ଇଞ୍ଚ ଉଚ୍ଚ । ନରସିଂହ ଦେବଙ୍କ ମାପ ଅନୁସାରେ ଆମଳକଶିଳା, କଳସ ପ୍ରଭୃତି ୨୦୪ କାଠି ବା ୩୬ ଫୁଟ । ସୁତରାଂ ପଦ୍ମପୃଷ୍ଠ ଉପରୁ ଦେଉଳର ଉଚ୍ଚତା (ଫୁ ୧୭୫।୬ + ୩୬ ଫୁ) ୨୧୧ ଫୁଟ ୬ ଇଞ୍ଚ । ଭୂମି ଉପରୁ ଦେଉଳର ଉଚ୍ଚତା ୨୧୧ ଫୁଟ ୬ ଇଞ୍ଚ + ୧୬ ଫୁଟ ୬ ଇଞ୍ଚ = ୨୨୮ ଫୁଟ । ଗାଙ୍ଗୁଲୀଙ୍କର ଏହି ହିସାବ ମଧ୍ୟ ଆନୁମାନିକ । ସୁତରାଂ କୋଣାର୍କର ସର୍ବମୋଟ ଉଚ୍ଚତା ସାଧାରଣତଃ ୨୩୦ ଫୁଟ ଧରାଯାଇପାରେ ।

ଅତଏବ କୋଣାର୍କ ଦେଉଳ ଜଗନ୍ନାଥ ଓ ଭୁବନେଶ୍ୱରର ବଡ଼ ଦେଉଳ *** ଅପେକ୍ଷା ବହୁତ ବଡ଼ ଥିଲା ଏବଂ ଶ୍ରୀ ମନମୋହନ ଗାଙ୍ଗୁଲୀ ମଧ୍ୟ କହନ୍ତି ଯେ, କୋଣାର୍କ ଦେଉଳ ପୃଥିବୀର ବୃହତ୍ତମ ଓ ସର୍ବୋତ୍କୃଷ୍ଟ ମନ୍ଦିର ଥିଲା । ଓଡ଼ିଆଙ୍କର ଦୁର୍ଭାଗ୍ୟକୁ ଏପରି ବିରାଟ ମନ୍ଦିର ଏତେ ଅଳ୍ପ କାଳ ମଧ୍ୟରେ ପତିତ ହୋଇ ବର୍ତ୍ତମାନ କେବଳ ଦର୍ଶକ ହୃଦୟରେ ନିରତିଶୟ ଖେଦ ଜନ୍ମାଉଅଛି ।

********

---

* ଉପରୋକ୍ତ ହିସାବରେ ହାତକ ୧୮ ଇଞ୍ଚ ଧରା ହୋଇଅଛି; କିନ୍ତୁ ରାଜାଙ୍କ ହାତ ଠିକ୍ ଯେ ୧୮ ଇଞ୍ଚ ଥିଲା, କୁହାଯାଇ ନ ପାରେ । ସାଧାରଣ ଲୋକଙ୍କ ହାତ ମଧ୍ୟ ୧୮ ଇଞ୍ଚରୁ ଅଧିକ । ସୁତରାଂ ଦେଉଳର ଉଚ୍ଚତା କିଛି ଅଧିକ ହୋଇଥିଲା ।

** Orissa and Her Remains P.P. 132-33

*** ବଡ଼ଦାଣ୍ଡ ଉପରୁ ଜଗନ୍ନାଥ ଦେଉଳର ଉଚ୍ଚତା ୨୧୪ ଫୁଟ ୮ ଇଞ୍ଚ (ଗାଙ୍ଗୁଲୀ ପୃ - ୪୧୭) । ଏଥିରୁ ବାଇଶ ପାହାଚର ଉଚ୍ଚତା ବାଦ ଦେଲେ ଦେଉଳର ପ୍ରକୃତ ଉଚ୍ଚତା ଆସିବ ।

ମାଇନର ସ୍କୁଲ ନିକଟ ଭୂମି ଉପରୁ ଭୁବନେଶ୍ୱର ବଡ଼ ଦେଉଳର ଉଚ୍ଚତା ୧୨୭ ଫୁଟ ୧ ଇଞ୍ଚ (ଗାଙ୍ଗୁଲୀ ପୃ - ୩୫୧) ।

# ଷଷ୍ଠ ଅଧ୍ୟାୟ

## ମନ୍ଦିର-ବର୍ଣ୍ଣନା

### ମୁଖଶାଳା

ପୂର୍ବବର୍ତ୍ତୀ ଅଧ୍ୟାୟରେ କୁହାଯାଇଅଛି ଯେ, ଦେଉଳ ସହିତ ମୁଖଶାଳା ଏକ ପଦ୍ମପୃଷ୍ଠ ଉପରେ ଅବସ୍ଥିତ । ଏହି ପୃଷ୍ଠ ଉପରୁ ମୁଖଶାଳାର ବାଡ଼ ଆରମ୍ଭ । ମୁଖଶାଳା ଗୋଟିଏ ପୀଢ଼ ଦେଉଳ ଏବଂ ବଡ଼ ଦେଉଳ ପରି ପଞ୍ଚରଥ । କୋଣାର୍କର ସମସ୍ତ ମନ୍ଦିର ମଧ୍ୟରେ କେବଳ ଏହି ମୁଖଶାଳା ନାନା ସ୍ଥାନରେ ଭାଙ୍ଗିଯାଇ ମଧ୍ୟ ପ୍ରାୟ ପୂର୍ଣ୍ଣ ଅବସ୍ଥାରେ ଅଦ୍ୟାପି ରହିଅଛି । ମୁଖଶାଳାର ଅନ୍ୟ ନାମ 'ଜଗମୋହନ' ବା 'ମୋହନ' ଏବଂ କଶ୍ୟପଙ୍କ ଅନୁସାରେ ଏହାର ନାମ 'ଅନ୍ତରାଳ' ।

ବାଡ଼ — ପୀଢ଼ ଦେଉଳରେ ବାଡ଼ ଉପରେ ପୀଢ଼ ଚାଳ ସ୍ୱରୂପ ନିର୍ମିତ ହୁଏ । ଏହା ପାଞ୍ଚ ଭାଗରେ ବିଭକ୍ତ । ପ୍ରତ୍ୟେକ ବିଭାଗର ନାମ ଓ ଉଚ୍ଚତା ନିମ୍ନରେ ଦିଆଗଲା :—

| | | | |
|---|---|---|---|
| ତଳ ଜଙ୍ଘା | - | - | ୧୦ ଫୁଟ ୧୧ ଇଞ୍ଚ |
| ତଳବରାଣ୍ଡି ବା ଶାକର | | - | ୮ ଫୁଟ ୧୦ ଇଞ୍ଚ |
| ବନ୍ଧନା | - | - | ୨ ଫୁଟ ୭½ ଇଞ୍ଚ |
| ଉପର ବରାଣ୍ଡି ବା ଶିକର | | | ୮ ଫୁଟ ୧½ ଇଞ୍ଚ |
| ଉପର ଜଙ୍ଘା | - | - | ୯ ଫୁଟ ୪ ଇଞ୍ଚ |

ଅତଏବ ପଦ୍ମପୃଷ୍ଠରୁ ବାଡ଼ର ମୋଟ ଉଚ୍ଚତା ୩୯ ଫୁଟ ୧୦ ଇଞ୍ଚ

ଜଙ୍ଘା ମଧ୍ୟ ପାଦ, କୁମ୍ଭ, କଣି, ପଟା ଓ ବସନ୍ତରେ ବିଭକ୍ତ । ପାଦରେ ଲତା କାମ ଏବଂ ତାହାର ଉପର ମାରଣୀରେ ଓଲଟ ପଦ୍ମ ପାଖୁଡ଼ା । କୁମ୍ଭରେ କୌଣସି କାମ ନାହିଁ, କେବଳ ମଧ୍ୟରେ ଗୋଟିଏ ସରୁ ଡୋରୀ ମାତ୍ର ଅଛି । କଣି, ପଟା ଓ ବସନ୍ତର କାମ ଦେଉଳ କାମ ସଙ୍ଗେ ସମାନ ।

ଜଙ୍ଘାର କାମ ପୀଠ ସହିତ ସମାନ୍ତର ଭାବରେ ମୁଖଶାଳାର ଚାରି ପାଖରେ ବୁଲିଛି । ସୁତରାଂ 'କୋଣାର୍କ' ଓ 'ଅନର୍ଥ' ପାଗର ଜଙ୍ଘାରେ ବୈଷମ୍ୟର ଖେଳା ଦେଖାଇବା ଉଦ୍ଦେଶ୍ୟରେ ସମାନ ସମାନ ବ୍ୟବଧାନରେ ଲମ୍ବ ଭାବରେ ପୀଢ଼ ଦେଉଳର କାମ ହୋଇଅଛି ।

ଏହି ପୀଢ଼ ଦେଉଳର ଉଭୟ ପାଖରେ ଦୁଇଟି ଲେଖାଏଁ ବହୁଭୁଜ ଖମ୍ବ ଅଛି । ଦେଉଳ ନିକଟ ଖମ୍ବ ଦୁଇଟିରେ ନାଗକନ୍ୟା ମୂର୍ତ୍ତି ଅଛି ଏବଂ ସାପ ଖମ୍ବ ଦେହରେ ଗୁଡ଼ାଇ ହୋଇ ରହିଅଛି । ସାପ ଦେହର କାମ ଅତ୍ୟନ୍ତ ପ୍ରୀତିକର । ଏହାର ପର ଖମ୍ବ ନାନାବିଧ ଲତା କାମରେ ଭୂଷିତ । ଏହି ଖମ୍ବ ମଧ ଅଣ୍ଟା ଭଙ୍ଗା ଅର୍ଥାତ୍ ଅଣ୍ଟା ପାଖରେ ସରୁ ହୋଇ ତାହା ଉପରକୁ ହଠାତ୍ ମୋଟା ଏବଂ ପୁଣି କ୍ରମେ କ୍ରମେ ସରୁ ହୋଇ ଯାଇଛି । ଏହି ଖମ୍ବର ଉପରିଭାଗ ଅତ୍ୟନ୍ତ ସୁନ୍ଦର ଦେଖାଯାଏ ।

ଜଙ୍ଘା ଉପରେ ଶାକର ବା ତଳ ବରାଣ୍ଡି । ଏହି ବରାଣ୍ଡିରେ କୌଣସି କୌଣସି ସ୍ଥାନରେ ହାତୀ ଚେପ୍‌ଟେଇ ପଡ଼ିଛି ଓ ତାହା ଉପରେ ଓଲଟସିଂହ ଆଗ ଗୋଡ଼ ଉପରକୁ ଟେକିରଖି ପଛ ଗୋଡ଼ରେ ଠିଆ ହୋଇଅଛି । ସ୍ଥାନେ ସ୍ଥାନେ ମଧ କେତେକ କାଳ୍ପନିକ ଜନ୍ତୁ ଅଛନ୍ତି । ଆବୁଲଫଜଲ ବୋଧହୁଏ ଏମାନଙ୍କୁ ଲକ୍ଷ୍ୟ କରି କହିଅଛନ୍ତି ଯେ, କେବଳ ମନୁଷ୍ୟର କଳ୍ପନା ବ୍ୟତୀତ ବାସ୍ତବ ରାଜ୍ୟରେ ସେମାନେ ଦେଖାଯାନ୍ତି ନାହିଁ । ଏହି ଜନ୍ତୁମାନଙ୍କର ହାତୀ ପରି ଥୋଡ଼ପାହାଡ଼ ଏବଂ ସିଂହ ପରି ପଞ୍ଝା ଅଛି । ପ୍ରତ୍ୟେକେ ଗୋଟିଏ ଗୋଟିଏ ରାକ୍ଷସ ମାରୁଅଛନ୍ତି । ଜଙ୍ଘାରେ ଯେପରି ଖମ୍ବ, ପ୍ରତ୍ୟେକ ଜନ୍ତୁଙ୍କର ଦୁଇ ପାଖରେ ସେହିପରି କାରୁକାର୍ଯ୍ୟ ଖଚିତ ଖମ୍ବମାନ ଅଛି ।

ଶାକର ଉପରେ ଯେ ବନ୍ଧନା ଅଛି, ତହିଁରେ ଦେଉଳ ବନ୍ଧନ ପରି ପାଞ୍ଚ କାମ ଅଛି ଏବଂ ଦେଉଳର ପ୍ରତ୍ୟେକ କାମରେ ଯେ କାରୁକାର୍ଯ୍ୟ ଅଛି, ଏଠାରେ ଅବିକଳ ସେହି କାମମାନ ଦେଖାଯାଏ । ଏହି ବନ୍ଧନା କେବଳ ଦ୍ୱାରମାନ ଛାଡ଼ି ମୁଖଶାଳାର ଚତୁର୍ଦ୍ଦିଗରେ ଅଖଣ୍ଡିତ ଭାବରେ ବୁଲିଅଛି ଏବଂ ଉପର ଓ ତଳ ବରାଣ୍ଡିର ଲମ୍ୱାକାର କାମ ମଧରେ ଅତି ସୁନ୍ଦର ବ୍ୟବଧାନ ହୋଇଅଛି ।

ବନ୍ଧନା ଉପରେ ଶିକାର ବା ଉପର ବରାଣ୍ଡି । ଏହି ବରାଣ୍ଡି ନାନା କାରୁକାର୍ଯ୍ୟ ଖଚିତ ଖମ୍ବଦ୍ୱାରା କେତେଗୁଡ଼ିଏ କୋଠରୀରେ ବିଭକ୍ତ । ପ୍ରତ୍ୟେକ କୋଠରୀରେ ମନୁଷ୍ୟ ଆୟତନରେ ଆପାଦମସ୍ତକ ନାନା ଅଶ୍ଳୀଳ ମୂର୍ତ୍ତି ଅଛି । ମୂର୍ତ୍ତି ଗୁଡ଼ିକ ଯେପରି ପ୍ରାକୃତିକ, ସେହିପରି ମଧ ଜୀବନ୍ତ ଓ ମନୋମୁଗ୍‌ଧକର ଏବଂ ଯେ କୌଣସି ଦେଶର ଶିଳ୍ପୀ ପକ୍ଷରେ ବଡ଼ ଗୌରବାବହ । ସମସ୍ତ ଅଶ୍ଳୀଳତା ସତ୍ତ୍ୱେ ମନ ଅଶ୍ଳୀଳତା ପ୍ରତି ଯେତେ ଆକୃଷ୍ଟ ନ ହୁଏ, ମୂର୍ତ୍ତିମାନଙ୍କ ଲାବଣ୍ୟ ଏବଂ ଗଠନ ପରିପାଟୀରେ ତାହାଠାରୁ ଅଧିକ ତନ୍ମୟ ହୋଇଯାଏ । ବଡ଼ କୌତୂହଳର କଥା ଏହି ଯେ, ମୁଖଶାଳା ପଶ୍ଚିମ ଭାଗରେ ଦେଉଳ ପାଖକୁ ଗୋଟିଏ ଅଶ୍ଳୀଳ ମୂର୍ତ୍ତି ଯୁଗଳର ପୁରୁଷ ମୂର୍ତ୍ତି ମସ୍ତକରେ ଉତ୍କଳ ସମ୍ମିଳନୀର ଜାତୀୟ ପଗଡ଼ି ପରି ଗୋଟିଏ ପଗଡ଼ି ଦେଖାଗଲା । ଦେବ ମନ୍ଦିରରେ ଏହିପରି ଅଶ୍ଳୀଳ ମୂର୍ତ୍ତି ଥିବାର ଦେଖି ନାନା ସମାଲୋଚକ ନାନା ମତ ପ୍ରକାଶ କରନ୍ତି । ପରେ (ଦ୍ୱାଦଶ ଅଧାୟରେ) ତାହାର ବିଶେଷ ବିଚାର କରାଯିବ ।

ବାଡ଼ର ସର୍ବୋପରି ଉପର ଜଙ୍ଘା । ଏଥିରେ ସାଧାରଣତଃ ପଟା, ପେଣୀ, କଣି, ବସନ୍ତ, କଣି, ପେଣି ଓ ବସନ୍ତ ଏହି ସାତୋଟି କାମ ଥାଏ । ତେଣୁ ଏହାକୁ 'ସପ୍ତକର୍ମ' ବା 'ସାତ କାମ' ମଧ୍ୟ କହନ୍ତି; କିନ୍ତୁ କୋଣାର୍କ ଦେଉଳରେ ଯେପରି, ମୁଖଶାଳାରେ ମଧ୍ୟ ସେହିପରି ଦଶ କାମ ଜଙ୍ଘା ଦେଖାଯାଏ । ପୂର୍ବୋକ୍ତ ସାତ କାମ ଉପରେ ପୁଣି ପେଣୀ, କଣି ଓ ବସନ୍ତ ଅଛି । ଏହି ଜଙ୍ଘା ଦେହରେ ତଳ ଜଙ୍ଘା ପରି ଲମ୍ବାକାର ପୀଢ଼ ଦେଉଳ ବା ଖମ୍ବ ଆଦୌ ନାହିଁ । ପ୍ରତ୍ୟେକ କାମ ଦେହରେ ଲତାପତ୍ର ଓ ପଦ୍ମ ଯେପରି ଥିବାର କଥା, ତାହା ସବୁ ଅବିକଳ ଅଛି । ଏହି ଜଙ୍ଘାଦ୍ୱାରା ମନ୍ଦିରର ସୌନ୍ଦର୍ଯ୍ୟ ଯଥେଷ୍ଟ ବଢ଼ି ଯାଇଅଛି । ତଳଭାଗର ବାଡ଼ କାମ ସହିତ ଉପରି ଭାଗର ପୀଢ଼ ମଧ୍ୟରେ ଏହା ଗୋଟିଏ ଅତି ସୁନ୍ଦର ବ୍ୟବଧାନ ହୋଇଅଛି । ଏହା ନ ଥିଲେ ପୀଢ଼ ବାଡ଼ଠାରୁ ସମ୍ପୂର୍ଣ୍ଣ ପୃଥକ୍ ପରି ବୋଧ ହେଉଥାନ୍ତା । ସ୍ଥଳରେ କୋଣାର୍କ ମୁଖଶାଳାର ବାଡ଼ ଦେହରେ ଆଲୋକ ଓ ଛାୟାର କ୍ରୀଡ଼ା, ସାମ୍ୟ ଓ ବୈଷମ୍ୟ ନୀତିର ଅଭିଜ୍ଞତା ଅତ୍ୟନ୍ତ ମନୋହର ଭାବରେ ଦେଖାଯାଏ (୧୨ଶ ଅଧ୍ୟାୟ) ।

ବାଡ଼ ଦେହରେ ନାନା ଶିଳ୍ପ କୌଶଳବଶତଃ କେଉଁଠାରେ ଉତ୍‌ଥାନ ଓ କେଉଁଠାରେ ପତନ ହୋଇଅଛି । ବହୁତ ଖମ୍ବ ଓ ଦେଉଳ ଦୃଶ୍ୟରେ ବାଡ଼ ଖଣ୍ଡ ଖଣ୍ଡ ହୋଇ ବିଭକ୍ତ ହୋଇଅଛି । ତଥାପି ଶିଳ୍ପୀ ପକ୍ଷରେ ବିଶେଷ ପ୍ରଶଂସାର କଥା ଏହି ଯେ, ବାଡ଼ ଚତୁର୍ଭୁଜାକାର ହେବାର କଥା, ତାହା ଅକ୍ଷୁର୍ଣ୍ଣ ରହିଅଛି । ଏହା ସମୁଦାୟ କୋଣାର୍କର ଅନ୍ୟ ଏକ ବିଶେଷତ୍ୱ ।

ପୀଢ଼ — ମୁଖଶାଳାର ଚାଳ ପୀଢ଼ ଆକାରରେ ହୋଇଥିବାରୁ ଏହାକୁ ପୀଢ଼ ଦେଉଳ କହନ୍ତି । ଚାଳର ପ୍ରଥମ ପୀଢ଼ ବାଡ଼ ଦେହରୁ ଉପର ଜଙ୍ଘାର ଅର୍ଦ୍ଧେକ ପ୍ରାୟ ବାହାରିଥାଏ । ଏଠାରେ ବାଡ଼ ଦେହରୁ ପ୍ରାୟ ୪ ଫୁଟ ପର୍ଯ୍ୟନ୍ତ ପୀଢ଼ ବାହାରିଅଛି । ପୁରୀରେ ମୁଖଶାଳା ପୀଢ଼ର ଆଶ୍ରୟ ସ୍ୱରୂପ ଲୁହା ଖମ୍ବ ଓ କଡ଼ି ଅଛି; କିନ୍ତୁ କୋଣାର୍କ ମୁଖଶାଳରେ କୌଣସି ଆଶ୍ରୟ ନାହିଁ । କେବଳ ବାଡ଼ ଉପରେ ପୀଢ଼ର ନିମ୍ନ ଚାପଦ୍ୱାରା ଏହା ସ୍ଥିର ଅଛି । ବାଡ଼ରେ ଯେପରି, ପୀଢ଼ରେ ମଧ୍ୟ ସେହିପରି ପାଗ ବିଭାଗ ଅଛି । ପୀଢ଼ ତିନି ସ୍ତରରେ ବିଭକ୍ତ । ପ୍ରଥମ ସ୍ତରରେ ୬ ପ୍ରସ୍ତ, ଦ୍ୱିତୀୟରେ ୬ ପ୍ରସ୍ତ ଏବଂ ତୃତୀୟରେ ୫ ପ୍ରସ୍ତ ପୀଢ଼ ଅଛି । ପ୍ରଥମ ଓ ଦ୍ୱିତୀୟ ସ୍ତର ମଧ୍ୟରେ ୭ ଫୁଟ ୪ ଇଞ୍ଚ ଏବଂ ଦ୍ୱିତୀୟ ଓ ତୃତୀୟ ସ୍ତର ମଧ୍ୟରେ ୫ ଫୁଟ ୭ ଇଞ୍ଚ ବ୍ୟବଧାନ ଅଛି । ଏହି ବ୍ୟବଧାନ ମଧ୍ୟରେ ଆପାଦମସ୍ତକ ସ୍ତ୍ରୀ ମୂର୍ତ୍ତି ମୃଦଙ୍ଗ, ମହୁରୀ ପ୍ରଭୃତି ନାନା ବାଦ୍ୟଯନ୍ତ୍ରମାନ ବଜାଉ ଅଛନ୍ତି । ତିନି ଦ୍ୱାର ଉପରେ ଏହି ବ୍ୟବଧାନ ସ୍ଥାନରେ ତିନି ଶିବମୂର୍ତ୍ତି ଅଛନ୍ତି । ସେମାନଙ୍କ କାନ୍ଧରେ ସାପ ପଇତା ଓ ହାତରେ ଡମ୍ବରୁ । ଶିବଙ୍କର ଚାରି ମୁଖ ଏବଂ ପ୍ରତ୍ୟେକ ମୁଖରେ ତିନି ଆଖି ଅଛି । ଶିବଙ୍କ ଜଟା ପଞ୍ଚମ ମୁଖ ସ୍ୱରୂପ ଧରା ଯାଉଥିବାରୁ ଆଉ ଗୋଟିଏ ମୁଖ ହୋଇ ନାହିଁ ।

ପ୍ରତ୍ୟେକ ପୀଢ଼ର ସମ୍ମୁଖ ଭାଗ ୧ ଫୁଟ ୩ ଇଞ୍ଚ ଓସାର । ଦ୍ୱିତୀୟ ସ୍ତରର ତଳ ପୀଢ଼ କାନ୍ଥ ଦେହରୁ ୩ ଫୁଟ ୬ ଇଞ୍ଚ ଏବଂ ତୃତୀୟର ତଳ ପୀଢ଼ ୨ ଫୁଟ ୭ ଇଞ୍ଚ ବାହାରିଛି ।

ପ୍ରଥମ ଓ ଦ୍ୱିତୀୟ ସ୍ତରର ପ୍ରତ୍ୟେକ ପୀଢ଼ର ସମ୍ମୁଖ ଭାଗରେ ହାତୀ, ଘୋଡ଼ା, ଯୁଦ୍ଧ ଓ ଶିକାର ଦୃଶ୍ୟ ପ୍ରଭୃତିର କାମ ହୋଇଅଛି । ତୃତୀୟ ସ୍ତରରେ କୌଣସି କାମ ନାହିଁ । କାରଣ ଏହା ଏତେ ଉଚ୍ଚରେ ଅଛି ଯେ, କୌଣସି କାମ ଥିଲେ ମଧ ତଳରୁ ଆଦୌ ଦେଖାଯାନ୍ତା ନାହିଁ । ପୁରୀ ଗେଜେଟିଆର ଲେଖକ କହନ୍ତି * ସମସ୍ତ ପୀଢ଼କୁ ପରସ୍ପର ଲମ୍ବରେ ଯୋଡ଼ିଦେଲେ ପ୍ରାୟ ୩୦୦୦ ଫୁଟ ଲମ୍ବା ହେବ ଏବଂ ତହିଁରେ ଅନ୍ତତଃ ତାହାର ଦୁଇ ଗୁଣ ୬ ହଜାର ମୂର୍ତ୍ତି ଥିବାର ଜଣାଯିବ । ସେହି ମୂର୍ତ୍ତିମାନଙ୍କରେ ଭାରତୀୟ ଶିଳ୍ପର ପରାକାଷ୍ଠା ଦେଖାଇ ଦିଆ ହୋଇଅଛି ।

| | |
|---|---|
| ପ୍ରଥମ ସ୍ତର ପୀଢ଼ର ଉଚ୍ଚତା | ୧୫ ଫୁଟ ୮ ଇଞ୍ଚ |
| ଦ୍ୱିତୀୟ ସ୍ତର ପୀଢ଼ର ଉଚ୍ଚତା | ୧୦ ଫୁଟ ୬ ଇଞ୍ଚ |
| ତୃତୀୟ ସ୍ତର ପୀଢ଼ର ଉଚ୍ଚତା | ୭ ଫୁଟ ୬ ଇଞ୍ଚ |
| ପ୍ରଥମ ଓ ଦ୍ୱିତୀୟ ସ୍ତର ମଧ୍ୟରେ ବ୍ୟବଧାନ | ୭ ଫୁଟ ୪ ଇଞ୍ଚ |
| ଦ୍ୱିତୀୟ ଓ ତୃତୀୟ ସ୍ତର ମଧ୍ୟରେ ବ୍ୟବଧାନ | ୫ ଫୁଟ ୭ ଇଞ୍ଚ |
| ବାଢ଼ ଉପର ବେକୀ ପର୍ଯ୍ୟନ୍ତ ସମସ୍ତ ପୀଢ଼ ଅଂଶର ଉଚ୍ଚତା | ୪୬ ଫୁଟ ୭ ଇଞ୍ଚ |

ଅନ୍ୟାନ୍ୟ ପୀଢ଼ ଦେଉଳ ପରି ମୁଖଶାଳାର ପୀଢ଼ ଉପରେ ଶ୍ରୀବେକୀ, ଶ୍ରୀ, ଶ୍ରୀଖପୁରି, ଦ୍ୱୋରୀ, ଆମଳକ ବେକୀ, ଆମଳକଶିଳା, ଆମଳକ ଖପୁରୀ, କଳସ ପାଦ, କଳସ ଓ ଧ୍ୱଜ ଥିଲା । ବର୍ତ୍ତମାନ କେବଳ କଳସ ଓ ଧ୍ୱଜ ନାହିଁ । ଅନ୍ୟାନ୍ୟ ସମସ୍ତ ପୂର୍ବ ପରି ରହିଅଛି ।

ଶ୍ରୀର ବେକୀରେ ୮ଟି ସିଂହ ମୂର୍ତ୍ତି ଅଛି । ଏହି ସିଂହ ମୂର୍ତ୍ତିମାନଙ୍କ ଉପରେ ଶ୍ରୀ ଓ ତାହାର ଉପରର କାମମାନ ଆଶ୍ରୟ ନେଲା ପରି ବୋଧହୁଏ । ବେକୀର ତଳେ ପୀଢ଼ ଚତୁର୍ଭୁଜାକାର ଏବଂ ଶ୍ରୀ ପ୍ରଭୃତି ଗୋଲାକାର । ସୁତରାଂ ଏହି ଦୁଇଟିର ଆକାର ସମନ୍ୱୟ କରିବା ବିଷୟରେ ଉକ୍ତ ଆଠଟି ସିଂହ ମୂର୍ତ୍ତିର ଆବଶ୍ୟକତା ପରିଷ୍କାର ବୁଝାଯାଏ । ଶ୍ରୀରେ କୌଣସି କାମ ନାହିଁ । ଶ୍ରୀଖପୁରୀ ପଦ୍ମ ପାଖୁଡ଼ାରେ ମଣ୍ଡିତ ଏବଂ ଆକାରରେ ଗୋଟିଏ ବଡ଼ ଘଣ୍ଟି ସଦୃଶ । ବେକୀ ଓ ଖପୁରୀ ସହ ଶ୍ରୀର ଉଚ୍ଚତା ୧୭ ଫୁଟ ୮ ଇଞ୍ଚ । ଏହା ଉପରେ ଦ୍ୱୋରୀ ଓ ଆମଳକ ବେକୀ । ଆମଳକ ବେକୀରେ ମନୁଷ୍ୟ ମୂର୍ତ୍ତିଗୁଡ଼ିଏ ତଳେ ହାତ ଉପରେ ଭରା ଦେଇ ବସିଅଛନ୍ତି ଏବଂ ସେମାନଙ୍କ ପିଠି ଓ ମୁଣ୍ଡ ଉପରେ ଆମ୍ଳକ ଶିଳା ଆଶ୍ରୟ

* Mr. O' Malley-Bengal District Gazetter, Puri P. 274.

ପାଇଅଛି । ଦେଖିଲେ ବୋଧହୁଏ, ସେମାନେ ଯେପରି ପିଠି ଓ ମୁଣ୍ଡ ଲଗାଇ ଆମଳକ ଶିଳାକୁ ଟେକି ରଖିଅଛନ୍ତି ଏବଂ ତଳୁ ସେମାନଙ୍କ ହାତ ଖସିଗଲେ ଆମଳକ ଶିଳା ଯେପରି ଖସି ପଡ଼ିବ । ଆମଳକ ଶିଳା ଅଁଳା ପରି ଦନ୍ତୁରିତ । ସେହି ହେତୁରୁ ତାହାର ଏହିପରି ନାମକରଣ ହୋଇଅଛି । ଆମଳକ ଶିଳାର ଉଚ୍ଚତା ୭ ଫୁଟ ୧୦ ଇଞ୍ଚ । ଆମଳକ ଖପୁରୀରେ କୌଣସି କାରୁକାର୍ଯ୍ୟ ନାହିଁ । ଏହି ଖପୁରୀର ବ୍ୟାସ ୧୬ ଫୁଟ ୧୦ ଇଞ୍ଚ । କଳସ ଓ ଧ୍ୱଜ ବର୍ତ୍ତମାନ ନାହିଁ କି ରାଜେନ୍ଦ୍ର ଲାଲଙ୍କ ବେଳେ ମଧ ନ ଥିଲା । କିନ୍ତୁ ଯେଉଁ ଲୁହା ଗଜଦ୍ୱାରା କଳସ ଆମଳକଶିଳା ସହିତ ଯୋଡ଼ା ହୋଇଥିଲା, ଶ୍ରୀ ବିଷଦ୍ ସ୍ୱରୂପ ତାହା ଥିବାର ଦେଖି ଅଛନ୍ତି * ।

ଉଚ୍ଚତା — ମୁଖଶାଳାର ଉଚ୍ଚତା ମାଦଳାପାଞ୍ଜି ଅନୁସାରେ ୭୩ କାଠି ଅର୍ଥାତ୍ ୧୨୭ ଫୁଟ ୯ ଇଞ୍ଚ । ଶ୍ରୀ ମନମୋହନ ଗାଙ୍ଗୁଲୀ ଗୋଟିଏ ଯନ୍ତ୍ର ସାହାଯ୍ୟରେ ସ୍ଥିର କରିଅଛନ୍ତି ଯେ, ଏହାର ବର୍ତ୍ତମାନ ଉଚ୍ଚତା ୧୨୯ ଫୁଟ ୮ ଇଞ୍ଚ । **

ଏଥିରେ କଳସ ଓ ଧ୍ୱଜ ପଦ୍ମର ଉଚ୍ଚତା ମିଶି ନାହିଁ । କଳସ ଓ ଧ୍ୱଜ ପଦ୍ମର ଉଚ୍ଚତା ପ୍ରାୟ ୨୦ ଫୁଟ ଧରା ଯାଇପାରେ । ଶ୍ରୀ ବିଷନ୍ ସ୍ୱରୂପ ତାହାଙ୍କ ଗ୍ରନ୍ଥ ଶେଷରେ କୋଣାର୍କର ପୂର୍ଣ୍ଣ ଅବସ୍ଥାର ଯେଉଁ ଚିତ୍ର ଦେଇଅଛନ୍ତି *** ତହିଁରୁ ଅନୁମାନ ହୁଏ ଯେ, କଳସ ଓ ଧ୍ୱଜ ୨୪ ଫୁଟ ଥିଲା । ସୁତରାଂ କଳସ ଧ୍ୱଜକୁ ୧୫ ଫୁଟ ମାତ୍ର ଧରିଲେ ସୁଦ୍ଧା ମୁଖଶାଳାର ମୋଟ ଉଚ୍ଚତା ୧୪୫ ଫୁଟ ହେଉଅଛି । ଅତଏବ କୋଣାର୍କର ମୁଖଶାଳା ଭୁବନେଶ୍ୱରର ବଡ଼ ଦେଉଳଠାରୁ ମଧ ୧୫ ବା ୨୦ ଫୁଟ ପର୍ଯ୍ୟନ୍ତ ଅଧିକ ଉଚ୍ଚ **** ।

ଦ୍ୱାର — ମୁଖଶାଳାରେ ଚାରି ଦିଗରେ ଚାରି ଦ୍ୱାର । ପଶ୍ଚିମ ଦ୍ୱାର ବାଟେ ବଡ଼ ଦେଉଳ ଭିତରକୁ ଯିବାକୁ ହେଉଥିଲା । ପ୍ରତ୍ୟେକ ଦ୍ୱାରର ଦ୍ୱାରବନ୍ଧ କଳା ମୁଗୁନି ପଥରରେ ଗଢ଼ା । ଦ୍ୱାରବନ୍ଧମାନ ନାନା କାରୁକାର୍ଯ୍ୟରେ ଭୂଷିତ । ଏମାନଙ୍କର ସୌନ୍ଦର୍ଯ୍ୟ ଓ ଗଠନ ପ୍ରଣାଳୀ ଦେଖିଲେ ହୃଦୟ ଏକାବେଳକେ ମୁଗ୍ଧ ହୋଇଯାଏ । କୋଣାର୍କର ସମସ୍ତ ସୌନ୍ଦର୍ଯ୍ୟ ଯେପରି ଏହି ଦ୍ୱାରବନ୍ଧମାନଙ୍କରେ ଏକାଧାରରେ ଠୁଳ ହୋଇଅଛି । ମନେହୁଏ,

---

* Konarka P. 19.
ମାଦଳାପାଞ୍ଜିରେ ଯେ ମାପ ଦିଆଅଛି ତହିଁରୁ ମଧ ଜଣାଯାଏ ଯେ, ବଡ଼ ଦେଉଳର କଳସ ପରି ମୁଖଶାଳାର କଳସ ମଧ ମାପ ସମୟକୁ ନ ଥିଲା । ଏକ ସମୟରେ ଉଭୟ କଳସ ଭଙ୍ଗା ହୋଇଅଛି ।

** Orissa and Her Remains P.P. 460-61

*** Plate No I in Konraka.

**** ଭୁବନେଶ୍ୱର ବଡ଼ ଦେଉଳର ଉଚ୍ଚତା ୧୨୭ ଫୁଟ ୧ ଇଞ୍ଚ ବା ୧୩୦ ଫୁଟ ଧରା ଯାଇପାରେ ।

ଶିଳ୍ପୀ ଯେତେ ସୌନ୍ଦର୍ଯ୍ୟ କଳ୍ପନା କରି ପାରିଥିଲେ, ତାହା ସମସ୍ତ ଏହି ଦ୍ୱାରବନ୍ଧରେ ଦେଖାଇବା ପାଇଁ ପ୍ରାଣପଣେ ଯତ୍ନ କରିଥିଲେ । ଡାକ୍ତର ରାଜେନ୍ଦ୍ର ଲାଲ ମିତ୍ରଙ୍କ ବର୍ଣ୍ଣନାର ଅବଲମ୍ବନରେ ଏହି ଦ୍ୱାରବନ୍ଧର ବର୍ଣ୍ଣନା ନିମ୍ନରେ ଦିଆଗଲା * :—

ଦ୍ୱାରବନ୍ଧ କଳା ମୁଗୁନି ପଥରରେ ଆୟତାକାରରେ ତିଆର ହୋଇଅଛି । × × × × × ମୁଖଶାଳାର ସମ୍ମୁଖ ଦ୍ୱାରବନ୍ଧର କାରୁକାର୍ଯ୍ୟ ସମସ୍ତ ଭାରତବର୍ଷ ମଧ୍ୟରେ ସର୍ବାପେକ୍ଷା ଅଧିକ ମନୋହର । ଦ୍ୱାରବନ୍ଧର ଏହିରୂପ କାମ ଭାରତର ନାନା ସ୍ଥାନରେ ଚିରନ୍ତନ ପ୍ରଥା ସ୍ୱରୂପ ଅନୁସୃତ ହୁଏ; ବିଶେଷତଃ ଓଡ଼ିଶାରେ ଭୁବନେଶ୍ୱରର ମୁଖଶାଳା, ଅଜନ୍ତା ଗୁମ୍ଫା ଓ ଅନ୍ୟାନ୍ୟ ସ୍ଥାନରେ ଏହିପରି ଦ୍ୱାରବନ୍ଧ ଦେଖାଯାଏ । କିନ୍ତୁ କୋଣାର୍କ ଦ୍ୱାରବନ୍ଧର କାରୁକାର୍ଯ୍ୟ ସର୍ବୋପରି ମନୋହର । ଦ୍ୱାରବନ୍ଧରେ ସାତ ଶ୍ରେଣୀ ବିଭିନ୍ନ କାମ ଅଛି ଏବଂ ତିନି ପ୍ରାନ୍ତରେ ପଦ୍ମ ପାଖୁଡ଼ା ଓ ମାଳା କାମରେ ଭୂଷିତ ଗୋଟିଏ ବନ୍ଧ ଅଛି । ଏହି ବନ୍ଧ ଓ ଦ୍ୱାର ମଧ୍ୟରେ ଦ୍ୱାରବନ୍ଧର ସାତ ଶ୍ରେଣୀ କାମ ହୋଇଅଛି । ଦ୍ୱାରବନ୍ଧର ନିମ୍ନଭାଗରେ ପ୍ରଥମେ ଜଙ୍ଘା ଅଂଶ । ଏଥିରେ ପାଦ, କଣି ଓ ବସନ୍ତ ଏବଂ ପାଦ । ବସନ୍ତରେ ଲତା କାମ । ଏହାର ଉପର ବରାଣ୍ଡି ଗୋଟିଏ ଗୋଟିଏ ପୀଢ଼ ଦେଉଳାକାର । ଏହାର ଖୁର ପୃଷ୍ଠରେ ପଦ କାମ, ବାଢ଼ ଦେହରେ ପୂର୍ଣ୍ଣ ଶରୀରରେ ଅପ୍‌ସରା, ନାଗକନ୍ୟା ପ୍ରଭୃତି ନାନା ଭଙ୍ଗୀରେ ଠିଆ ହୋଇ ରହିଅଛନ୍ତି ଏବଂ ଉପରେ ଚାଳ ଓ ମସ୍ତକ ନାନା ଲତା କାମରେ ମଣ୍ଡିତ । ଉକ୍ତ ଜଙ୍ଘା ଓ ବରାଣ୍ଡି ଦ୍ୱାରର ପ୍ରତ୍ୟେକ ପାଖରେ ସାତ ଭାଗରେ ବିଭକ୍ତ ହୋଇ ସାତଟି ଖମ୍ଭ ସଦୃଶ ହୋଇଅଛି ଏବଂ ପ୍ରତ୍ୟେକ ଖମ୍ଭ ମଧ୍ୟରେ ପ୍ରାୟ ୧୫ ଇଞ୍ଚ ବ୍ୟବଧାନ ଅଛି । ବରାଣ୍ଡିର ମସ୍ତକମାନଙ୍କ ଉପରୁ ଦ୍ୱାରବନ୍ଧର ସାତ ଶ୍ରେଣୀ କାମ ଆରମ୍ଭ ହୋଇ ଉପରୁ ଦୁଇ କୋଣ ପର୍ଯ୍ୟନ୍ତ ଋଆଁପିଅଛି । ଦ୍ୱାର ଉପର ଅଂଶରେ କେତେକ ପଂକ୍ତିର କାମ ଦୁଇ ପାଖର କାମଠାରୁ ଭିନ୍ନ ।

ଉପରୋକ୍ତ କ୍ଷୁଦ୍ର ପୀଢ଼ ଦେଉଳାକାର ବରାଣ୍ଡିର ମସ୍ତକ ଉପରେ ଯୁବସାଞ୍ଜୁ ଦେହର ବିଶିଷ୍ଟ ଚିହ୍ନ ସ୍ୱରୂପ ଗୋଟିଏ ଅତି ସୁନ୍ଦର କାମ ପ୍ରତ୍ୟେକ ପଂକ୍ତିର ପାଦ ସ୍ୱରୂପ ଅଛି । ଦ୍ୱାରର ନିକଟବର୍ତ୍ତୀ ପ୍ରଥମ ପଂକ୍ତିରେ ଜାଲି କାମ । ତାହାର ପର ପଂକ୍ତିର ଦୁଇ ପାଖରେ ଦୁଇଟି ସ୍ତ୍ରୀ ମୂର୍ତ୍ତି । ଉପରୁ ଦୁଇଟି ଲେଖାଏଁ ସାପ ପରସ୍ପର ଗୁଡ଼ାଇ ହୋଇ ଦ୍ୱାର ଉପରେ ଦୁଇଟି ସ୍ତ୍ରୀ ମୂର୍ତ୍ତି ଉପରେ ସପ୍ତଫେଣା ଟେକିଅଛି ଏବଂ ଦ୍ୱାର ଉପର ସ୍ତ୍ରୀ ମୂର୍ତ୍ତି ଦୁଇଟି ପରସ୍ପରଆଡ଼କୁ ମୁଣ୍ଡ କରି ଉତ୍ତର ଦକ୍ଷିଣ ହୋଇ ଶୋଇଅଛନ୍ତି । ଏହି ଦୁଇ ପଂକ୍ତିର ଲତା ଓ ସାପ କାତିର କାରୁକାର୍ଯ୍ୟ ଏତେ ମନୋହର ଯେ, ମଧ୍ୟଯୁଗର ଅନ୍ୟ କୌଣସି କାରୁକାର୍ଯ୍ୟ ଏହା ସହିତ ଆଦୌ ତୁଳନୀୟ ନୁହେଁ । ତୃତୀୟ ପଂକ୍ତି କେତେଗୁଡ଼ିଏ କ୍ଷୁଦ୍ର କ୍ଷୁଦ୍ର ବରାଣ୍ଡି ବା ଖୋପରେ ବିଭକ୍ତ ହୋଇଅଛି । ପ୍ରଥମ ଖୋପରେ ପୁରୁଷ ଓ ସ୍ତ୍ରୀର ଅଶ୍ଳୀଳ ଯୁଗଳ ମୂର୍ତ୍ତି ଏବଂ

* 'Antiquities of Orissa'. Vol. II. P. 154.

ସେମାନଙ୍କର ଦୁଇ ପାଖରେ ଖୋପର ଦୁଇ ପାନ୍ତରେ ଅଣ୍ଡାଭଙ୍ଗା ଖମ୍ବ ଅଛି । ଦ୍ୱିତୀୟ ଖୋପରେ ଯୋଦ୍ଧା ସାଞ୍ଜୁ ଦେହର ଚିହ୍ନ ବିଶେଷ । ପୁଣି ତୃତୀୟ ଖୋପରେ ଅଶ୍ଳୀଳ ମୂର୍ତ୍ତି ଓ ଚତୁର୍ଥରେ ସାଞ୍ଜୁ ଚିହ୍ନ । ଏହିପରି କ୍ରମାନ୍ୱୟରେ ଦ୍ୱାରର ଉପର କୋଣ ପର୍ଯ୍ୟନ୍ତ ଯାଉଛି । କିନ୍ତୁ ଦ୍ୱାର ଉପର ତୃତୀୟ ପଂକ୍ତିରେ ଅଶ୍ଳୀଳ ମୂର୍ତ୍ତି ପ୍ରଭୃତି କିଛି ନାହିଁ । ସମସ୍ତ ପଂକ୍ତିଟି ଅଣ୍ଡାଭଙ୍ଗା ଖମ୍ବଦ୍ୱାରା କେତେଗୁଡ଼ିଏ କୋଠରୀରେ ବିଭକ୍ତ ହୋଇଅଛି ଏବଂ ପ୍ରତ୍ୟେକ କୋଠରୀରେ ମୃଦଙ୍ଗ, ମହୁରୀ ପ୍ରଭୃତି ବାଦ୍ୟଯନ୍ତ୍ର ଧରି ପୁରୁଷ ମୂର୍ତ୍ତିଗୁଡ଼ିଏ ବଜାଉଅଛନ୍ତି । ଚତୁର୍ଥ ପଂକ୍ତିରେ ସାପ ଗତି ଆକାରରେ ଗୋଟିଏ ଫୁଲ ଲତା କାମ ହୋଇଅଛି ଏବଂ ପ୍ରତ୍ୟେକ ଅର୍ଦ୍ଧବୃତ୍ତ ମଧ୍ୟରେ ଅପ୍‌ସରୀମାନେ ନାନା ନୃତ୍ୟ ଗୀତ କରୁଅଛନ୍ତି * । ଦ୍ୱାର ଉପରେ ଚତୁର୍ଥ ପଂକ୍ତିରେ ଲତା ବା ଅପ୍‌ସରୀ ନାହିଁ । ତାହା ପରିବର୍ତ୍ତରେ ତୃତୀୟ ପଂକ୍ତି ପରି ଏହା ଖମ୍ବ ଦ୍ୱାରା ଗୋଟିଏ ଗୋଟିଏ କୋଠରୀରେ ବିଭକ୍ତ ହୋଇଅଛି । ପ୍ରତ୍ୟେକ କୋଠରୀରେ ପୁରୁଷମାନେ ଟଙ୍କା ପକାଇ ଉଡ଼ିଯିବା ଅବସ୍ଥାରେ ବସିଅଛନ୍ତି ଏବଂ ଦକ୍ଷିଣ ପାଖର ପୁରୁଷମାନେ ଦକ୍ଷିଣ ଜାନୁ ଉପରେ ଏବଂ ବାମ ପାଖରେ ବାମ ଜାନୁ ଉପରେ ଗୋଟିଏ ଗୋଟିଏ ସ୍ତ୍ରୀ ବସାଇ ଅଛନ୍ତି । ପଞ୍ଚମ ପଂକ୍ତି କେତେଗୁଡ଼ିଏ କ୍ଷୁଦ୍ର କ୍ଷୁଦ୍ର ନାନା କାରୁଖଚିତ ଖମ୍ବରେ ବିଭକ୍ତ । ଦ୍ୱାର ଉପରେ ପଞ୍ଚମ ପଂକ୍ତି ତଳ ଦୁଇ ପଂକ୍ତି ପରି ଅଣ୍ଡାଭଙ୍ଗା ଖମ୍ବ ଦ୍ୱାରା କେତେଗୁଡ଼ିଏ କୋଠରୀରେ ବିଭକ୍ତ ଏବଂ ପ୍ରତ୍ୟେକରେ ଜଣେ ଲେଖାଏଁ ବାଦ୍ୟକାର ମୃଦଙ୍ଗ ପ୍ରଭୃତି ବଜାଉଅଛନ୍ତି । ଷଷ୍ଠ ପଂକ୍ତିର କାମ ତୃତୀୟ ପଂକ୍ତି କାମ ସଙ୍ଗେ ସମାନ । ସପ୍ତମରେ ଦରଫୁଟିଲା କାକୁଡ଼ି ଫୁଲ ଏକ ଡେମ୍ଫରେ ପରସ୍ପର ସହିତ ଲାଗି ଧାଡି ହୋଇ ରହିଥିଲେ ଯେପରି ଦେଖାଯାଏ, ସେହିପରି ଫୁଲ କାମ ** ଏହି ପଂକ୍ତି ସମାନ ଭାବରେ ଦ୍ୱାରର ତିନି ଦିଗରେ ବୁଲିଅଛି । ଏହି ପଂକ୍ତି ପରେ ଗୋଟିଏ ବନ୍ଧ ଅଛି । ବନ୍ଧର ମୁଖରେ ଡାଳି କାମ, ତାହା ପାଖରେ ମାଳା କାମ ଏବଂ ମୁଖଶାଳାର ପ୍ରତ୍ୟେକ ପୀଢ଼ ଉପରେ ଯେପରି ତିନିକୋଣିଆ ପଥର ସମାନ ସମାନ ଦୂରରେ ବାହାରି ଥାଏ, ସେହିପରି ମଧ୍ୟ ଏହି ବନ୍ଧ ଦେହରୁ ବାହାରିଅଛି । ବନ୍ଧର ଦ୍ୱାର ପାଖରେ ମାରଣୀ ଓ ପଦ୍ମ ପାଖୁଡ଼ାର କାମ ଏବଂ ପ୍ରତ୍ୟେକ ପଦ୍ମ ପାଖୁଡ଼ା ମଧ୍ୟରେ ସୁନ୍ଦର ମାଳା କାମ ।

ଦ୍ୱାରର ଉପରିଭାଗ ମଧ୍ୟସ୍ଥଳରେ ପ୍ରତ୍ୟେକ ପଂକ୍ତିରେ ସାମାନ୍ୟ ଉନ୍ନତ ସ୍ଥାନମାନ ଅଛି । ଏହି ସ୍ଥାନର ଦୁଇ ପାଖରେ ଦୁଇଟି ଅଣ୍ଡାଭଙ୍ଗା ଖମ୍ବ ତଳ ପାଦ ଦେହରୁ ଉଠିଅଛି । ଦ୍ୱାରବନ୍ଧର ପ୍ରତ୍ୟେକ ପଂକ୍ତିର କାମ ଏହି ଦୁଇ ଖମ୍ବ ପାଖରେ ଶେଷ ହୋଇଅଛି । ପ୍ରଥମ ପଂକ୍ତିର ମଧ୍ୟସ୍ଥଳରେ ଗୋଟିଏ ଲକ୍ଷ୍ମୀ ମୂର୍ତ୍ତି ପଦ୍ମାସନରେ ବସିଅଛନ୍ତି ଏବଂ ତାହାଙ୍କର ଦୁଇ

* ଏହାର ପାରିଭାଷିକ ନାମ 'ଗେଲବାଇ' ବା 'ମନୁଷ୍ୟ କୌତୁକୀ' ।

** ଏହାକୁ ବରଝାଙ୍ଗି କହନ୍ତି । ବରଝାଙ୍ଗି ପାଣି ପାଖରେ ଜନ୍ମେ । ତାହାର ଫୁଲ ଅତ୍ୟନ୍ତ ମନୋହର ।

ହାତରେ ଦୁଇଟି ଫୁଟିଲା ପଦ୍ମ ଧରାଅଛି । ଦୁଇ ପାଖରେ ଫୁଟିଲା ପଦ୍ମ ସହ ଦୁଇଟି ପଦ୍ମ-ନାଳ ଅଛି । ଏହି ପଦ୍ମ ଦୁଇଟି ଉପରେ ଦୁଇଟି ହାତୀ ଲକ୍ଷ୍ମୀଙ୍କ ମସ୍ତକ ଉପରେ ପାଣି କଳସ ଧରି ଠିଆ ହୋଇଛନ୍ତି । ହାତରେ ଚାମର ଧରି ଦୁଇ ପାଖରେ ଦୁଇ ସେବକ ବା ଭକ୍ତ ଠିଆ ରହିଛନ୍ତି । ଏହାକୁ 'ଗଜଲକ୍ଷ୍ମୀ ମୂର୍ତ୍ତି' * କହନ୍ତି । ଦ୍ୱିତୀୟ ପଂକ୍ତିରେ ପଦ୍ମ ଚକାରେ ରାଜା ବସିଅଛନ୍ତି ଏବଂ ବୋଧହୁଏ ମନ୍ତ୍ରୀକୁ କିଛି କହୁଅଛନ୍ତି । ଦକ୍ଷିଣ ପାଖରେ ମନ୍ତ୍ରୀ କର ଯୋଡ଼ି ଏବଂ ବାମ ପାଖରେ ଜଣେ ପରିଚାରକ ଚାମର ଧରି ଠିଆ ରହିଅଛନ୍ତି । ତୃତୀୟ, ଚତୁର୍ଥ, ପଞ୍ଚମ ଓ ଷଷ୍ଠ ପଂକ୍ତିମାନଙ୍କରେ ଏହି ଦୃଶ୍ୟ ଅଛି । କେବଳ ଗୋଟିକ ପରେ ଗୋଟିଏ ପଂକ୍ତିରେ ମନ୍ତ୍ରୀ ଓ ପରିଚାରକ ଦ୍ୱୟଙ୍କର ପାର୍ଶ୍ୱ ପରିବର୍ତ୍ତନ ହୋଇଅଛି ମାତ୍ର । ସପ୍ତମ ପଂକ୍ତିରେ ଗୋଟିଏ ତ୍ରିଭଙ୍ଗ ତୋରଣ ମଧ୍ୟରେ ରାଜା ବସିଅଛନ୍ତି ଏବଂ ତୋରଣର ଦକ୍ଷିଣ ଓ ଉତ୍ତର ପାର୍ଶ୍ୱରେ ଦୁଇଟି ମଗର ମୁଖ (ରାଜେନ୍ଦ୍ର ଲାଲ ଭ୍ରମରେ 'ହାତୀମୁଖ' କହିଅଛନ୍ତି) ଯଥାକ୍ରମେ ଦକ୍ଷିଣ ଓ ଉତ୍ତରକୁ ମୁହଁ କରି ରହିଅଛି । ମଗରମୁଖ ଉପରେ ତୋରଣ ବାହାରେ ଦୁଇଟି ପଦ୍ମ ଫୁଲ ଅଛି ।

ଏହି ଦ୍ୱାରବନ୍ଧର ପ୍ରତ୍ୟେକ ପାଖର ଓସାର ୪ ଫୁଟ ୬ ଇଞ୍ଚ ଏବଂ ଦ୍ୱାରର ଓସାର ୬ ଫୁଟ ୧୦ ଇଞ୍ଚ । ସୁତରାଂ ଦ୍ୱାରବନ୍ଧ ସହିତ ଦ୍ୱାରର ଓସାର ୧୫ ଫୁଟ ୧୦ ଇଞ୍ଚ । ମୁଖଶାଳାର ପ୍ରତ୍ୟେକ ଦ୍ୱାରର ମାପ ଓ କାମ ସମାନ । ଗେଜେଟିଅର ଲେଖକଙ୍କ ଅନୁମାନରେ ଦ୍ୱାରବନ୍ଧର ସମସ୍ତ ପଂକ୍ତିର କାମ ଏକତ୍ର ଲମ୍ବାଇ ଦେଲେ ପ୍ରାୟ ୪୦୦ ଫୁଟ ଲମ୍ବ ହେବ **। ଦ୍ୱାର ଓ ଦ୍ୱାରବନ୍ଧର ଦୁଇ ପାଖରେ ପୂର୍ବେ ଦୁଇଟି ବହୁଭୁଜ ଖମ୍ବ ଥିଲା । ୧୮୩୮ ଖ୍ରୀଷ୍ଟାବ୍ଦରେ ଫର୍‌ଗୁସନ୍ ଏହା ଦେଖିଥିଲେ ଏବଂ ଏହାର ଛାପା ମଧ୍ୟ ନେଇଥିଲେ ***। କିନ୍ତୁ ରାଜେନ୍ଦ୍ର ଲାଲଙ୍କ ସମୟକୁ ଏହା ଭାଙ୍ଗି ଯାଇଥିଲା; କେବଳ ପୂର୍ବ ଦ୍ୱାରରେ ଏହାର ଭଗ୍ନାବଶେଷ ମାତ୍ର ସେ ଦେଖିଥିଲେ । ବର୍ତ୍ତମାନ ତାହା ସ୍ଥାନରେ ନୂତନ

---

* ଦୁଇ ହାତରେ ପଦ୍ମଫୁଲ ଦେଖି ରାଜେନ୍ଦ୍ର ଲାଲ ମିତ୍ର ଏହାକୁ ସୂର୍ଯ୍ୟ ମୂର୍ତ୍ତି ବୋଲି ଭ୍ରମ କରନ୍ତି । ସୂର୍ଯ୍ୟ ମୂର୍ତ୍ତି କୌଣସିଠାରେ ଏପରି ଭାବରେ ଦ୍ୱାର ଉପରେ ନ ଥାଡି । ପରନ୍ତୁ ଏହିପରି ଗଜଲକ୍ଷ୍ମୀ ମୂର୍ତ୍ତି ପ୍ରାୟ ସର୍ବତ୍ର ଦ୍ୱାର ଉପରେ ଦେଖାଯାଏ । ଶ୍ରୀ ବିଷନ୍ ସ୍ୱରୂପ ମଧ୍ୟ ଭ୍ରମରେ ପଡ଼ି ଏହାକୁ 'ମହାଲକ୍ଷ୍ମୀ' କହିଅଛନ୍ତି । ମହାଲକ୍ଷ୍ମୀ ମୂର୍ତ୍ତି ପାଖରେ ଏପରି ହାତୀ ନ ଥାଏ । ଏହି ମହାଲକ୍ଷ୍ମୀ ମୂର୍ତ୍ତି ମଧ୍ୟ ଦ୍ୱାର ଉପରେ ବଡ଼ କ୍ୱଚିତ୍ ଦେଖାଯାଏ । କେବଳ ଭୁବନେଶ୍ୱରରେ ମୁକ୍ତେଶ୍ୱରଙ୍କ ଦେଉଳର ସମ୍ମୁଖ ଦ୍ୱାର ବ୍ୟତୀତ ଅନ୍ୟତ୍ର ଏହି ମହାଲକ୍ଷ୍ମୀ ମୂର୍ତ୍ତି ବୋଧହୁଏ ନାହିଁ । ଦୁଇ ପାଖରେ ହାତୀ ଥିବାରୁ କୋଣାର୍କର ଏହି ମୂର୍ତ୍ତିକୁ 'ଗଜଲକ୍ଷ୍ମୀ' ମୂର୍ତ୍ତି କୁହାଯାଏ ।

** Gazetteer Puri. P. 274.

*** Picturesque Illustrations of Ancient Architecture in Hindustana. P. 281.

ପଥର ଗଢ଼ାହୋଇ ଉପର ପୀଢ଼କୁ ଆଶ୍ରୟ ଦେଉଅଛି । ମୁଖଶାଳା କାନ୍ଥରେ ଯେପରି ଜଙ୍ଘା, ବରାଣ୍ଡି ପ୍ରଭୃତି ବିଭାଗମାନ ଅଛି, ଖମ୍ବରେ ମଧ ସେହିପରି ଥିଲା ଏବଂ ସେହିପରି ଶାର୍ଦ୍ଦୂଳ ମୂର୍ତ୍ତି ମଧ ଥିଲା । ରାଜେନ୍ଦ୍ର ଲାଲ ବାମ ଖମ୍ବର ମୂର୍ତ୍ତିଦ୍ୱୟ ଦେଖିଥିଲେ । ଦ୍ୱାର ଓ ଖମ୍ବ ପ୍ରଭୃତି ମୁଖଶାଳା କାନ୍ଥଠାରୁ ୧୬ ଫୁଟ ବାହାରକୁ ବାହାରିଥିଲା । ଏହି ଖମ୍ବ ଦୁଇଟି ଉପରେ ୨୧ ଫୁଟ ଲମ୍ବ, ୧ ଫୁଟ ଉଚ୍ଚ ଏବଂ ୮ ଇଞ୍ଚ ଓସାରରେ ଗୋଟିଏ ଲୁହା କଡ଼ି ଥିଲା । ଏହି ଲୁହା କଡ଼ି ଉପରେ ପ୍ରସିଦ୍ଧ ନବଗ୍ରହ ପାଟ ସ୍ଥାପିତ ହୋଇଥିଲା । ପୂର୍ବେ ନବଗ୍ରହ ପାଟର ଆୟତନ ୧୯ ଫୁଟ ୧୦ ଇଞ୍ଚ ଲମ୍ବା, ୩ ଫୁଟ ୯ ଇଞ୍ଚ ଉଚ୍ଚ ଏବଂ ୪ ଫୁଟ ୯ ଇଞ୍ଚ ମୋଟା, ଅର୍ଥାତ୍ ୩୫୩ ଘନଫୁଟ ଏବଂ ୨୬.୦୫ ଟନ ବା ୭୪୨ ମହଣ ଓଜନ ଥିଲା । ଏହି ନବଗ୍ରହ ପାଟ ଏବଂ ମୁଖଶାଳାର ପ୍ରଥମ ପୀଢ଼ ମଧରେ ଆହୁରି କାମ ଥିଲା । ମୁଖଶାଳର ଉପର ଜଙ୍ଘର କାମ ସଙ୍ଗେ ଏହାର ସାମ୍ୟ ଥିଲା । ଫର୍‌ଗୁସନ୍ ଏହାର ଫଟୋ ନେଇଥିଲେ * । ରାଜେନ୍ଦ୍ର ଲାଲଙ୍କ ସମୟକୁ ଏ ସମସ୍ତ ଭାଙ୍ଗି ଯାଇଥିଲା ଏବଂ ନବଗ୍ରହ ପାଟ ମଧ ଖସି ପଡ଼ିଥିଲା ।

**ନବଗ୍ରହ ପାଟ** – ନବଗ୍ରହ ପାଟ କେତେ କାଳ ସେହି ମୁଖଶାଳା ଦ୍ୱାର ମୁହଁରେ ପଡ଼ି ରହିଲା; ପରେ କଲିକତା ଯାଦୁଘରକୁ ନେଇଯିବା ନିମନ୍ତେ ବଙ୍ଗୀୟ ଆସିଆଟିକ ସୋସାଇଟି ଗଭର୍ଣ୍ଣମେଣ୍ଟଙ୍କୁ ଆବେଦନ କଲେ । ବଙ୍ଗ ଗଭର୍ଣ୍ଣମେଣ୍ଟ ଖର୍ଚ୍ଚସ୍ୱରୂପ ତିନି ହଜାର ଟଙ୍କା ମଞ୍ଜୁର କଲେ । ବାରିକ ମିସ୍ତ୍ରୀ ବିଭାଗ ପାଟଟି ବୋହି ନେବା ପାଇଁ ସମୁଦ୍ର ପର୍ଯ୍ୟନ୍ତ ଗୋଟିଏ ଟ୍ରାମ ରାସ୍ତା ଖୋଲି ପାଟକୁ ପ୍ରାୟ ୨୦୦ ହାତ ବୋହି ନେଉ ନେଉ ଟଙ୍କାତକ ସରିଗଲା । ସୁତରାଂ ନବଗ୍ରହ ପାଟ କଲିକତାକୁ ନେଇଯିବା ଅଗତ୍ୟା ବନ୍ଦ ରହିଲା ଏବଂ ପାଟ ଦେଉଳର ଦକ୍ଷିଣ ପୂର୍ବ କୋଣରେ ଗୋଟିଏ ବରଗଛ ମୂଳେ ପଡ଼ି ରହିଲା । ରାଜେନ୍ଦ୍ର ଲାଲ ମଧ ଏହିଠାରେ ପାଟ ଦେଖିଥିଲେ । କେତେ କାଳ ଗଲା ପରେ ପାଟକୁ ବୋହି ନେବା ପାଇଁ ପୁଣି ଇଚ୍ଛା ବଳିଲା । ସମସ୍ତ ପାଟଟି ବୋହିନେବା ଅସମ୍ଭବ ଦେଖି ଏହି ଥର ତାହାର ତୃତୀୟାଂଶ (ଅର୍ଥାତ୍ ୪ ଫୁଟ ୯ ଇଞ୍ଚରୁ କେବଳ ୧ ଫୁଟ ୬ ଇଞ୍ଚ ମୋଟା ରଖି) କାଟି ପକାଇଲେ । ୧୮୯୩ ଖ୍ରୀଷ୍ଟାବ୍ଦରେ ପାଟ କଟାହେଲା । ବଡ଼ ଖଣ୍ଡି ସେହିଠାରେ ବର୍ତ୍ତମାନ ମଧ ପଡ଼ି ରହିଅଛି । ସାନ ଖଣ୍ଡକରେ ନବଗ୍ରହ ମୂର୍ତ୍ତି ଥିଲା । ଏହି ସାନଖଣ୍ଡି ଜାହାଜକୁ ନେବା ପାଇଁ କେତେ ବିଜ୍ଞାନ-କୌଶଳ ଲଗାଇ ପ୍ରାୟ ଦୁଇ ଫର୍ଲଙ୍ଗ ନେଇଗଲେ । ଶେଷରେ ବିଜ୍ଞାନର ସମସ୍ତ ସାଧନା ନିରସ୍ତ ହେଲା । ଦୁର୍ଦ୍ଧାନ୍ତ ଶିଳାଖଣ୍ଡ ଆଉ ଚଳିଲା ନାହିଁ; ଏଣେ ମଞ୍ଜୁର ଟଙ୍କାତକ ମଧ ପୁଣି ଶେଷ ପାଇଲା । ବିଜ୍ଞାନ ରାଜ୍ୟରେ ଅନ୍ୟ କୌଣସି ଉନ୍ନତତର ଭାବୀ ଆବିଷ୍କ୍ରିୟାର ଅପେକ୍ଷା କରି ଆକାଶର ନବଗ୍ରହ ସମସ୍ତ ଖରା ବର୍ଷା ମଧରେ ଆକାଶ ଆଡ଼କୁ ଚାହିଁ ରହିଲେ । ପରେ ପଣ୍ଡାମାନେ ଏହା ଉପରେ ଗୋଟିଏ କୁଡ଼ିଆ ତିଆର କରି ଗ୍ରହଗଣଙ୍କର ପୂଜା ଆରମ୍ଭ କଲେ । ବର୍ତ୍ତମାନ କୋଣାର୍କ ବେଢ଼ା ମଧରେ ଗୋଟିଏ

* Ibd. Plate II.

ପକ୍କାଘର ହୋଇଛି ଏବଂ ପାଟଟି ସେହିଠାରେ ଅଛି । ପ୍ରତ୍ୟେକ ଶନିବାର, ସଂକ୍ରାନ୍ତି ଓ ରାସପୂର୍ଣ୍ଣିମାରେ ନବଗ୍ରହ ଉଦ୍ଦେଶ୍ୟରେ କୋଣାର୍କର ମେଳା ହୁଏ । ନବଗ୍ରହ କୋଣାର୍କର ବର୍ତ୍ତମାନ କେବଳ ଉପାସ୍ୟ ଦେବତା । ନବଗ୍ରହ ପାଟ କୋଣାର୍କ କାରୁକାର୍ଯ୍ୟର ଅନ୍ୟତମ ନିଦର୍ଶନ । କୋଣାର୍କ ଦର୍ଶକଗଣ ଏହା ପ୍ରତି ବିଶିଷ୍ଟ ରୂପେ ଆକୃଷ୍ଟ ହେବାର ଦେଖାଯାନ୍ତି । ରାଜେନ୍ଦ୍ର ଲାଲଙ୍କ ବର୍ଣ୍ଣନା * ଅବଲମ୍ବନରେ ନିମ୍ନରେ ଏହାର ବର୍ଣ୍ଣନା କରାଗଲା :—

ପାଟର ସମ୍ମୁଖ ଭାଗ ନଅଟି ଖୋପରେ ବିଭକ୍ତ । ପ୍ରତ୍ୟେକରେ ନାନା ପ୍ରକାର ସୁନ୍ଦର ଅଳଙ୍କାରଭୂଷିତ ମନୁଷ୍ୟାକାରରେ ଗୋଟିଏ ଗୋଟିଏ ଗ୍ରହ ଅଛନ୍ତି । ମସ୍ତକରେ ଅଳଙ୍କାର ଖଚିତ ମୁକୁଟ । ଗ୍ରହମାନେ ଜଙ୍ଘ ଉପରେ ପାଦ ରଖି ପଦ୍ମ ଉପରେ ବସିଅଛନ୍ତି । ଖୋପର ଦୁଇ ପାଖରେ ମୋଟା, ଛୋଟ ଓ ସୁନ୍ଦର ଖମ୍ବ ଏବଂ ଖମ୍ବ ଉପରେ ତ୍ରିଭଙ୍ଗ ତୋରଣ । ତୋରଣ ପ୍ରଭୃତିର କାରୁକାର୍ଯ୍ୟ ଅତ୍ୟନ୍ତ ମନୋହର । ବାମ ଦିଗରୁ ପ୍ରଥମ ମୂର୍ତ୍ତି ରବି ବା ସୂର୍ଯ୍ୟ ଗ୍ରହ । ବ୍ୟାସଦେବଙ୍କର 'ନବଗ୍ରହ ସ୍ତୋତ୍ର' ଅନୁସାରେ ରବିଙ୍କର ବର୍ଣ୍ଣ ଜବାକୁସୁମ ସଦୃଶ ଅତ୍ୟନ୍ତ ଉଜ୍ଜ୍ୱଳ (୧) । କିନ୍ତୁ ଏଠାରେ ସେ ଅତି କୋମଳ ମନୁଷ୍ୟ ଆକାରରେ ଦୁଇ ହାତ କାନ୍ଧ ପର୍ଯ୍ୟନ୍ତ ଟେକି ବସିଅଛନ୍ତି ଏବଂ ଦୁଇ ହାତରେ ଦୁଇଟି ପଦ୍ମ ଫୁଲ ଧରିଅଛନ୍ତି । ଦ୍ୱିତୀୟଟି ସୋମ ବା ଚନ୍ଦ୍ର ମୂର୍ତ୍ତି । ଆକାରରେ ଏହା ପ୍ରଥମ ମୂର୍ତ୍ତି ପରି; କେବଳ ଏହାଙ୍କ ହାତ ଉପରକୁ ଟେକା ନ ରହି ସମ୍ମୁଖକୁ ବିସ୍ତୃତ ଅଛି । ସେ ବାମ ହାତରେ ଗୋଟିଏ ପାଣିପାତ୍ର ଏବଂ ଦକ୍ଷିଣ ହାତରେ ଗୋଟିଏ ମାଳା ଧରି ଗଡ଼ାଉଅଛନ୍ତି । ଉକ୍ତ ସ୍ତୋତ୍ର ଅନୁସାରେ ଏହାଙ୍କର ବର୍ଣ୍ଣ ଶଙ୍ଖ ବା ତୁଷାର ସଦୃଶ ଗୌର ହେବାର କଥା (୨) । ତୃତୀୟ ମଙ୍ଗଳ ଏବଂ ଚତୁର୍ଥ ଚନ୍ଦ୍ରଙ୍କ ପୁତ୍ର ବୁଧ ମୂର୍ତ୍ତି । ପଞ୍ଚମ ବୃହସ୍ପତି, ଷଷ୍ଠ ଶୁକ୍ର ଏବଂ ସପ୍ତମ ମୂର୍ତ୍ତି ଶନି । ଆକାର, ଭଙ୍ଗି, ଅଳଙ୍କାର ଓ କାର୍ଯ୍ୟରେ ସମସ୍ତେ ସମାନ ଦେଖାଯାନ୍ତି । କେବଳ ବୃହସ୍ପତିଙ୍କର ଦାଢ଼ି ଅଛି । ସ୍ତୋତ୍ର ଅନୁସାରେ ତୃତୀୟ (ମଙ୍ଗଳ) ପୃଥିବୀର ପୁତ୍ର, ଲୋହିତ ବର୍ଣ୍ଣ, ବିଦ୍ୟୁତ୍ ପରି ଉଜ୍ଜ୍ୱଳ ଏବଂ ଶକ୍ତିହସ୍ତ (୩) । ଚତୁର୍ଥ ମୂର୍ତ୍ତି (ବୁଧ) ଚନ୍ଦ୍ରଙ୍କ ପୁତ୍ର, ପ୍ରିୟଙ୍ଗୁ କଢ଼ି ପରି ଶ୍ୟାମ ବର୍ଣ୍ଣ, ଅପ୍ରତିମ ରୂପ, ସୌମ୍ୟ ଏବଂ ସର୍ବଗୁଣଯୁକ୍ତ (୪) । ପଞ୍ଚମ (ବୃହସ୍ପତି) ସ୍ୱର୍ଣ୍ଣ ବର୍ଣ୍ଣ ଏବଂ ଦେବ ଓ ଋଷିମାନଙ୍କର ଗୁରୁ (୫) । ଷଷ୍ଠ (ଶୁକ୍ର) ଭୃଗୁଙ୍କ ପୁତ୍ର, ଅତ୍ୟନ୍ତ ପଣ୍ଡିତ, ଦୈତ୍ୟମାନଙ୍କର ପରମଗୁରୁ ଏବଂ ଶୀତ କାଳର କୁନ୍ଦ-ମୃଣାଳ ସଦୃଶ ତାହାଙ୍କର ବର୍ଣ୍ଣ (୬) । ସପ୍ତମ (ଶନି) ଛାୟା ଗର୍ଭରେ ରବିଙ୍କର ପୁତ୍ର ଏବଂ ବର୍ଣ୍ଣରେ ଗାଢ଼ ନୀଳ (୭) । ଅଷ୍ଟମ ସିଂହିକାର ପୁତ୍ର ରାହୁ । ଗୋଟିଏ ନରରୂପ ଦ୍ୱିଭାଗରେ ବିଭକ୍ତ ହୋଇ ଉପରିଭାଗରୁ ରାହୁ ଏବଂ ତଳ ଭାଗରୁ କେତୁ ଜନ୍ମ ହେଲେ । ରାହୁ ରୌଦ୍ର ମୂର୍ତ୍ତି ଏବଂ ଚନ୍ଦ୍ର

---

* 'Antiquities of Orissa'. Vol. II. P. 153.

(୧) ଜବା-କୁସୁମ-ସଙ୍କାଶଂ-କାଶ୍ୟପେୟଂ ମହାଦ୍ୟୁତିଂ ।
ଧ୍ୱାନ୍ତାରିଂ ସର୍ବପାପଘ୍ନଂ ପ୍ରଣତୋଽସ୍ମି ଦିବାକରଂ ।୧।

ସୂର୍ଯ୍ୟଙ୍କର ପୀଡ଼ାଦାୟକ (୮)। ପୁରାଣ ଅନୁସାରେ ରାହୁ ଚନ୍ଦ୍ର ସୂର୍ଯ୍ୟଙ୍କୁ ଗ୍ରାସ କରି 'ଗ୍ରହଣ' କରାଏ। ନବଗ୍ରହ ପାଟରେ ରାହୁ ରାକ୍ଷସ ପରି ବଡ଼ ଭୀଷଣ ଆକାର ଧରି ଦନ୍ତ କଡ଼ମଡ଼ କଲା ପରି ଦେଖାଯାଏ। ଗୋଟିଏ ଦୀର୍ଘ ବିଶିଦାନ୍ତ ଉପର ଦାନ୍ତ ପାଟି ମଧ୍ୟରୁ ବାହାରକୁ ବାହାରି ପଡ଼ିଛି। ଏହାଙ୍କ ମୁକୁଟ ଗୋଲାକାର ଏବଂ ମୁକୁଟ ଉପରେ ତିନି ଶୃଙ୍ଗ ଉପରକୁ ଉଠିଛି। ମସ୍ତକର ଚତୁର୍ଦ୍ଦିଗରେ କିରଣମାଳା ଆଳାକାରରେ ଏକକେନ୍ଦ୍ରିକ ବୃତ୍ତ ପରି ଘେରି ରହିଛି। ଏକ ହାତରେ (ବାମ) ଗୋଟିଏ ଗୋଲାକାର ବସ୍ତୁ ଧରା ହୋଇଅଛି। ଷ୍ଟର୍ଲିଙ୍ଗ ଏହାକୁ ଅସ୍ତ୍ର ବିଶେଷ ମନେ କରନ୍ତି; କିନ୍ତୁ ବୋଧହୁଏ ଏହା ସୂର୍ଯ୍ୟ। ଅପର ହାତରେ (ଦକ୍ଷିଣ) ବଙ୍କିମ ଚନ୍ଦ୍ର ଅଛି। ଶେଷରେ ରୁଦ୍ରଙ୍କ ପୁତ୍ର କେତୁ। ତାଙ୍କର ବର୍ଣ୍ଣ କୁହୁଳା କୁଟାରୁ ବାହାରୁଥିବା ଧୂଆଁ ପରି। ସେ ଘୋର ଭୟଙ୍କର, ଦୁଷ୍ଟ ଏବଂ ତାରା ଓ ଗ୍ରହଗଣଙ୍କର ପୀଡ଼କ (୯)। ପାଟରେ ଏହାଙ୍କ ଶରୀରର ଉପରାର୍ଦ୍ଧ ପ୍ରଥମ ଚାରି ମୂର୍ତ୍ତିଙ୍କ ପରି ସଂପୂର୍ଣ୍ଣ ସମାନ; କିନ୍ତୁ ତଳାର୍ଦ୍ଧ ଅଣ୍ଟାଠାରୁ ସର୍ପାକାର। ସର୍ପ ଏପରି ଗୁଡ଼ାଇ ହୋଇ ରହିଅଛି ଯେ, ଦେଖିଲାକ୍ଷଣି ପ୍ରଥମରେ ସପ୍ତଗ୍ରହଙ୍କ ତଳଭାଗ ପରି ଭ୍ରମ ହୁଏ। ସମସ୍ତ ଗ୍ରହମୂର୍ତ୍ତି ବିଶେଷ ଉନ୍ନତ ଏବଂ ଅଙ୍ଗ ପ୍ରତ୍ୟଙ୍ଗ ପୃଥୁଳ ହୋଇଥିବାରୁ ସେମାନେ ପ୍ରଥମେ ସ୍ତ୍ରୀ ମୂର୍ତ୍ତି ପରି ଦେଖାଯାନ୍ତି ଏବଂ ବାସ୍ତବରେ ଷ୍ଟର୍ଲିଙ୍ଗ ଷଷ୍ଠକୁ (ଶୁକ୍ର) ପୃଥୁଳା ଯୁବତୀ ସ୍ତ୍ରୀ ସ୍ୱରୂପ ବର୍ଣ୍ଣନା

---

(୨) ଦିବ୍ୟଶଙ୍ଖଂ ତୁଷାରାଭଂ କ୍ଷୀରୋଦାର୍ଣ୍ଣବ-ସମ୍ଭବଂ।
ନମାମି ଶଶିନଂ ଭକ୍ତ୍ୟା ଶମ୍ଭୋର୍ମୁକୁଟ-ଭୂଷଣଂ ।୨।

(୩) ଧରଣୀଗର୍ଭସମ୍ଭୂତଂ ବିଦ୍ୟୁତ୍‌ପୁଞ୍ଜ-ସମପ୍ରଭଂ।
କୁମାରଂ ଶକ୍ତିହସ୍ତଞ୍ଚ ଲୋହିତାଙ୍ଗ ନମାମ୍ୟହଂ ।୩।

(୪) ପ୍ରିୟଙ୍ଗୁ କଳିକାଶ୍ୟାମଂ ରୂପେଣାପ୍ରତିମଂ ବୁଧଂ।
ସୌମ୍ୟଂ ସର୍ବଗୁଣୋପେତଂ ନମାମି ଶଶିନଃ ସୁତଂ ।୪।

(୫) ଦେବତାନାମୃଷୀଣାଂ ଚ ଗୁରୁଂ କନକ-ସନ୍ନିଭଂ।
ବନ୍ଦ୍ୟ ଭୂତଂ ତ୍ରିଲୋକେଶଂ ପ୍ରଣମାମି ବୃହସ୍ପତିମ୍ ।୫।

(୬) ହିମ-କୁନ୍ଦ-ମୃଣାଳାଭଂ ଦୈତ୍ୟାନାଂ ପରମଂ ଗୁରୁଂ।
ସର୍ବ-ଶାସ୍ତ୍ର-ପ୍ରବକ୍ତାରଂ ଭାର୍ଗବଂ ପ୍ରଣମାମ୍ୟହଂ ।୬।

(୭) ନୀଳାଞ୍ଜନଚୟ-ପ୍ରେକ୍ଷଂ ରବି-ସୂନୁଂ ମହାଗ୍ରହଂ।
ଛାୟାୟାଗର୍ଭସମ୍ଭୂତଂ ବନ୍ଦେ ଭକ୍ତ୍ୟା ଶନୈଶ୍ଚରଂ ।୭।

(୮) ଅର୍ଦ୍ଧକାୟଂ ମହାଘୋରଂ ଚନ୍ଦ୍ରାଦିତ୍ୟବିମର୍ଦ୍ଦକଂ।
ସିଂହିକାୟାଃ ସୁତଂ ରୌଦ୍ରଂ ତଂ ରାହୁଂ ପ୍ରଣମାମ୍ୟହଂ ।୮।

(୯) ପଳାଳଧୂମସଂକାଶଂ ତାରାଗ୍ରହବିମର୍ଦ୍ଦକଂ।
ରୌଦ୍ରଂ ରୁଦ୍ରାତ୍ମଜଂ କ୍ରୁରଂ ତଂ କେତୁଂ ପ୍ରଣମାମ୍ୟହଂ ।୯।

କରିଅଛନ୍ତି । ଇଉରୋପରେ ଚନ୍ଦ୍ର (Moon) ଓ ଶୁକ୍ର (Venus) ଙ୍କୁ ସ୍ତ୍ରୀ ଆକାରରେ କଳ୍ପନା କରନ୍ତି । ସେହି ହେତୁ ଷ୍ଟର୍ଲିଙ୍ଗ ଶୁକ୍ରଙ୍କୁ ସ୍ତ୍ରୀ ବୋଲି ଭ୍ରମ କଲେ । ଭାରତରେ ଚନ୍ଦ୍ର ଓ ଶୁକ୍ର କୌଣସି ଯୁଗରେ ସ୍ତ୍ରୀ ସ୍ୱରୂପ କଳ୍ପିତ ହୋଇ ନାହାନ୍ତି । ପାଟରେ ମଧ୍ୟ ଶୁକ୍ର ଅନ୍ୟାନ୍ୟ ଗ୍ରହମାନଙ୍କଠାରୁ ଭିନ୍ନ ଆକୃତିରେ ଖୋଦିତ ହୋଇ ନାହାନ୍ତି । ଏହିପରି ନବଗ୍ରହ ମୂର୍ତ୍ତି ଓଡ଼ିଶାର ସମସ୍ତ ପ୍ରଧାନ ପ୍ରଧାନ ମନ୍ଦିରର ଦ୍ୱାରଦେଶରେ ଥାଆନ୍ତି । କିନ୍ତୁ କୌଣସି ସ୍ଥାନରେ ଦୈତ୍ୟଙ୍କର ପ୍ରଧାନ ଗୁରୁ ଶୁକ୍ରାଚାର୍ଯ୍ୟଙ୍କ ସ୍ଥାନରେ ସ୍ତ୍ରୀ ମୂର୍ତ୍ତି ଦେଖାଯାଏ ନାହିଁ । ପୁରାଣ ବଚନ ଅନୁସାରେ ଶୁକ୍ରଙ୍କର ଗୋଟିଏ ଚକ୍ଷୁ ନାହିଁ; କିନ୍ତୁ ପାଟରେ ତାହାଙ୍କର ଦୁଇ ଚକ୍ଷୁ ସୁନ୍ଦର ଅଛି । ନବଗ୍ରହଙ୍କୁ ଦ୍ୱାର ଉପରେ ରଖିବାର ଉଦ୍ଦେଶ୍ୟ ଏହି ଯେ, ଏହି ଐହିକ ଭାଗ୍ୟବିଧାତାମାନଙ୍କ ଦ୍ୱାରା ମନ୍ଦିରର ମଙ୍ଗଳ ସୁସାଧିତ ହେବ ।

ନବଗ୍ରହ ପାଟର ପ୍ରତ୍ୟେକ ଦୁଇ ତୋରଣ ମଧ୍ୟରେ ପରୀ ଉଡୁଅଛନ୍ତି ଏବଂ ତୋରଣ ମସ୍ତକ ଉପରେ ସାଞ୍ଚୁ ଚିହ୍ନ ପରି ଚିତ୍ର ଅଛି; କିନ୍ତୁ ସପ୍ତମ ତୋରଣ ଉପରୁ ଏହା ଭାଙ୍ଗି ଯାଇଛି । ଯେଉଁ ଦଉଡ଼ିଦ୍ୱାରା ପାଟ ବୁହା ହେଉଥିଲା, ତାହା ରାଜେନ୍ଦ୍ର ଲାଲଙ୍କ ଗ୍ରନ୍ଥ ଶେଷ ଛବିରେ ମଧ୍ୟ ଦେଖାଯାଏ ।

**ଭିତର ଅଂଶ** – ମୁଖଶାଳାର ଭିତର ଅଂଶରେ ବାଲି ପୂର୍ଣ୍ଣ ହୋଇ ବର୍ତ୍ତମାନ ବନ୍ଦ ଅଛି । ସୁତରାଂ ଏହାର ବର୍ଣ୍ଣନା ବର୍ତ୍ତମାନ ଅସମ୍ଭବ । ରାଜେନ୍ଦ୍ର ଲାଲ ପ୍ରଭୃତିଙ୍କ ବର୍ଣ୍ଣନାରୁ ନିମ୍ନଲିଖିତ ତଥ୍ୟ ମିଳେ :–

ମୁଖଶାଳାର ଭିତର ପାଖରେ କୌଣସି କାମ ନ ଥିଲା । କେବଳ ବଡ଼ ଦେଉଳ ଭିତର ପରି ଗୋଟିଏ ବନ୍ଧନା ତଳୁ ପାଞ୍ଚ ଫୁଟ ଉଚ୍ଚରେ ଚାରି ଦିଗରେ ବୁଲିଥିଲା । ତିନି ଦ୍ୱାର ଉପରେ ତିନୋଟି ଗହ୍ୱର ଥିଲା । ପଶ୍ଚିମ ଦ୍ୱାର ବାଟେ ବଡ଼ ଦେଉଳ ଭିତରକୁ ଯିବାକୁ ହେଉଥିଲା । ଏହି ଦ୍ୱାରରେ ଅନ୍ୟାନ୍ୟ ଦ୍ୱାର ପରି କାରୁଖଚିତ ମୁଗୁନି ଦ୍ୱାରବନ୍ଧ ଏବଂ ଦ୍ୱାର ଉପରେ ନବଗ୍ରହ ପାଟ ଥିଲା ।

ମୁଖଶାଳାର ଭିତର ଚଟାଣ ବର୍ଗକ୍ଷେତ୍ରାକାର; ଲମ୍ବ ଓ ଓସାର ପ୍ରତ୍ୟେକେ ୬୦ ଫୁଟ । ମାଦଳା ପାଞ୍ଜିର ମାପରୁ ଜଣାଯାଏ ଯେ, ମୁଖଶାଳାର ପ୍ରତି କାନ୍ଥର ବେଧ ୮ କାଠି ବା ୧୪ ଫୁଟ ଏବଂ ଦୁଇ କାନ୍ଥ ୧୬ କାଠି ବା ୨୮ ଫୁଟ । ଭିତର ଚଟାଣର ବେଧ ୨୯-୫/୮ କାଠି ବା ପ୍ରାୟ ୫୨ ଫୁଟ । ମୋଟରେ କାନ୍ଥ ସହିତ ଚଟାଣର ଲମ୍ବା ଅର୍ଥାତ୍ ବାହାର ପାଖରେ ମୁଖଶାଳା ବାଡ଼ର ଲମ୍ବା ୮୦ ଫୁଟ ।

ମୁଖଶାଳା ଭିତରେ ଚାରି ଖମ୍ବ ଥିଲା । ଖମ୍ବ ଉପରେ ଲୁହା କଡ଼ି ପଡ଼ି ଉପର ଛାତର ଆଶ୍ରୟ ହୋଇଥିଲା । ୧୮୪୮ ଖ୍ରୀଷ୍ଟାବ୍ଦରେ ଖମ୍ବ ଓ କଡ଼ି ଭାଙ୍ଗି ଯାଇଥିଲା । ରାଜେନ୍ଦ୍ର ଲାଲ କହନ୍ତି, ମୁଖଶାଳା ପୀଢ଼ର ଚାଳ ତଳେ ଆଉ ଗୋଟିଏ ଛାତ ଥିଲା ଏବଂ ଦୁଇ ଛାତ ମଧ୍ୟରେ

ବିଶେଷ ବ୍ୟବଧାନ ଥିଲା । ସୁତରାଂ ଏହାର ପତନଦ୍ୱାରା ଉପର ପୀଢ଼ ଛାତର କୌଣସି ବିଶେଷ କ୍ଷତି ହୋଇ ନ ଥିଲା । ଖମ୍ବ ଓ ଲୁହା କଡ଼ି ଉପରେ ସେହି ନିମ୍ନ ଛାତ ରଖା ହୋଇଥିଲା । ରାଜେନ୍ଦ୍ର ଲାଲ ଖମ୍ବର ଅବଶେଷ ଦେଖିଥିଲେ ଏବଂ ଉକ୍ତ ଛାତ ଭାଙ୍ଗି ପଡ଼ିଥିବାରୁ ମୁଖଶାଳାର ଭିତର ପଥରରେ ପୂର୍ଣ୍ଣ ହୋଇଥିଲା । ଲୁହା କଡ଼ି ଯଥେଷ୍ଟ ମୋଟା ଏବଂ ୧୨ ଫୁଟରୁ ୨୦ ଫୁଟ ପର୍ଯ୍ୟନ୍ତ ଲମ୍ବ ଥିଲା ।

ରାଜେନ୍ଦ୍ର ଲାଲ ଦେଖିବାବେଳେ କେତେକ କଡ଼ି ଏକ ପ୍ରାନ୍ତ କାନ୍ଥ ଦେହରେ ରହି ଅପର ପ୍ରାନ୍ତ ଝୁଲୁଥିଲା । ଏହି ଭିତର ଛାତ ନାନା ଚିତ୍ର ବିଚିତ୍ର ହୋଇଥିବାର ଆବୁଲଫଜଲ ଲେଖିଥିଲେ; କିନ୍ତୁ ରାଜେନ୍ଦ୍ର ଲାଲ ତାହାର ଚିହ୍ନ ପାଇ ନ ଥିଲେ । ଦେଉଳର ଭିତର କାନ୍ଥ ପରି ମୁଖଶାଳା ଭିତରେ ମଧ୍ୟ ପଲସ୍ତରା ହୋଇଥିଲା ।

ପାହାଚ – ମୁଖଶାଳାର ପୂର୍ବ, ଦକ୍ଷିଣ ଓ ଉତ୍ତର ଦ୍ୱାର ସମ୍ମୁଖରେ ତିନୋଟି ପାହାଚ ଶ୍ରେଣୀ ଥିଲା; ବର୍ତ୍ତମାନ ପ୍ରାୟ ଭାଙ୍ଗିଗଲାଣି । କେବଳ ପତନ ମାତ୍ର ଅଛି । ଏହି ପାହାଚ ଶ୍ରେଣୀଦ୍ୱାରା ପୀଠ ଉପରକୁ ଯିବାକୁ ହେଉଥିଲା । ପ୍ରତ୍ୟେକରେ କେତୋଟି ଲେଖାଏଁ ପାହାଚ ଥିଲା ବର୍ତ୍ତମାନ ଜଣାଯାଏ ନାହିଁ । ମାଦଳାପାଞ୍ଜିରୁ ଜଣାଯାଏ ଯେ; ପ୍ରତ୍ୟେକରେ ୧୭ ଗୋଟି ପାହାଚ ଥିଲା । ପୀଠ ପାଖରେ ପ୍ରତ୍ୟେକ ଉପର ପାହାଚର ଲମ୍ବ ୪୨ ଫୁଟ ୬ ଇଞ୍ଚ ଏବଂ ଓସାର ୩ ଫୁଟ ୬ ଇଞ୍ଚ । ଶ୍ରୀ ବିଷ୍ଣୁ ସ୍ୱରୂପ ଅନୁମାନ କରନ୍ତି ଯେ, ପାହାଚର ଦୁଇ ପାଖରେ ଦୁଇଟି କାନ୍ଥ ଥିଲା । ଆବୁଲଫଜଲ ଲେଖିଅଛନ୍ତି ଯେ, ପୂର୍ବ ଦ୍ୱାର ସମ୍ମୁଖରେ ଗୋଟିଏ ତୋରଣ ଥିଲା ଏବଂ ଏହି ତୋରଣ ଉପରେ ଗ୍ରହ ଓ ତାରାଗଣ ଖୋଦିତ ଥିଲେ । ମାଦଳାପାଞ୍ଜିର ମାପ ଅନୁସାରେ ତୋରଣ ଖମ୍ବର ଓସାର ୪ କାଠି ଅର୍ଥାତ୍ ୭ ଫୁଟ ଥିଲା । ରାଜା ନରସିଂହ ଦେବଙ୍କ ମାପ ସମୟକୁ (୧୬୨୭୨୮ ଖ୍ରୀଷ୍ଟାବ୍ଦ) ତୋରଣ ମଧ୍ୟ ଭଗ୍ନ ପ୍ରାୟ ହୋଇଥିଲା । ଅନୁମାନ କରାଯାଏ, ଏହା ଏତେ ଉଚ୍ଚ ଥିଲା ଯେ, ଏହାର ମଧ୍ୟ ଦେଇ ଦ୍ୱାରବନ୍ଧର ସମସ୍ତ କାର୍ଯ୍ୟ ବାହାରକୁ ପରିଷ୍କାର ଦେଖା ଯାଉଥିଲା ।

ପୂର୍ବ ପାହାଚରେ ସାତୋଟି ଅତି ସୁନ୍ଦର ସୁସଜ୍ଜିତ ଘୋଡ଼ା ଥିଲା । କେତେକ ଘୋଡ଼ାର ଅବଶେଷ ବର୍ତ୍ତମାନ ଦେଖାଯାଏ । ପାହାଚର ଦକ୍ଷିଣ ପାଖରେ ଚାରୋଟି ଏବଂ ଉପର ପାଖରେ ତିନୋଟି ଘୋଡ଼ା ଥିଲା । ଏହି ସପ୍ତାଶ୍ୱ ସୂର୍ଯ୍ୟଙ୍କର କୋଣାର୍କ ରଥ ଟାଣୁଥିଲେ । ପୂର୍ବ ପାହାଚ ଶେଷର ଦୁଇ ପାଖରେ ଦୁଇଟି ବିରାଟ ସିଂହ ଥିଲା; ବର୍ତ୍ତମାନ ସେ ଦୁଇଟି ନାଟମନ୍ଦିର ସମ୍ମୁଖରେ ସ୍ଥାପିତ ହୋଇଅଛି । ଦକ୍ଷିଣ ପାହାଚର ଶେଷରେ ସେହିପରି ଦୁଇଟି ଘୋଡ଼ା ଏବଂ ଉତ୍ତର ପାହାଚ ଶେଷରେ ଦୁଇଟି ହାତୀ ଥିଲେ । ବର୍ତ୍ତମାନ ହାତୀ ଓ ଘୋଡ଼ା ମୁଖଶାଳାର ସାମାନ୍ୟ ଦୂରରେ ସ୍ଥାପିତ ହୋଇଅଛି । ପରେ ଏହି ଦ୍ୱାରପାଳମାନଙ୍କର ବର୍ଣ୍ଣନା ହେବ (ଅଷ୍ଟମ ଅଧ୍ୟାୟ) ।

*******

# ସପ୍ତମ ଅଧ୍ୟାୟ

# ମନ୍ଦିର-ବର୍ଣ୍ଣନା

## ନାଟମନ୍ଦିର

ମୁଖଶାଳାର ସମ୍ମୁଖରେ ଅନ୍ୟ ଗୋଟିଏ ସ୍ୱତନ୍ତ୍ର ପୀଠ ଉପରେ ନାଟମନ୍ଦିର ନିର୍ମିତ ହୋଇଥିଲା । ଡାକ୍ତର ରାଜେନ୍ଦ୍ର ଲାଲ ଓ ଶ୍ରୀ ମନମୋହନ ଗାଙ୍ଗୁଲୀ ପ୍ରଭୃତି ଏହାକୁ ନାଟମନ୍ଦିର କହିବାକୁ ଅସ୍ୱୀକୃତ । ସେମାନଙ୍କ ମତରେ ଏହାର ନାମ ଭୋଗମଣ୍ଡପ ଥିଲା ଏବଂ ମୁଖଶାଳା ଓ ଏହି ମନ୍ଦିର ମଧ୍ୟରେ ଯେଉଁ ବ୍ୟବଧାନ ଅଛି, ତହିଁରେ ନାଟମନ୍ଦିର ନିର୍ମିତ ହେବାର ଥିଲା; କିନ୍ତୁ ହୋଇ ପାରି ନ ଥିଲା । ସମାନ୍ୟ ବିଚାର କରି ଦେଖିଲେ, ଉପରୋକ୍ତ ଅନୁମାନ ନିତାନ୍ତ ଅମୂଳକ ବୋଧହୁଏ । ପୂର୍ବବର୍ତ୍ତୀ ଅଧ୍ୟାୟ ଶେଷରେ କୁହାଯାଇଅଛି ଯେ, ମୁଖଶାଳା ସମ୍ମୁଖରେ ଗୋଟିଏ ବୃହଦ୍ ପାହାଚ ଥିଲା ଏବଂ ସେହି ପାହାଚରେ ଚାରି ଚକ ଓ ସପ୍ତାଶ୍ୱର କାମ ଥିଲା । ଏହା ବ୍ୟତୀତ ପାହାଚ ଶେଷରେ ଦୁଇ ପାଖରେ ଦୁଇଟି ପ୍ରକାଣ୍ଡ ଗଜସିଂହ ମୂର୍ତ୍ତି ଥିଲା । ଏହି ଅଧ୍ୟାୟରେ ମଧ୍ୟ ବର୍ଣ୍ଣନା କରାଯିବ ଯେ, ଏହି ନାଟମନ୍ଦିରର ପଶ୍ଚିମରେ ଗୋଟିଏ ଅତି ସୁନ୍ଦର ପାହାଚ ଅଛି । ଯଦି ଏହି ମନ୍ଦିର ଭୋଗମଣ୍ଡପ ହୋଇଥିଲା ଏବଂ ମୁଖଶାଳା ଓ ଏହି ମନ୍ଦିର ବ୍ୟବଧାନ ସ୍ଥଳରେ ନାଟମନ୍ଦିର ତିଆର ହେବାର ଥିଲା; ତାହାହେଲେ ଏଡ଼େ ସୁନ୍ଦର ଦୁଇଟି ପାହାଚ କି ଉଦ୍ଦେଶ୍ୟରେ ତିଆରି ହୋଇଥିଲା ? ପୁରୀ, ଭୁବନେଶ୍ୱର ପରି କୋଣାର୍କରେ ଦେଉଳ ଓ ମୁଖଶାଳା ସଙ୍ଗେ ଲାଗି ଏକ ପୀଠ ଉପରେ ନାଟମନ୍ଦିର ହେବାର ଯଦି ବ୍ୟବସ୍ଥା ଥାନ୍ତା, ତାହାହେଲେ ଉକ୍ତ ପାହାଚ ଦୁଇଟି କେତେକ ଦିନ ପରେ ଭଙ୍ଗା ହେବା ପାଇଁ କଦାପି ଏଡ଼େ ସୁନ୍ଦର ଭାବରେ ତିଆରି ହୋଇ ନ ଥାନ୍ତା । ନାଟମନ୍ଦିର ମୁଖଶାଳା ସଙ୍ଗେ ଲାଗି ତିଆର ହେବାର ବ୍ୟବସ୍ଥା ଥିଲେ, କେବଳ ଦେଉଳ ଓ ମୁଖଶାଳାକୁ ରଥାକାର ନ କରି ଏବଂ ସେହି ପୀଠ ଦେହରେ ସମସ୍ତ ଚକ ନ ଗଢ଼ି ନାଟମନ୍ଦିର, ଭୋଗମଣ୍ଡପ, ମୁଖଶାଳା ଓ ଦେଉଳ ସମସ୍ତଙ୍କ ସକାଶେ ଗୋଟିଏ ମାତ୍ର ପୀଠ କରି ତହିଁରେ ଚକମାନ ଗଢ଼ିଥାନ୍ତେ ଏବଂ ଶେଷ ମନ୍ଦିରର ସମ୍ମୁଖରେ ସପ୍ତାଶ୍ୱ ରଖିଥାନ୍ତେ ।

ଏହି ମନ୍ଦିରର କାରୁକାର୍ଯ୍ୟରୁ ମଧ୍ୟ ଅନୁମାନ କରାଯାଏ ଯେ, ଏହା ନାଟମନ୍ଦିର ବ୍ୟତୀତ ଅନ୍ୟ କିଛି ନ ଥିଲା । ପରେ କୁହାଯିବ ଯେ, ମନ୍ଦିରର ପୀଠ ଓ ବାଡ଼ ସର୍ବତ୍ର ନର୍ତ୍ତକ ନର୍ତ୍ତକୀମାନେ ନାନା ବାଦ୍ୟଯନ୍ତ୍ର ସହ ଦେବାର୍ଚ୍ଚନା ଉଦ୍ଦେଶ୍ୟରେ ନୃତ୍ୟ ଗୀତ କରୁଅଛନ୍ତି ।

କୌଣସିଠାରେ ଅଶ୍ଳୀଳତାରେ ଚିହ୍ନ ନାହିଁ । ଦେଉଳ ଓ ମୁଖଶାଳାରେ ଏତେ ନର୍ତ୍ତକ ନର୍ତ୍ତକୀ ଦେଖାଯାନ୍ତି ନାହିଁ । ଏହା ଭୋଗମଣ୍ଡପ ହୋଇଥିଲେ ଏପରି ଏତେ ନୃତ୍ୟ ଗୀତ ଦୃଶ୍ୟ ଦେଖିବାକୁ ମିଳନ୍ତା ନାହିଁ । ପୁରୀ ଭୋଗମଣ୍ଡପରେ ବହୁତ ଉତ୍କୃଷ୍ଟ କାରୁକାର୍ଯ୍ୟ ଦେଖାଯାଏ, ତହିଁରେ କିନ୍ତୁ ଏତେ ନୃତ୍ୟ ଗୀତର ଦୃଶ୍ୟ ନାହିଁ । ପୁଣି ପୁରୀ ଭୋଗମଣ୍ଡପର ଚାରି ଦିଗରେ ଦ୍ୱାର ଓ ଦ୍ୱାରବନ୍ଧ ଅଛି ଏବଂ କେବଳ ପଶ୍ଚିମ ଦ୍ୱାର ଛଡ଼ା ଅନ୍ୟାନ୍ୟ ଦ୍ୱାରଗୁଡ଼ିକ ସର୍ବଦା ବନ୍ଦ ଥାଏ । କୋଣାର୍କର ଚାରି ଦିଗରେ ବାଟ ଅଛି ସତ; କିନ୍ତୁ ଦ୍ୱାର ବା ଦ୍ୱାରବନ୍ଧ ନାହିଁ କି ନ ଥିଲା । ଏହି ହେତୁରୁ ନାଟମନ୍ଦିରକୁ ମଧ 'ମଣ୍ଡପ' ବୋଲି କହିଥାନ୍ତି ।

ଭୋଗମଣ୍ଡପ ସବୁ ମନ୍ଦିରର ଗୋଟିଏ ନିତାନ୍ତ ଆବଶ୍ୟକୀୟ ଅଂଶ ନୁହେଁ । ଭୋଗମଣ୍ଡପ ନ ଥାଇ ଅନେକ ମନ୍ଦିର ମଧ ଅଛି ଏବଂ ଯେଉଁ ମନ୍ଦିରରେ ଅବା ଭୋଗମଣ୍ଡପ ଅଛି, ତାହା ସେ ମନ୍ଦିର ସଙ୍ଗେ ସଙ୍ଗେ ତିଆରି ହୋଇଅଛି, ଏହା ମଧ ନୁହେଁ । ପୁରୀ ମନ୍ଦିରରେ ବହୁକାଳ ପର୍ଯ୍ୟନ୍ତ ଭୋଗମଣ୍ଡପ ନ ଥିଲା ଏବଂ ରାଜେନ୍ଦ୍ର ଲାଲଙ୍କ କହିବା ଅନୁସାରେ ପୁରୀ ଭୋଗମଣ୍ଡପ ମରହଟ୍ଟାମାନଙ୍କ ଦ୍ୱାରା ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ତିଆରି ହୋଇଅଛି * । ବର୍ତ୍ତମାନ ମଧ ପୁରୀ ଭୋଗମଣ୍ଡପରେ ଗୋଟିଏ ମାତ୍ର ଭୋଗ ହୁଏ ଏବଂ ତାହା ମଧ ବଡ଼ ଦେଉଳ ମଧରେ ବଢ଼ା ହେଉଥିବା ସକାଳ, ଦ୍ୱିପ୍ରହର, ସନ୍ଧ୍ୟା ଓ ବଡ଼ସିଂହାର ପ୍ରଭୃତି ଭୋଗ ପରି ସେତେ ବିଧି ବିଧାନ ସହିତ ହୁଏ ନାହିଁ; କେବଳ 'ଡାଳିମରା' ହୁଏ ମାତ୍ର । ଅନ୍ନ ମହାପ୍ରସାଦ ଅଧିକ ପରିମାଣରେ ଆବଶ୍ୟକ ହେବାରୁ ଭୋଗମଣ୍ଡପ ତିଆରି ହୋଇଅଛି । କୋଣାର୍କରେ ବଡ଼ ଦେଉଳ ଏତେ ପ୍ରଶସ୍ତ ହୋଇଥିବା ସ୍ଥଳେ ସ୍ୱତନ୍ତ୍ର ଭୋଗମଣ୍ଡପର ଆବଶ୍ୟକତା ଆଦୌ ପଡ଼ି ନ ଥିଲା । ରାଜେନ୍ଦ୍ର ଲାଲ ମଧ ନିଜ ମତ ଉପରେ ଅବିଶ୍ୱାସ କରି ସ୍ୱୀକାର କରନ୍ତି ଯେ, ତିଆରି ହେଲାବେଳେ ଏହା ନିଶ୍ଚୟ ନାଟମନ୍ଦିର ସ୍ୱରୂପ ହୋଇଥିଲା ** । ସେ ଦେଖିଲାବେଳେ ଏହା କେବଳ ଜଙ୍ଗଲରେ ପୂର୍ଣ୍ଣ ଥିଲା । ସେ ଯଦି ବର୍ତ୍ତମାନ ପରି ଏହାର ଗଠନ ପ୍ରଣାଳୀ ଓ କାରୁକାର୍ଯ୍ୟ ଦେଖି ପାରିଥାନ୍ତେ, ତାହାହେଲେ ସେ ସମ୍ପୂର୍ଣ୍ଣ ବିଶ୍ୱାସ କରିଥାନ୍ତେ ଯେ, ଏହା ନାଟମନ୍ଦିର ବ୍ୟତୀତ ଅନ୍ୟ କିଛି ନ ଥିଲା ।

ନାଟମନ୍ଦିର ମୁଖଶାଳା ପରି ଗୋଟିଏ ପଞ୍ଚରଥ ଦେଉଳ; କିନ୍ତୁ ମୁଖଶାଳାର ରଥ ବା ପାଗଗୁଡ଼ିକ ବାହାରକୁ ବାହାରି ପରସ୍ପରଠାରୁ ଯେତେ ପୃଥକ ଦେଖାଯାଏ, ନାଟମନ୍ଦିରରେ ସେପରି ହୋଇନାହିଁ । ଏହି ପଞ୍ଚରଥ ପ୍ରଣାଳୀ ପୀଠର ତଳ ପଉନରୁ ଆରମ୍ଭ ହୋଇଅଛି । ତଳ ପଉନ ଉପରେ ଫୁ ୨।୭ ଇଞ୍ଚ ବାହାରକୁ ଛାଡ଼ି ପୀଠ ତିଆର ହୋଇଅଛି । ନାଟମନ୍ଦିରର ପୀଠକୁ ଉପର୍ଯ୍ୟୁପରି ତିନି ସ୍ୱତନ୍ତ୍ର ପୀଠରେ ବିଭକ୍ତ କରାଯାଇପାରେ । ପ୍ରଥମ ପୀଠ ଫୁ ୨।୪

* 'Antiquities of Orissa'. Vol. II. P. 120

** 'Antiquities of Orissa'. Vol. II. P. 150.

ଇଞ୍ଚ ଉଚ୍ଚ । ଏଥିରେ ପାଦ, କଣି, ବସନ୍ତ ଏହି ତିନୋଟି କାମ । ସେଥି ମଧ୍ୟରୁ କଣିରେ ପଦ୍ମ ପାଖୁଡ଼ା ଓ ବସନ୍ତରେ ଲତା କାମ; କିନ୍ତୁ ପାଦରେ କୌଣସି କାମ ନାହିଁ ।

ପ୍ରଥମ ପୀଠ ଉପରେ ଫୁ ୯।୭ ଇଞ୍ଚ ଉଚ୍ଚରେ ଦ୍ୱିତୀୟ ପୀଠ ତିଆରି ହୋଇଅଛି । ଦ୍ୱିତୀୟ ପୀଠରେ ଜଙ୍ଘା, ବରାଣ୍ଡି ବା ଶାକର, ବନ୍ଧନା, ଉପର ବରାଣ୍ଡି ବା ଶିକାର ଓ ଉପର ଜଙ୍ଘା — ଏହି ପାଞ୍ଚ ବିଭାଗ ଅଛି । ତଳ ଜଙ୍ଘାର କାମ ଯଥାବିଧାନରେ ଅଛି । ଉପର ଜଙ୍ଘାର ସାତ ପ୍ରକାର କାମ ପରିବର୍ତ୍ତରେ ତିନୋଟି ମାତ୍ର କାମ ଅଛି । ଉଭୟ ଜଙ୍ଘାର ମଧ୍ୟବର୍ତ୍ତୀ ସ୍ଥାନ କ୍ଷୁଦ୍ର କ୍ଷୁଦ୍ର ପୀଢ଼ ଦେଉଳରେ ପୂର୍ଣ୍ଣ । ଗୋଟିଏ ମୋଟା ଦେଉଳ ପାଖରେ ଗୋଟିଏ ସାମାନ୍ୟ ସରୁ ଦେଉଳ, ଏହିପରି ପର୍ଯ୍ୟାୟକ୍ରମେ ଚତୁର୍ଦ୍ଦିଗରେ କାମ ହୋଇଅଛି । ପ୍ରତ୍ୟେକ ଦେଉଳ ଗୋଟିଏ ଗୋଟିଏ ଖମ୍ବ ପରି ବୋଧହୁଏ । ମୋଟରେ ପୀଠଟି ଦୂରରୁ କେତେଗୁଡ଼ିଏ ଖମ୍ବ ସମଷ୍ଟିରେ ତିଆରି ହେଲା ପରି ଦେଖାଯାଏ । ତଥାପି ଏହି ଲମ୍ବାକାର ଦେଉଳ କାମ ମଧ୍ୟରେ ବୈଷମ୍ୟ ଦେଖାଇବା ପାଇଁ ଭୂମି ସହିତ ସମାନ୍ତର ଭାବରେ କାମମାନ ଅଛି । ଜଙ୍ଘା ଓ ବନ୍ଧନା ବ୍ୟତୀତ ସମସ୍ତ କ୍ଷୁଦ୍ର ଦେଉଳ ଗୁଡ଼ିକର ପ୍ରତ୍ୟେକ ପୀଢ଼ ଓ ପାଦ ପ୍ରଭୃତି ଭୂମିରୁ ସମାନ ଉଚ୍ଚରେ ଥିବାରୁ ମଧ୍ୟବର୍ତ୍ତୀ ବ୍ୟବଧାନ ସତ୍ତ୍ୱେ ଦୂରରୁ ଏକ ରେଖା ପରି ବୋଧହୁଏ । ପୁଣି ଭୂମି ସହିତ ସମାନ୍ତର ଏହି କାମଗୁଡ଼ିକ ମଧ୍ୟରେ ଅର୍ଥାତ୍ ଦୁଇଟି କ୍ଷୁଦ୍ର ପୀଢ଼ ଦେଉଳ ମଧ୍ୟରେ ଲମ୍ବାକାର ବ୍ୟବଧାନ ଅଛି । କୋଣାର୍କ ଶିଳ୍ପରେ ସାମ୍ୟ ଓ ବୈଷମ୍ୟ ନୀତିର ଏହା ଅନ୍ୟତମ ନିଦର୍ଶନ । ଦୁଇ ଦେଉଳର ବ୍ୟବଧାନ ସ୍ଥାନରେ ସୁନ୍ଦର ଜାଲିକାମ ଅଛି । ପ୍ରତ୍ୟେକ ଦେଉଳରେ ଅପ୍‌ସରାମାନଙ୍କର ମୂର୍ତ୍ତି ଅଛି । ସମସ୍ତେ ମୃଦଙ୍ଗ, ବୀଣା ପ୍ରଭୃତି ବଜାଇ ନାନା ଭଙ୍ଗୀରେ ନୃତ୍ୟ ଗୀତ କରୁଛନ୍ତି । କୌଣସିଠାରେ ଅଶ୍ଳୀଳ ମୂର୍ତ୍ତି ଥିବାର ଦେଖାଯାଏ ନାହିଁ । ତଳ ବରାଣ୍ଡି ଉପରେ ବନ୍ଧନା ଅଛି । ଏହା ପ୍ରକୃତରେ ଗୋଟିଏ ବନ୍ଧ ସଦୃଶ ପୀଠର ଚାରି ଦିଗରେ ଭୂମିର ସମାନ୍ତର ଭାବରେ ବୁଲି ତଳ ଓ ଉପର ବରାଣ୍ଡିର ଲମ୍ବାକାର ଦେଉଳ କାମ ମଧ୍ୟରେ ସୁନ୍ଦର ବ୍ୟବଧାନ ହୋଇଅଛି । ଉପର ବରାଣ୍ଡିରେ ମଧ୍ୟ ସ୍ତ୍ରୀ ରୂପୀ ଅପ୍‌ସରାମାନେ ପୂର୍ବ ପରି ନୃତ୍ୟ ଗୀତରେ ମାତି ଅଛନ୍ତି । ଉପର ଜଙ୍ଘା ଉପର ବରାଣ୍ଡିର ଦେଉଳମାନଙ୍କ ମସ୍ତକ ଉପରେ ପୀଠର ଚାରିଆଡ଼େ ବୁଲୁଅଛି । ଏହା ଦେହରେ ସମାନ ସମାନ ଦୂରରେ ପାଣି ନାଳ ମୁହଁର ଦୃଶ୍ୟ ଅଛି । ଏହାର ସବିଶେଷ କାମରେ ସୁନ୍ଦର ହାତୀ ମୂର୍ତ୍ତିମାନ ଖୋଦିତ ଅଛି । ଅନର୍ଥ ଓ ରାହାପାଗର କୋଣରେ ଲତାମଣ୍ଡିତ ଖମ୍ବମାନ ଦେଖାଯାଏ ।

ଉପରୋକ୍ତ ପ୍ରଥମ ଓ ଦ୍ୱିତୀୟ ପୀଠ ତୃତୀୟ ପୀଠର ତଳ ପତ୍ତନ ସଦୃଶ ବୋଧହୁଏ । ଦ୍ୱିତୀୟ ପୀଠ ଉପରେ ୧୧ ଫୁଟ ବାରଣ୍ଡା ଛାଡ଼ି ତୃତୀୟ ପୀଠର କାମ ଆରମ୍ଭ ହୋଇଅଛି । ତୃତୀୟ ପୀଠର ଉଚ୍ଚତା ୪ ଫୁଟ ୬ ଇଞ୍ଚ । ଏହି ପୀଠ ଦେହରେ ଜଙ୍ଘା, ବରାଣ୍ଡି ବା ଶାକର ଓ ଉପର ଜଙ୍ଘା — ଏହି ତିନୋଟି ବିଭାଗ ଅଛି । ଜଙ୍ଘାରେ ତିନି କାମ; ଯଥା — ପାଦ, ପଟା, ବସନ୍ତ । ପାଦରେ ପଦ୍ମ ପାଖୁଡା ଏବଂ ପାଟ ଓ ବସନ୍ତରେ ଫୁଲ ଲତାର

କାମ । ଜଙ୍ଘା ଉପରେ ବରାଣ୍ଡି । ଏଥିରେ ସମାନ ସମାନ ବ୍ୟବଧାନରେ ପୀଢ଼ ଦେଉଳର କାମ । ଦେଉଳମାନଙ୍କର ବାଡ଼ ଦେହରେ ସ୍ତ୍ରୀ ମୂର୍ତ୍ତିମାନ ବାଦ୍ୟଯନ୍ତ୍ର ବଜାଇ ନାନା ଭଙ୍ଗୀରେ ନୃତ୍ୟଗୀତ କରୁଅଛନ୍ତି । ଏହି ଦୁଇ ଦେଉଳ ମଧ୍ୟବର୍ତ୍ତୀ ସ୍ଥାନରେ ଜାଲିକାମ ଅଛି । ଏହା ଉପରେ ଉପର ଜଙ୍ଘା, ତହିଁରେ ପଟା, କଣି ଓ ବସନ୍ତ ଏହି ତିନି କାମ ଅଛି ଏବଂ ଏହି ତିନି କାମ ମଧ୍ୟରେ ଯେ ଦୁଇଟି ବ୍ୟବଧାନ ଅଛି, ତହିଁରେ ଜାଲିକାମ । ବସନ୍ତରେ ସୁସଜ୍ଜିତ ହାତୀ ମୂର୍ତ୍ତିମାନ ଏବଂ ପଟାରେ ଲତା କାମମାନ ଅଛି । ଏହି ପୀଠର ଉପରିଭାଗ ନାଟମନ୍ଦିରର ଭିତର ଚଟାଣ; ଏହା ଉପରେ ମନ୍ଦିରର ଖମ୍ଭ ଓ କାନ୍ଥ ନିର୍ମିତ । ନାଟମନ୍ଦିରର ସମୁଦାୟ ପୀଠର ଉଚ୍ଚତା :—

| | | | |
|---|---|---|---|
| ପ୍ରଥମ ପୀଠର ଉଚ୍ଚତା | - | - | ଫୁ ୨।୪ ଇଞ୍ଚ |
| ଦ୍ୱିତୀୟ ପୀଠର ଉଚ୍ଚତା | - | - | ଫୁ ୯।୭ ଇଞ୍ଚ |
| ତୃତୀୟ ପୀଠର ଉଚ୍ଚତା | - | - | ଫୁ ୪।୬ ଇଞ୍ଚ |
| | ପୀଠର ମୋଟ ଉଚ୍ଚତା | | ଫୁ ୧୬।୫ ଇଞ୍ଚ |

ପୂର୍ବେ (୪ର୍ଥ ଅଧ୍ୟାୟ) କୁହାଯାଇଅଛି ଯେ, ବଡ଼ ଦେଉଳ ଓ ମୁଖଶାଳାର ପୀଠ ୧୬ ଫୁଟ ୬ ଇଞ୍ଚ । ସୁତରାଂ ବଡ଼ ଦେଉଳ ଓ ମୁଖଶାଳା ସଙ୍ଗେ ସମାନ ଉଚ୍ଚରେ ନାଟମନ୍ଦିର ନିର୍ମିତ ହୋଇଥିଲା । ପୀଠଟି ବର୍ଗକ୍ଷେତ୍ରାକାର । ଦ୍ୱିତୀୟ ପୀଠର ପ୍ରତ୍ୟେକ ପାଖ ୭ ଫୁଟ ଲମ୍ବା ।

ଏହି ଦ୍ୱିତୀୟ ପୀଠ ଉପରକୁ ଚାରି ଦିଗରେ ଚାରୋଟି ପାହାଚ ଶ୍ରେଣୀ ଅଛି । ପଶ୍ଚିମ ଦିଗର ପାହାଚ କୋଣାର୍କର ଅନ୍ୟାନ୍ୟ ସମସ୍ତ ପାହାଚଠାରୁ ପୃଥକ୍ । ତଳପଉନଠାରୁ ଉତ୍ତର ଓ ଦକ୍ଷିଣ ଦିଗରୁ ଦୁଇ ଶ୍ରେଣୀ ପାହାଚ ଦ୍ୱିତୀୟ ପୀଠର ଉପର ବାରଣ୍ଡା ପର୍ଯ୍ୟନ୍ତ ଉଠିଅଛି ଏବଂ ସେହି ବାରଣ୍ଡାର ସମତଳରେ ଦୁଇ ପାହାଚ ମଧ୍ୟରେ ବାରଣ୍ଡା ଭଳି ବିସ୍ତୃତ ସ୍ଥାନ ଅଛି । ସୁତରାଂ ଏହି ପାହାଚ ଉପରେ ଦ୍ୱିତୀୟ ପୀଠ ଉପର ବାରଣ୍ଡାର ଓସାର ବହୁତ ବେଶୀ । ତଳପଉନ ପାଖରେ ଦୁଇ ପାହାଚ ଶ୍ରେଣୀର ବ୍ୟବଧାନ ୪୨ ଫୁଟ ୮ ଇଞ୍ଚ । ପ୍ରତ୍ୟେକ ଗୋଟି ପାହାଚର ଚଉଡ଼ା ୧ ଫୁଟ ୧୧ ଇଞ୍ଚ, ଉଚ୍ଚତା ୧୦ ଇଞ୍ଚ ଏବଂ ଲମ୍ବା ୭ ଫୁଟ ୧୦ ଇଞ୍ଚ । ଉକ୍ତ ଦୁଇ ଶ୍ରେଣୀ ପାହାଚର ବ୍ୟବଧାନରେ ପୀଠ ସମାନ କାମ ଅଛି । ଉତ୍ତର ଦିଗର ପାହାଚଗୁଡ଼ିକ ଅର୍ଦ୍ଧବୃତ୍ତାକାର । ସର୍ବନିମ୍ନ ପାହାଚର ବ୍ୟାସ ପୂର୍ବ ପଶ୍ଚିମରେ ଫୁ ୧୪।୩ ଇଞ୍ଚ ଏବଂ ପୀଠଠାରୁ ନିମ୍ନ ପାହାଚର ଶେଷ ଫୁ ୨୦।୯ ଇଞ୍ଚ ଲମ୍ବା । ଏହାର ପ୍ରତ୍ୟେକ ପାହାଚର ଓସାର ଫୁ ୨।୪ ଇଞ୍ଚ ଏବଂ ଉଚ୍ଚ ୧୦ ଇଞ୍ଚ । ଦକ୍ଷିଣ ଓ ପୂର୍ବ ଦିଗ ପାହାଚ ସାଧାରଣ ଆୟତାକାର । ଦକ୍ଷିଣ ଦିଗ ପାହାଚ ଶ୍ରେଣୀର ସର୍ବନିମ୍ନ ପାହାଚର ଲମ୍ବା ୧୨ ଫୁଟ ୨ ଇଞ୍ଚ ଏବଂ ଓସାର ଓ ଉଚ୍ଚତାରେ ପଶ୍ଚିମ ଦିଗର ପାହାଚ ସଙ୍ଗେ ସମାନ । ପୂର୍ବ ଦିଗ ପାହାଚ

ଶ୍ରେଣୀର ଦୁଇ ପାଖରେ ଦ୍ୱିତୀୟ ପୀଠ ସମାନ ଉଚ୍ଚ ପାହାଚର ଶେଷ ପର୍ଯ୍ୟନ୍ତ ୨୫ ଫୁଟ ବଢ଼ିଅଛି । ଏହା ପାହାଚ ଶ୍ରେଣୀର ଦୁଇ ପାଖରେ କାନ୍ଥ ସ୍ୱରୂପ ହୋଇଅଛି । ପ୍ରତ୍ୟେକ ପାଖ କାନ୍ଥର ଓସାର ପ୍ରାୟ ୫ ଫୁଟ । ଦୁଇ କାନ୍ଥ ମଧ୍ୟରେ ୧୫ ଫୁଟ ଚଉଡ଼ାରେ ପାହାଚ ଶ୍ରେଣୀ ଗଢ଼ା ହୋଇଅଛି ।

ଉକ୍ତ ଦୁଇ କାନ୍ଥ ଶେଷରେ ଏବଂ ପାହାଚର ଶେଷ ଦୁଇ ପ୍ରାନ୍ତରେ ଦୁଇଟି ପ୍ରକାଣ୍ଡ ଗଜସିଂହ ମୂର୍ତ୍ତି ଅଛି । ଗୋଟିଏ ଅଳ୍ପ ଉଚ୍ଚ ପତ୍ତନ ଉପରେ ହାତୀଟିଏ ମୁହଁ ମାଡ଼ି ଚିପି ହୋଇ ପଡ଼ିଛି ଏବଂ ଗୋଟିଏ ପ୍ରକାଣ୍ଡ ସିଂହ ଉନ୍ମତ୍ତ ଅବସ୍ଥାରେ ପଛଆଡୁ ଝାମ୍ପ ଦେଇ ହାତୀଟିକୁ ମାଡ଼ି ବସିଛି । ହାତୀର ଥୋଡ଼ପାହାଡ଼ରେ ମନୁଷ୍ୟଟିଏ ଧରାଅଛି; ଦେହରେ ଲୁହା ଶିକୁଳି ବନ୍ଧା ଅଛି ଏବଂ ସେହି ଶିକୁଳି ଦେହରୁ ଗୋଟିଏ ଘଣ୍ଟି ଝୁଲୁଅଛି । ସିଂହ ଝାମ୍ପ ଦେଲା ପରି ହାତୀ ଉପରେ ପଡ଼ିଥିବାରୁ ହାତୀ କେବଳ ପଛ ଗୋଡ଼ ଉପରେ ଠିଆ ହୋଇ ରହିଛି ଏବଂ ଆଗ ଗୋଡ଼ ଦୁଇଟି ଟେକା ଅଛି । ସିଂହର ପେଟ ତଳେ ହାତୀ ଚିପି ହୋଇ ଯାଇଅଛି । ସିଂହ ନାଭି ଯେଉଁଠାରେ ହାତୀ ପିଠିକୁ ଲାଗିଛି, ତହିଁରେ ୧୬ ଇଞ୍ଚ ବ୍ୟାସର ଗୋଟିଏ ଗୋଲାକାର ଲୁହାଗଜ ସିଂହ ଓ ହାତୀକୁ ଯୋଡ଼ିଅଛି । ଏହି ଲୁହାଗଜ ଉପରେ ସିଂହର ସମସ୍ତ ଭାରକେନ୍ଦ୍ର ନିର୍ଭର କରେ । ସିଂହର ନାଭିଠାରୁ ମସ୍ତକ ପର୍ଯ୍ୟନ୍ତ ସମସ୍ତ ଭାର ଏହି ଲୁହାଗଜ ଅଦ୍ୟାବଧି ସମ୍ଭାଳି ରଖିଅଛି । ସିଂହ, ହାତୀ ଓ ମନୁଷ୍ୟ ସମସ୍ତ ଗୋଟିଏ ପଥରର କାମ । ତେବେ କୌଣସି କୌଣସି ହାତ ଯୋଡ଼ା ହୋଇ ପାରିଥିବ । ଏ ସମସ୍ତର ପରିମାଣ ଫୁ ୮।୪ ଇଞ୍ଚ ଲମ୍ବା, ଫୁ ୪।୯ ଇଞ୍ଚ ଚଉଡ଼ା ଏବଂ ଫୁ ୯।୨ ଇଞ୍ଚ ଉଚ୍ଚ । ମୋଟରେ ଶ୍ରୀ ମନମୋହନ ଗାଙ୍ଗୁଲୀ ଏହାକୁ ୩୬୦ ଘନଫୁଟ ଧରିଛନ୍ତି । ତାହାଙ୍କ ହିସାବ ଅନୁସାରେ ଯେଉଁ କନ୍ଧା ପଥରରେ ଏହି ସିଂହ ତିଆର ହୋଇଅଛି, ତାହାର ପ୍ରତ୍ୟେକ ଘନଫୁଟରେ ଓଜନ ୧୭୧ ପାଉଣ୍ଡ * । ସୁତରାଂ ସମସ୍ତ ପଥରଟିର ଓଜନ ୬୧୫୬୦ ପାଉଣ୍ଡ ବା ୨୭.୪୮ ଟନ ବା ୭୬୯-୧/୨ ବା ୭୭୦ ମହଣ ।

ତୃତୀୟ ପୀଠ ଉପରେ ନାଟମନ୍ଦିରର ଖମ୍ବ ଓ କାନ୍ଥ ନିର୍ମିତ । ପୀଠର ପ୍ରାନ୍ତରୁ ଫୁ ୧।୯ ଇଞ୍ଚ ଛାଡ଼ି କାନ୍ଥ ଆରମ୍ଭ ହୋଇଅଛି । କାନ୍ଥର ବାହାର ପାଖ ଜଙ୍ଘୀ, ବରାଣ୍ଡି ବା ଶାଙ୍କର, ବନ୍ଧନା, ଶିଙ୍କାର ଓ ଉପର ଜଙ୍ଘା – ଏହି ପାଞ୍ଚ ଭାଗରେ ବିଭକ୍ତ । ତଳ ଜଙ୍ଘାରେ ପାଞ୍ଚ ଓ ବନ୍ଧନାରେ ତିନି କାମ; କିନ୍ତୁ ଉପର ଜଙ୍ଘାରେ ସାତ କାମ ପରିବର୍ତ୍ତରେ ନଅ କାମ । ପୀଠ ଜଙ୍ଘାରେ ଯେ କାମ, କାନ୍ଥ ଜଙ୍ଘୀରେ ମଧ୍ୟ ସେହି କାମମାନ ଅଛି ଏବଂ ପୀଠ ଶାଙ୍କର ପରି କାନ୍ଥ ଶାଙ୍କରରେ ପୀଢ଼ ଦେଉଳ, ଦେଉଳ ଦେହରେ ସ୍ତ୍ରୀମାନଙ୍କର ନୃତ୍ୟ ଗୀତର ଅଭିନୟ ଏବଂ ଦେଉଳମାନଙ୍କ ବ୍ୟବଧାନରେ ଜାଲିକାମ ଅଛି । କେବଳ ପ୍ରଭେଦ ଏହି ଯେ,

* Orissa and Her Remains. P. 468.

କାନ୍ଥ ବରାଣ୍ଡିର କାମଗୁଡ଼ିକ ଅପେକ୍ଷାକୃତ ବହୁତ ସୁନ୍ଦର ଓ ଗହଳ ଏବଂ ଆକୃତିରେ ବଡ଼ । ବନ୍ଧନାରେ ପଟା ଓ ବସନ୍ତରେ ସୁନ୍ଦର ଲତା କାମ ଏବଂ ଦୁହିଁଙ୍କ ମଧ୍ୟରେ ଡୋରୀ । ଡୋରୀରେ କାମ ନାହିଁ । ଶିକାର କାମ ଖାକର ବା ତଳ ବରାଣ୍ଡିର କାମ ସଙ୍ଗେ ସମାନ; କିନ୍ତୁ ଶିକାର ଦେହରେ ମଝେ ମଝେ ପୁରୁଷ ଓ ବାଦ୍ୟକାର ମଧ୍ୟ ଅଛି । ଶିକାରର ଉଭୟ ପୁରୁଷ ଓ ସ୍ତ୍ରୀ ମୂର୍ତ୍ତି ମଧ୍ୟରୁ ଅଧିକାଂଶ ପାଣି ପବନ ଖାଇ ନଷ୍ଟ ହୋଇଗଲାଣି । ଉପର ଜଙ୍ଘାରେ ପଟା, ପେଣୀ, କଣି, ବସନ୍ତ ପ୍ରଭୃତି ନଅ କାମ ଅଛି ଏବଂ କଣି ବ୍ୟତୀତ ଅନ୍ୟାନ୍ୟ ସମସ୍ତ କାମ ଲତା, ପଦ୍ମ ଓ ମାଳା କାମରେ ମଣ୍ଡିତ । ନାଟମନ୍ଦିର କାନ୍ଥରେ ପଦ୍ମର ବହୁତ ବ୍ୟବହାର ହୋଇଅଛି । କେବଳ ନାଟମନ୍ଦିର କାହିଁକି କୋଣାର୍କରେ ସର୍ବତ୍ର ନାନାଭାବରେ ପଦ୍ମ ଫୁଲର ବହୁତ କାମ ଦେଖାଯାଏ । ପ୍ରାଚୀନ ଗ୍ରୀସ୍ ଓ ରୋମରେ ଗୋଲାପ ଫୁଲର ଯେପରି ଆଦର ଥିଲା * ଓଡ଼ିଶା ତଥା ଭାରତବର୍ଷରେ ମିଶର ଦେଶ ପରି ପଦ୍ମ ଫୁଲ ସେହିପରି ଦେବ ଦେବୀଙ୍କ ଉପାସନାଠାରୁ ଆରମ୍ଭ କରି ମନ୍ଦିରମାନଙ୍କର କାରୁକାର୍ଯ୍ୟ ପର୍ଯ୍ୟନ୍ତ ସର୍ବତ୍ର ପ୍ରଚୁର ପରିମାଣରେ ବ୍ୟବହୃତ ହେଉଥିଲା । କାନ୍ଥର ଉଚ୍ଚତା ଫୁ ୧୦।୮ ଇଞ୍ଚ । ଏହି କାନ୍ଥ ଚାରି ପାଖର ଦ୍ୱାର ଉପରେ ପାଟ ସ୍ୱରୂପ ୨ ଫୁଟ ଉଚ୍ଚରେ ପଥର ଅଛି । ଏହି ପଥର ଉପରୁ ମନ୍ଦିର ଭାଙ୍ଗି ଯାଇଅଛି ।

ନାଟମନ୍ଦିର ଭିତରୁ ଚାରି ଦିଗରେ ଫୁ ୧୦।୩ ଇଞ୍ଚ ଚଉଡ଼ାରେ ଚାରୋଟି ବାଟ ଅଛି । ଏଥିରେ ଦ୍ୱାର ବା ଦ୍ୱାରବନ୍ଧ ନାହିଁ କି ନ ଥିଲା; ସୁତରାଂ ଏହା ଗୋଟିଏ ମଣ୍ଡପାକାରରେ ତିଆର ହୋଇଥିଲା । ଏହି ପ୍ରତ୍ୟେକ ବାଟ ପାଖରେ ମନ୍ଦିର ଦେହରୁ ତିନୋଟି ଲେଖାଏଁ ପାହାଚ ଦ୍ୱିତୀୟ ପୀଠ ଉପର ବାରଣ୍ଡା ପର୍ଯ୍ୟନ୍ତ ଅଛି । ଉତ୍ତର ଦିଗ ବ୍ୟତୀତ ଅନ୍ୟ ସବୁ ଦିଗରେ କାନ୍ଥ ଦେହରେ ପଞ୍ଜର ଅଛି । ପଞ୍ଜରମାନଙ୍କରେ ଛୋଟ ଛୋଟ ଖମ୍ଭ ଫଳି ସ୍ୱରୂପ ଅଛି ଏବଂ ଏମାନଙ୍କର ବାହାର ପାଖର କାମ କାନ୍ଥର କାମ ସଙ୍ଗେ ସମାନ । କାନ୍ଥ ସହିତ ନାଟମନ୍ଦିରର ଚଟାଣ ଅର୍ଥାତ୍ ତୃତୀୟ ପୀଠର ଉପରିଭାଗର ଲମ୍ବ ଓ ଓସାର ପ୍ରତ୍ୟେକ ୫୨ ଫୁଟ । ମନ୍ଦିର ଭିତର ଚଟାଣ ଲମ୍ବ ଓ ଓସାରରେ ଫୁ ୩୬।୫ ଇଞ୍ଚ ।

---

* ପ୍ରାଚୀନ ରୋମ ଓ ଗ୍ରୀସ୍‌ବାସୀ ଅନ୍ୟାନ୍ୟ ଫୁଲ ମଧ୍ୟରେ ଗୋଲାପକୁ ସର୍ବୋତ୍କୃଷ୍ଟ ଫୁଲ ମନେ କରୁଥିଲେ । ଗ୍ରୀସୀୟ ପୁରାଣ ମତରେ ସ୍ୱର୍ଗ ସର୍ବଦା ଗୋଲାପ ଗନ୍ଧରେ ପରିପୂର୍ଣ୍ଣ ଥିଲା । Graces ବା ବିଭିନ୍ନ ବିଦ୍ୟାର ଅଧିଷ୍ଠାତ୍ରୀ ଦେବୀମାନେ ସର୍ବଦା ଗୋଲାପ ମାଳାରେ ବିଭୂଷିତ ଥିଲେ । ରୋମ ସମ୍ରାଟ ନେରୋଙ୍କ ସମ୍ବନ୍ଧରେ ଶୁଣାଅଛି ଯେ, ଗୋଟିଏ ଭୋଜି ଉପଲକ୍ଷରେ କେବଳ ଗୋଲାପ ଫୁଲରେ ସେ ବହୁ ସହସ୍ର ପାଉଣ୍ଡ ବ୍ୟୟ କରିଥିଲେ ଏବଂ କ୍ଲିଓପେଟ୍ରା ରାଜବାଟୀର ସମୁଦାୟ ଚଟାଣରେ ସର୍ବତ୍ର ୧୪ ଫୁଟ ଉଚ୍ଚରେ ସର୍ବଦା ଗୋଲାପ ବିଛାଇ ରଖୁଥିଲେ ।

The Englishman of 24-7-16

ନାଟମନ୍ଦିର ଭିତରେ ଚାରୋଟି ଖମ୍ବ ଅଛି । ତଳୁ ଫୁ ୨।୧୦ ଇଞ୍ଚ ପର୍ଯ୍ୟନ୍ତ ଖମ୍ବ ଦେହରେ କୌଣସି କାମ ନାହିଁ । ଖମ୍ବର ପ୍ରତ୍ୟେକ ପାଖ ମୂଳରୁ ଶେଷ ପର୍ଯ୍ୟନ୍ତ ପାଞ୍ଚଟି ସରୁ ସରୁ ଖମ୍ବରେ ବିଭକ୍ତ ଏବଂ ପ୍ରତ୍ୟେକ ସରୁ ଖମ୍ବ ନାଟମନ୍ଦିର ପରି ମୂଳରୁ ପଞ୍ଚରଥ ହୋଇଅଛି । ଏମାନଙ୍କର ପ୍ରତ୍ୟେକ ପାଗ ଦେହରେ ଜଙ୍ଘା, ବରାଣ୍ଡି ପ୍ରଭୃତି ବିଭାଗମାନ ଅଛି । ଜଙ୍ଘାର ଉଚ୍ଚତା ୨ ଫୁଟ ଏବଂ ପାଞ୍ଚ କାମ ପରିବର୍ତ୍ତରେ ଏଥିରେ କେବଳ ପଟା, କଣି ଓ ବସନ୍ତ ଏହି ତିନି କାମ ଅଛି । ପଟାରେ ଲତା କାମ; ମାତ୍ର କଣିରେ କାରୁକାର୍ଯ୍ୟ ନାହିଁ । ବସନ୍ତରେ ରାହା ପାଗ ଦେହରେ ଦୁଇଟି ଲେଖାଏଁ ହାତୀ ମୂର୍ତ୍ତି ଏବଂ ହାତୀର ଚାରି ପାଖରେ ମାଳା କାମ ଅଛି । ଅନ୍ୟାନ୍ୟ ପାଗର ବସନ୍ତରେ ମାଳା କାମ, ମଧ୍ୟରେ ଲତା ଓ ଫୁଲ କାମମାନ ଅଛି । ପ୍ରତ୍ୟେକ କ୍ଷୁଦ୍ର କ୍ଷୁଦ୍ର ଖମ୍ବର ରାହାପାଗ ଦେହରେ ଗୋଟିଏ ଅତି ସୁନ୍ଦର ଲତାମଣ୍ଡିତ ପଟା ଲମ୍ବାକାରରେ ଜଙ୍ଘାର ଉପରୋକ୍ତ ତିନି କାମକୁ ଅତି ସୁନ୍ଦର ଭାବରେ ଯୋଗ କରୁଅଛି ।

ଏହା ଉପରେ ବରାଣ୍ଡି । ବରାଣ୍ଡି ଫୁ ୩।୮ ଇଞ୍ଚ । ପ୍ରତ୍ୟେକ ପାଖର ସରୁ ସରୁ ଖମ୍ବରେ ବରାଣ୍ଡି ବିଭାଗମାନ ସୁନ୍ଦର ଦେଖାଯାଉଅଛି । ପ୍ରତ୍ୟେକ ପ୍ରାନ୍ତ ଖମ୍ବ ଦେହରେ ଅତି ସୁନ୍ଦର ପ୍ରସ୍ଫୁଟିତ ପଦ୍ମ ଉପରେ ଅଷ୍ଟସଖୀ ମୂର୍ତ୍ତି ହାତରେ ଦେବାର୍ଚ୍ଚନର ଉପଯୋଗୀ ଜଳପାତ୍ର ପ୍ରଭୃତି ଧରି ଗୋଡ଼ ଛନ୍ଦି ଠିଆହୋଇ ଅଛନ୍ତି । ମଧ୍ୟପାଗରେ ଗଜ-ଶାର୍ଦ୍ଦୂଳ ପ୍ରଭୃତି ମୂର୍ତ୍ତି ଅଛି । ସରୁ ଖମ୍ବମାନଙ୍କର ବ୍ୟବଧାନରେ ଲତା ଓ ମାଳା କାମ ପ୍ରଭୃତି ଲମ୍ବଭାବରେ ଅଛି । ବରାଣ୍ଡିର ମସ୍ତକ ଉପରେ ଅତି ମନୋହର ମାଳା ଓହଳିଛି । ବରାଣ୍ଡି ଉପରେ ବନ୍ଧନା, ଏଥିରେ ତିନି କାମ । ପାଦ ଓ ପଟାରେ ସୁନ୍ଦର ଲତା ଏବଂ ଦୁହିଁଙ୍କ ମଧ୍ୟବର୍ତ୍ତୀ ଡୋରୀରେ ମାଳା କାମ । ଜଙ୍ଘା ପରି ଏଥିରେ ମଧ୍ୟ ଲମ୍ବାକାରରେ ଗୋଟିଏ ଲତା କାମ ଉକ୍ତ ତିନି କାମକୁ ଯୋଗ କରୁଅଛି । ଏହା ଉପରେ ଶିକାର ଓ ବରାଣ୍ଡି । ବର୍ତ୍ତମାନ ତାହା ଭାଙ୍ଗି ଯାଇଅଛି । ନାଟମନ୍ଦିରର ଭିତର ଚଟାଣ ଉପରୁ ବନ୍ଧନା ଶେଷ ପର୍ଯ୍ୟନ୍ତ ଖମ୍ବର ଉଚ୍ଚତା ଫୁ ୯।୯ ଇଞ୍ଚ ଏବଂ ଚାରି ଖମ୍ବ ମଧ୍ୟରେ ବ୍ୟବଧାନ ୧୦ ଫୁଟରୁ ଫୁ ୧୦।୩ ଇଞ୍ଚ ପର୍ଯ୍ୟନ୍ତ ଅଛି । କାନ୍ଥମାନଙ୍କଠାରୁ ଖମ୍ବର ବ୍ୟବଧାନ ଫୁ ୬।୩ ଇଞ୍ଚ । ଖମ୍ବର ଚାରିପାଖର ଆୟତନ ସମାନ । ପ୍ରତ୍ୟେକ ପାଖରେ ଖମ୍ବର ଓସାର ୭ ଫୁଟ ।

ନାଟମନ୍ଦିରର ପ୍ରତ୍ୟେକ ଦ୍ୱାର ସମ୍ମୁଖ ଦୁଇ ପାଖରେ ଦୁଇଟି ଗୋଲାକାର ଖମ୍ବ ଅଛି । ଖମ୍ବର ବ୍ୟାସ ଫୁ ୨।୧ ଇଞ୍ଚ । ଏହା ଦେହରେ ଜଙ୍ଘା, ବରାଣ୍ଡି ପ୍ରଭୃତି ବିଭାଗମାନ ଅଛି । ଜଙ୍ଘାରେ ପାଦ, କୁମ୍ଭ ପ୍ରଭୃତି ପାଞ୍ଚ କାମ ଅଛି ଏବଂ ପ୍ରତ୍ୟେକ କାମରେ ଯଥାନିର୍ଦ୍ଦିଷ୍ଟ କାରୁକାର୍ଯ୍ୟମାନ ଅଛି । ବରାଣ୍ଡିରେ ସ୍ତ୍ରୀ ମୂର୍ତ୍ତିସବୁ ବାଦ୍ୟଯନ୍ତ୍ରମାନ ବଜାଇ ନୃତ୍ୟ ଗୀତ କରୁଅଛନ୍ତି । ଏହା ଉପରେ ଲମ୍ବ ଭାବରେ ଫୁଲ ଓ ଲତାର କାମ । ତଦୂର୍ଦ୍ଧ୍ୱରେ ମାଳା ଓ ଘଣ୍ଟିର କାମ । ଏହି ମାଳା ଉପରେ ଖମ୍ବର ମସ୍ତକ ସମ୍ପୂର୍ଣ୍ଣ ନାହିଁ । ଶ୍ରୀ ବିଷନ୍ ସ୍ୱରୂପ କହନ୍ତି ଯେ, ଖମ୍ବ ମସ୍ତକରେ ବର୍ଗକ୍ଷେତ୍ରାକାରରେ ଅତ୍ୟନ୍ତ ମନୋହର ପଦ୍ମ ଫୁଲର କାମ ଥିଲା । ଖମ୍ବର ଜଙ୍ଘା

ଫୁ ୨।୧୧ ଇଞ୍ଚ ଉଚ୍ଚ, ଜଙ୍ଘାଠାରୁ ମସ୍ତକ ପର୍ଯ୍ୟନ୍ତ ଫୁ ୩।୯ ଇଞ୍ଚ ଏବଂ ମସ୍ତକର ବର୍ତ୍ତମାନ ଥିବା ଅଂଶ ୨ ଫୁଟ ଉଚ୍ଚ ।

ନାଟମନ୍ଦିରର ଦକ୍ଷିଣ-ପଶ୍ଚିମ କୋଣରେ ଭୂମି ଉପରେ ଗୋଟିଏ ପ୍ରକାଣ୍ଡ ପଥର ପଡ଼ି ରହିଛି । ଏଥିରେ ବୃହତ୍ ଆକାରରେ ଗୋଟିଏ ଅତି ସୁନ୍ଦର ପଦ୍ମ ଫୁଲ ଖୋଳା ହୋଇଅଛି । ଫୁଲର ବ୍ୟାସ ୫ ଫୁଟ । ଏଥିରେ ଦୁଇ ପ୍ରସ୍ତ ପାଖୁଡ଼ା ଅଛି । ଶେଷ ପ୍ରସ୍ତରେ ୧୬ଟି ପାଖୁଡ଼ା । ଏହି ପାଖୁଡ଼ା ଦେହରେ ଅପ୍ସରାମାନେ ଗାନ ବାଜଣା କରୁଅଛନ୍ତି । ଭିତର ପ୍ରସ୍ତରେ ୮ ପାଖୁଡ଼ା । ପ୍ରତ୍ୟେକ ପାଖୁଡ଼ାରେ ମଧ୍ୟ ସେହିପରି ଅପ୍ସରାମାନେ ଗାନ ବାଜଣା କରୁଅଛନ୍ତି । ଉଭୟ ପ୍ରସ୍ତରେ ପଦ୍ମପାଖୁଡ଼ା ମଧ୍ୟରେ ମାଳାକାମ ଅଛି । କେନ୍ଦ୍ରସ୍ଥଳରେ ପୁଣି ଗୋଟିଏ କ୍ଷୁଦ୍ର ପଦ୍ମ ଫୁଲର ଦୃଶ୍ୟ ଖୋଳା ଅଛି । ଏଥିରେ ସପ୍ତାଶ୍ୱ ଉପରେ ସୂର୍ଯ୍ୟଦେବ ବସିଅଛନ୍ତି ଏବଂ ଦୁଇ ଦିଗରେ ଦୁଇ ଜଣ ପରିଚାରକ ଅଛନ୍ତି । ସୂର୍ଯ୍ୟଙ୍କର ଦୁଇ ହାତରେ ଦୁଇଟି ପଦ୍ମ ଫୁଲ ଅଛି । ଏହି ପଥରଟି ନାଟମନ୍ଦିରର 'ଗର୍ଭମୁଦ୍ରା' ସ୍ୱରୂପ ଥିଲା । ମନ୍ଦିର ଭାଙ୍ଗିଯିବାରୁ ପଥରଟି ତଳେ ପଡ଼ିଅଛି ।

ନାଟମନ୍ଦିରର ଛାତ ମୁଖଶାଳା ପରି ପୀଢ଼ ଆକାରରେ ଥିଲା । ଶ୍ରୀ ମନମୋହନ ଗାଙ୍ଗୁଲୀ ମନେ କରନ୍ତି ଯେ, ନାଟମନ୍ଦିରର ଚାଳର ତିଆରି ଆଦୌ ଶେଷ ହୋଇ ନ ଥିଲା; ଏଥିମଧ୍ୟରେ କୋଣାର୍କ ପରିତ୍ୟକ୍ତ ହେଲା । ଏହି ମତ ନିତାନ୍ତ ଭ୍ରାନ୍ତିମୂଳକ । କାରଣ ରାଜେନ୍ଦ୍ର ଲାଲ ଦେଖିଲାବେଳକୁ ବଡ଼ ଦେଉଳ ପରି ନାଟମନ୍ଦିର ପଥରରେ ପୋତି ହୋଇ ପଡ଼ିଥିଲା ଏବଂ ତାହା ଉପରେ ନାନା ଗଛପତ୍ର ଜନ୍ମି ଜଙ୍ଗଲ ମଧ୍ୟ ହୋଇଥିଲା । କୋଣାର୍କ ଉଦ୍ଧାର ସମୟରେ ନାଟମନ୍ଦିର ଏହି ପଥର ଗଦା ମଧ୍ୟରୁ ବାହାରିଲା । ସୁତରାଂ ଛାତ ତିଆରି ହୋଇ ନ ଥିଲେ ନାଟମନ୍ଦିର ଉପରକୁ ଏତେ ପଥର କାହୁଁ ଆସନ୍ତା ? ପୁଣି ରାୟସାହେବ ଶ୍ରୀ ପ୍ରସନ୍ନ କୁମାର ପାଲ ଏଲ. ସି. ଇ. କୋଣାର୍କ ଉଦ୍ଧାରରେ କେତେଦିନ ନିଯୁକ୍ତ ଥିଲେ । ସେ ଉତ୍ତର ଓ ଦକ୍ଷିଣ-ପୂର୍ବ ଦିଗରେ ଛାତର କେତେକ ଅଂଶ ଦେଖିଥିଲେ ବୋଲି ଶ୍ରୀ ମନମୋହନ ଗାଙ୍ଗୁଲୀ ନିଜେ ମଧ୍ୟ କହନ୍ତି * । ଏହା ବ୍ୟତୀତ ନାଟମନ୍ଦିର ଦକ୍ଷିଣ-ପଶ୍ଚିମ ପାଖରେ ଯେଉଁ ପଦ୍ମ ଆକାରରେ 'ଗର୍ଭମୁଦ୍ରା' ପଥରଟି ପଡ଼ିଛି, ତାହା ପ୍ରମାଣ କରୁଅଛି ଯେ, ଛାତ ଶେଷ ହୋଇ ସେହି ପଥର ମୁଦ ପଡ଼ିଥିଲା । ମନ୍ଦିର ଭାଙ୍ଗିଯିବାରୁ ତାହା ବର୍ତ୍ତମାନ ତଳେ ପଡ଼ି ରହିଛି ।

## ରାମଚଣ୍ଡୀ ମନ୍ଦିର

କୋଣାର୍କର ଉଦ୍ଧାର ସମୟରେ ବଡ଼ ଦେଉଳର ଦକ୍ଷିଣ-ପଶ୍ଚିମ କୋଣରେ ଗୋଟିଏ ଅତି ମନୋହର ମନ୍ଦିରର ଭଗ୍ନାବଶେଷ ଦେଖାଗଲା । ଶ୍ରୀ ବିଷନ୍ ସ୍ୱରୂପ ଏହାକୁ 'ମାୟାଦେବୀ ମନ୍ଦିର' ବୋଲି କହିଅଛନ୍ତି । ଇତିପୂର୍ବେ ଦ୍ୱିତୀୟ ଅଧ୍ୟାୟରେ ଗୋଟିଏ

* Orissa and Her Remains P.P. 472

କିମ୍ବଦନ୍ତୀର ଉଦ୍ଧାର କରି ମୁଁ କହିଅଛି ଯେ, ବର୍ତ୍ତମାନ ଲିଆଖିଆ ମୁହାଣରେ ଯେଉଁ ରାମଚଣ୍ଡୀ ପ୍ରତିଷ୍ଠିତ ଅଛନ୍ତି, ପୂର୍ବେ ସେ କୋଣାର୍କର ଅଧିଷ୍ଠାତ୍ରୀ ଦେବତା ସ୍ୱରୂପ ଏହି ମନ୍ଦିର ମଧ୍ୟରେ ଥିଲେ । ମୁଁ ଦୁଇ ଥର କୋଣାର୍କ ଯାଇ ନାନା ସ୍ଥାନୀୟ ପ୍ରବୀଣ ବ୍ୟକ୍ତି ଓ ସେବକମାନଙ୍କୁ ପଚାରିଅଛି; କିନ୍ତୁ କେହି ଏହା ମାୟାଦେବୀଙ୍କ ମନ୍ଦିର ଥିବାର କହିଲେ ନାହିଁ । ପରନ୍ତୁ ସେମାନେ ମାୟାଦେବୀଙ୍କ ନାମ ପର୍ଯ୍ୟନ୍ତ ଶୁଣି ନ ଥିଲା ପରି ମଧ ଉତ୍ତର ଦେଲେ । ଯେଉଁମାନେ କୋଣାର୍କ ମନ୍ଦିରର ଆରମ୍ଭଠାରୁ ଶେଷ ପର୍ଯ୍ୟନ୍ତ – ଶିବାଇ ସାନ୍ତରାଙ୍କଠାରୁ କଳାପାହାଡ଼ ପର୍ଯ୍ୟନ୍ତ – ଏତେ କଥା ଏତେ ପରିଷ୍କାର ଭାବରେ ମନେ ରଖିଅଛନ୍ତି; ସେମାନେ କୋଣାର୍କର ଅଧିଷ୍ଠାତ୍ରୀ ଦେବତା ମାୟାଦେବୀଙ୍କୁ ଏକାବେଳକେ ପାଶୋରି ଦେଇଥିବା ଅସମ୍ଭବ ବୋଧହୁଏ ।

'ଶିବାଇ ସାନ୍ତରା'ଙ୍କର ଦେଉଳ ତୋଳା ସମ୍ବନ୍ଧରେ ଯେଉଁ ଉପାଖ୍ୟାନ ପ୍ରଚଳିତ ଅଛି (ପରେ ୧୩ଶ ଅଧ୍ୟାୟ) ତହିଁରୁ ଜଣାଯାଏ ଯେ, ଗଣ୍ଡରେ ପଥର ପକାଇ ପକାଇ ନିରସ୍ତ ହେଲା ପରେ, ସେ ରାମଚଣ୍ଡୀଙ୍କ ନିକଟରେ 'ଧାରଣା' ପଡ଼ିଥିଲେ । ସୁତରାଂ ରାମଚଣ୍ଡୀ ଯେ କୋଣାର୍କର ଅଧିଷ୍ଠାତ୍ରୀ ଦେବତା ଥିଲେ, ସନ୍ଦେହ ନାହିଁ । ଏହି ମନ୍ଦିରରେ ଯଦି ମାୟାଦେବୀ ଅଧିଷ୍ଠାତ୍ରୀ ଦେବତା ସ୍ୱରୂପ ଥାଆନ୍ତେ, ତାହାହେଲେ 'ଶିବାଇ ସାନ୍ତରା' ଏତେ ଦୂର ଲିଆଖିଆ ପର୍ଯ୍ୟନ୍ତ ଯାଇ ରାମଚଣ୍ଡୀଙ୍କ ପାଖରେ 'ଧାରଣା' ପଡ଼ି ନ ଥାନ୍ତେ ।

ସମସ୍ତେ ଜାଣନ୍ତି, କୋଣାର୍କ ଦେଉଳ ଅପବିତ୍ର ହୋଇ ଭାଙ୍ଗିଯିବା ହେତୁରୁ ସୂର୍ଯ୍ୟନାରାୟଣ ବିଗ୍ରହ ପୁରୀ ମନ୍ଦିରର ବେଢ଼ା ମଧ୍ୟରେ ଇନ୍ଦ୍ରଙ୍କ ଦେଉଳରେ ସ୍ଥାପିତ ହୋଇ ଆଜି ପର୍ଯ୍ୟନ୍ତ ପୂଜା ପାଉଅଛନ୍ତି । ସୂର୍ଯ୍ୟନାରାୟଣ କ୍ଷେତ୍ରର ଦେବତାମାନଙ୍କ ମଧ୍ୟରେ ଯେପରି, ମାୟାଦେବୀ ଦେବୀମାନଙ୍କ ମଧ୍ୟରେ ସେହିପରି ଶ୍ରେଷ୍ଠ ଥିଲେ । ସୁତରାଂ ଦେଉଳ ଭାଙ୍ଗିଗଲେ ସୁଦ୍ଧା, ସୂର୍ଯ୍ୟନାରାୟଣଙ୍କ ପରି ମାୟାଦେବୀ ଅନ୍ୟ ସ୍ଥାନରେ ପୂଜା ପାଉଥାନ୍ତେ । ଦେବପ୍ରାଣ ହିନ୍ଦୁ କଦାପି ଆପଣାର ଦେବଦେବୀଙ୍କୁ ଅପୂଜ୍ୟ ଅବସ୍ଥାରେ ପରିତ୍ୟାଗ କରନ୍ତା ନାହିଁ । ବିଶେଷତଃ କୋଣାର୍କ କ୍ଷେତ୍ରରେ ଅଧିଷ୍ଠାତ୍ରୀ ଦେବୀଙ୍କୁ ଏପରି ପରିତ୍ୟାଗ କରି ଶେଷରେ ସ୍ମୃତିରାଜ୍ୟରୁ ଏକାବେଳକେ ଦୂର କରିଥିବା ନିତାନ୍ତ ଅସମ୍ଭବ ବୋଧହୁଏ । ମାୟାଦେବୀ ସ୍ୱତନ୍ତ୍ର ଭାବରେ ଅନ୍ୟ କୌଣସିଠାରେ ପ୍ରତିଷ୍ଠିତ ହୋଇ ପୂଜା ପାଉ ନ ଥିବା ସ୍ଥଳେ କୋଣାର୍କ ବେଢ଼ା ମଧ୍ୟରେ ଅଧିଷ୍ଠାତ୍ରୀ ଦେବୀ ସ୍ୱରୂପ ଥିବା ଅସମ୍ଭବ ବୋଧହୁଏ । ବରଂ ବିଶ୍ୱାସ କରାଯାଏ ଯେ, ପୁରୀ ବଡ଼ ଦେଉଳର ଦକ୍ଷିଣ-ପଶ୍ଚିମ କୋଣର ମନ୍ଦିର ମଧ୍ୟରେ ଯେପରି ମହାମାୟା ବିମଳା ଅଧିଷ୍ଠିତ ଅଛନ୍ତି, କୋଣାର୍କ ବଡ଼ ଦେଉଳରେ ଦକ୍ଷିଣ-ପଶ୍ଚିମ କୋଣରେ ସେହିପରି ମାୟାମୟୀ ରାମଚଣ୍ଡୀ ଅଧିଷ୍ଠାତ୍ରୀ ଦେବୀ ରୂପରେ ପୂଜା ପାଉଥିଲେ । ଶ୍ରୀଯୁକ୍ତ ମନମୋହନ ଗାଙ୍ଗୁଲୀ ଯଥାର୍ଥରେ ଏହାକୁ 'ରାମଚଣ୍ଡୀ ମନ୍ଦିର' ବୋଲି କହିଅଛନ୍ତି ।

କୋଣାର୍କ ମନ୍ଦିର ପରି ରାମଚଣ୍ଡୀଙ୍କ ମନ୍ଦିରରେ ଗୋଟିଏ ଦେଉଳ ବା ବିମାନ ଏବଂ ତାହା ସମ୍ମୁଖରେ ଗୋଟିଏ ମୁଖଶାଳା ବା ଜଗମୋହନ ଥିଲା । ଏହି ସମୁଦାୟ ମନ୍ଦିରର କାମ କ୍ଷୁଦ୍ର ଆକୃତିର ହେଲେ ସୁଦ୍ଧା କୋଣାର୍କ ମନ୍ଦିର କାମ ସଙ୍ଗେ ପ୍ରାୟ ସମାନ ଏବଂ ତାହା ପରି ଆଲୋକ ଓ ଛାୟାର କ୍ରୀଡ଼ା, ସାମ୍ୟ ଓ ବୈଷମ୍ୟ ନୀତି ଅତି ସୁନ୍ଦର ଭାବରେ ଏଥିରେ ଦେଖାଯାଏ । ଦେଉଳ ଓ ମୁଖଶାଳା ଉଭୟ ପଞ୍ଚରଥୀ । ପ୍ରଥମଟି ରେଖ ଦେଉଳ ଏବଂ ଦ୍ୱିତୀୟଟି ପୀଢ଼ ଦେଉଳ ଥିଲା ।

ଗୋଟିଏ ଅଳ୍ପ ଉଚ୍ଚ ପୀଠ ଉପରେ ଦେଉଳ ଓ ମୁଖଶାଳା ଉଭୟ ଅବସ୍ଥିତ । ପୀଠର ଉଚ୍ଚତା ୩ ଫୁଟ ୩ ଇଞ୍ଚ ଏବଂ ତାହା ଦେହରେ ତିନୋଟି ମାତ୍ର କାମ; ଯଥା :- ପାଦ, କଣି ଓ ବସନ୍ତ । ପାଦର ସମ୍ମୁଖରେ ଲତା ଓ ଉପରେ ମାରଣୀ ଏବଂ ପଦ୍ମ ପାଖୁଡ଼ାର କାମ । କଣିରେ କୌଣସି କାମ ନାହିଁ ଏବଂ ବସନ୍ତରେ ସୁସଜ୍ଜିତ ସୈନିକମାନଙ୍କର ଦୃଶ୍ୟ ଅଛି ।

ପୀଠ ଉପରେ ବାରଣ୍ଡା ପ୍ରାୟ ନାହିଁ । ପ୍ରାନ୍ତରୁ କେବଳ ୯ ଇଞ୍ଚରୁ ଫୁ ୧୩ ଇଞ୍ଚ ପର୍ଯ୍ୟନ୍ତ ଛାଡ଼ି ଦେଉଳ ଓ ମୁଖଶାଳାର ବାଡ଼ ଆରମ୍ଭ ହୋଇଅଛି । ଉଭୟର ବାଡ଼ ଦେହରେ ଜଙ୍ଘା, ବରାଣ୍ଡି, ବନ୍ଧନା ପ୍ରଭୃତି ବିଭାଗମାନ ଅଛି । ଦେଉଳ ଦେହର ଏହି ବିଭାଗମାନଙ୍କ ଅପେକ୍ଷା ମୁଖଶାଳା ଦେହର ବିଭାଗମାନ ଅଳ୍ପ ଉଚ୍ଚ । ଦେଉଳ ଦେହରେ ଜଙ୍ଘାର ଉଚ୍ଚତା ଫୁ ୬।୯ ଇଞ୍ଚ ଓ ମୁଖଶାଳାରେ ୫ ଫୁଟ । ସୁତରାଂ ଦୁହିଁଙ୍କର ବ୍ୟବଧାନ ସ୍ଥଳରେ ଲମ୍ବାକାରରେ ଲତା ପ୍ରଭୃତି କାମ ଅଛି । ଜଙ୍ଘାରେ ବିଧିମତେ ପାଦ, କୁମ୍ଭ, କଣ, ପଟା ଓ ବସନ୍ତ ଅଛି ଏବଂ ପ୍ରତ୍ୟେକେ ଯଥାବିହିତ କାରୁକାର୍ଯ୍ୟରେ ମଣ୍ଡିତ । ଏହି ଜଙ୍ଘା ଦେହରେ ଲମ୍ବ ଭାବରେ ଗୋଲାକାର ଓ ବହୁଭୁଜ ବିଶିଷ୍ଟ ଖମ୍ବ ଓ କ୍ଷୁଦ୍ର କ୍ଷୁଦ୍ର ପୀଢ଼ ଦେଉଳର କାମ ଅଛି । ପ୍ରତ୍ୟେକ ପୀଢ଼ ଦେଉଳର ଦୁଇ ପାଖରେ ପ୍ରଥମରେ ଗୋଲାକାର ଖମ୍ବ ଏବଂ ତତ୍ପରେ ଦୁଇ ଭୁଜ ଖମ୍ବ । ଗୋଲାକାର ଖମ୍ବମାନଙ୍କରେ ନାଗକନ୍ୟାଙ୍କର ଦୃଶ୍ୟ ଏବଂ ବହୁଭୁଜ ଖମ୍ବମାନଙ୍କର ପ୍ରତ୍ୟେକ ପାଖରେ ମାଳା କାମ ମଧ୍ୟରେ ଫୁଲ, ଲତା ପ୍ରଭୃତିର କାମ ଅଛି । ନାଗସ୍ତମ୍ଭର ତଳଭାଗରେ ଜଙ୍ଘାର କଣି ଓ ବସନ୍ତ ଦେହରେ, କ୍ଷୁଦ୍ର କ୍ଷୁଦ୍ର ଗଜସିଂହ ମୂର୍ତ୍ତି ସ୍ତମ୍ଭ ଦେହରୁ ୬ ଇଞ୍ଚ ବାହାରିଅଛି । ପୀଢ଼ ଦେଉଳମାନଙ୍କର ବାଡ଼ ଦେହରେ ନାନା ଦେବଦେବୀ ଓ ସଖୀ ପ୍ରଭୃତିଙ୍କର ମୂର୍ତ୍ତି ଅଛି । ଦେଉଳର ପଶ୍ଚିମ ପାଖରେ ଗୋଟିଏ ପୀଢ଼ ଦେଉଳ ବାଡ଼ରେ ଗୋଟିଏ ଉଲଗ୍ନ ଷଡ୍‌ଭୁଜ ଶିବ ମୂର୍ତ୍ତି ଠିଆ ହୋଇଥିବାର ଦେଖାଯାନ୍ତି ।

ଜଙ୍ଘାର ଉପର ବରାଣ୍ଡି ବା ଶାକର ଦେହରେ ଓଲଟା ଗଜସିଂହ ରୂପ ଏବଂ ସ୍ଥାନେ ସ୍ଥାନେ କେତେକ ସ୍ତ୍ରୀ, କେତେକ ଗ୍ରହ ଓ ଅନ୍ୟାନ୍ୟ ଦେବଦେବୀ ମୂର୍ତ୍ତି ଅଛି । ଏହି ବରାଣ୍ଡିଠାରୁ ଦେଉଳ ଓ ମୁଖଶାଳା ଉଭୟ ଭାଙ୍ଗି ଯାଇଅଛି । ମୁଖଶାଳାରେ କେବଳ ଏହାର କେତେକ ଅଂଶ ଦେଖାଯାଏ ଏବଂ ରାହା ପାଗରେ ପାର୍ଶ୍ୱଦେବତାମାନଙ୍କ ବ୍ୟତୀତ ଦେଉଳର ଅନ୍ୟାନ୍ୟ କୌଣସି ଅଂଶ ଆଉ ଦେଖାଯାଏ ନାହିଁ ।

ଦେଉଳର ତିନି ଦିଗର ପାର୍ଶ୍ୱ ଦେବତାଙ୍କର ଗଠନ କୋଣାର୍କ ବଡ଼ ଦେଉଳର ପାର୍ଶ୍ୱ ଦେବତାଙ୍କ ସଙ୍ଗେ ପ୍ରାୟ ସମାନ; କେବଳ ଆକାରରେ କ୍ଷୁଦ୍ରତର । କେବଳ ପଶ୍ଚିମ ଦିଗ ମୂର୍ତ୍ତିର ପଥର ଭିନ୍ନ ସମସ୍ତ ପାର୍ଶ୍ୱ ମୂର୍ତ୍ତି କଳା ମୁଗୁନି ପଥରରେ ତିଆରି । କୋଣାର୍କ ବଡ଼ ଦେଉଳ ପରି ଏହି ମନ୍ଦିରର ଉତ୍ତର ଦିଗର ସୂର୍ଯ୍ୟ ମୂର୍ତ୍ତି ଗୋଟିଏ ମନୋହର ଘୋଡ଼ା ଉପରେ ବସିଅଛି । ମସ୍ତକରେ ମୁକୁଟ, କର୍ଣ୍ଣରେ କୁଣ୍ଡଳ ଏବଂ ଗଳାରେ ହାର ଅଛି । ଏ ପ୍ରତ୍ୟେକର କାରୁକାର୍ଯ୍ୟ ଅତି ସୂକ୍ଷ୍ମ ଓ ମନୋହର । ମୂର୍ତ୍ତିଟିର ହାତ ଭାଙ୍ଗି ଯାଇଅଛି । ପାଦ ଘୋଡ଼ା ଉପରୁ ଲମ୍ବି ଦୁଇଟି ପଦ୍ମ ଉପରେ ରଖା ହୋଇଅଛି । ଦୁଇ ପାଖରେ ଦୁଇଟି ସୈନିକ ମୂର୍ତ୍ତି ଏକ ହାତରେ ଢାଲ ଓ ଅପର ହାତରେ ତରବାରୀ ଧରି ଠିଆ ରହିଅଛନ୍ତି । ସୂର୍ଯ୍ୟମୂର୍ତ୍ତିର ମସ୍ତକ ଉପରେ ତ୍ରିଭଙ୍ଗୀ ତୋରଣ ଏବଂ ଦୁଇ ପାଖରେ ଉଡ଼ନ୍ତା ପରୀ ମୂର୍ତ୍ତି । ତୋରଣ ମସ୍ତକ ଉପରେ କୀର୍ତ୍ତିମୁଖର ଦୃଶ୍ୟ । ସୂର୍ଯ୍ୟ ମୂର୍ତ୍ତି ୧ ଫୁଟ ଉଚ୍ଚ ପଦ୍ମପୃଷ୍ଠ ଉପରେ ତିଆରି ହୋଇଛି । ଏ ସମସ୍ତ କାମ ଗୋଟିଏ କଳା ମୁଗୁନି ପଥର ଦେହରେ କରାଯାଇଅଛି । ପଥର ଖଣ୍ଡିର ଆୟତନ ଫୁ ୬।୨ ଇଞ୍ଚ ଲମ୍ବା ଓ ୩ ଫୁଟ ଚଉଡ଼ା । ସୂର୍ଯ୍ୟ ମୂର୍ତ୍ତି ୫ ଫୁଟ ଉଚ୍ଚ ।

ଦକ୍ଷିଣ ଦିଗ ସୂର୍ଯ୍ୟଙ୍କର ହାତ, ମୁଣ୍ଡ ଏବଂ ତୋରଣ ଭାଙ୍ଗିଯାଇଛି । ତେବେ କୋଣାର୍କ ବଡ଼ ଦେଉଳର ଦକ୍ଷିଣ ମୂର୍ତ୍ତି ପରି ଏହି ମୂର୍ତ୍ତି ତିଆର ହୋଇଥିଲା, ସନ୍ଦେହ ନାହିଁ (ପଞ୍ଚମ ଅଧ୍ୟାୟ) ।

ପଶ୍ଚିମ ଦିଗରେ ସୂର୍ଯ୍ୟନାରାୟଣ ମୂର୍ତ୍ତି ବର୍ତ୍ତମାନ ନାହିଁ । ବୋଧହୁଏ ମନ୍ଦିର ଭାଙ୍ଗିଯିବା ସମୟରେ କେହି ଏହାକୁ ପୂଜା କରିବା ଉଦ୍ଦେଶ୍ୟରେ ନାଟମନ୍ଦିର ମଧ୍ୟରେ ଖମ୍ବକୁ ଆଉଜାଇ ରଖିଥିଲେ । ନାଟମନ୍ଦିରର ଉଦ୍ଧାର ସମୟରେ ମୂର୍ତ୍ତିଟି ଦେଖା ଯାଇଥିଲା । ପରେ ଅଷ୍ଟମ ଅଧ୍ୟାୟରେ ଏହାର ସବିଶେଷ ବର୍ଣ୍ଣନା କରାଯିବ ।

ମୁଖଶାଳାର ପୂର୍ବଦ୍ୱାର ସମ୍ମୁଖ ଦୁଇ ଦିଗରେ ଦୁଇଟି ଅତି ସୁନ୍ଦର ଖମ୍ବ ଥିଲା । ବର୍ତ୍ତମାନ ଦକ୍ଷିଣ ପାଖ ଖମ୍ବଟି ତଳ ବରାଣ୍ଡିଠାରୁ ଭାଙ୍ଗି ଯାଇଛି ଏବଂ ଉତ୍ତର ପାଖ ଖମ୍ବର ପ୍ରଥମ ପ୍ରସ୍ତ ପଥର ବ୍ୟତୀତ ଆଉ କିଛି ନାହିଁ । ଦକ୍ଷିଣ ଖମ୍ବରୁ ଜଣାଯାଏ ଯେ, ପ୍ରତ୍ୟେକ ଖମ୍ବରେ ଜଘା, ବରାଣ୍ଡି, ବନ୍ଧନା ପ୍ରଭୃତି ବିଭାଗମାନ ଥିଲା । ଏହି ଦୁଇ ଖମ୍ବ ଉପରେ ଦୁଇ ଦୁଇ ଫୁଟ ମୋଟାରେ ଗୋଟିଏ ନବଗ୍ରହ ପାଟ ଥିବାର ଶ୍ରୀ ବିଷନ୍ ସ୍ୱରୂପ କହନ୍ତି । ଏହି ଖମ୍ବ ଓ ପଟା ମୁଖଶାଳା ଦେହରୁ ୯ ଫୁଟ ବାହାରକୁ ବାହାରି ଥିବାର ଜଣାଯାଏ । ମୁଖଶାଳାର ପୂର୍ବ ଦ୍ୱାରବନ୍ଧ ଫୁ ୨।୧ ଇଞ୍ଚ ଓସାରରେ କଳା ମୁଗୁନି ପଥରରେ ତିଆରି ହୋଇଥିଲା; ବର୍ତ୍ତମାନ ଏହା ଦେଖାଯାଏ ନାହିଁ । କେବଳ ଫୁ ୨।୧ ଇଞ୍ଚ ଲମ୍ବା ଓ ଫୁ ୧।୩ ଇଞ୍ଚ ଚଉଡ଼ାରେ ଖଣ୍ଡେ ପଥର ଅଛି । ତହିଁରୁ ଜଣାଯାଏ ଯେ, ପ୍ରଥମ ପଂକ୍ତିରେ ସାପ କାମ, ଦ୍ୱିତୀୟରେ ଗେଲବାଈ ବା ମନୁଷ୍ୟକୌତୁକୀ କାମ (ଅର୍ଥାତ୍ ସାପ ଗତି ଆକାରରେ ଗୋଟିଏ ଲତା

ଏବଂ ପ୍ରତ୍ୟେକ ଅର୍ଦ୍ଧ ପରିଧି ଦେହରେ ଗୋଟିଏ ଲେଖାଏଁ ଅପ୍‌ସରୀ ନାନା ଭଙ୍ଗୀରେ କ୍ରୀଡ଼ା କରୁଥାନ୍ତି) । ତପ୍‌ରେ ଏକ ଶ୍ରେଣୀ ସ୍ତ୍ରୀ ମୂର୍ତ୍ତି ଥିଲା । ଏହିପରି ଦ୍ୱାରବନ୍ଧର ଦୁଇ ପାଖରେ ତିନି ପଂକ୍ତି କାମ ଥିଲା । ଏହା ଉପରେ ଓ ତଳେ କି କି କାମ ଥିଲା, ତାହା ବର୍ତ୍ତମାନ ଜାଣିବାର ଉପାୟ ନାହିଁ । ଏହି ପୂର୍ବଦ୍ୱାର ସମ୍ମୁଖ ପା୦ ଉପରେ ୧୩ ଫୁଟ ଲମ୍ବା ଓ ୨୩ ଫୁଟ ଚଉଡ଼ାରେ ଗୋଟିଏ ପିଣ୍ଡା ଅଛି । ପିଣ୍ଡା ଦେହରୁ ପୂର୍ବଦ୍ୱାର ସମ୍ମୁଖରେ ଗୋଟିଏ ପାହାଚ ତଳକୁ ଅଛି ।

ମୁଖଶାଳା ଭିତର ଚଟାଣ ବର୍ଗକ୍ଷେତ୍ରାକାର; ଲମ୍ବ ଓ ଓସାର ପ୍ରତ୍ୟେକେ ଫୁ ୨୮।୩ ଇଞ୍ଚ । ଏହା ଦେହରେ ପୂର୍ବକୁ କେବଳ ଗୋଟିଏ ଦ୍ୱାର । ଉତ୍ତର ଓ ଦକ୍ଷିଣକୁ ଦ୍ୱାର ପରିବର୍ତ୍ତରେ ଚଟାଣରୁ ୫ ଫୁଟ ଉଚ୍ଚରେ ଦୁଇଟି ପଞ୍ଜର ଅଛି । ପଞ୍ଜରରେ ୨ ଇଞ୍ଚ ବ୍ୟବଧାନରେ ପଥର ପଟୀ ସ୍ୱରୂପ ବସିଅଛି । ଏହି ପଥର ପଟୀର ବାହାର ପାଖରେ ସ୍ତ୍ରୀ ରୂପମାନ ଅଛି । ପଞ୍ଜର ଦୁଇଟି ପୂର୍ଣ୍ଣ ଘନକ୍ଷେତ୍ର ଆକାରରେ ଗଢ଼ା । ଲମ୍ବ, ଓସାର ଓ ଉଚ୍ଚତା ପ୍ରତ୍ୟେକେ ଫୁ ୬।୪ ଇଞ୍ଚ । କୋଣାର୍କ କିମ୍ବା ଅନ୍ୟତ୍ର କୌଣସି ମୁଖଶାଳା କାନ୍ଥର ଭିତର ପାଖରେ କାମ ନାହିଁ; କିନ୍ତୁ ରାମଚଣ୍ଡୀ ମନ୍ଦିରର ମୁଖଶାଳା ଭିତରେ କାମ ଦେଖାଯାଏ । କାନ୍ଥ ଦେହରେ ସମାନ ସମାନ ବ୍ୟବଧାନରେ କେତେକ ଖମ୍ବ ଅଛି । ଏହି ଖମ୍ବର ଜଙ୍ଘା, ବରାଣ୍ଡି ପ୍ରଭୃତି ବିଭାଗ ଯଥାନିର୍ଦ୍ଦିଷ୍ଟ କାରୁକାର୍ଯ୍ୟରେ ସୁନ୍ଦର ଭାବରେ ଭୂଷିତ ହୋଇଅଛି । ବରାଣ୍ଡିର ସ୍ତ୍ରୀ ମୂର୍ତ୍ତିଗୁଡ଼ିକ ଅତି ମନୋହର । ପ୍ରତ୍ୟେକ ପାଖ କାନ୍ଥରେ ଚାରୋଟି ଲେଖାଏଁ ଏହିପରି ସୁନ୍ଦର ଖମ୍ବ । ଖମ୍ବ ଦୁଇ ଫୁଟ ଓସାରରେ କାନ୍ଥ ଦେହରୁ ୫ ଇଞ୍ଚ ବାହାରିଅଛି ।

ଚାଳ ପାଖରେ କାନ୍ଥ ଅଷ୍ଟଭୁଜାକାର ହୋଇଅଛି; ଅର୍ଥାତ୍ ପ୍ରତ୍ୟେକ କୋଣରେ କର୍ଣ୍ଣ ଭାବରେ ୧୫ ଇଞ୍ଚ ମୋଟା ପଥର ଖଣ୍ଡେ ଲେଖାଏଁ ଦୁଇ ପାଖ କାନ୍ଥ ଉପରେ ରଖାଅଛି । ଏହି ପଥରର ସମ୍ମୁଖ ଭାଗ ହାତୀ, ଘୋଡ଼ା ଓ ଯୁଦ୍ଧ ଦୃଶ୍ୟରେ ଭୂଷିତ ହୋଇଅଛି । ଏହି ପଥର ଖଣ୍ଡମାନ ଲୁହା କଡ଼ି ଉପରେ ରଖା ହୋଇଥିଲା । ବର୍ତ୍ତମାନ କଡ଼ି ଆଉ ନାହିଁ । ଘର ଚଟାଣ ଉପରୁ ଫୁ ୭।୬ ଇଞ୍ଚ ଉଚ୍ଚରେ ଚାଳ ଆରମ୍ଭ ହୋଇଥିଲା । ଚାଳ ଅବଶ୍ୟ ପୀଢ଼ାକାର ଥିଲା ।

ମୁଖଶାଳା ଓ ଦେଉଳ ମଧ୍ୟରେ ଦ୍ୱାର ଥିଲା । ଶ୍ରୀ ବିଷଵ୍ ସ୍ୱରୂପଙ୍କ ମାପ ଅନୁସାରେ ଦ୍ୱାରର ଚଉଡ଼ା ୪ ଫୁଟ, ଉଚ୍ଚ ଫୁ ୮।୫ ଇଞ୍ଚ । ଦ୍ୱାରର ଦୁଇ ପାଖରେ ନାଗକନ୍ୟା ଓ ଦ୍ୱାରପାଳ ପ୍ରଭୃତି ଥିଲେ । ଏ ସବୁ ବହୁତ ଭାଙ୍ଗିଗଲାଣି । ଦ୍ୱାର ଉପରେ ନବଗ୍ରହ ପାଟ ଥିଲା । ବର୍ତ୍ତମାନ ତାହା ଭାଙ୍ଗି ପଡ଼ିଛି । ଗ୍ରହ ମୂର୍ତ୍ତିଗୁଡ଼ିକ ପାଣି ପବନ ଖାଇ ମଳିନ ହୋଇଗଲାଣି । ଦ୍ୱାରର ତଳେ କଳା ମୁଗୁନି ପଥରର କାମ । ବାହାରୁ ମୁଖଶାଳା ଭିତର ଦେଇ ଦେଖିଲେ, ଏହା ଗୋଟିଏ ସୁନ୍ଦର ପଦ୍ମ ଫୁଲ ପରି ଦେଖାଯାଏ । ଏହା ଅର୍ଦ୍ଧ ପଦ୍ମାକାର ।

ବଡ଼ଦେଉଳର ଭିତର ପାଖରେ କୌଣସି କାମ ନାହିଁ । କେବଳ ଏକ ଫୁଟ ଗଭୀର ୩ ଫୁ ୬।୬ ଇଞ୍ଚ ଚଉଡ଼ାରେ କାନ୍ଥ ଦେହରେ ଗୋଟିଏ ଭାଙ୍ଗ ବା ବରାଣ୍ଡି ଅଛି । ପଶ୍ଚିମ କାନ୍ଥର ଭାଙ୍ଗ କେବଳ ୩ ଫୁଟ ଚଉଡ଼ା ।

ସିଂହାସନଟିଏ ବଡ଼ଦେଉଳ ଭିତରେ ଥିଲା । ବର୍ତ୍ତମାନ ପ୍ରାୟ ଦେଖାଯାଏ ନାହିଁ । ଏହାର ମାପ ଶ୍ରୀ ବିଷନ୍ ସ୍ୱରୂପଙ୍କ ମାପ ଅନୁସାରେ ୬ ଫୁଟ × ୬ ଫୁଟ ୬ ଇଞ୍ଚ ।

*******

# ଅଷ୍ଟମ ଅଧ୍ୟାୟ

## ମନ୍ଦିର-ବର୍ଣ୍ଣନା

### ବେଢ଼ା

କୋଣାର୍କ ବେଢ଼ା ମଧ୍ୟରେ ପୂର୍ବ ଅଧ୍ୟାୟମାନଙ୍କରେ ବର୍ଣ୍ଣିତ ମନ୍ଦିରମାନଙ୍କ ବ୍ୟତୀତ ଆଉ କେତେଗୁଡ଼ିଏ ମନ୍ଦିରର ପୀଠ ବର୍ତ୍ତମାନ ଦେଖାଯାଏ । ଏହି ପୀଠମାନଙ୍କ ମଧ୍ୟରୁ କେତେକଙ୍କ ଉପରେ ମନ୍ଦିର ନିର୍ମିତ ଥିଲା ଏବଂ କେତେକ ମଧ୍ୟ ସେହିପରି ଥାଇ ସ୍ନାନବେଦୀ ପ୍ରଭୃତିର କାର୍ଯ୍ୟ କରୁଥିଲା । ଏହି ସମସ୍ତର ପରିଚୟ ପାଇବା ବର୍ତ୍ତମାନ ଅସାଧ୍ୟ । ମୁଖଶାଳାର ପୂର୍ବ ପାହାଚ ଉତ୍ତରରେ ଯେଉଁ ପୀଠ ଅଛି, ତାହାର ଲମ୍ୱା ୯୦ ଫୁଟ ଓ ଚଉଡ଼ା ୨୭ ଫୁଟ । ୧୯୧୫ ଖ୍ରୀଷ୍ଟାବ୍ଦରେ କୋଣାର୍କ ଭ୍ରମଣ ସମୟରେ ଏହି ପୀଠ ଉପରେ କେତେଗୁଡ଼ିଏ କଳା ମୁଗୁନି ପଥରର ମୂର୍ତ୍ତି ଥିବା ଦେଖାଯାଇଥିଲା । ବର୍ତ୍ତମାନ ତାହାସବୁ ଗୋଟିଏ ନୂତନ ଗୃହ ମଧ୍ୟରେ ରଖାଯାଇଅଛି । ଉକ୍ତ ପୀଠ ଉପରେ ବର୍ତ୍ତମାନ କେବଳ କନ୍ଧା ପଥରର କେତେକ କାମ ରହିଅଛି । ଏହି ପୀଠ ଓ ନାଟମନ୍ଦିର ମଧ୍ୟରେ ଗୋଟିଏ ବର୍ଗକ୍ଷେତ୍ରାକାର ପୀଠ ଅଛି । ଏହାର ଲମ୍ୱ ଓ ଓସାର ପ୍ରତ୍ୟେକ ୧୭ ଫୁଟ । ଏହି ଦ୍ୱିତୀୟ ପୀଠ ଓ ନାଟମନ୍ଦିର ମଧ୍ୟରେ ଗୋଟିଏ ପୁରାତନ ବଟବୃକ୍ଷ ଅଛି । ଏହି ବୃକ୍ଷ ତଳେ ଗୋଟିଏ ପୀଠ ଥିଲା; ବର୍ତ୍ତମାନ ତାହାର ଅବଶେଷ ମାତ୍ର ଦେଖାଯାଏ । ନାଟମନ୍ଦିରର ଦକ୍ଷିଣ ପାହାଚ ନିକଟରେ ଗୋଟିଏ ବର୍ଗକ୍ଷେତ୍ରାକାର ପୀଠ ଅଛି । ଏହା ଅପେକ୍ଷା କ୍ଷୁଦ୍ରତର ଆଉ ଗୋଟିଏ ବର୍ଗାକ୍ଷେତ୍ରାକାର ପୀଠ ମୁଖଶାଳା ଓ ନାଟମନ୍ଦିର ମଧ୍ୟରେ ଦକ୍ଷିଣ ପାଖରେ ଦେଖାଯାଏ । ଏହା ସେହି କାଳର ଇଟାରେ ତିଆରି ହୋଇଥିଲା । ଏହି ପୀଠର ଦକ୍ଷିଣକୁ ଆଉ ଗୋଟିଏ ଆୟତାକାର ପୀଠ ଅଛି । ଏହି ଶେଷ ପୀଠର ଦକ୍ଷିଣ-ପୂର୍ବରେ ଗୋଟିଏ ବୃହତ୍ ପୀଠ ଅଛି । ଏହି ପୀଠ ଉପରେ ଖମ୍ୱ ବସି ଚାଳ ତିଆରି ହୋଇଥିଲା । ବର୍ତ୍ତମାନ ସେହି ଖମ୍ୱମାନଙ୍କ ମଧ୍ୟରୁ କେତେକ ପୀଠ ଉପରେ ଠିଆ ହୋଇ ରହିଥିବାର ଦେଖାଯାଏ । ମୁଁ ବହୁତ ଲୋକଙ୍କୁ ପଚାରିଲି; କିନ୍ତୁ ଦୁଃଖର ବିଷୟ ଏହି ପୀଠଗୁଡ଼ିକର ପରିଚୟ କେହି ଦେଇ ପାରିଲେ ନାହିଁ । ଏହିପରି କୋଣାର୍କର କେତେ କେତେ କୀର୍ତ୍ତି ଅଜ୍ଞାତ ଅବସ୍ଥାରେ କାଳଗର୍ଭରେ ଲୁଚି ଯାଇଅଛି ଓ ଯାଉଛି ! ! ! ଏହା ବ୍ୟତୀତ ମୁଖଶାଳାର ଉତ୍ତରରେ ଗୋଟିଏ ଗୋଲାକାର ପଥରର କୂଅ ଅଛି । କୂଅଟିର ବ୍ୟାସ ଫୁ ୭।୬ ଇଞ୍ଚ । ବର୍ତ୍ତମାନ ମଧ୍ୟ ଏହାର ଜଳ ବ୍ୟବହାର

କରାଯାଉଅଛି । ମୁଁ ଓ ମୋର ସଙ୍ଗୀମାନେ ଏହି କୂଅ ଜଳ ଅମୃତ ଜ୍ଞାନରେ ପାନ କରି ଆପଣାର ସନ୍ତାପଦଗ୍ଧ ଆତ୍ମାକୁ କିଞ୍ଚିତ୍ ସୁଶୀତଳ କରିଥିଲୁଁ ।

କୋଣାର୍କ ମନ୍ଦିରମାନଙ୍କ ଉଦ୍ଧାର ପରେ ପଥର ଓ ବାଲିଗଦା ମଧ୍ୟରୁ କେତେକ ଅତି ମନୋହର କଳା ମୁଗୁନି ପଥରର ପ୍ରତିମୂର୍ତ୍ତି ବାହାରିଥିଲା । ପ୍ରଥମ କୋଣାର୍କ ଦର୍ଶନ ସମୟରେ ସେହି ମୂର୍ତ୍ତିଗୁଡ଼ିକ ମଧ୍ୟରୁ କେତେକ ମୁଖଶାଳାର ଉତ୍ତର ପାଖର ଆୟତାକାର ପୀଠ ଉପରେ ଏବଂ ଅନ୍ୟ କେତେକ ନାଟମନ୍ଦିରର ଉତ୍ତର ପାଖ ବାରଣ୍ଡାରେ ରଖା ହୋଇଥିବାର ଦେଖା ଯାଇଥିଲା । ଦୁଇଟି ସୂର୍ଯ୍ୟନାରାୟଣ ମୂର୍ତ୍ତି ନାଟମନ୍ଦିର ମଧ୍ୟରେ ଦକ୍ଷିଣ-ପୂର୍ବ କୋଣ ଖମ୍ବକୁ ଆଉଜା ହୋଇ ରଖା ହୋଇଥିଲା । ଏ ସମସ୍ତ ମୂର୍ତ୍ତି ଯେପରି ପାଣି ପବନ ଖାଇ ପଡ଼ିଥିଲେ, ସେଥିରୁ ସମସ୍ତେ ଅଳ୍ପ ଦିନ ମଧ୍ୟରେ ବିବର୍ଣ୍ଣ ହୋଇ ନଷ୍ଟ ହୋଇଯିବାର ଆଶଙ୍କା କରାଯାଉଥିଲା । ଯାହାହେଉ ଗଭର୍ଣ୍ଣମେଣ୍ଟ ନାଟମନ୍ଦିରର ଉତ୍ତର-ପୂର୍ବ କୋଣରେ ବେଢ଼ା ମଧ୍ୟରେ ଗୋଟିଏ ନୂତନ ପକ୍କା ଘର ତିଆର କରାଇ ଏ ସମସ୍ତ ମୂର୍ତ୍ତିକୁ ଯତ୍ନରେ ରଖିଅଛନ୍ତି । ସେମାନଙ୍କ ମଧ୍ୟରୁ ପ୍ରତ୍ୟେକର କିଞ୍ଚିତ୍ ଆଭାସ ନିମ୍ନରେ ଦିଆଗଲା ।

୧ । ସୂର୍ଯ୍ୟ ମୂର୍ତ୍ତି – ପୂର୍ବବର୍ତ୍ତୀ ଅଧ୍ୟାୟରେ କୁହାଯାଇଅଛି ଯେ, ରାମଚଣ୍ଡୀଙ୍କ ବଡ଼ଦେଉଳର ପଶ୍ଚିମ ପାର୍ଶ୍ୱ ଦେବତା ଦେଉଳର ଉଦ୍ଧାର ସମୟରେ ୧୯୦୬ ଖ୍ରୀଷ୍ଟାବ୍ଦରେ ନାଟମନ୍ଦିର ମଧ୍ୟରେ ରଖା ହୋଇଥିଲେ । ଶ୍ରୀ ବିଷନ୍ ସ୍ୱରୂପ କହନ୍ତି ଯେ, ଏହି ସୂର୍ଯ୍ୟ ମୂର୍ତ୍ତି ରାମଚଣ୍ଡୀ ମନ୍ଦିରର ପଶ୍ଚିମରେ ଥିଲେ । ମୂର୍ତ୍ତିର ଆୟତନ ଉକ୍ତ ବଡ଼ଦେଉଳର ଅନ୍ୟାନ୍ୟ ସୂର୍ଯ୍ୟ ମୂର୍ତ୍ତିଙ୍କ ଆୟତନ ସଙ୍ଗେ ପ୍ରାୟ ସମାନ ଏବଂ କୋଣାର୍କ ବଡ଼ଦେଉଳର ପଶ୍ଚିମରେ ଯେଉଁ ସୂର୍ଯ୍ୟ ମୂର୍ତ୍ତି ଅଦ୍ୟାପି ପାର୍ଶ୍ୱ ଦେବତା ସ୍ୱରୂପ ଅଛନ୍ତି, ତାହାର ଗଠନ ସଙ୍ଗେ ଏହି ମୂର୍ତ୍ତିର ଗଠନ ପ୍ରାୟ ସମାନ; କେବଳ ଆକାରରେ କ୍ଷୁଦ୍ରତର । ସୁତରାଂ ଏହି ସୂର୍ଯ୍ୟ ମୂର୍ତ୍ତି ରାମଚଣ୍ଡୀଙ୍କ ବଡ଼ଦେଉଳର ପଶ୍ଚିମ ପାଖ ତଳ ବରାଣ୍ଡିରେ ଥିଲେ, ସନ୍ଦେହ ନାହିଁ । ମନ୍ଦିର ଭାଙ୍ଗିଯିବାର ଦେଖି ପଣ୍ଡାମାନେ ବୋଧହୁଏ ସେବା ପୂଜା କରିବା ନିମନ୍ତେ ଏହାକୁ ଆଣି ନାଟମନ୍ଦିର ମଧ୍ୟରେ ରଖିଥିଲେ । ଏହି ବର୍ଷ ମଧ୍ୟରେ ମୂର୍ତ୍ତିଟି ସେଠାରୁ ଅଣା ହୋଇ ନୂତନ ପକ୍କା ଘର ମଧ୍ୟରେ ସ୍ଥାପିତ ହୋଇଅଛନ୍ତି ।

ମୂର୍ତ୍ତିଟି ଖଣ୍ଡିଏ ଶଙ୍ଖ ମଲମଲ ପଥରରେ ନିର୍ମିତ ହୋଇଅଛି । ଅନ୍ୟାନ୍ୟ ପାର୍ଶ୍ୱ ଦେବତା ମୂର୍ତ୍ତିଗୁଡ଼ିକ ଦେଖିବାକୁ କଳା; କିନ୍ତୁ ଏହି ମୂର୍ତ୍ତି ଈଷତ୍ ଧଳା ଦେଖାଯାଏ । ଗୋଟିଏ ପୀଠ ଉପରେ ମୂର୍ତ୍ତିଟି ରଖାଅଛି । କୋଣାର୍କ ବଡ଼ଦେଉଳର ସିଂହାସନ ଉପରେ ଥିବା ପୀଠ ପରି ଏହି ପୀଠରେ ପାଦୁକ ବହିଯିବା ନିମନ୍ତେ ପଥରର ପ୍ରାନ୍ତ ଭାଗରେ ନାଳ ସ୍ୱରୂପ ଖାଲ ଅଛି । ଏହି ପୀଠ ଉପରେ ସୂର୍ଯ୍ୟ ମୂର୍ତ୍ତି ସହିତ ସମସ୍ତ ଢାମଟି ସ୍ଥାପିତ ହୋଇଅଛି । ଯେଉଁ ପଥର ଦେହରୁ ସୂର୍ଯ୍ୟ ମୂର୍ତ୍ତି ଖୋଳା ହୋଇଅଛି, ତାହାର ପାଦ ପଞ୍ଚରଥ ପରି ତିଆର

ହୋଇଅଛି ଏବଂ ସେହି ପାଦର ସମ୍ମୁଖ ଭାଗରେ ସାତୋଟି ଅତି ସୁନ୍ଦର ଓ ସୁସଜ୍ଜିତ ଘୋଡ଼ାର ମୂର୍ତ୍ତି ଅଛି । ପାଦ ଉପରେ ସୂର୍ଯ୍ୟଙ୍କ ପାଦ ତଳେ ଅରୁଣ ବାମ ହାତରେ ସମସ୍ତ ଘୋଡ଼ାମାନଙ୍କର ଲଗାମ ଏବଂ ଦକ୍ଷିଣ ହାତରେ କୋରଡ଼ା ଧରି ବସିଅଛି ।

ସୂର୍ଯ୍ୟ ମୂର୍ତ୍ତିର ଦୁଇ ପାଖରେ ଦୁଇଟି ପୀଢ଼ ଦେଉଳର କାମ ମଧ୍ୟରେ ଦୁଇ ଜଣ ସୈନିକ ପୁରୁଷ ଦକ୍ଷିଣ ହାତରେ ତରବାରୀ ଓ ବାମ ହାତରେ ଢାଲ ଧରି ଠିଆ ହୋଇଅଛନ୍ତି । ପ୍ରତ୍ୟେକ ସୈନିକ ଓ ସୂର୍ଯ୍ୟ ମଧ୍ୟରେ ଦୁଇଜଣ ଶ୍ମଶ୍ରୁଧାରୀ ରକ୍ଷୀ ବା ସେବକ ଅଛନ୍ତି । ସୈନିକର ମସ୍ତକ ଉପରେ ଦେଉଳ ପୀଢ଼ର ଦୃଶ୍ୟ । ଏହି ପୀଢ଼ ଉପରେ ସୂର୍ଯ୍ୟଙ୍କର ଦୁଇ ପାଖରେ ଦୁଇଟି ସଖୀ ମୂର୍ତ୍ତି; ଏମାନଙ୍କ ଉପରେ ଲତା ଓ ମାଳାର କାମ । ଦକ୍ଷିଣ ପାଖରେ ଗୋଟିଏ ଅଶ୍ୱାରୋହୀ ଶତ୍ରୁ ବଧ କରିବା ଅବସ୍ଥାରେ ହାତ ହତିଆର ଧରି ରହଅଛି ଏବଂ ବାମ ପାଖରେ ଜଣେ ବାୟକ ସୀତାର ବଜାଉଅଛି । ଏହି ଅଶ୍ୱାରୋହୀ ଓ ବାୟକଙ୍କ ପାଖରେ ସୂର୍ଯ୍ୟଙ୍କର ଦୁଇ ପାଖରେ ଦୁଇଟି ସୁନ୍ଦର ପ୍ରସ୍ଫୁଟିତ ପଦ୍ମ । ସୂର୍ଯ୍ୟ ଦୁଇ ହାତରେ ପଦ୍ମ ଦୁଇଟି ଧରିଥିଲେ । ବର୍ତ୍ତମାନ ହାତ ଦୁଇଟି କହୁଣିଠାରୁ ଭାଙ୍ଗିଯାଇଅଛି । ଏ ସମସ୍ତ ଉପରେ ଦୁଇ ପାଖରେ ଦୁଇଟି ଅପ୍‌ସରୀ ଉଡ଼ି ବୁଲୁଅଛନ୍ତି । ସୂର୍ଯ୍ୟ ମୂର୍ତ୍ତିଟି ଗୋଟିଏ ସୁରମ୍ୟ ତ୍ରିଭଙ୍ଗ ତୋରଣ ମଧ୍ୟରେ ଦଣ୍ଡାୟମାନ । ଉପରୋକ୍ତ ସୈନିକ ଅଶ୍ୱାରୋହୀ ପ୍ରଭୃତି ସହିତ ସମସ୍ତ ତୋରଣଟି ସୂର୍ଯ୍ୟଦେବଙ୍କର ମେହେରାବି ପରି ହୋଇଅଛି । ତୋରଣର ଉପରି ଭାଗରେ 'କୀର୍ତ୍ତିମୁଖ'ର ଦୃଶ୍ୟ ଅଛି ।

ସୂର୍ଯ୍ୟଙ୍କ ମସ୍ତକରେ ଗୋଟିଏ ନାନା ଅଳଙ୍କାର ଶୋଭିତ ମୁକୁଟ ତୋରଣର ମସ୍ତକ ସ୍ପର୍ଶ କରୁଅଛି । କାନରେ କୁଣ୍ଡଳ ଏବଂ କଣ୍ଠରେ ୬ ଶୋରା ହାର ଛାତି ପର୍ଯ୍ୟନ୍ତ ପଡ଼ିଅଛି । କଣ୍ଠର କଣ୍ଠି ଅତିଶୟ ମନୋମୁଗ୍ଧକର ହୋଇଅଛି । କାନ୍ଧରେ ତିନି ଶୋରା ପଇତା ଏବଂ ପଇତାରୁ ଘାଗୁଡ଼ି ଓହଳିଅଛି । ବେକର ହାର ଓ ପଇତାର କାମ ସୁନା କାମଠାରୁ ସୂକ୍ଷ୍ମତା ବିଷୟରେ ନ୍ୟୂନ ହେବନାହିଁ । ବେକଠାରୁ ଗୋଟିଏ ସୂକ୍ଷ୍ମ ଜାଲି ପେଟରେ ଆଭରଣ ପରି ଅଛି । କଟିରେ ଚାରି ଶୋରା ମେଖଳା । ସମ୍ମୁଖରେ ମେଖଳା ଦେହରେ ରାହୁମୁଖର ମାଳା ଆଣ୍ଠୁ ପର୍ଯ୍ୟନ୍ତ ଝୁଲୁଛି । କଟିମେଖଳା ତଳେ ତଳେ ଗୋଟିଏ ଘଣ୍ଟିମାଳା ଅଣ୍ଟା ଚାରିପାଖରେ ବୁଲିଛି । ସମ୍ମୁଖ ଭାଗରେ ସେହି ଘଣ୍ଟିମାଳ ତଳେ ତିନି ଶୋରା ଶିକୁଳି ଓହଳିଛି । ମେଖଳା ଓ ଶିକୁଳିର କାମ ପ୍ରକୃତ ସୁନା ରୂପା କାମ ପରି ବୋଧହୁଏ । ଆଣ୍ଠୁର ଦୃଶ୍ୟ ଅତି ମନୋହର । ପାଦରେ ଯୋତା ଆଣ୍ଠୁତଳ ପର୍ଯ୍ୟନ୍ତ ପିନ୍ଧା ଅଛି । ସୂର୍ଯ୍ୟଙ୍କ ଚକ୍ଷୁର କାମ ସମ୍ପୂର୍ଣ୍ଣ ହୋଇ ନ ଥିବାର ଜଣାଯାଏ । ସୂର୍ଯ୍ୟ ମୂର୍ତ୍ତିର ଉଚ୍ଚତା ଫୁ ୪।୧୦ ଇଞ୍ଚ ଏବଂ ମେହରାବି ପଥର ଫୁ ୬।୩ ଇଞ୍ଚ ଲମ୍ବ ଓ ୩ ଫୁଟ ଓସାର ।

ଗଠନ ଓ ମନର ଭାବଭଙ୍ଗି ପ୍ରକାଶ ବିଷୟରେ ଏହି ମୂର୍ତ୍ତି କୋଣାର୍କର ସମସ୍ତ ମୂର୍ତ୍ତିମାନଙ୍କ ମଧ୍ୟରେ ସର୍ବୋତ୍କୃଷ୍ଟ । ମୂର୍ତ୍ତିଟିର ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗ ଯେପରି ମନୋହର,

ସମୁଦାୟ ମୂର୍ତ୍ତିଟି ସେହିପରି କମନୀୟ ଓ ମନୋମୁଗ୍‌ଧକର । ସ୍ଥୂଳରେ ଏହା କୋଣାର୍କ ସ୍ଥାପତ୍ୟର ଚୂଡ଼ାନ୍ତ ନିଦର୍ଶନ । କେହି କେହି ଅନୁମାନ କରନ୍ତି ଯେ, ଏହି ମୂର୍ତ୍ତି ସୂର୍ଯ୍ୟଦେବ ସ୍ୱରୂପ କୋଣାର୍କ ବଡ଼ ଦେଉଳ ମଧ୍ୟରେ ଅଧିଷ୍ଠିତ ହେବା ନିମନ୍ତେ ପ୍ରସ୍ତୁତ କରାଯାଇଥିଲା । ଏହି ଅନୁମାନ କିନ୍ତୁ ନିତାନ୍ତ ଭ୍ରାନ୍ତିମୂଳକ । କାରଣ ଏହି ମୂର୍ତ୍ତିଟି ଯେପରି ଗୋଟିଏ ପୀଠ ଉପରେ ବର୍ତ୍ତମାନ ଅବସ୍ଥାପିତ ହୋଇଅଛି, କୋଣାର୍କ ବଡ଼ଦେଉଳ ସିଂହାସନ ଉପରେ ମଧ୍ୟ ସେହିପରି ଗୋଟିଏ ସୁନ୍ଦର ପୀଠ ଅଦ୍ୟାପି ରହିଅଛି । ପୁଣି ଏହି ଅନୁମାନ ସତ୍ୟ ମନେକଲେ ସ୍ୱୀକାର କରିବାକୁ ହେବ ଯେ, କୋଣାର୍କରେ ସୂର୍ଯ୍ୟ ପୂଜା କେବଳ ବର୍ତ୍ତମାନ ମନ୍ଦିର ନିର୍ମାଣ ଦିବସଠାରୁ ଆରମ୍ଭ କରା ଯାଇଥିଲା । କିନ୍ତୁ ଏହା ସମ୍ପୂର୍ଣ୍ଣ ଭ୍ରମ । ବର୍ତ୍ତମାନ ମନ୍ଦିର ନିର୍ମାଣର ବହୁକାଳ ପୂର୍ବରୁ କୋଣାର୍କରେ ସୂର୍ଯ୍ୟଦେବଙ୍କ ବିଗ୍ରହ ପୂଜା ପାଇ ଆସୁଥିବାର ଏହି ପୁସ୍ତକରେ ନାନା ସ୍ଥାନରେ କୁହାଯାଇଅଛି । ସୁତରାଂ ଏହି ମୂର୍ତ୍ତିକୁ କୋଣାର୍କଦେବ ମନେ କରିବା କେବଳ ବୃଥାରେ ଗୋଟିଏ ସ୍ୱତନ୍ତ୍ର ମତ ଖ୍ୟାପନ କରିବା ବ୍ୟତୀତ ଅନ୍ୟ କିଛି ନୁହେଁ ।

୨ । ସୀତା ବିବାହ – ବଡ଼ଦେଉଳର ଉଦ୍ଧାର ସମୟରେ ଏହି ଦୃଶ୍ୟଟି ବାହାରିଥିଲା । ଦୃଶ୍ୟଟି ତିନି ତଳରେ ବିଭକ୍ତ । ସର୍ବୋପରି ଜନକ ସୀତାଙ୍କୁ କୋଳକରି ବସିଅଛନ୍ତି । ଅନ୍ୟ ପାର୍ଶ୍ୱରେ ରାମଚନ୍ଦ୍ର, ଲକ୍ଷ୍ମଣ ଓ ଦଶରଥ ବସିଅଛନ୍ତି । ରାମ ଓ ସୀତାଙ୍କ ମଧ୍ୟରେ ଜଣେ ଶ୍ମଶ୍ରୁଧାରୀ ଋଷୀ ପୁରୋହିତ ସ୍ୱରୂପ ହାତରେ ଶଙ୍ଖ ଧରି ଅର୍ଘ୍ୟ ଅର୍ପଣ କରୁଅଛନ୍ତି । ବୋଧହୁଏ ସେ ଦଶରଥଙ୍କର କୁଳପୁରୋହିତ ବଶିଷ୍ଠ ହେବେ । ରାମଚନ୍ଦ୍ର ଓ ଦଶରଥଙ୍କର ମସ୍ତକ ଭାଙ୍ଗି ଯାଇଛି । ଏହି ତଳର ଚାଳ ଓ ମସ୍ତକ ମଧ୍ୟ ଭାଙ୍ଗି ଯାଇଅଛି ।

ଦ୍ୱିତୀୟ ତଳର ଦୁଇ ପ୍ରାନ୍ତରେ ଓଲଟା ଗଜଶାର୍ଦ୍ଦୂଳ ଖମ୍ବ ସ୍ୱରୂପ ଅଛି । ମଧ୍ୟରେ ଚାରୋଟି ସଖୀ ଓ ପାଞ୍ଚୋଟି ମାଙ୍କଡ଼ ମୂର୍ତ୍ତି । ସଖୀମାନେ ବର୍ତ୍ତମାନ ବଡ଼ିଶ ପରି ଗୋଟିଏ ଗୋଟିଏ ଆଭରଣ ବେକରୁ ପାଦ ପର୍ଯ୍ୟନ୍ତ ପିନ୍ଧି ଅଛନ୍ତି । ସଖୀମାନେ ମହାଆନନ୍ଦରେ ପରସ୍ପର କାନ୍ଧରେ ହାତ ପକାଇ ଠିଆହୋଇ ଅଛନ୍ତି । ଏମାନେ ବୋଧହୁଏ ସୀତାଙ୍କର ସଖୀ ଥିଲେ । ଏମାନଙ୍କ ବାମ ପାର୍ଶ୍ୱରେ ଯେଉଁ ପାଞ୍ଚୋଟି ମାଙ୍କଡ଼ ଅଛନ୍ତି, ସେମାନେ ହାତରେ ଗୋଟିଏ ଗୋଟିଏ ପାତ୍ର ଧରି ଅଛନ୍ତି । ରାମଚନ୍ଦ୍ରଙ୍କ ବିବାହବେଳେ ମାଙ୍କଡ଼ମାନଙ୍କର ଉପସ୍ଥିତି ଅବଶ୍ୟ ଶିଳ୍ପୀର କାଳସ୍ଥାନ ଦୋଷ ଦେଖାଉଅଛି । ବୋଧହୁଏ ରାମ ସୀତାଙ୍କ ବିବାହର ପରିଚୟ ଦେବା ନିମନ୍ତେ ରାମଚନ୍ଦ୍ରଙ୍କ ମର୍କଟ ବନ୍ଧୁମାନଙ୍କର ଦୃଶ୍ୟ ଦିଆଯାଇଅଛି । ଏହି ଦୋଷ ସେକ୍ସପିଅର ପ୍ରଭୃତି ପ୍ରଧାନ ପ୍ରଧାନ କବିମାନଙ୍କଠାରେ ମଧ୍ୟ ବହୁତ ଦେଖାଯାଏ ।

ସର୍ବ ନିମ୍ନତଳରେ ଦୁଇଟି ସୁସଜ୍ଜିତ ହାତୀ ଓ ଘୋଡା ଏବଂ ସେମାନଙ୍କ ସମ୍ମୁଖରେ ଚାରିଜଣ ସ୍ତ୍ରୀ ନାନା ଭଙ୍ଗୀରେ ନୃତ୍ୟ ବାଜଣା କରୁଅଛନ୍ତି । ଦୁଇ ଜଣଙ୍କଠାରେ ଢୋଲ ବାଦ୍ୟ, ଜଣଙ୍କଠାରେ ମହୁରୀ ଓ ଅନ୍ୟ ଜଣଙ୍କଠାରେ ଶଙ୍ଖ ଅଛି । ହାତୀ ଓ ଘୋଡ଼ା ଯେପରି ସୁନ୍ଦର, ସେହିପରି ପ୍ରାକୃତିକ ଓ ଜୀବନ୍ତ ବୋଧହୁଏ । ବୋଧହୁଏ ଏହା ବିବାହ ଯାତ୍ରା ଦେଖାଉଅଛି ।

୩ । **ରାଜଦରବାର** – ସୀତା ବିବାହର ବାମ ପାଖକୁ ଗୋଟିଏ ରାଜଦରବାରର ଦୃଶ୍ୟ ଅଛି । ରାଜା ଗୋଟିଏ ସୁନ୍ଦର ଖଟ ଉପରେ ବସିଅଛନ୍ତି; ଖଟ ଉପରେ ଗଦି ଏବଂ ରାଜାଙ୍କ ପଛରେ ଗୋଟିଏ ଗୋଲାକାର ତକିଆ ଅଛି । ରାଜାଙ୍କ ସମ୍ମୁଖରେ ପାତ୍ର ମନ୍ତ୍ରୀ ଆଦି ଛଅ ଜଣ ଠିଆ ହୋଇଅଛନ୍ତି । ଜଣେ ହାତ ଯୋଡ଼ି କିଛି ଗୁହାରୀ କରୁଅଛି । ଏହାର ନିମ୍ନତଳରେ ପାଞ୍ଚ ପୁରୁଷ ଓ ଏକ ସ୍ତ୍ରୀ ଅଛନ୍ତି । ସେମାନଙ୍କ ମଧ୍ୟରୁ ତିନି ଜଣଙ୍କର ମୁଣ୍ଡ ଭାଙ୍ଗି ଯାଇଅଛି । ଗୋଟିଏ ହାତୀ ଅଛି, ହାତୀ ଉପରେ ମାହୁନ୍ତ ବସିଛି । ମାହୁନ୍ତର ମୁଣ୍ଡ ନାହିଁ । ହାତୀ ଆଗରେ ଜଣେ ଛାଟଧାରୀ ପାଳକ ଠିଆ ରହିଅଛି । ସର୍ବୋପରି ଦୁଇ ଜଣ ପରିଚାରିକା ଅଛନ୍ତି । ଜଣେ ଚାମର ଧରିଛି; ଅନ୍ୟଟି ଦୁଇ ହାତରେ ଗୋଟିଏ ମାଳା ଧରିଛି ।

୪ । **ପଞ୍ଚଦେବ ମୂର୍ତ୍ତି** – ଖଣ୍ଡିଏ ପଥରରେ ଶ୍ରେଣୀବଦ୍ଧ ପଞ୍ଚଦେବ ମୂର୍ତ୍ତି ଅଛନ୍ତି । ସେମାନଙ୍କ ମଧ୍ୟରୁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କୁ ଚିହ୍ନି ହେଉଅଛି । ଅନ୍ୟ ଦୁଇଟି କେଉଁ ଦେବ, ତାହା ପରିଷ୍କାର ଜଣାପଡୁ ନାହିଁ । ବ୍ରହ୍ମାଙ୍କର ମୁଖ ତିନୋଟି ଅଛି । ବୋଧହୁଏ ଚତୁର୍ଥ ମୁଖ କଳାକୌଶଳ ଅନୁସାରେ ପଛଆଡ଼କୁ ରହିବାର ମନେ କରି ଶିଳ୍ପୀ ତାହା ଦେଖାଇ ନାହିଁ । ବିଷ୍ଣୁଙ୍କ ଚାରି ହାତରୁ ଗୋଟିଏ (ଡାହାଣ) ହାତ ଭାଙ୍ଗି ଯାଇଛି । ଏହି ହାତରେ ଧରିଥିବା ପଦ୍ମଟି ଅଦ୍ୟାପି ରହିଅଛି । ଅନ୍ୟ ଡାହାଣ ହାତରେ ଗଦା ଏବଂ ଦୁଇ ବାମ ହାତରେ ଶଙ୍ଖ ଓ ଚକ୍ର ଅଛି । ଶିବଙ୍କର ଚାରି ହାତ ଓ ପଇତା ସାପ । ଛାତି ଉପରେ ସାପର ଫଣା ଦେଖାଯାଏ ।

୫ । **ଶିକ୍ଷାଦାନ ଦୃଶ୍ୟ** – ଏହିପରି ତିନୋଟି ଦୃଶ୍ୟ ଅଛି । ପ୍ରତ୍ୟେକ ଦୃଶ୍ୟ ଦୁଇ ତଳରେ ବିଭକ୍ତ । ଗୋଟିକର ଉପର ତଳର ସିଂହାସନ ଉପରେ ଜଣେ ଆଚାର୍ଯ୍ୟ ବସିଅଛି । ଦକ୍ଷିଣ ଗୋଡ଼ ସିଂହାସନ ଉପରୁ ଲମ୍ୱିଛି ଏବଂ ବାମ ପାଦ ଦକ୍ଷିଣ ଜାନୁ ଉପରେ ରଖାଅଛି । ଆଚାର୍ଯ୍ୟ ବାମ ହାତରେ ଗୋଟିଏ ତାଳପତ୍ର ପୋଥି ଧରିଅଛନ୍ତି ଏବଂ ଦକ୍ଷିଣ ହାତରେ ପୋଥିର ଭାବ ହସ୍ତଦ୍ୱାରା ବୁଝାଇ ଦେଉଅଛନ୍ତି । ଆଚାର୍ଯ୍ୟଙ୍କର ମସ୍ତକ ନାହିଁ । ଶିଷ୍ୟମାନଙ୍କ ମଧ୍ୟରୁ ଆଚାର୍ଯ୍ୟଙ୍କ ସମ୍ମୁଖରେ ଛଅ ଜଣ ଠିଆ ହୋଇଅଛନ୍ତି । ଦକ୍ଷିଣ ପାଖରେ ଛଅ ଜଣ ଶିଷ୍ୟ ଆଣ୍ଠୁମାଡ଼ି ବସିଅଛନ୍ତି । ଆଚାର୍ଯ୍ୟଙ୍କ ବାମ ଭାଗରେ ଦୁଇ ଜଣ ସ୍ତ୍ରୀ ମଧ ଶିକ୍ଷା ଗ୍ରହଣ କରୁଅଛନ୍ତି । ଶିଷ୍ୟମାନଙ୍କ ମଧରେ ରାଜା ଓ ବ୍ରହ୍ମଚାରୀ ମଧ ସମସ୍ତେ ଅଛନ୍ତି । ଶ୍ରୀ ବିଷନ୍ ସ୍ୱରୂପ ଏହି ଦୃଶ୍ୟ ଦେଖି ଅନୁମାନ କରନ୍ତି ଯେ, ଏହା ଗୋଟିଏ ବୌଦ୍ଧ ଦୃଶ୍ୟ । ଆଚାର୍ଯ୍ୟ ନିଜେ ବୁଦ୍ଧଦେବ । କାରଣ ସ୍ୱରୂପ ସେ କହନ୍ତି, ପ୍ରାଚୀନ ଭାରତରେ ଗୁରୁମାନଙ୍କ ମଧରେ କେବଳ ବୁଦ୍ଧଦେବଙ୍କର ରାଜଶିଷ୍ୟ ଥିବାର ଜଣାଯାଏ । ପରେ (୧୧ଶ ଅଧ୍ୟାୟରେ) ଏହାର ସବିଶେଷ ଆଲୋଚନା କରାଯିବ । ଏହି ଦୃଶ୍ୟର ନିମ୍ନ ତଳରେ ଦୁଇଟି ଘୋଡ଼ା ଓ ହାତୀ ଏବଂ କେତେକ ପରିଚାରକ ଅଛନ୍ତି ।

ଏହିପରି ଆହୁରି ଦୁଇଟି ଦୃଶ୍ୟ ଅଛି । କେବଳ ଶିଷ୍ୟମାନଙ୍କ ମଧ୍ୟରେ ପ୍ରଭେଦ ଅଛି । ଏଥିରେ ଶିଷ୍ୟ ଚାରି ଜଣ ଏବଂ ସମସ୍ତେ ଆଗରେ ପୋଥି ଧରି ବସିଅଛନ୍ତି । ନିମ୍ନ ତଳରେ ସନ୍ୟାସୀ ପାଞ୍ଚ ଜଣ ଅଛନ୍ତି । ସମସ୍ତଙ୍କ ହସ୍ତରେ ଦଣ୍ଡ ଓ କମଣ୍ଡଳୁ ଅଛି ।

୬ । ରାଜା — ଖଟ ଉପରେ ଗଦି ଓ ତକିଆ ଅଛି । ରାଜା ତହିଁରେ ବସିଅଛନ୍ତି । ପଛରେ ଦୁଇ ଜଣ ସ୍ତ୍ରୀ ଚାମର ଓ ଆଲଟ ଧରି ବିଞ୍ଚୁଅଛନ୍ତି । ଆଗରେ ଚାରି ଜଣ ରାଜାଙ୍କୁ କିଛି ଜଣାଉଅଛନ୍ତି । ନିମ୍ନ ତଳରେ ଦୁଇଟି ହାତୀ; ଦୁଇଟି ଘୋଡା ଏବଂ କେତେକ ପରିଚାରକ ଓ ପରିଚାରିକା ଅଛନ୍ତି ।

୭ । ଗଙ୍ଗା ମୂର୍ତ୍ତି — ଗୋଟିଏ ଅତି ସୁନ୍ଦର ମଗର ଉପରେ ଗଙ୍ଗାଦେବୀ ବସିଅଛନ୍ତି । ଏହାଙ୍କର ହାତ ଦୁଇଟି ଏବଂ ତାହା ଭାଙ୍ଗି ଯାଇଛି । ମସ୍ତକର ମୁକୁଟ ଓ ଅନ୍ୟାନ୍ୟ ଅଳଙ୍କାରର କାମ ସୁନାର କାମ ତୁଲ୍ୟ ସୂକ୍ଷ୍ମ ଓ ସୁନ୍ଦର । ସମୁଦାୟ କାମଟିର ଉଚ୍ଚତା ଫୁ ୨।୫ ଇଞ୍ଚ ଓ ଓସାର ଫୁ ୧।୩ ଇଞ୍ଚ ।

୮ । ସୂର୍ଯ୍ୟ — ନାଟମନ୍ଦିର ମଧ୍ୟରେ ପ୍ରଥମୋକ୍ତ ସୂର୍ଯ୍ୟନାରାୟଣ ମୂର୍ତ୍ତି ନିକଟରେ ଏହି ଛୋଟ ସୂର୍ଯ୍ୟ ମୂର୍ତ୍ତିଟି ମଧ୍ୟ ଥିଲା । ପ୍ରଥମତଃ ନାଟମନ୍ଦିରର ଉଦ୍ଧାରବେଳେ ଏହି ମୂର୍ତ୍ତିଟି ତହିଁ ମଧ୍ୟରେ ଥିବାର ଦେଖାଗଲା । ମୂର୍ତ୍ତିର ପାଦ ସମ୍ମୁଖରେ ଅରୁଣ ବସି ସପ୍ତାଶ୍ୱର ଲଗାମ ଧରିଅଛି । ପାଦ ଉପରେ ସୂର୍ଯ୍ୟଦେବ ଠିଆ ରହିଅଛନ୍ତି । ଉଭୟ ପାର୍ଶ୍ୱରେ ଦୁଇ ଜଣ ସୈନିକ ଢାଲ ତରବାରୀ ଧରି ଠିଆହୋଇ ଅଛନ୍ତି । ମସ୍ତକର ମୁକୁଟ ଅତି ମନୋହର । ଏହି ମୂର୍ତ୍ତି କୋଣାର୍କର ଅନ୍ୟାନ୍ୟ ସୂର୍ଯ୍ୟ ମୂର୍ତ୍ତିଠାରୁ ଭିନ୍ନ । ଅନ୍ୟାନ୍ୟ ସମସ୍ତ ସୂର୍ଯ୍ୟ ମୂର୍ତ୍ତିର ଦୁଇ ହାତ; କିନ୍ତୁ ଏହି ମୂର୍ତ୍ତିର ହାତ ଚାରୋଟି । ତହିଁରୁ ଦୁଇଟି ଭାଙ୍ଗି ଯାଇଅଛି । ଏହି ଦୁଇ ଭଙ୍ଗା ହାତରେ ପ୍ରସ୍ଫୁଟିତ ପଦ୍ମ ଦୁଇଟି ଧରା ହୋଇଥିଲା । ବର୍ତ୍ତମାନ ସେହି ପଦ୍ମ ଦୁଇଟି ଦେଖାଯାଏ । ଅନ୍ୟ ଦୁଇ ହାତରୁ ଦକ୍ଷିଣ ହାତରେ ତ୍ରିଶୂଳ ଅଛି ଏବଂ ବାମ ହାତର ପାପୁଲି ମୁକ୍ତ ରହି ବରଦ ଚିହ୍ନ ପ୍ରକାଶ କରୁଅଛି । ଏହି ମୂର୍ତ୍ତିର ଚାରି ହାତ ଏବଂ ଏକ ହାତରେ ତ୍ରିଶୂଳ ଥିବାରୁ ଡାକ୍ତର ବ୍ଲକ୍ ମନେ କରନ୍ତି ଯେ, ଶିବ ଓ ସୂର୍ଯ୍ୟଙ୍କୁ ଏକତ୍ର କରି ଏହି ମୂର୍ତ୍ତି ତିଆର ହୋଇଥିଲା । ଅବଶ୍ୟ ଦୁଇ ଦେବତାଙ୍କୁ ମିଶାଇ ଅନେକ ସ୍ଥାନରେ ମୂର୍ତ୍ତି କରା ଯାଇଅଛି । ତେବେ, ତାହା କେବଳ 'ହରିହର ମୂର୍ତ୍ତି'ଠାରେ ଦେଖାଯାଏ । ସୂର୍ଯ୍ୟ ଓ ଶିବଙ୍କୁ ମିଶାଇ ଏକ ମୂର୍ତ୍ତି କରିବା ସମ୍ଭବବୋଧ ହୁଏ ନାହିଁ ଏବଂ ଏହା ମଧ୍ୟ ଅନ୍ୟତ୍ର ଦେଖାଯାଏ ନାହିଁ । ଶ୍ରୀ ବିଷବ୍ ସ୍ୱରୂପ କହନ୍ତି ଯେ, ତ୍ରିଶୂଳ ଅଭୟର ଚିହ୍ନ ଏବଂ ବାମ ହାତର ମୁକ୍ତ ପାପୁଲି ବରଦ ଚିହ୍ନ ପ୍ରକାଶ କରୁଅଛି । ବର ଓ ଅଭୟ ଦେବାରେ ଦେବତାମାନେ ସିଦ୍ଧହସ୍ତ । ସୁତରାଂ ଏହି ଅନୁମାନ ଅପେକ୍ଷାକୃତ ଯଥାର୍ଥ ବୋଧହୁଏ ।

ପୁଣି ଯେଉଁ ହାତରେ ତ୍ରିଶୂଳ ଅଛି ତାହା ତଳକୁ ଏବଂ ଯେଉଁ ହାତରେ ପଦ୍ମ ଅଛି ତାହା ଉପରକୁ ଅଛି । ସୁତରାଂ ଡାକ୍ତର ବ୍ଲକ୍ କହନ୍ତି କି କାରିଗରର ବିଶ୍ୱାସ ଥିଲା ଯେ, ସୂର୍ଯ୍ୟଙ୍କ ଅପେକ୍ଷା ଶିବ ନିକୃଷ୍ଟତର ଦେବତା । କାରିଗରର ସେହିପରି ବିଶ୍ୱାସ ଥିବା ବିଚିତ୍ର ନୁହେଁ; କିନ୍ତୁ ଏହି ମୂର୍ତ୍ତିରୁ ତାହା ପ୍ରକାଶ ପଡୁଅଛି ବୋଲି କୁହାଯାଇ ନ ପାରେ । ନିର୍ମାଣ କୌଶଳ ଅନୁସାରେ ତ୍ରିଶୂଳ ତଳ ହାତରେ ଏବଂ ପଦ୍ମ ଉପର ହାତରେ ରହିବା ଆବଶ୍ୟକ । ତାହା ନ ହେଲେ ମୂର୍ତ୍ତିଟି ସୁନ୍ଦର ଦେଖାଯିବ ନାହିଁ । ପଦ୍ମଦ୍ୱାରା ମୂର୍ତ୍ତିର ସୌନ୍ଦର୍ଯ୍ୟ ଯେପରି ବଢ଼ିଅଛି, ତ୍ରିଶୂଳଦ୍ୱାରା ତାହା ହୋଇ ନ ପାରେ । ସେହି ହେତୁରୁ ବିଷ୍ଣୁ ମୂର୍ତ୍ତିମାନଙ୍କରେ ଉପର ହାତରେ ଗଦା ନ ଥାଇ ବରଂ ତଳ ହାତରେ ଥାଏ । (୧୧ଶ ମୂର୍ତ୍ତି) । ଶ୍ରୀ ବିଷଦ୍ ସ୍ୱରୂପ ମଧ୍ୟ ଏହି ମର୍ମରେ ଡାକ୍ତର ବ୍ଲକଙ୍କ ମତ ଅସ୍ୱୀକାର କରନ୍ତି ।

୯ । **ଶେଷଦେବ** – ଗୋଟିଏ ସପ୍ତଫେଣୀ ସର୍ପର ଫଣା ତଳେ ଶେଷଦେବ ଠିଆ ହୋଇଅଛନ୍ତି । ଏହାଙ୍କର ହାତ ଦୁଇଟି । ଦୁଇ ପାଖରେ ଦୁଇଟି ସ୍ତ୍ରୀ ମୂର୍ତ୍ତି । ବାମ ପାଖର ସଖୀ ହାତରେ ପାଣି କଳସ ଧରିଅଛି । ଦକ୍ଷିଣ ସଖୀର ଡାହାଣ ହାତ ଭାଙ୍ଗି ଯାଇଛି । ଶେଷଦେବଙ୍କ ମସ୍ତକରେ ଗୋଟିଏ ସୁନ୍ଦର ମୁକୁଟ ଅଛି । ଶ୍ରୀ ବିଷଦ୍ ସ୍ୱରୂପ ଏହାକୁ ଗୋଟିଏ ବୌଦ୍ଧ ଦୃଶ୍ୟ ପ୍ରମାଣ କରନ୍ତି । ପରେ (୧୧ଶ ଅଧ୍ୟାୟରେ) ଏହାର ବିଚାର କରାଯିବ ।

୧୦ । ମହିଷମର୍ଦ୍ଦିନୀ, ଜଗନ୍ନାଥ ଓ ଶିବ – ପୂର୍ବେ ଚତୁର୍ଥ ଅଧ୍ୟାୟରେ ଏହି ଦୃଶ୍ୟର ଉଲ୍ଲେଖ କରାଯାଇଅଛି । ଏହିପରି ଦୁଇଟି ଦୃଶ୍ୟ ଅଛି । ଗୋଟିକରେ ପଥରର ଏକ ପାଖରେ ଦୁଇଟି ସିଂହାସନ, ଗୋଟିକ ଉପରେ ମହିଷମର୍ଦ୍ଦିନୀ ଦୁର୍ଗା ସିଂହ ଉପରେ ବସିଅଛନ୍ତି; ଦୁର୍ଗା ମୂର୍ତ୍ତି ତଳେ ମହିଷ ମୁଣ୍ଡ ଦେଖାଯାଏ । ଅନ୍ୟ ଗୋଟିଏ ସିଂହାସନ ଉପରେ ଶିବ ଲିଙ୍ଗ ଓ ଜଗନ୍ନାଥ ମୂର୍ତ୍ତି ଉଭୟ ଅଛନ୍ତି । ରାଜା ଯୁଦ୍ଧ ବେଶରେ ସୁସଜ୍ଜିତ ହୋଇ ଠିଆ ହୋଇଅଛନ୍ତି ଏବଂ ସେବକ ଜଣେ ରାଜାଙ୍କୁ ପ୍ରସାଦ ଦେଉ ଅଛନ୍ତି । ନିମ୍ନତଳରେ ଗୋଟିଏ ସୁସଜ୍ଜିତ ହାତୀ ଓ ୧୩ ଜଣ ସୈନିକ ପୁରୁଷ ଅଛନ୍ତି । ଅପର ଦୃଶ୍ୟଟିରେ ସେବକଙ୍କ ପାଖରେ ଆଉ ଜଣେ ହାତରେ ପରଶୁ ଧରି ଠିଆ ହୋଇଅଛନ୍ତି । ଶ୍ରୀ ବିଷଦ୍ ସ୍ୱରୂପ ଏହାକୁ ପରଶୁରାମ ବୋଲି କହନ୍ତି, କାରଣ ପରଶୁରାମ ଶୈବ ଥିଲେ । ଜଗନ୍ନାଥ ଦକ୍ଷିଣ ହାତରେ ଗୋଟିଏ ଶଙ୍ଖ ଧରିଅଛନ୍ତ ।

ଶିବ, ଦୁର୍ଗା ଓ ଜଗନ୍ନାଥଙ୍କୁ ଏକତ୍ର ଦେଖି ସମାଲୋଚକମାନେ ନାନା ବାଦ ବିବାଦ ଆରମ୍ଭ କରିଅଛନ୍ତି । ଡାକ୍ତର ବ୍ଲକ୍ କହନ୍ତି ଯେ, କୋଣାର୍କ ନିର୍ମାଣ ସମୟରେ ପୁରୀ ମନ୍ଦିର ମଧ୍ୟରେ ବର୍ତ୍ତମାନ ପରି ଜଗନ୍ନାଥଙ୍କ ସଙ୍ଗେ ବଳଭଦ୍ର ଓ ସୁଭଦ୍ରା ନ ଥାଇ ବରଂ ଶିବ ଓ ଦୁର୍ଗା ପୂଜା ପାଉଥିଲେ । ପରବର୍ତ୍ତୀ କାଳରେ ଚୈତନ୍ୟଙ୍କ ବୈଷ୍ଣବ ଧର୍ମ ପ୍ରଚାର ଫଳରେ ଶିବ ଓ ଦୁର୍ଗାଙ୍କୁ ଉଠାଇ ଦେଇ ବଳରାମ ଓ ସୁଭଦ୍ରାଙ୍କୁ ସ୍ଥାପନ କରାଯାଇଅଛି । ଡାକ୍ତର ବ୍ଲକ୍ ଏହିପରି

ଏକ ଅଭିନବ ତଥ୍ୟ କାହୁଁ ପାଇଲେ ବୁଝାଯାଉ ନାହିଁ । ମାଦଳାପାଞ୍ଜି ଓଡ଼ିଶା ସଂପର୍କୀୟ ଅନ୍ୟାନ୍ୟ ବିଷୟରେ ଯାହାହେଉ ପଛକେ, ଜଗନ୍ନାଥ ମନ୍ଦିର ସମ୍ପର୍କରେ ଅନ୍ତତଃ ପ୍ରଧାନ ପ୍ରମାଣ ସ୍ୱରୂପ ଗ୍ରହଣ କରାଯିବା ଉଚିତ । ଜଗନ୍ନାଥଙ୍କ ସଙ୍ଗେ ଶିବ ଓ ଦୁର୍ଗା ସ୍ଥାପିତ ଥିବାର ମାଦଳାପାଞ୍ଜିରୁ ଜଣାଯାଏ ନାହିଁ; ପରନ୍ତୁ ଇନ୍ଦ୍ରଦ୍ୟୁମ୍ନଙ୍କ ସମୟରୁ ବଳରାମ ଓ ସୁଭଦ୍ରା ଜଗନ୍ନାଥଙ୍କ ସଙ୍ଗେ ଗଠିତ ହୋଇ କ୍ଷେତ୍ରର ଆରମ୍ଭରୁ ସ୍ଥାପିତ ହୋଇଥିବାର ପାଞ୍ଜିରୁ ସ୍ପଷ୍ଟ ଜଣାଯାଏ ।

ଏହି ପୁରାତନ ଯୁଗ ସମ୍ବନ୍ଧରେ ମାଦଳା ପାଞ୍ଜି ଅବିଶ୍ୱାସ୍ୟ ବୋଲି ଯଦି କେହି କହନ୍ତି, ଅନ୍ତତଃ ଚୈତନ୍ୟଙ୍କ ସମସାମୟିକ ଘଟଣାବଳୀ ସମ୍ବନ୍ଧରେ ମାଦଳା ପାଞ୍ଜି ଉପରେ ବିଶ୍ୱାସ କରିବାକୁ ହେବ । ଚୈତନ୍ୟଙ୍କ ସମୟରେ ଏହିପରି ଏକ ବିରାଟ ପରିବର୍ତ୍ତନ ହୋଇଥିଲେ ତାହା କେବଳ ମାଦଳାପାଞ୍ଜି କାହିଁକି 'ଚୈତନ୍ୟ ଚରିତାମୃତ' ପ୍ରଭୃତି ଗ୍ରନ୍ଥରେ ଲେଖାଥାନ୍ତା ଏବଂ ନାନା କିମ୍ବଦନ୍ତୀ ଆକାରରେ ଅଦ୍ୟାପି ପ୍ରଚଳିତ ଥାନ୍ତା । ପୁଣି ଚୈତନ୍ୟଙ୍କ ବହୁ ପୂର୍ବବର୍ତ୍ତୀ ବ୍ରହ୍ମପୁରାଣ ପ୍ରଭୃତି ପୁରାଣ ଓ ଗ୍ରନ୍ଥମାନଙ୍କରେ ଜଗନ୍ନାଥ, ବଳରାମ ଓ ସୁଭଦ୍ରାଙ୍କ ଏକତ୍ରାବସ୍ଥାନର ଉଲ୍ଲେଖ ଅଛି । ଜେନେରାଲ କନିଙ୍ଗହାମଙ୍କ ମତରେ ଏହି ତିନି ମୂର୍ତ୍ତି ବୌଦ୍ଧ ତ୍ରିଶୂଳର ପରିଚାୟକ । ଏହା ଯଦି ସତ୍ୟ ହୁଏ, ତାହାହେଲେ ଚୈତନ୍ୟଙ୍କ ବହୁ ପୂର୍ବେ ଏହି ତିନି ମୂର୍ତ୍ତି ଏକତ୍ର ସ୍ଥାପିତ ହୋଇଥିଲେ ।

ଡାକ୍ତର ବ୍ଲକ୍ ପୁଣି କହନ୍ତି ଯେ, ଏହି ଦୃଶ୍ୟରେ ରାଜା ଓ ତାହାଙ୍କ ଅନୁଚରଗଣ ସୂର୍ଯ୍ୟ ଓ ଗ୍ରହମାନଙ୍କୁ ବ୍ୟକ୍ତ କରୁଅଛି । ଏହି ଦୃଶ୍ୟ ଦେହରେ ସୂର୍ଯ୍ୟ ଓ ଗ୍ରହମାନଙ୍କର କୌଣସି ଚିହ୍ନ ନାହିଁ । ଡାକ୍ତର ବ୍ଲକ୍‌ଙ୍କ କଳ୍ପନା ଯଦି ଶିଳ୍ପୀ ମନରେ ଥାନ୍ତା, ତାହାହେଲେ ସୂର୍ଯ୍ୟ ଓ ଗ୍ରହଗଣଙ୍କର ଗୋଟିଏ କିଛି ଚିହ୍ନ ରଖା ଯାଇଥାନ୍ତା । ଦୁର୍ଗା ମହିଷାସୁରକୁ ମାରିଥିବା ଦୃଶ୍ୟ ଦେଖାଇବା ନିମନ୍ତେ ଶିଳ୍ପୀ ମହିଷାସୁରର ମୁଣ୍ଡ ତଳେ ପକାଇ ଦେଇଅଛି । ରାଜା ଯଦି ସୂର୍ଯ୍ୟ ହୋଇଥାନ୍ତେ, ତାହାହେଲେ ରାଜାଙ୍କଠାରେ ଅବଶ୍ୟ କିଛି ସଙ୍କେତ ଥାନ୍ତା । ପକ୍ଷାନ୍ତରେ ଶିଳ୍ପୀ ରାଜା ଓ ଅନୁଚରମାନଙ୍କର ବିଶିଷ୍ଟ ପରିଚୟ ସ୍ପଷ୍ଟ ଦେଇଅଛି ।

ଶ୍ରୀ ବିଷନ୍ ସ୍ୱରୂପ ମଧ୍ୟ ଡାକ୍ତର ବ୍ଲକ୍‌ଙ୍କ ମତ ଅସ୍ୱୀକାର କରି କହନ୍ତି ଯେ, ଏହା ରାମେଶ୍ୱର ଦୃଶ୍ୟ । ରାଜା ନିଜେ ରାମଚନ୍ଦ୍ର ଏବଂ ରାମେଶ୍ୱରଠାରେ ରାମଚନ୍ଦ୍ର ଦେବ ଦର୍ଶନ କରୁଅଛନ୍ତି । ଅବଶ୍ୟ ଏହାର କୌଣସି ସନ୍ତୋଷଜନକ ପ୍ରମାଣ ନାହିଁ । ପକ୍ଷାନ୍ତରେ ଜଟାଧାରୀ ରାମଚନ୍ଦ୍ର ରାମେଶ୍ୱର ଦର୍ଶନ ସମୟରେ ହାତୀ, ରାଜ ବେଶ ପ୍ରଭୃତି କାହୁଁ ପାଆନ୍ତେ ? ପୁଣି କୋଣାର୍କ ଶିଳ୍ପୀ ମୂର୍ତ୍ତି କଳ୍ପନା କରିବା ନିମନ୍ତେ ପାଖରେ କିଛି ଦୃଶ୍ୟ ନ ପାଇ ଭାରତର ଅପର ପ୍ରାନ୍ତ ରାମେଶ୍ୱର ପର୍ଯ୍ୟନ୍ତ ଯାଇଥିବା ଅସମ୍ଭବ ବୋଧହୁଏ । ରାମେଶ୍ୱରଙ୍କ ପାଖରେ ଜଗନ୍ନାଥ ମୂର୍ତ୍ତି ବା କାହୁଁ ଆସନ୍ତା ?

ସୁତରାଂ ଅନୁମାନ କରାଯାଏ ଯେ, ଶାକ୍ତ, ଶୈବ ଓ ବୈଷ୍ଣବ ଧର୍ମ ମଧ୍ୟରେ ମୌଳିକ ସାମଞ୍ଜସ୍ୟ ଦେଖାଇବା ନିମନ୍ତେ ଶିଳ୍ପୀ ଏହି ଦୃଶ୍ୟର କଳ୍ପନା କରିଥିଲେ । ଉକ୍ତ ତିନି ସମ୍ପ୍ରଦାୟ ମଧ୍ୟରେ କେବେ କୌଣସି ବିବାଦ ନ ଥିଲା । ଶିବ, ଦୁର୍ଗା ଓ ବିଷ୍ଣୁଙ୍କୁ କୌଣସି ସମ୍ପ୍ରଦାୟ ସ୍ୱତନ୍ତ୍ର ଦେବତା ଜ୍ଞାନ କରି ଆରାଧନା କରୁ ନ ଥିଲେ; ବରଂ ସେମାନଙ୍କୁ ଏକ ଅଦ୍ୱିତୀୟ ପରମେଶ୍ୱରଙ୍କର ବିଭିନ୍ନ ବିଭାବ ମାତ୍ର ମନେ କରୁଥିଲେ । ଶ୍ରୀ ବିଷକ୍ ସ୍ୱରୂପ କହନ୍ତି, ଓଡ଼ିଶାରେ କୌଣସି ଯୁଗରେ ଶୈବ, ଶାକ୍ତ ଓ ବୈଷ୍ଣବ ସମ୍ପ୍ରଦାୟମାନଙ୍କ ମଧ୍ୟରେ କଦାପି ମିତ୍ରତା ନ ଥିଲା; କିନ୍ତୁ ଏହିରୂପ ମନ୍ତବ୍ୟ ତାହାଙ୍କର ବ୍ୟକ୍ତିଗତ ଅଭିରୁଚି ଭିନ୍ନ ଐତିହାସିକ ସତ୍ୟ ବୋଲି ବୋଧହୁଏ ନାହିଁ । ବରଂ ପ୍ରତ୍ୟେକ ସମ୍ପ୍ରଦାୟ ଆପଣା ଆପଣାର ଆରାଧ୍ୟ ଦେବତାଙ୍କର ଆରାଧନା ସଙ୍ଗେ ସଙ୍ଗେ ଅନ୍ୟ ସମ୍ପ୍ରଦାୟର ଆରାଧ୍ୟ ଦେବଦେବୀମାନଙ୍କର ଉପାସନା କରୁଥିବା ଇତିହାସରୁ ବହୁତ ପ୍ରମାଣ ମିଳେ । ଯଯାତି ଶୈବରାଜା, ତଥାପି ସେ ପୁରୀରେ ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିଲେ । ଶଙ୍କରାଚାର୍ଯ୍ୟ ମଧ୍ୟ ଶିବ ଉପାସନା ସଙ୍ଗେ ସଙ୍ଗେ ବିଷ୍ଣୁ, ଦୁର୍ଗା, ଗଣେଶ ପ୍ରଭୃତିଙ୍କର ଆରାଧନା କରୁଥିବାର ତାହାଙ୍କ ଗ୍ରନ୍ଥାବଳୀରୁ ଜଣାଯାଏ । କୋଣାର୍କ କର୍ତ୍ତା ନରସିଂହଦେବ ବୈଷ୍ଣବ ଥାଇ ସୁଦ୍ଧା ଶିବ, ଦୁର୍ଗା ପ୍ରଭୃତି ହିନ୍ଦୁ ଦେବ ଦେବୀମାନଙ୍କୁ ଯଥେଷ୍ଟ ଭକ୍ତିରେ ଉପାସନା କରୁଥିଲେ । ଏହା ଅସମ୍ଭବ ନୁହେଁ କି କୌଣସି ପ୍ରମାଣର ମଧ୍ୟ ଅପେକ୍ଷା ରଖେ ନାହିଁ । ଶିଳ୍ପୀ ପ୍ରତିଦିନ ଯାହା ସ୍ୱଚକ୍ଷୁରେ ଦେଖୁଥିଲେ ଏବଂ ଆପଣା ଜୀବନରେ ଯାହା ନିତ୍ୟ ଅନୁସରଣ କରୁଥିଲେ, ତାହାହିଁ ଏହି ଦୃଶ୍ୟରେ ଦେଖାଇଅଛନ୍ତି । ଏଥି ନିମନ୍ତେ ଭାରତବର୍ଷ ପାର ହୋଇ ରାମେଶ୍ୱର ପର୍ଯ୍ୟନ୍ତ ଯିବା ତାହାଙ୍କ ପକ୍ଷରେ ପ୍ରୟୋଜନ ନ ଥିଲା କି ପୁରୀ ମନ୍ଦିରରେ ଦୁର୍ଗା, ଶିବ ଓ ଜଗନ୍ନାଥଙ୍କର ଏକତ୍ର ପୂଜା ହେଉଥିବା ସେ ସ୍ୱପ୍ନରେ ସୁଦ୍ଧା ଦେଖି ନ ଥିଲେ ।

୧୧ । **ବିଷ୍ଣୁ ମୂର୍ତ୍ତି** – ଏହା ଗୋଟିଏ ଅତ୍ୟନ୍ତ ସୁନ୍ଦର ମୂର୍ତ୍ତି । ବିଷ୍ଣୁ ଚତୁର୍ଭୁଜ ହୋଇ ଦଣ୍ଡାୟମାନ ଅଛନ୍ତି । ଉପର ଦୁଇ ହାତରେ ଶଙ୍ଖ ଓ ଚକ୍ର ଧରା ହୋଇଅଛି । ଦୁଇ ପାଖରେ ଦୁଇଟି ସ୍ତ୍ରୀ ମୂର୍ତ୍ତି; ଗୋଟିକ ହାତରେ ଗଦା ଓ ଅନ୍ୟ ହାତରେ ପଦ୍ମ ଅଛି । ବିଷ୍ଣୁଙ୍କର ତଳ ଦୁଇ ହାତ ଏହି ଗଦା ଓ ପଦ୍ମ ଉପରେ ରଖା ହୋଇଅଛି । ଶ୍ରୀ ବିଷକ୍ ସ୍ୱରୂପଙ୍କ ମତରେ ବିଷ୍ଣୁ ଭକ୍ତଙ୍କୁ ପଦ୍ମ ହାତଦ୍ୱାରା ବର ଓ ଗଦା ହାତଦ୍ୱାରା ଅଭୟ ଦାନ କରୁଅଛନ୍ତି ଏବଂ ସ୍ତ୍ରୀ ମୂର୍ତ୍ତି ଦୁଇଟି ବିଷ୍ଣୁଙ୍କର ବରଦ ଓ ଅଭୟର ଦୁଇ ଶକ୍ତି ମାତ୍ର । ଏହି ସମସ୍ତ ମୂର୍ତ୍ତି ଗୋଟିଏ ପଦ୍ମ ପୃଷ୍ଠ ଉପରେ ଦଣ୍ଡାୟମାନ ଅଛନ୍ତି । ବିଷ୍ଣୁଙ୍କର ପାଦ ପାଖରେ ଗରୁଡ଼ ଆଣ୍ଠୁ ମାଡ଼ି ବସିଅଛି । ବିଷ୍ଣୁଙ୍କର ମୁକୁଟ, କୁଣ୍ଡଳ, କଣ୍ଠହାର, କଟିମେଖଳା ଓ ଲୁଗା ଅତି ସୁନ୍ଦର କାମରେ ପୂର୍ଣ୍ଣ ହୋଇଅଛି । ଏହି ମୂର୍ତ୍ତି ଉପରେ ଗୋଟିଏ ତ୍ରିଭଙ୍ଗ ତୋରଣ ମେହରାବି ସଦୃଶ ଅଛି । ତୋରଣର ବାମ ପାଖରେ ବ୍ରହ୍ମା ଓ ଦକ୍ଷିଣ ପାଖରେ ଗୋଟିଏ ପଦ୍ମ ଉପରେ ସୂର୍ଯ୍ୟ ଅଛନ୍ତି ।

ଶ୍ରୀ ବିଷବ୍ ସ୍ୱରୂପ ସୂର୍ଯ୍ୟଙ୍କୁ ଶିବ ମନେ କରନ୍ତି । ଶିବ କିନ୍ତୁ କେବେ ପଦ୍ମ ଆସନରେ ବସିବାର ଉଲ୍ଲେଖ ନାହିଁ । ସୂର୍ଯ୍ୟଙ୍କ ରଥବାହକ ଅରୁଣ ମଧ୍ୟ ଥିବାର ଜଣାଯାଏ; କିନ୍ତୁ ପରିଷ୍କାର ଚିହ୍ନା ଯାଉନାହିଁ । ତ୍ରିଭଙ୍ଗ ତୋରଣ ଉପରେ ଅପ୍‌ସରାମାନେ ଶଙ୍ଖ, ମହୁରି ପ୍ରଭୃତି ବଜାଉଅଛନ୍ତି । ଏହି ସମସ୍ତ ପଥରଟିର ପରିମାଣ ଫୁ ୩।୧ ଇଞ୍ଚ ଲମ୍ବ ଏବଂ ଫୁ ୧।୮ ଇଞ୍ଚ ଓସାର ।

**୧୨ । ନୃସିଂହ ମୂର୍ତ୍ତି** — ଏହି ଦୃଶ୍ୟରେ ନୃସିଂହ ହିରଣ୍ୟ କଶ୍ୟପକୁ ବିଦାରଣ କରୁଅଛନ୍ତି । ନୃସିଂହଙ୍କର ମୁଣ୍ଡ ନାହିଁ ଏବଂ ଗୋଟିଏ ପଦ୍ମ ଉପରେ ଠିଆ ହୋଇଅଛନ୍ତି । ଦୁଇ ପାଖରେ ଦୁଇଟି ସଖୀ ମୂର୍ତ୍ତି ଅଛି ।

**୧୩ । ଶିବ** — ଗୋଟିଏ ସୁନ୍ଦର ବୃଷଭ ଉପରେ ମହାଦେବ ଚତୁର୍ଭୁଜ ହୋଇ ବସିଅଛନ୍ତି । ସବୁ ଭୁଜଗୁଡ଼ିକ ଭାଙ୍ଗି ଯାଇଅଛି । କାନ୍ଧରେ ସାପ ପଇତା ଏବଂ ଗୋଡ଼ରେ ସାପ ଅଳଙ୍କାର । ବେକରେ ନର ମୁଣ୍ଡମାଳା, କଟିରେ ବାଘଛାଲ । ମସ୍ତକରେ ଜଟା ଏବଂ ତହିଁରେ ବଙ୍କିମ ଚନ୍ଦ୍ରଟିଏ ଅଛି ।

**୧୪ । ଅସ୍ତ୍ର କୌଶଳ ପ୍ରଦର୍ଶନ** — ଜଣେ ରାଜା ଧନୁଦ୍ୱାରା ଲକ୍ଷ୍ୟ ଭେଦ କରୁଅଛନ୍ତି । ସମ୍ମୁଖରେ ଗୋଟିଏ ପାହାଡ଼ ପରି ଅଛି; ଶରଗୁଡ଼ିଏ ପାହାଡ଼ ଭେଦ କରି ଅପର ପାର୍ଶ୍ୱରେ ଫୁଟି ବାହାରିଅଛି । ରାଜାଙ୍କର ବସନ ଭୂଷଣ ଅତି ସୁନ୍ଦର; ଶର ଲକ୍ଷ୍ୟ କରିବା ଅବସ୍ଥା ଓ ମନର ଭାବଭଙ୍ଗୀ ମୂର୍ତ୍ତି ଦେହରେ ଚମତ୍କାର ରୂପେ ଦେଖାଯାଏ । ଦର୍ଶକବୃନ୍ଦ ତରବାରୀ ପ୍ରଭୃତି ଧରି ହାତ ଯୋଡ଼ି ଠିଆ ହୋଇ ଅଛନ୍ତି; ଯେପରି କି ସେମାନେ ରାଜାଙ୍କ ଲକ୍ଷ୍ୟଭେଦରେ ତଟସ୍ଥ ହୋଇଯାଇ ଅଛନ୍ତି । ଏହାର ନିମ୍ନତଳରେ ପାଞ୍ଚ ଜଣ ସୈନିକ ପୁରୁଷ ଧନୁଶର ଓ ତରବାରୀ ଧରି ଠିଆ ହୋଇଅଛନ୍ତି ଏବଂ ଗୋଟିଏ ସୁସଜ୍ଜିତ ଘୋଡ଼ା ଆଗରେ ଅଶ୍ୱାରୋହୀ ଜଣେ ଅଛନ୍ତି । ଶ୍ରୀ ବିଷବ୍ ସ୍ୱରୂପ ଏହି ରାଜାଙ୍କୁ ବୁଦ୍ଧଦେବ ମନେ କରନ୍ତି । ପରେ (ଏକାଦଶ ଅଧ୍ୟାୟରେ) ଏହାର ବିଚାର କରାଯିବ ।

**୧୫ । ଦୋଳି ଦୃଶ୍ୟ** — ଗୋଟିଏ ଅତି ମନୋହର କାରୁକାର୍ଯ୍ୟ ମଣ୍ଡିତ ତୋରଣର ଖମ୍ବ ଦେହରୁ ସୁନ୍ଦର ଶିକୁଳି ଲାଗି ଚୌକିଟିଏ ଝୁଲୁଅଛି । ରାଜା ସେହି ଚୌକିରେ ବସି ଦୋଳି ଖେଳୁଅଛନ୍ତି । ଛଅ ଜଣ ପରିଚାରିକା ଏଙ୍କ ପାଖରେ ଠିଆରହି ଦୋଳିକୁ ଝୁଲାଉ ଅଛନ୍ତି । ସମ୍ମୁଖରେ ଛଅ ଜଣ ସ୍ତ୍ରୀ ଗୋଟିଏ ପଦ୍ମ ପୃଷ୍ଠ ଉପରେ ବସି ନାନା ବାଦ୍ୟଯନ୍ତ୍ର ସହ ଗାନବାଜଣା କରୁଅଛନ୍ତି । ରାଜାଙ୍କ ପାଖରେ ଗୋଟିଏ ତରବାରୀ ଅଛି । ରାଜା ନାନା ସୁନ୍ଦର ଅଳଙ୍କାରରେ ଭୂଷିତ । ଶ୍ରୀ ବିଷବ୍ ସ୍ୱରୂପ ଏହାକୁ ଶ୍ରୀକୃଷ୍ଣଙ୍କର ଦୋଳି ଖେଳ ବୋଲି କହନ୍ତି । କିନ୍ତୁ କୃଷ୍ଣ ତରବାରୀ ସଙ୍ଗରେ ରଖି ଦୋଳି ଖେଳୁଥିବାର ସମ୍ଭବ ନୁହେଁ । ବରଂ ପ୍ରଥମରୁ ଦେଖିଲାକ୍ଷଣି ମନେହୁଏ, ନିଜେ କୋଣାର୍କ କର୍ତ୍ତା ନରସିଂହ ଦେବ ପ୍ରମୋଦ ସମୟରେ ଦୋଳିରେ ବସିଅଛନ୍ତି । ରାଜାଙ୍କ ପାଖରେ କି ଆମୋଦ ପ୍ରମୋଦ, କି ଶୟନ, ସବୁ

ସମୟରେ ତରବାରୀ ଥାଏ । କୋଣାର୍କରେ ରାଜାଙ୍କର ବିଭିନ୍ନ ଅବସ୍ଥାର କେତେଗୁଡ଼ିଏ ଦୃଶ୍ୟ ଅଛି । ସେ ସମସ୍ତ ନରସିଂହଦେବଙ୍କୁ ଲକ୍ଷ୍ୟ କରି ଖୋଳା ହୋଇଥିବା ସମ୍ପୂର୍ଣ୍ଣ ସମ୍ଭବ । କାରିଗରମାନେ ରାଜଭକ୍ତିରେ ଆପଣା ରାଜାଙ୍କର ଆମୋଦ ପ୍ରମୋଦ, ବୀରବେଶ, ଉପାସନା ପ୍ରଭୃତି ନାନା ଅବସ୍ଥା ମନ୍ଦିର ଦେହରେ ଦେଖାଇଥିଲେ, କହିବା ବାହୁଲ୍ୟ ମାତ୍ର ।

୧୬ । ଅଗ୍ନି – ଅଗ୍ନିଙ୍କ ମୁଖରେ ଦାଢ଼ି, ମସ୍ତକରେ ସୁନ୍ଦର ମୁକୁଟ ଅଛି । ବେକରେ ପଇତା ସୁନ୍ଦର ଦେଖାଯାଏ । ଏହାଙ୍କର ପେଟ ସ୍ଥୂଳ ଏବଂ ବେକ, କାନ, ହାତ ଓ ଗୋଡରେ ନାନା ଅଳଙ୍କାର ଅଛି । ଡ଼ାହାଣ ହାତରେ ରୁଦ୍ରାକ୍ଷ ମାଳାରେ ଜପ ହେଉଅଛି । ଗୋଟିଏ ମେଣ୍ଢା ଉପରେ ଅଗ୍ନି ବସିଅଛନ୍ତି । ଉପରେ ତ୍ରିଭଙ୍ଗ ତୋରଣ । ଦୁଇ ପାଖରେ ଦୁଇଟି ପାତ୍ରରେ ଅଗ୍ନି ଜଳି ଧୂଆଁ ବାହାରୁଅଛି । ଶ୍ରୀ ବିଷନ୍ ସ୍ୱରୂପ ଏହାକୁ ବୃହସ୍ପତି ମୂର୍ତ୍ତି କହନ୍ତି; କିନ୍ତୁ ଦୁଇ ପାଖରେ ଅଗ୍ନି ଜଳୁଥିବାରୁ ଶ୍ରୀ ମନମୋହନ ଗାଙ୍ଗୁଲୀ ଯଥାର୍ଥରେ ଏହାକୁ ଅଗ୍ନି ବୋଲି କହନ୍ତି । କେହି କେହି ବୃଥାରେ ଏହାକୁ ‘ବିଭାଣ୍ଡକ’ ମୁନି ବୋଲି କହନ୍ତି; କିନ୍ତୁ ତୋରଣ ମଧ୍ୟରେ ଋଷି ଜଣେ ବସି ତପସ୍ୟା କରୁଥିବା ସମ୍ଭବ ନୁହେଁ ।

ସ୍ଥଳରେ ପ୍ରାୟ ସମସ୍ତ କଳା ମୁଗୁନିପଥରର ମୂର୍ତ୍ତିଗୁଡ଼ିକର ପରିଚୟ ଉପରେ ଦିଆଗଲା । ଏଗୁଡ଼ିକ ବ୍ୟତୀତ ଉକ୍ତ ନୂତନ ଗୃହରେ ନବଗ୍ରହ ପାଟ (ଷଷ୍ଠ ଅଧ୍ୟାୟ) ଏବଂ କନ୍ଦା ପଥରର କେତେକ କାମ ଅଛି । କୋଣାର୍କ ବେଢ଼ା ମଧ୍ୟରେ ଦୁଇଟି ଲେଖାଏଁ ପ୍ରକାଣ୍ଡ ହାତୀ ଓ ଘୋଡ଼ା ମୂର୍ତ୍ତି ଅଛି ।

ହାତୀ – ମୁଖଶାଳାର ଉତ୍ତର ପାହାଚରୁ କିଛି ଦୂରରେ ମୁଖଶାଳାକୁ ମୁହଁ କରି ଦୁଇଟି ବିରାଟ ହାତୀ ମୂର୍ତ୍ତି ଅଛି । ହାତୀ ଦୁଇଟି ଯୁଦ୍ଧସଜ୍ଜାରେ ଅତି ସୁନ୍ଦର ଭାବରେ ସୁସଜ୍ଜିତ । ହାତୀ ପେଟ ଚାରିପାଖରେ ଯେଉଁ ଲୁହା ଶିକୁଳିର କାମ ବୁଲିଅଛି, ତାହା ଦେଖିଲେ ପ୍ରଥମରେ ପ୍ରକୃତ ଲୁହା ଶିକୁଳି ବୋଲି ଭ୍ରମ ହୁଏ । ହାତୀ ଦୁଇଟି ଥୋଡ଼ପାହାଡ଼ରେ ଦୁଇ ଜଣ ଶତ୍ରୁ ଧରିଅଛନ୍ତି । ପବନ ପାଣିରେ ହାତୀ ଦୁଇଟି ନାନା ସ୍ଥାନରେ ବିକୃତାଙ୍ଗ ହୋଇଗଲାଣି । ପୂର୍ବ ପାଖ ହାତୀର ଡାହାଣ କାନ ଓ ଲାଙ୍ଗୁଡ଼ ଏବଂ ପଶ୍ଚିମ ପାଖ ହାତୀର ଦୁଇ କାନ ଓ ଲାଙ୍ଗୁଡ଼ ନାହିଁ । ଉଭୟଙ୍କର ଥୋଡ଼ପାହାଡ଼ ଓ ଚାରି ପାଦ ଭାଙ୍ଗିଯିବାକୁ ବସିଲାଣି । ହାତୀର ପେଟ ତଳେ ଶତ୍ରୁମାନେ ଚିପିହୋଇ ପଡ଼ିଅଛନ୍ତି । ବର୍ତ୍ତମାନ ପୂର୍ବ ହାତୀର ପେଟ ତଳର ଶତ୍ରୁ ଆଉ ମନୁଷ୍ୟ ବୋଲି ଚିହ୍ନା ପଡୁନାହିଁ । ପ୍ରତ୍ୟେକ ହାତୀର ଲମ୍ବା ୭ ଫୁଟ, ଓସାର ୫ ଫୁଟ ଏବଂ ଉଚ୍ଚତା ୭ ଫୁଟ । ହାତୀ ଦୁଇଟି ପୂର୍ବେ ମୁଖଶାଳାର ଉପର ପାହାଚର ପ୍ରାନ୍ତ ଦୁଇ ପାଖରେ ଥିଲା । ମୁଖଶାଳାରୁ ଖସି ପଡୁଥିବା ପଥର ଦ୍ୱାରା ଭାଙ୍ଗିଯିବା ଭୟରେ ୧୮୮୧ ଖ୍ରୀଷ୍ଟାବ୍ଦରେ ଏହା କିଛି ଦୂରକୁ ସ୍ଥାନାନ୍ତରିତ ହୋଇ ବର୍ତ୍ତମାନ ସ୍ଥାନରେ ରଖାଯାଇଅଛି ।

ଘୋଡ଼ା – ମୁଖଶାଳାର ଦକ୍ଷିଣ ପାହାଚର ଦୁଇ ପାଖରେ ଦୁଇଟି ଅତି ଉତ୍କୃଷ୍ଟ ବିରାଟ ଯୁଦ୍ଧ ଘୋଡ଼ା ଥିଲା । ୧୮୮୧ ଖ୍ରୀଷ୍ଟାବ୍ଦରେ ଏହା ସ୍ଥାନାନ୍ତରିତ ହୋଇ ମୁଖଶାଳାର ଦକ୍ଷିଣକୁ ହାତୀ ସଙ୍ଗେ ସମାନ ଦୂରରେ ରଖାହୋଇଅଛି । ଘୋଡ଼ାର ବୀର ବେଶ ଓ ଉନ୍ନତ ଭାବ ଦେଖିଲେ କୌଣସି ନୂତନ ଦର୍ଶକ ମନରେ ହଠାତ୍ ଭୟ ଜାତ ହୁଏ । ଘୋଡ଼ା ଦୁଇଟି ଯେପରି ପ୍ରାକୃତିକ ଓ ଜୀବନ୍ତ ଦେଖାଯାଏ, ତାହା କୋଣାର୍କରେ ଗୋଟିଏ ସାଧାରଣ ଦୃଶ୍ୟ ହେଲେ ମଧ୍ୟ ପୃଥିବୀର ଯେ କୌଣସି ଦେଶର ଶିଳ୍ପୀ ପକ୍ଷରେ ବଡ଼ ଗୌରବର କଥା, କହିବା ବାହୁଲ୍ୟ ମାତ୍ର । ଘୋଡ଼ା ଦୁଇଟି ଯେପରି ବିରାଟ, ସେହିପରି ମଧ୍ୟ ଜୀବନ୍ତ ବୋଧହୁଏ । ତାହାଙ୍କ ଲମ୍ବା ୧୦ ଫୁଟ, ଓସାର ୬ ଫୁଟ ଏବଂ ଉଚ୍ଚତା ୭ ଫୁଟ ୪ ଇଞ୍ଚ ।

ଘୋଡ଼ା ଦୁଇଟି ଯୁଦ୍ଧବେଶରେ ସୁସଜ୍ଜିତ । ପିଠିରେ ଯେ ଜିନ୍ ଅଛି, ତାହା ବର୍ତ୍ତମାନ ଯୁଗର କାରିଗରର ମଧ୍ୟ ଆଦର୍ଶ ହୋଇପାରେ । ବେକ ଓ ଗୋଡ଼ରେ ଅଳଙ୍କାର ଅଛି । ପୂର୍ବ ଘୋଡ଼ାର ବାମ ପାଖରେ ଓ ଉତ୍ତର ଘୋଡ଼ାର ଡାହାଣ ପାଖରେ ଦୁଇ ଜଣ ଅଶ୍ୱାରୋହୀ ଏକ ହାତରେ ଘୋଡ଼ା ଓ କରଡ଼ା ଏକତ୍ର ଧରି ଅପର ହାତରେ ଶତ୍ରୁ ହାଣିବା ନିମନ୍ତେ ଉଦ୍ୟତ । ଯେଉଁ ହାତରେ ଘୋଡ଼ା ଧରାଯାଇଅଛି, ତାହାରି କାଖତଳେ ଗଦା ରହିଅଛି । ଅପର ହାତରେ ତରବାରୀ ଶତ୍ରୁ ହତ୍ୟା ନିମନ୍ତେ ଉନ୍ମୁକ୍ତ ଅଛି । ଉତ୍ତର ଦିଗ ଘୋଡ଼ା ତିନି ଜଣ ଶତ୍ରୁ ଉପରେ ବୀରବେଶରେ ମାଡ଼ିଯାଇଛି । ଦୁଇଜଣ ପେଟ ତଳେ ଏବଂ ଆଉ ଜଣେ ଘୋଡ଼ାର ଆଗ ଟାପୁରେ ଢାଲ ସହିତ ଚିପି ହୋଇ ଯାଇଅଛି । ଢାଲ ଉପରେ ଘୋଡ଼ାର ଆଗ ଗୋଡ଼ ରହିଛି । ଢାଲ ଦେହରେ ଦୁଇଟି ଗୋଧିର ଚିହ୍ନ ଅଛି । ଶତ୍ରୁମାନେ ଯେପରି ଦଳିହୋଇ ଯାଇଅଛନ୍ତି, ଦେଖିଲେ ମନ ବଡ଼ ବ୍ୟାକୁଳ ହୁଏ ଏବଂ ସେମାନଙ୍କର ମୁଖଭଙ୍ଗୀର କାରିଗରି ଦେଖି ଦର୍ଶକ ତଟସ୍ଥ ହୋଇଯାଏ । ଉଭୟ ଘୋଡ଼ାର ଜିନ୍ ଦେହରେ ଏକ ପାଖରେ ଶରପୂର୍ଣ୍ଣ ତୂଣୀର ଏବଂ ଅପର ପାଖରେ ଖୋଳ ମଧ୍ୟରେ ତରବାରୀ ଅଛି । ପୂର୍ବ ଦିଗ ଅଶ୍ୱାରୋହୀର ଦୁଇ ହାତ ଓ ମୁଣ୍ଡ ନାହିଁ । ଘୋଡ଼ାର ଲାଙ୍ଗୁଳ, ସମ୍ମୁଖ ଗୋଡ଼ ଏବଂ ବେକରୁ ଖଣ୍ଡେ ଡାହାଣପାଖକୁ ଭାଙ୍ଗି ଯାଇଛି । ଏହାର ଜିନ୍ ମଧ୍ୟ ପାଣି ପବନ ଖାଇ ନଷ୍ଟ ହେବାକୁ ଆରମ୍ଭ କଲାଣି । ପଛ ଗୋଟ ଫାଟିଗଲାଣି । ଉତ୍ତର ଦିଗ ଘୋଡ଼ା ଅପେକ୍ଷାକୃତ ନୂତନ ଅବସ୍ଥାରେ ଅଛି । ଅଶ୍ୱାରୋହୀର ମୁଣ୍ଡ, ବାମ ପାଖର ଗଦା ଓ ଡାହାଣ ହାତର ତରବାରୀ ଭାଙ୍ଗି ଯାଇଛି ।

ପାଣି ପବନ ଆଘାତରେ ଘୋଡ଼ା ଓ ହାତୀଗୁଡ଼ିକ ଯେପରି ଦିନକୁ ଦିନ ନଷ୍ଟ ହୋଇ ଯାଉଅଛି, ତାହା ଦେଖିଲେ ମନର କ୍ଷୋଭ ଦ୍ୱିଗୁଣିତ ହୁଏ । ଉପରେ କୌଣସି ପ୍ରକାରର ଛାତ ତିଆରି କରାଇ ଏମାନଙ୍କୁ ପାଣି ପବନରୁ ନିରାପଦରେ ରଖିବା ନିମନ୍ତେ ଗଭର୍ଣ୍ଣମେଣ୍ଟଙ୍କର ଦୃଷ୍ଟି ପଡ଼ିବା ଉଚିତ । ତାହା ନ ହେଲେ ଅଳ୍ପକାଳ ମଧ୍ୟରେ ଏମାନଙ୍କର ବିଶେଷ କ୍ଷତି ହେବାର ଆଶଙ୍କା ।

କୋଣାର୍କ ବଡ଼ଦେଉଳ ଉତ୍ତର ପାଖରେ ଗୋଟିଏ ପ୍ରକାଣ୍ଡ ଗଜସିଂହ ମୂର୍ତ୍ତି ପଡ଼ିଅଛି । ଏହା ପୂର୍ବେ ଦେଉଳର ପୂର୍ବ ଦିଗ ରେଖ ଅଂଶର ରାହାପାଗ ଦେହରେ ମୁଖଶାଳା ଉପରକୁ ଥିଲା । ଏହା ଦୁଇଟି ପ୍ରକାଣ୍ଡ ଶିଳାରେ ନିର୍ମିତ । ବର୍ତ୍ତମାନ ଏହା ତିନି ଖଣ୍ଡ ହୋଇ ପଡ଼ିରହିଛି । ସମୁଦାୟ ଗଜସିଂହ ମୂର୍ତ୍ତିର ପରିମାଣ ସିଂହ ମସ୍ତକଠାରୁ ହାତୀ ପାଦତଳ ପର୍ଯ୍ୟନ୍ତ ଉଚ୍ଚତା ୨୦ ଫୁଟ । ହାତୀ ପାଦତଳ ପଥରର ଲମ୍ବା ୧୫ ଫୁଟ । ଏଥିରୁ ୭ ଫୁଟ ପର୍ଯ୍ୟନ୍ତ ଦେଉଳ ଦେହରୁ ବାହାରି ବାକୀ ୮ ଫୁଟ କାନ୍ଥ ଭିତରେ ଥିଲା । ଏହାର ଓସାର ୫ ଫୁଟ । ଏହି ପ୍ରକାଣ୍ଡ ଗଜସିଂହ ମୂର୍ତ୍ତି ଭୂମିରୁ ପ୍ରାୟ ୧୭୦ ଫୁଟ ଉଚ୍ଚରେ ଥିଲା ।

ବେଢ଼ା ମଧ୍ୟରେ କେତେଗୁଡ଼ିଏ ଲୁହା କଡ଼ି ପଡ଼ିଛି । ସେମାନଙ୍କ ମଧ୍ୟରୁ କେତୋଟି ଭାଙ୍ଗିଗଲାଣି । ପାଣି ପବନ ଖାଇ ସେଗୁଡ଼ିକ କ୍ରମେ କ୍ରମେ ନଷ୍ଟ ହୋଇ ଯାଉଅଛି । ରଙ୍ଗ ପ୍ରଭୃତି ଲଗାଇ କଡ଼ିଗୁଡ଼ିକ ବିଶେଷ ଯତ୍ନରେ ରଖିବା ଉଚିତ । କାରଣ ବର୍ତ୍ତମାନ ସେପରି କଡ଼ି ତିଆର ହେଉନାହିଁ ।

ବେଢ଼ା ଚତୁର୍ଦ୍ଦିଗରେ ଗୋଟିଏ ପ୍ରାଚୀର ଥିଲା । ଆବୁଲଫଜଲଙ୍କ ବର୍ଣ୍ଣନାନୁସାରେ ଏହି ପ୍ରାଚୀରର ଉଚ୍ଚତା ୧୫୦ ହାତ ଏବଂ ମୋଟା ୧୯ ହାତ ଥିଲା (ଚତୁର୍ଥ ଅଧ୍ୟାୟ) । କିନ୍ତୁ ପ୍ରାଚୀରର ଯେଉଁ ଅଂଶ ବର୍ତ୍ତମାନ ଅଛି, ତାହା ଦେଖିଲେ ଆବୁଲଫଜଲଙ୍କ ବର୍ଣ୍ଣନା ନିତାନ୍ତ କାଳ୍ପନିକ ବୋଧହୁଏ । ବର୍ତ୍ତମାନ ଚାରି ଦିଗରେ ଅଳ୍ପ ଉଚ୍ଚରେ ପ୍ରାଚୀରର ଅବଶେଷ ଅଛି । ପୂର୍ବ-ପଶ୍ଚିମରେ ଏହା ୮୫୭ ଫୁଟ ଏବଂ ଉତ୍ତର-ଦକ୍ଷିଣରେ ୫୪୦ ଫୁଟ । ସୁତରାଂ ସମୁଦାୟ ବେଢ଼ାର ବର୍ଗକ୍ଷେତ୍ର ୪୬୨୭୮୦ ବର୍ଗଫୁଟ ବା ପ୍ରାୟ ୧୧ ଏକର ଏବଂ ପୁରୀ ମନ୍ଦିରର ବେଢ଼ାଠାରୁ ପ୍ରାୟ ୧ ଏକର ଅଧିକ * । କୋଣାର୍କ ବେଢ଼ା ପ୍ରାଚୀରର ଉଚ୍ଚତା ୧୪ ଫୁଟ ଏବଂ ବେଧ ୫ ଫୁଟ ୪ ଇଞ୍ଚ । ରାଜେନ୍ଦ୍ର ଲାଲ ଏହାର ଉଚ୍ଚତା ଓ ବେଧ ଯଥାକ୍ରମେ ପ୍ରାୟ ୨୫ ଫୁଟ ଓ ୭ ବା ୮ ଫୁଟ ଧରିଥିଲେ ।

ପ୍ରାଚୀର ଦେହର ପୂର୍ବ ଦିଗରେ ଗୋଟିଏ ଦ୍ୱାର ଥିଲା; ବର୍ତ୍ତମାନ ତାହାର ଚିହ୍ନ ଅଛି । ଅନ୍ୟ କୌଣସି ଦିଗରେ ଦ୍ୱାର ଥିବାର ଜଣାଯାଏ ନାହିଁ । ଏହି ସମ୍ବନ୍ଧରେ ଆବୁଲଫଜଲଙ୍କ ବର୍ଣ୍ଣନାର ଅସତ୍ୟତା ଜଣାପଡ଼େ । ମୁଖଶାଳାର ତିନି ଦ୍ୱାରକୁ ଆବୁଲଫଜଲ ବେଢ଼ାର ତିନି ଦ୍ୱାର କରି ଲେଖିଥିଲେ । ପୁରୀ ବେଢ଼ା ଦେହରେ ଚାରି ଦ୍ୱାର ଅଛି; କିନ୍ତୁ ଭୁବନେଶ୍ୱରରେ ପଶ୍ଚିମ ଦ୍ୱାର ନ ଥାଇ କେବଳ ତିନି ଦ୍ୱାର ଅଛି । କୋଣାର୍କରେ କେତେ ଦ୍ୱାର ଥିଲା, ତାହା ବର୍ତ୍ତମାନ ଜଣାଯାଏ ନାହିଁ । ପୂର୍ବ ଦିଗର ପ୍ରାଚୀର ଦେହର ୬ ଫୁଟ ୭ ଇଞ୍ଚ ପ୍ରସ୍ଥରେ ଗୋଟିଏ ବ୍ୟବଧାନ ଅଛି । ଏହିଠାରେ ବୋଧହୁଏ ଗୋଟିଏ ପୀଢ଼ ଦେଉଳ ଥିଲା ।

---

* ପୁରୀ ବେଢ଼ାର ପରିମାଣ ୬୬୫ ଫୁଟ ଲମ୍ବା ଓ ୬୪୦ ଫୁଟ ଓସାର ବା ୪୨୫୬୦୦ ବର୍ଗଫୁଟ କ୍ଷେତ୍ରଫଳ ।

ଯୁକ୍ତରେ କୋଣାର୍କର ସମୁଦାୟ ମନ୍ଦିରଗୁଡ଼ିକ ଏପରି ଭାବରେ ନିର୍ମିତ ହୋଇଥିଲା ଯେ, ସୂର୍ଯ୍ୟ ପ୍ରଥମରେ ସମୁଦ୍ର ଗର୍ଭରୁ ବାହାରିବା ମାତ୍ରେ ପ୍ରଥମ କିରଣ ବେଢ଼ାର ପୂର୍ବ ଦ୍ୱାର, ନାଟମନ୍ଦିର ଓ ମୁଖଶାଳା ଦେଇ କୋଣାର୍କ ଦେବଙ୍କର ମସ୍ତକ ସ୍ପର୍ଶ କରି ପାରୁଥିଲା । ପୁରୀ ବା ଭୁବନେଶ୍ୱରରେ ବଡ଼ଦେଉଳ ମଧ୍ୟରେ ଏହିପରି ଭାବରେ ସୂର୍ଯ୍ୟକିରଣ ପଡ଼ିବାର କୌଣସି ସୁବିଧା ନାହିଁ ।

ବେଢ଼ା ପ୍ରାଚୀର ଉପରେ ପୁରୀ ବେଢ଼ା ପରି ପ୍ରାୟ ବୃତ୍ତାଭାଷ ଆକାରରେ ଖଣ୍ଡିଏ ଖଣ୍ଡିଏ ପଥର ଥିବାର ରାଜେନ୍ଦ୍ର ଲାଲ ଦେଖିଥିଲେ । ସେଥିରୁ କେତେ ଖଣ୍ଡି ପଥର ମଧ୍ୟ ଭୂମିରେ ପଡ଼ିଥିଲା । ବର୍ତ୍ତମାନ ତାହାର କୌଣସି ଚିହ୍ନ ନାହିଁ । ରାଜେନ୍ଦ୍ର ଲାଲ କହନ୍ତି, ପ୍ରାଚୀରର ବାହାର ପାଖରେ ଏହି ପଥର ଗୁଡ଼ିକର କାମ ଥିଲା ଏବଂ ସେମାନଙ୍କ ପଛରେ ପ୍ରାଚୀର ଉପରେ ଗୋଟିଏ ପ୍ରଶସ୍ତ ବାରଣ୍ଡା ସଦୃଶ ଥିଲା । ସୈନିକମାନେ ଏହି ବାରଣ୍ଡା ଉପରେ ରହି ମନ୍ଦିର ରକ୍ଷା କରୁଥିଲେ । ଲୋକମୁଖରେ ଶୁଣାଯାଏ ଯେ, ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଭାଗରେ ପୁରୀ ମନ୍ଦିରର ମରାମତି ସମୟରେ ଏହି ପଥରଗୁଡ଼ିକ କୋଣାର୍କରୁ ନିଆ ହୋଇ ପୁରୀ ବେଢ଼ାର ପୂର୍ବ ଓ ଦକ୍ଷିଣ ପ୍ରାଚୀରର ଉପରିଭାଗ ଗଢ଼ା ହୋଇଥିଲା । ରାଜେନ୍ଦ୍ର ଲାଲ ଏହି କିମ୍ବଦନ୍ତୀ ଉପରେ ବିଶ୍ୱାସ କରନ୍ତି ଏବଂ କହନ୍ତି ଯେ, କୋଣାର୍କରେ ଯେଉଁ କେତେଖଣ୍ଡ ପଥର ପଡ଼ିଥିଲା, ତାହାର ଆକୃତି ଓ ଆୟତନ ସଙ୍ଗେ ପୁରୀର ପୂର୍ବ ଓ ଦକ୍ଷିଣ ପ୍ରାଚୀରର ପଥରର ଆୟତନ ସମାନ । ପୁରୀରେ ଉତ୍ତର ଓ ପଶ୍ଚିମ ପାଖ ପଥରଠାରୁ ଏହା ମଧ୍ୟ ବୃହତ୍ ଓ ନୂତନ (୧) ।

କୋଣାର୍କ ବଡ଼ଦେଉଳ ସମ୍ମୁଖରେ ଗୋଟିଏ ଅରୁଣସ୍ତମ୍ଭ ଥିଲା । ମରହଟ୍ଟାମାନେ ସେ ସ୍ତମ୍ଭ କୋଣାର୍କରୁ ଆଣି ପୁରୀ ସିଂହଦ୍ୱାର ସମ୍ମୁଖରେ ସ୍ଥାପନ କରିଅଛନ୍ତି । ଏହାର ମୋଟ ଉଚ୍ଚତା ୩୪ ଫୁଟ; କିନ୍ତୁ ଆବୁଲଫଜଲଙ୍କ ଲେଖାରେ ଏହାର ଉଚ୍ଚତା ୫୦ ଗଜ ବା ୧୦୦ ହାତ । ଏହା ନିତାନ୍ତ ଅସମ୍ଭବ ବୋଧହୁଏ । ରାଜେନ୍ଦ୍ର ଲାଲ ନିମ୍ନଲିଖିତ ଭାବରେ ଏହାର ବର୍ଣ୍ଣନା କରିଅଛନ୍ତି (୨) ।

"ପୂର୍ବ ଦ୍ୱାର (ପୁରୀ) ସମ୍ମୁଖରେ ଗୋଟିଏ ଅତି ମନୋହର କାରୁକାର୍ଯ୍ୟ ଅଛି । ଏହା ଗୋଟିଏ କଳା ମୁଗୁନିପଥରର ସ୍ତମ୍ଭ; ଏହାର କଳା ମୁଗୁନିପଥର ପୀଠ ମଧ୍ୟ ଅତ୍ୟନ୍ତ ସୁନ୍ଦର । ଏହି ପୀଠ ବର୍ଗକ୍ଷେତ୍ରାକାର; ଲମ୍ବ ଓ ଓସାର ପ୍ରତ୍ୟେକେ ୭ ଫୁଟ ୯ ଇଞ୍ଚ ଏବଂ ଉଚ୍ଚତା ୬ ଫୁଟ । ଏକ ଫୁଟ ଉଚ୍ଚ ତଳପତ୍ତନ ଉପରେ ପୀଠ ୫ ଫୁଟ ଉଚ୍ଚରେ ଗଢ଼ା ହୋଇଅଛି । ତଳପତ୍ତନ ଦେହରେ କୌଣସି କାମ ନାହିଁ । ପୀଠ ଦେହରେ ଚାରି ପ୍ରସ୍ତ କାମ

(୧) Antiquities of Orissa. Vol. II. P. 149, P. 113.

(୨) Antiquities of Orissa. Vol. II. P. 113.

(ପାଦ, କଣି, ବସନ୍ତ ଓ ପଦ୍ମ) । ପୀଠ ଦେହର କାରୁକାର୍ଯ୍ୟ ସର୍ବୋତ୍କୃଷ୍ଟ । ଭାରତର ଅନ୍ୟ କୌଣସି ସ୍ଥାନରେ ଏପରି ସୁନ୍ଦର କାରୁକାର୍ଯ୍ୟ ଦେଖାଯାଏ ନାହିଁ । ଏହାର କଳା କାରିଗରୀ ଦେଶର ଯେ କୌଣସି ସ୍ଥାନର ଉତ୍କୃଷ୍ଟ କାରୁକାର୍ଯ୍ୟ ସହିତ ସୁନ୍ଦର ତୁଳନୀୟ । ହଠାତ୍ ଦେଖିଲାକ୍ଷଣି ଖମ୍ଭଟି ପ୍ରଥମରେ ଗୋଲାକାର ଥିବାର ବୋଧହୁଏ; କିନ୍ତୁ ଏହା ଗୋଲାକାର ନ ଥିଲା । ପ୍ରଥମତଃ ଏହା ଚାରିକୋଣିଆ ବା ଚଉରସ ଥିଲା । ପରେ କ୍ରମେ କ୍ରମେ କୋଣ ମାରି ପାଖ ଦେଖାଉ ଦେଖାଉ ଷୋଡ଼ଶଭୁଜାକାର କରାଯାଇଅଛି * । ପୀଠ ଉପରୁ ମସ୍ତକ ବା ବୋଧିକା (Capital) ର ତଳ ପର୍ଯ୍ୟନ୍ତ ଖମ୍ଭଟିର ଉଚ୍ଚତା ୨୫ ଫୁଟ ୨ ଇଞ୍ଚ । ଏହାର ବ୍ୟାସ ୨ ଫୁଟ ଏବଂ ପରିଧି ୬ ଫୁଟ ୩୨ ଇଞ୍ଚ । ବୋଧିକା ତଳ ଭାଗରେ ଦୁଇଟି ମୋଡ଼ ଅଛି । ତାହା ଉପରେ ଗୋଟିଏ ପଦ୍ମ । ପଦ୍ମ ଉପରେ ବର୍ଗକ୍ଷେତ୍ରାକାର ଖଣ୍ଡିଏ ପଥର । ଶେଷରେ କ୍ରମେ କ୍ରମେ କ୍ଷୁଦ୍ର ଦୁଇ ଖଣ୍ଡ ପଥର ଅଛି । ଏହି ବୋଧିକାର ମୋଟ ଉଚ୍ଚତା ୨ ଫୁଟ ୬ ଇଞ୍ଚ । ବୋଧିକା ଉପରେ ଗୋଟିଏ ମାଙ୍କଡ଼ ବସି ରହିଛି । ଭୂମି ଉପରୁ ମସ୍ତକ ଉପର ପର୍ଯ୍ୟନ୍ତ ମୋଟ ଉଚ୍ଚତା ୩୩ ଫୁଟ ୮ ଇଞ୍ଚ ।''

ରାଜେନ୍ଦ୍ର ଲାଲ ଅରୁଣଙ୍କୁ ମାଙ୍କଡ଼ ବୋଲି ଭ୍ରମ କରିଅଛନ୍ତି । ଅରୁଣ ସୂର୍ଯ୍ୟଙ୍କ ସାରଥି, ସମ୍ମୁଖରେ ବସି କରଯୋଡ଼ରେ ସ୍ୱୀୟ ପ୍ରଭୁ ସୂର୍ଯ୍ୟଦେବଙ୍କୁ ଧ୍ୟାନ କରୁଅଛି । ଏହି ହେତୁରୁ ଏହାର ନାମ 'ଅରୁଣ ସ୍ତମ୍ଭ' ହୋଇଅଛି ।

*******

---

* ଭୁଜର ସଂଖ୍ୟାନୁସାରେ ସ୍ତମ୍ଭମାନଙ୍କର ଭିନ୍ନ ଭିନ୍ନ ନାମ ହୁଏ । ଯଥା :—
ସମଚତୁର୍ଭୁଜ ସ୍ତମ୍ଭର ନାମ ବ୍ରହ୍ମକାଣ୍ଡ,
ସମପଞ୍ଚଭୁଜ ସ୍ତମ୍ଭର ନାମ ଶିବକାଣ୍ଡ,
ସମଷଡ଼ଭୁଜ ସ୍ତମ୍ଭର ନାମ ସ୍କନ୍ଦକାଣ୍ଡ,
ସମଅଷ୍ଟଭୁଜ ସ୍ତମ୍ଭର ନାମ ବିଷ୍ଣୁକାଣ୍ଡ,
ଏବଂ ସମଷୋଡ଼ଶଭୁଜ ସ୍ତମ୍ଭର ନାମ ରୁଦ୍ରକାଣ୍ଡ ।
ବର୍ତ୍ତମାନ ଅରୁଣସ୍ତମ୍ଭକୁ 'ରୁଦ୍ରକାଣ୍ଡ' କହନ୍ତି ।

# ନବମ ଅଧ୍ୟାୟ

# ମନ୍ଦିର ନିର୍ମାଣ କାଳ

ଓଡ଼ିଶାର ଯେ କୌଣସି ପୁରାତନ ଅନୁଷ୍ଠାନର ଆରମ୍ଭ କାଳ ନିର୍ଣ୍ଣୟ କରିବାରେ ଇତିହାସ ଲେଖକମାନେ ନାନା ମତ ପ୍ରଖ୍ୟାପନ କରିବାର ଦେଖାଯାନ୍ତି । କୌଣସି ଦୁଇଜଣ ଲେଖକ ଗୋଟିଏ ବିଷୟରେ ଏକମତ ଥିବାର ବଡ଼ କ୍ୱଚିତ୍ ଦେଖାଯାଏ । ଏମନ୍ତ କି, ପୁରୀ ଓ ଭୁବନେଶ୍ୱର ମନ୍ଦିରମାନଙ୍କର ନିର୍ମାଣକର୍ତ୍ତା ଓ ନିର୍ମାଣ କାଳ ଓଡ଼ିଶାର ଗୃହେ ଗୃହେ ବର୍ତ୍ତମାନ ସୁବିଦିତ ଥିଲେ ସୁଦ୍ଧା ଲେଖକମାନେ ଆପଣା ଆପଣାର ସ୍ୱାଧୀନ ଓ ପୃଥକ୍ ମତ ପ୍ରମାଣ କରିବାରେ କୁଣ୍ଠିତ ହୋଇ ନାହାନ୍ତି । ଲୋକ ପ୍ରବାଦ କେବଳ ବୃଥା ପ୍ରଳାପ ଏବଂ ପୁରୀ ମନ୍ଦିରର ମାଦଳାପାଞ୍ଜି ବ୍ୟକ୍ତିଗତ କଳ୍ପନାର ଖେଳା ବୋଲି ବର୍ତ୍ତମାନ ଲେଖକମାନଙ୍କ ନିଟକରେ ପ୍ରତୀୟମାନ ହେଉଅଛି । ସୁତରାଂ ଓଡ଼ିଶାର କୌଣସି ବିଶେଷ ଘଟଣାର ଇତିହାସ ଜାଣିବା ନିମନ୍ତେ ଯେଉଁ ଦୁଇଟି ପ୍ରଧାନ ସହାୟ, ତାହା ବର୍ତ୍ତମାନ ଏକାବେଳକେ ଅଗ୍ରାହ୍ୟ ହୋଇ ପଡ଼ିଅଛି । ବାକି ରହିଲା କେବଳ ଅନୁଶାସନମାନ । ମାଦଳାପାଞ୍ଜିକୁ ଯେଉଁ ଦୋଷରେ ଅଗ୍ରାହ୍ୟ କରା ଯାଉଅଛି, ଅନୁଶାସନ ମଧ୍ୟ ସେ ଦୋଷରେ ଦୂଷିତ ହେବା ବଡ଼ ବିଚିତ୍ର ନୁହେଁ । ମାଦଳାପାଞ୍ଜି ପରି ଅନୁଶାସନ ବ୍ୟକ୍ତିଗତ ଭାବରେ ଅତିରଞ୍ଜିତ ହୋଇଥିବା ସ୍ୱାଭାବିକ । ବାସ୍ତବିକ ଅନୁଶାସନମାନ ପରସ୍ପର ବିରୋଧି ଥିବାର ଅନେକ ସ୍ଥଳରେ ଦେଖାଯାଏ । ପୁଣି ଏକ ଅନୁଶାସନରେ ମଧ୍ୟ ବେଳେ ବେଳେ ବିରୁଦ୍ଧ ଉକ୍ତିମାନ ଦେଖିବାକୁ ମିଳେ । ଏପରି ସ୍ଥଳରେ ଇତିହାସ ଲେଖିବାର ଉପକରଣ ଆଉ କାହିଁ ରହିଲା ? ଓଡ଼ିଶାର ଇତିହାସ ଲେଖକମାନେ ବର୍ତ୍ତମାନ ଯେ ପରସ୍ପରଠାରୁ ଏତେ ପୃଥକ୍ ମତମାନ ବ୍ୟକ୍ତ କରନ୍ତି, ତାହାର ପ୍ରଧାନ କାରଣ, ସେମାନେ ଓଡ଼ିଶାରେ ଯାହା କିଛି ଐତିହାସିକ ଉପକରଣମାନ ଅଛି, ତାହା ଏକାବେଳକେ ପରିତ୍ୟାଗ କରୁଅଛନ୍ତି ଏବଂ ଆପଣାର ବ୍ୟକ୍ତିଗତ ରୁଚି ଓ କଳ୍ପନା ପ୍ରଭାବରେ ପରିଚାଳିତ ହୋଇ ଇତିହାସ ଲେଖିବାକୁ ବସୁଅଛନ୍ତି । ସ୍ଥୂଳତଃ ସେମାନେ ଇତିହାସ ଲେଖୁନାହାନ୍ତି ବରଂ ଇତିହାସ ତିଆରି କରୁଅଛନ୍ତି । ଏହି ରୂପ ତିଆରି ଇତିହାସ ଦ୍ୱାରା ଦେଶର ମଙ୍ଗଳ ଆଶା ଦୂରେ ଥାଉ, ଅମଙ୍ଗଳର ଆଶଙ୍କା ବରଂ ଦିନକୁ ଦିନ ବଢ଼େ ।

ଅବଶ୍ୟ ଯେଉଁ ଦେଶରେ ଧାରାବାହିକ ଇତିହାସ ଲେଖା ହୋଇ ଆସୁଅଛି, ସେ ଦେଶ ପକ୍ଷରେ ଏହି ରୂପ ବିପଦର ସମ୍ଭାବନା ନାହିଁ ଏବଂ ସେ ଦେଶରେ ଏହି ରୂପ ଇତିହାସ ମଧ୍ୟ ପ୍ରାୟ ଦେଖାଯାଏ ନାହିଁ; କିନ୍ତୁ ଯେଉଁ ଦେଶରେ ଧାରାବାହିକ ଲିଖିତ ଇତିହାସ ନାହିଁ

ଏବଂ ଯେଉଁ ଦେଶର ସମସ୍ତ ସଭ୍ୟତା ଲୋକମୁଖରେ ନିରବଚ୍ଛିନ୍ନ ଭାବରେ ଯୁଗେ ଯୁଗେ ଚାଲି ଆସୁଅଛି, ସେ ଦେଶର ଇତିହାସ ଲେଖିବା ନିମନ୍ତେ ଲୋକପ୍ରବାଦ ଏବଂ ସମସାମୟିକ କୌଣସି ପଞ୍ଜିକା ପ୍ରଭୃତି ଉପରେ ଲେଖକକୁ ନିଶ୍ଚୟ ନିର୍ଭର କରିବାକୁ ହେବ । ଲଙ୍କାର 'ଦନ୍ତବଂଶ ପାଞ୍ଜି' ଭ୍ରମଶୂନ୍ୟ ଓ ସମ୍ପୂର୍ଣ୍ଣ ବିଶ୍ୱାସ୍ୟ ଏବଂ ଓଡ଼ିଶାର 'ମାଦଳାପାଞ୍ଜି' ଭ୍ରମପୂର୍ଣ୍ଣ ଓ ପରିତ୍ୟଜ୍ୟ – ଏହିପରି ବିଶ୍ୱାସ ଇତିହାସ ଲେଖକ ପକ୍ଷରେ ବଡ଼ ମଙ୍ଗଳଜନକ ନୁହେଁ । ଦନ୍ତବଂଶ ପାଞ୍ଜି ଯେ ପରିମାଣରେ ସତ୍ୟମୂଳକ, ମାଦଳାପାଞ୍ଜିକୁ ସେହିପରି ବିଶ୍ୱାସ୍ୟ ବୋଲି ଧରିବାକୁ ହେବ । ଅବଶ୍ୟ ଲେଖାରେ ଭ୍ରମ ଥାଇପାରେ, ଲେଖକମାନେ ବେଳେ ବେଳେ ଅସାବଧାନ ହୋଇ ପାରିଥାନ୍ତି; ଏହା ବୋଲି ମାଦଳାପାଞ୍ଜିକୁ କେବଳ ପ୍ରମାଦସଙ୍କୁଳ ମନେ କରିବା ଯେପରି ଭ୍ରମ, ସିଂହଳର ଦନ୍ତବଂଶ ପାଞ୍ଜିକୁ ଅଧ୍ୟାପକ ଗିଜରଙ୍କ ପରି ଏକାବେଳକେ ସତ୍ୟ ଧରି ନେବା ସେହିପରି ବିପଜ୍ଜନକ । ସତ୍ୟ ପାଇବା ନିମନ୍ତେ ପ୍ରାଚୀନ ଲେଖାଗୁଡ଼ିକର ଆଲୋଚନା ଓ ପର୍ଯ୍ୟବେକ୍ଷଣ ଆବଶ୍ୟକ । ସମସ୍ତ ପ୍ରମାଣମାନ ସତ୍ୟର ମାନଦଣ୍ଡରେ ତୁଳି ଗ୍ରହଣ କରିବାକୁ ହେବ । ଲୋକପ୍ରବାଦଠାରୁ ଆରମ୍ଭ କରି ଅନୁଶାସନ ପର୍ଯ୍ୟନ୍ତ ସମସ୍ତ ପ୍ରମାଣ ଉପରେ ସମାନ ଆସ୍ଥା ରଖି ବିଷୟର ସତ୍ୟାସତ୍ୟ ନିରୂପଣ କରିବାକୁ ହେବ । କୋଣାର୍କ ମନ୍ଦିର ନିର୍ମାଣକାଳ ମାଦଳା ପାଞ୍ଜିଠାରୁ ଲୋକପ୍ରବାଦ ପର୍ଯ୍ୟନ୍ତ ନାନା ଭାବରେ କୀର୍ତ୍ତିତ ହୋଇଅଛି । 'ଶିବାଇ ସାନ୍ତରା' ଓ ଲାଙ୍ଗୁଳା ନରସିଂହ ଦେବଙ୍କ ନାମ ଓଡ଼ିଶାର ଗୃହେ ଗୃହେ ଆବାଳବୃଦ୍ଧ ବନିତା ସମସ୍ତଙ୍କ ମୁଖରେ ଶୁଣାଯାଏ । ତଥାପି କୋଣାର୍କ ମନ୍ଦିରର ନିର୍ମାଣକାଳ ନିରୂପଣ ବିଷୟରେ ଲେଖକମାନେ ନିଜ ନିଜର ସ୍ୱାତନ୍ତ୍ର୍ୟ ଓ ସ୍ୱାଧୀନତା ମତ ପ୍ରଖ୍ୟାପନ କରିବାରେ କୁଣ୍ଠିତ ହୋଇ ନାହାନ୍ତି ।

ଉପରୋକ୍ତ ଭିନ୍ନ ଭିନ୍ନ ମତମାନଙ୍କର ଆଲୋଚନା ପୂର୍ବରୁ କୋଣାର୍କ ନିର୍ମାଣ ସମ୍ବନ୍ଧରେ ମାଦଳାପାଞ୍ଜିର ବିଷୟ ଜାଣିବା ଆବଶ୍ୟକ । ପାଞ୍ଜିରୁ ଜଣାଯାଏ – "ଶାମ୍ବ ଶାପମୁକ୍ତ ହୋଇ ଦ୍ୱାରକା ପ୍ରସ୍ଥାନ କରିବା ଦିନଠାରୁ କୋଣାର୍କ କ୍ଷେତ୍ରରେ ଚନ୍ଦ୍ରଭାଗା ଉପରେ ନିର୍ମିତ ମନ୍ଦିରରେ ମିତ୍ରାଦିତ୍ୟ ସୂର୍ଯ୍ୟ ପ୍ରତିଷ୍ଠିତ ହୋଇଥିଲେ । ତତ୍‌ପରେ ବହୁ ଯୁଗ ଧରି ରାଜାମାନେ ସେହିଠାରେ ସୂର୍ଯ୍ୟଦେବଙ୍କୁ ଉପାସନା କରି ଆସୁଥିଲେ । ଏହି କଳିଯୁଗରେ କେତେକ ରାଜା ରାଜତ୍ୱ କରିବା ପରେ କେଶରୀବଂଶୀୟ ୪୪ ଜଣ ରାଜାଙ୍କ ମଧ୍ୟରୁ ତ୍ରିଂଶତମ ରାଜା ପୁରନ୍ଦର କେଶରୀ ଏହି ସ୍ଥାନରେ ଗୋଟିଏ ମନ୍ଦିର ନିର୍ମାଣ କଲେ ଏବଂ ସୂର୍ଯ୍ୟଦେବଙ୍କର ଉପାସନା ନିମନ୍ତେ ଆଠଟି ବ୍ରାହ୍ମଣ ଶାସନ ବସାଇଦେଲେ । ତତ୍‌ପରେ ବହୁକାଳ ପରେ ଗଙ୍ଗବଂଶୀୟ ମହାରାଜା ଅନଙ୍ଗଭୀମଦେବଙ୍କର ସଂକଳ୍ପ ଥିଲା ଯେ, ପୁରୁଷୋତ୍ତମ କ୍ଷେତ୍ରରେ ଯେଡ଼େ ମନ୍ଦିର ଥିଲା, ତାହାଠାରୁ ଗୋଟିଏ ବୃହତ୍ତର ମନ୍ଦିର ଜଗନ୍ନାଥଙ୍କ ନିମନ୍ତେ ନିର୍ମାଣ କରିଦେବେ; କିନ୍ତୁ ଫଳରେ ମନ୍ଦିରଟି ତାହାଙ୍କ ଇଚ୍ଛାନୁଯାୟୀ ବୃହଦ୍ ହୋଇପାରିଲା ନାହିଁ । ସୁତରାଂ ତାହାଙ୍କର ସେହି ପାପର କ୍ଷାଳନ ନିମନ୍ତେ ତାହାଙ୍କର

ପୁତ୍ର ବଡ଼ରାୟ ନରସିଂହଦେବ ମହାରାଜା ପୁରନ୍ଦର କେଶରୀଙ୍କ ମନ୍ଦିର ଜୀର୍ଣ୍ଣ ହୋଇଥିବାର ଦେଖି ତାହା ସମ୍ମୁଖରେ ପଦ୍ମତୋଳା ନାମକ ଗଣ୍ଡ ଉପରେ ଗୋଟିଏ ମନ୍ଦିର ନିର୍ମାଣ କରିବା ନିମନ୍ତେ ଆପଣାର ପାତ୍ର (ଦ୍ୱିତୀୟ ମନ୍ତ୍ରୀ) ଶିବ ସାମନ୍ତରାୟ ମହାପାତ୍ରଙ୍କ ଉପରେ ଭାର ଦେଲେ । ମନ୍ଦିର ନିର୍ମାଣ ଓ ପ୍ରତିଷ୍ଠା ଶେଷ ହେଲା ଏବଂ ପୁରନ୍ଦରଙ୍କ ମନ୍ଦିରରୁ ସୂର୍ଯ୍ୟ ବିଗ୍ରହ ଆସି ନରସିଂହ ଦେବଙ୍କର ନୂତନ ମନ୍ଦିରରେ ପ୍ରତିଷ୍ଠିତ ହେଲେ ।'' ଏହି ରୂପେ ପୁରୀରେ ଜଗନ୍ନାଥଙ୍କ ମନ୍ଦିର ପରି କୋଣାର୍କ ମନ୍ଦିର ଥରକୁଥର ନିର୍ମିତ ହୋଇଥିଲା ।

ବର୍ତ୍ତମାନ ମନ୍ଦିର ନିର୍ମାଣ ସମ୍ବନ୍ଧରେ ମାଦଳାପାଞ୍ଜିରେ ଲେଖାଅଛି, ''ଇହାଙ୍କ ଉତ୍ତାରୁ ଇହାଙ୍କ ପୋଲାଙ୍ଗୁଳୀୟ ନରସିଂହଦେବ ଭୋଗବାନ ୪୫ ବର୍ଷ । ଶକାବ୍ଦ ୧୨୦୪ । ଏ ରଜା ଅର୍କକ୍ଷେତ୍ରରେ କୋଣାର୍କ ଦେବଙ୍କୁ ଦେଉଳ ତୋଡ଼ାଇଲେ । ଏ ରଜାର ମୁଦଳ –

ସପୁତ୍ରନରସିଂହେନ କ୍ଷେତ୍ରଶ୍ୱରେଣାଂଶୁମାଳିନଃ ।
ପ୍ରାସାଦଃ କାରିତୋ ରାଜ୍ଞା ଶକେ ଦ୍ୱାଦଶକେ ଶତେ ।।''

ଅର୍ଥାତ୍ ଏହାଙ୍କ (ଅନଙ୍ଗଭୀମଦେବଙ୍କ) ଉତ୍ତାରୁ ଏହାଙ୍କ ପୁଅ ଲାଙ୍ଗୁଳା ନରସିଂହ ଦେବ ୧୨୦୪ ଶକାବ୍ଦ ଅର୍ଥାତ ୧୨୮୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ୪୫ ବର୍ଷ ରାଜତ୍ୱ କରିଥିଲେ । ସେ ଅର୍କକ୍ଷେତ୍ରରେ କୋଣାର୍କଦେବଙ୍କ ନିମନ୍ତେ ଦେଉଳ ତୋଳାଇ ଥିଲେ । ଏହି ରାଜାଙ୍କ ମୋହରରେ ଲେଖାଥିଲା, ପୃଥିବୀଶ୍ୱର ଲାଙ୍ଗୁଳା ନରସିଂହଦେବଙ୍କ ଦ୍ୱାରା ୧୨୦୦ ଶକ ବା ୧୨୭୮ ଖ୍ରୀଷ୍ଟାବ୍ଦରେ ଅଂଶୁମାଳୀ (ସୂର୍ଯ୍ୟ)ଙ୍କର ମନ୍ଦିର ନିର୍ମିତ ହୋଇଥିଲା । ଡାକ୍ତର ରାଜେନ୍ଦ୍ର ଲାଲ ମିତ୍ର ଓ ହଣ୍ଟର ଏହି ବିଷୟରେ ମାଦଳାପାଞ୍ଜିକୁ ସତ୍ୟ ବୋଲି ଧରିଅଛନ୍ତି । କିନ୍ତୁ ଷ୍ଟର୍ଲିଙ୍ଗ କହନ୍ତି,* 'କୋଣାର୍କର ବର୍ତ୍ତମାନ ମନ୍ଦିର ୧୨୪୧ ଖ୍ରୀଷ୍ଟାବ୍ଦରେ ଲାଙ୍ଗୁଳା ନରସିଂହଦେବଙ୍କ ଦ୍ୱାରା ନିର୍ମିତ ହୋଇଥିଲା ।' ଷ୍ଟର୍ଲିଙ୍ଗ କିନ୍ତୁ ନିଜେ ନିଜ ଉକ୍ତିର ଦୋଷ ଦେଖାଇ ଅଛନ୍ତି । ସେ ଅନ୍ୟତ୍ର ** କହନ୍ତି ଯେ, ଲାଙ୍ଗୁଳା ନରସିଂହଦେବ ୧୨୩୬ ଖ୍ରୀଷ୍ଟାବ୍ଦରେ ସିଂହାସନାରୋହଣ କରିଥିଲେ । ତାହାଙ୍କ କହିବାନୁସାରେ, ରାଜା ଯଦି ରାଜତ୍ୱ କରିବା ଦିନଠାରୁ କୋଣାର୍କ କାର୍ଯ୍ୟ ଆରମ୍ଭ କରିଥାନ୍ତି, ତେବେ ତାହା ଶେଷ ହେବାକୁ ୫ ବର୍ଷ ଲାଗିଥିଲା । ଏହା କିନ୍ତୁ ନିତାନ୍ତ ଅସମ୍ଭବ । ୧୨୪୧ ଖ୍ରୀଷ୍ଟାବ୍ଦରେ କୋଣାର୍କ ମନ୍ଦିର ଶେଷ ନ ହୋଇ ପରେ ହୋଇଥିବା ବରଂ ଅନୁମାନ କରାଯାଇପାରେ ।

ମାଦଳାପାଞ୍ଜି ଅନୁସାରେ ନରସିଂହଦେବ ୧୨୩୭ ଖ୍ରୀଷ୍ଟାବ୍ଦରେ ରାଜା ହୋଇଥିଲେ । ବାବୁ ଶ୍ରୀ ମନମୋହନ ଚକ୍ରବର୍ତ୍ତୀ ଓଡ଼ିଶା ରାଜାମାନଙ୍କ ରାଜତ୍ୱକାଳ ନିର୍ଣ୍ଣୟ କରି ବଙ୍ଗୀୟ ଆସିଆଟିକ ସୋସାଇଟି ପତ୍ରିକାରେ ଯେଉଁ କେତେକ ପ୍ରବନ୍ଧ ପ୍ରକାଶ କରିଥିଲେ, ପୁରୀର

* History of Orissa. P. 129

** Ibid P. 93.

ଗେଜେଟିୟର ଲେଖକ ତାହା ଉପରେ ବହୁତ ନିର୍ଭର କରିଅଛନ୍ତି । ତାହାଙ୍କ କହିବାନୁସାରେ, ପ୍ରଥମ ନରସିଂହଦେବ ୧୧୬୦ ଶକ ବା ୧୨୩୮ ଖ୍ରୀଷ୍ଟାବ୍ଦରେ ସିଂହାସନ ଆରୋହଣ କରିଥିଲେ *। 'ରାଜଚରିତ୍ର' ଏବଂ 'ବଂଶାବଳୀ' ନାମକ ଦୁଇଟି ଗ୍ରନ୍ଥ ସାହାଯ୍ୟରେ ଷ୍ଟର୍ଲିଙ୍ଗ ଲେଖିଅଛନ୍ତି ** ଯେ, ୧୦୫୪ ଶକାବ୍ଦ ଆଶ୍ୱିନ ୧୩ ଦିନ ଚୋଡ଼ଗଙ୍ଗଦେବ ଓଡ଼ିଶାର ରାଜା ହୋଇଥିଲେ । ସେ ହିସାବ ଅନୁସାରେ ମଧ ନରସିଂହଦେବ ୧୨୩୭ ଖ୍ରୀଷ୍ଟାବ୍ଦରେ ରାଜା ହୋଇଥିଲେ । ସୁତରାଂ ନରସିଂହଦେବଙ୍କର ସିଂହାସନାରୋହଣ ବିଷୟରେ ମାଦଳାପାଞ୍ଜି ସଂପୂର୍ଣ୍ଣ ବିଶ୍ୱାସ୍ୟ ।

କଟକ ଜିଲ୍ଲା କେନ୍ଦୁପାଟଣା ଗ୍ରାମର ଜମିଦାରଙ୍କ ଘରୁ ନରସିଂହ ଦେବଙ୍କ ତାମ୍ର ଅନୁଶାସନ କେତୋଟି ପାଇ ଶ୍ରୀ ନଗେନ୍ଦ୍ରନାଥ ବସୁ ଆସିଆଟିକ୍ ସୋସାଇଟିର ପତ୍ରିକାରେ ପ୍ରକାଶ କରିଥିଲେ ।*** 'ମୁକୁର'ରେ ମଧ ଉକ୍ତ ଅନୁଶାସନ ପ୍ରକାଶିତ ହୋଇଥିଲା । ସେହି ଅନୁଶାସନରେ ଦ୍ୱିତୀୟ ନରସିଂହଦେବଙ୍କ ପର୍ଯ୍ୟନ୍ତ ଗଙ୍ଗବଂଶୀୟ ରାଜାମାନଙ୍କ ରାଜତ୍ୱକାଳ ଦିଆଯାଇଅଛି । ଏହି ବିଷୟରେ ମାଦଳାପାଞ୍ଜିଠାରୁ ଏହା ପୃଥକ୍ । ଏହି ଅନୁଶାସନ ଅନୁସାରେ ପ୍ରଥମ ନରସିଂହଦେବ (ଲାଙ୍ଗୁଳା) ୧୧୭୫ ଶକାବ୍ଦ ବା ୧୨୫୩ ଖ୍ରୀଷ୍ଟାବ୍ଦରେ ରାଜା ହୋଇଥିଲେ । ମାଦଳାପାଞ୍ଜି ଓ ଏହି ତାମ୍ରଶାସନ ମଧରେ କିଏ ବିଶ୍ୱାସ୍ୟ, ତାହାର ସମାଧାନ ଆବଶ୍ୟକ । ତାମ୍ରଶାସନ ଅନୁସାରେ ଚୋଡ଼ଗଙ୍ଗଦେବ ୯୯୪ ଶକାବ୍ଦ ବା ୧୦୭୨ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ରାଜା ହୋଇଥିଲେ । ମାଦଳାପାଞ୍ଜିର ରାଜଚରିତ୍ର ଓ 'ବଂଶାବଳୀ' ନାମରେ ଗୋଟିଏ ସଂସ୍କୃତ ଗ୍ରନ୍ଥ ଏବଂ ଅନ୍ୟ କେତେକ ପ୍ରମାଣ ଅବଲମ୍ବନରେ ଷ୍ଟର୍ଲିଙ୍ଗ ଲେଖିଅଛନ୍ତି ଯେ, ୧୦୫୪ ଶକାବ୍ଦ ଆଶ୍ୱିନ ୧୩ ଦିନ ଶୁକ୍ରବାରରେ ଚୋଡ଼ଗଙ୍ଗଦେବ କଟକ ଅଧିକାର କରିଥିଲେ । ଏତେ ଗୁଡ଼ିଏ ପ୍ରମାଣ ଏକତ୍ରରେ ଗୋଟିଏ ସମୟ ଜ୍ଞାପନ କରିବା ସ୍ଥଳେ କେବଳ ତାମ୍ରଶାସନରେ ଲିଖିତ ପୃଥକ୍ ସମୟ ଗ୍ରହଣୀୟ ହୋଇ ନ ପାରେ । ତାମ୍ରଶାସନ ଯେପରି ସମସାମୟିକ ଲେଖା, ମାଦଳାପାଞ୍ଜି ସେପରି ହୋଇ ନ ଥିବାର କିଛି ପ୍ରମାଣ ନାହିଁ । ପୁଣି ମାଦଳାପାଞ୍ଜିରେ ଯେପରି ଅଯୌକ୍ତିକ କଥାମାନ ଥିବାର ଲେଖକମାନେ କହନ୍ତି, ଏହି ତାମ୍ରଶାସନରେ ତାହାଠାରୁ କୌଣସି କମ୍ ଅଯୌକ୍ତିକ କଥା ମଧ ନାହିଁ । ତାମ୍ରଶାସନର ୩୨ଶତ୍ ଶ୍ଳୋକ ଅନୁସାରେ ଚୋଡ଼ଗଙ୍ଗଦେବ ୭୦ ବର୍ଷ ଓଡ଼ିଶାର ରାଜା ହୋଇଥିଲେ; କିନ୍ତୁ ମାଦଳାପାଞ୍ଜି ଓ 'ବଂଶାବଳୀ' ଅନୁସାରେ ୨୦ ବର୍ଷ ****। ଚୋଡ଼ଗଙ୍ଗ ୭୦ ବର୍ଷ ଓଡ଼ିଶାରେ ରାଜା ହୋଇଥିବା

* "Eastern Ganga Kings of Orissa." by M. M. Chakrabarty. Journal of the Asiatic Society of Bengal. Vol. 72. 1903

** History of Orissa, page 89.

*** J. A. S. B. Vol. Lxv. Part I No. 3, 1896. P. 229.

**** ହଣ୍ଟର ଓ ଷ୍ଟର୍ଲିଙ୍ଗଙ୍କ ହିସାବ ଅନୁସାରେ

ସମ୍ଭବ ବୋଧହୁଏ ନାହିଁ । ସେ ନିଜ ରାଜ୍ୟରେ ଥିଲେ, ପରେ ନିଜେ ଓଡ଼ିଶା ଜୟ କରି ରାଜା ହୋଇଥିଲେ । ଓଡ଼ିଶା ଆକ୍ରମଣ ସମୟକୁ ତାହାଙ୍କ ବୟସ ଅବଶ୍ୟ ଯଥେଷ୍ଟ ହୋଇଥିଲା । ସମସ୍ତ ପୃଥିବୀରେ ଫ୍ରାନ୍ସ ରାଜା ଚତୁର୍ଦ୍ଦଶ ଲୁଇଙ୍କ ରାଜତ୍ୱ ଦୀର୍ଘତମ । ସେ ୭୨ ବର୍ଷ ରାଜା ହୋଇଥିଲେ ଏବଂ ବାଲ୍ୟକାଳରୁ ରାଜ୍ୟଭାର ଗ୍ରହଣ କରିଥିଲେ । ଚୋଡ଼ଗଙ୍ଗ ସେପରି ବାଲ୍ୟାବସ୍ଥାରେ ଓଡ଼ିଶା ଆକ୍ରମଣ କରି ଅଧିକାର କରିଥିବା ସମ୍ଭବ ବୋଧହୁଏ ନାହିଁ ।

ଚୋଡ଼ଗଙ୍ଗଦେବଙ୍କର ରାଜତ୍ୱ ଯଦି ନିତାନ୍ତ ୭୦ ବର୍ଷ ଧରାଯାଏ, ତଥାପି ଏହା ଅପେକ୍ଷା ଉକ୍ତ ଅନୁଶାସନରେ ଗୁରୁତର ଦୋଷ ମଧ୍ୟ ଦେଖାଯାଏ । ଅନୁଶାସନର ଆରମ୍ଭରେ ଲେଖାଅଛି ଯେ, ୧୨୧୭ ଶକାବ୍ଦକୁ ନରସିଂହଦେବ (ଦ୍ୱିତୀୟ) ୨୧ ଅଙ୍କକୁ ୧୭ ବର୍ଷ ରାଜତ୍ୱ କରିଥିଲେ । ଅନୁଶାସନ ୩୭ଶ ଶ୍ଳୋକରେ ଲେଖାଅଛି, 'ବେଦର୍ତ୍ତୁବ୍ୟୋମଚନ୍ଦ୍ରପ୍ରମିତ' ଶକରେ ଅର୍ଥାତ୍ ୧୦୬୪ ଶକାବ୍ଦରେ କାମାର୍ଣ୍ଣବ ସିଂହାସନରେ ଅଭିଷିକ୍ତ ହୋଇଥିଲେ । କାମାର୍ଣ୍ଣବ ଓ ପରବର୍ତ୍ତୀ ରାଜାମାନେ ନିମ୍ନଲିଖିତ ଭାବରେ ରାଜତ୍ୱ କରିଥିଲେ :—

| | | |
|---|---|---|
| କାମାର୍ଣ୍ଣବ | | ୧୦ ବର୍ଷ (୪୩ ଶ୍ଳୋକ) |
| ଶ୍ରୀରାଘବ | | ୧୫ ବର୍ଷ (୫୨ ଶ୍ଳୋକ) |
| ରାଜରାଜ | (୧ମ) | ୨୫ ବର୍ଷ (୫୮ ଶ୍ଳୋକ) |
| ଅନିୟଙ୍କ ଭୀମଦେବ | (୧ମ) | ୧୦ ବର୍ଷ (୩୬ ଶ୍ଳୋକ) |
| ରାଜରାଜ | (୨ୟ) | ୧୭ ବର୍ଷ (୭୦ ଶ୍ଳୋକ) |
| ଅନଙ୍ଗଭୀମଦେବ | (୨ୟ) | ୩୪ ବର୍ଷ (୮୦ ଶ୍ଳୋକ) |
| ନରସିଂହଦେବ | (୧ମ) | ୩୩ ବର୍ଷ (୮୮ ଶ୍ଳୋକ) |
| ଭାନୁଦେବ | | ୧୮ ବର୍ଷ (୯୫ ଶ୍ଳୋକ) |

ନରସିଂହଦେବ (୨ୟ)ଙ୍କ ୧୭ ବର୍ଷରେ ଅନୁଶାସନ ଲେଖାଅଛି । ଏହିପରି ମୋଟ ୧୭୯ ବର୍ଷ ।

କାମାର୍ଣ୍ଣବ ୧୦୬୪ ଶକରେ ରାଜ୍ୟଭାର ଗ୍ରହଣ କରିଥିଲେ । ସୁତରାଂ ଦ୍ୱିତୀୟ ନରସିଂହଦେବଙ୍କ ରାଜତ୍ୱର ଏକବିଂଶତି ବର୍ଷରେ ଶକାବ୍ଦ ୧୨୪୩ ପଡୁଅଛି; କିନ୍ତୁ ତାମ୍ର ଶାସନରେ ଏହାକୁ ୧୨୧୭ ଶକାବ୍ଦ ଧରାଯାଇଅଛି; ପ୍ରଭେଦ ୨୬ ବର୍ଷ କମ୍ । ଅତଏବ ରାଜାମାନଙ୍କ ରାଜତ୍ୱକାଳ ବିଷୟରେ ମାଦଳାପାଞ୍ଜି ଯଦି ଅବିଶ୍ୱାସ୍ୟ ହୁଏ, ତାହାହେଲେ ଉକ୍ତ ତାମ୍ରଶାସନ ମଧ୍ୟ ତତୋଽଧିକ ଅବିଶ୍ୱାସ୍ୟ ଧରିବାକୁ ହେବ । ଏହି ତାମ୍ରଶାସନ 'ମାଦଳାପାଞ୍ଜି ସହିତ ଟକ୍‌କର ଦେବାକୁ ସମକକ୍ଷ ବସ୍ତୁ' ବୋଲି 'ମୁକୁର'ରେ ଯାହା ଲେଖାଅଛି, * ଏତେ ଦମ୍ଭ ସହିତ ସେପରି କୁହାଯାଇ ନ ପାରେ ।

* 'ମୁକୁର' ୪ର୍ଥ ଭାଗ ୧୨୧ ପୃଷ୍ଠା ।

କୋଣାର୍କ ନିର୍ମାଣ କାଳ ସମ୍ବନ୍ଧରେ କେବଳ ଏହି ତାମ୍ରଶାସନ ବ୍ୟତୀତ ଅନ୍ୟାନ୍ୟ ପ୍ରମାଣ ପ୍ରାୟ ଏକ ସମୟ ଜ୍ଞାପନ କରୁଅଛି । ମାଦଳାପାଞ୍ଜିରେ ଲିଖିତ ନରସିଂହଦେବଙ୍କ ମୋହରରେ ୧୨୦୦ ଶକ ବା ୧୨୭୮ ଖ୍ରୀଷ୍ଟାବ୍ଦରେ କୋଣାର୍କ ନିର୍ମିତ ହୋଇଥିବାର ସ୍ପଷ୍ଟ ଲେଖାଅଛି । ପରନ୍ତୁ ତାମ୍ର ଅନୁଶାସନ ଉପରେ ବିଶ୍ୱାସ କରାଯାଏ ନାହିଁ । ସୁତରାଂ ଅନ୍ୟ କୌଣସି ଉତ୍କୃଷ୍ଟତର ପ୍ରମାଣ ନ ପାଇବା ପର୍ଯ୍ୟନ୍ତ ମାଦଳାପାଞ୍ଜି ଉପରେ ବିଶ୍ୱାସ କରିବାକୁ ହେବ ।

ମାଦଳାପାଞ୍ଜି ଛାଡ଼ିଦେଲେ କୋଣାର୍କର ପ୍ରଥମ ଐତିହାସିକ ପ୍ରମାଣ ଆବୁଲଫଜଲଙ୍କ 'ଆଇନୀ ଆକବରୀ'ରେ ଦେଖିବାକୁ ମିଳେ । ପୂର୍ବେ ଆବୁଲଫଜଲଙ୍କର କୋଣାର୍କ ବର୍ଣ୍ଣନା ଦିଆଯାଇଅଛି । ତହିଁରେ ଲେଖାଅଛି – 'କଥିତ ଅଛି, ୭୩୦ ବର୍ଷ ପୂର୍ବେ ରାଜା ନରସିଂହଦେବ' ଏହି ମନ୍ଦିର ନିର୍ମାଣ କରିଥିଲେ । ଆବୁଲଫଜଲ ପ୍ରାୟ ୧୫୮୦ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଭ୍ରମଣ କରିଥିଲେ । ସୁତରାଂ ତାହାଙ୍କର '୭୩୦ ବର୍ଷ ପୂର୍ବେ' ନରସିଂହଦେବ ନାମରେ କେହି ରାଜା ନ ଥିଲେ । କେବଳ ଶୁଣାଶୁଣି କଥା ଉପରେ ନିର୍ଭର କରି ସେ ଏହିପରି ଲେଖି ଅଛନ୍ତି । ସେ ନିଜେ କୋଣାର୍କ ଦର୍ଶନ ସୁଦ୍ଧା କରି ନ ଥିଲେ । ତାହାଙ୍କ ଉକ୍ତି ଉପରେ ନିର୍ଭର କରି ଲେଖକମାନେ କୋଣାର୍କ ନିର୍ମାଣ ବିଷୟରେ ଦୁଇଟି ବିଭିନ୍ନ ମତ ଖ୍ୟାପନ କରନ୍ତି । କେହି କେହି '୭୩୦ ବର୍ଷ ପୂର୍ବେ' ଉପରେ ବିଶ୍ୱାସ କରି କହନ୍ତି, କେଶରୀ ବଂଶୀୟ କେହି ରାଜା ପ୍ରାୟ ୮୫୦ ଖ୍ରୀଷ୍ଟାବ୍ଦରେ କୋଣାର୍କ ନିର୍ମାଣ କରିଥିଲେ ଏବଂ 'ରାଜା ନରସିଂହଦେବ' ଭୁଲରେ ଲେଖାଯାଇଅଛି । ଅନ୍ୟ ଲେଖକମାନେ ମାଦଳାପାଞ୍ଜିର ସାକ୍ଷାତ ପ୍ରମାଣ ଉପରେ ନିର୍ଭର କରି କହନ୍ତି ଯେ, 'ରାଜା ନରସିଂହଦେବ' କୋଣାର୍କ ନିର୍ମାଣ କରିଥିବା ସତ; କିନ୍ତୁ '୭୩୦ ବର୍ଷ ପୂର୍ବେ' କଥାଟା ଆବୁଲଫଜଲ ଭୁଲରେ ଲେଖିଅଛନ୍ତି । ଏହି ଦୁଇ ଶ୍ରେଣୀର ଲେଖକମାନଙ୍କର ମତାମତ ବିଚାର କରିବା ଆବଶ୍ୟକ । ପୂର୍ବରୁ ଏତିକି ମନେ ରଖିବାର କଥା ଯେ, ଆବୁଲଫଜଲଙ୍କ ବର୍ଣ୍ଣନାରେ ନାନା ଅସତ୍ୟ ଦେଖାଯାଏ । ପୂର୍ବବର୍ତ୍ତୀ ଅଧ୍ୟାୟମାନଙ୍କରେ ଦେଖାଯାଇ ଅଛି ଯେ, କୋଣାର୍କ ପ୍ରାଚୀର '୧୫୦ ହାତ ଉଚ୍ଚ' ଏବଂ '୧୯ ହାତ ମୋଟା' ନୁହେଁ । ପୂର୍ବଦ୍ୱାରରେ ହାତୀ କି ପଶ୍ଚିମ ଦ୍ୱାରରେ ଅଶ୍ୱାରୋହୀ ମୂର୍ତ୍ତି ନ ଥିଲା ଏବଂ କୋଣାର୍କର ଅରୁଣସ୍ତମ୍ଭ ୧୦୦ ହାତ ବା '୫୦ ଗଜ ଉଚ୍ଚ' ନୁହେଁ । ସୁତରାଂ ସତ୍ୟ ମିଥ୍ୟା ପ୍ରତି ଆଦୌ ଦୃଷ୍ଟି ନ ଦେଇ ଯାହା ଶୁଣିଲେ ସେ ତାଙ୍କ ଗ୍ରନ୍ଥରେ ଲେଖିଗଲେ । ସୁତରାଂ କୋଣାର୍କ ନିର୍ମାଣ ବିଷୟରେ 'ଆଇନୀ ଆକବରୀ' ସମ୍ପୂର୍ଣ୍ଣ ବିଶ୍ୱାସଯୋଗ୍ୟ ହୋଇ ନ ପାରେ ।

ଫର୍ଗୁସନ୍ ଆବୁଲଫଜଲଙ୍କର '୭୩୦ ବର୍ଷ ପୂର୍ବେ' କଥାଟା ନିଶ୍ଚୟ ମନେ କରି ଓଡ଼ିଶାରେ ଶିଳ୍ପର କ୍ରମବିକାଶର ନିୟମାନୁସାରେ ତାହା ସମର୍ଥନ କରିଅଛନ୍ତି । ସେ କହନ୍ତି, ଭୁବନେଶ୍ୱର ମନ୍ଦିରରେ ଯେ ଶିଳ୍ପ ଦେଖାଯାଏ, କୋଣାର୍କରେ ତାହା ଆହୁରି ଉନ୍ନତ

ଅବସ୍ଥାରେ ଦେଖିବାକୁ ମିଳେ; କିନ୍ତୁ ପୁରୀ ମନ୍ଦିରର ଶିଳ୍ପ ବଡ଼ ଅନୁନ୍ନତ । ସୁତରାଂ ପୁରୀ ମନ୍ଦିର ପରେ କୋଣାର୍କ ନିର୍ମିତ ହୋଇଥିବା ଅସମ୍ଭବ । ବରଂ ଭୁବନେଶ୍ୱର ମନ୍ଦିରର ଶିଳ୍ପ କ୍ରମଶଃ ଉନ୍ନତ ହୋଇ କୋଣାର୍କରେ ଦେଖାଗଲା ଏବଂ ତାହା ପରେ କ୍ରମେ ଅବନତ ହେଲାବେଳେ ପୁରୀ ମନ୍ଦିର ନିର୍ମିତ ହେଲା । ଏତଏବ ସେ ସ୍ଥିର କରନ୍ତି ଯେ, ପୁରୀ ମନ୍ଦିରର ବହୁକାଳ ପୂର୍ବେ ନବମ ଶତାବ୍ଦୀର ଶେଷ ଭାଗରେ କୋଣାର୍କ ମନ୍ଦିର ନିର୍ମିତ ହୋଇଥିଲା ।

ଫର୍‌ଗୁସନ୍‌ଙ୍କ ଉପରୋକ୍ତ ଅନୁମାନ ସୁପ୍ରମାଣିତ ହେଲା ପରି ବୋଧ ହେଉନାହିଁ । ପ୍ରଥମତଃ ଭୁବନେଶ୍ୱର ଅପେକ୍ଷା ପୁରୀ ମନ୍ଦିରରେ ଶିଳ୍ପର ଯେ ଅବନତ ଅବସ୍ଥା ପ୍ରକାଶ ପାଏ, ତାହା ପ୍ରମାଣ କରିବା ବଡ଼ ସହଜସାଧ ନୁହେଁ । ଭୁବନେଶ୍ୱର ମନ୍ଦିରର ବିଭିନ୍ନ ଅଂଶର ଯେ ଅନୁପାତ, ପୁରୀରେ ପ୍ରାୟ ସେହି ଅନୁପାତ ଦେଖାଯାଏ । ଅବଶ୍ୟ ଚୂନ ପଲସ୍ତରା ହେତୁରୁ ପୁରୀ ମନ୍ଦିରର କାରୁକାର୍ଯ୍ୟ ଲୁଚି ଯାଇଅଛି ସତ; କିନ୍ତୁ ଗଠନ ପ୍ରଣାଳୀ ମୋଟରେ ବିଚାର କଲେ ଏହା ଭୁବନେଶ୍ୱର ମନ୍ଦିର ଅପେକ୍ଷା କୌଣସି ଅଂଶରେ ନ୍ୟୂନ ନୁହେଁ । ପୁରୀ ମନ୍ଦିରର ଗଠନ ପ୍ରଣାଳୀ ଅନେକ ଅଂଶରେ ଭୁବନେଶ୍ୱର ମନ୍ଦିରଠାରୁ ମଧ ସୁନ୍ଦର ଦେଖାଯାଏ । ପୁରୀ ମନ୍ଦିରରେ ଶିଳ୍ପର ଅବନତ ଅବସ୍ଥା ପ୍ରକାଶ ପାଉଥିବା ଡାକ୍ତର ରାଜେନ୍ଦ୍ର ଲାଲଙ୍କ ପରି ଶିଳ୍ପ ସମାଲୋଚକ ମଧ ଅସ୍ୱୀକାର କରନ୍ତି * । ପୁରୀ ମନ୍ଦିରର ଶିଳ୍ପ ଅବନତ ବୋଲି ସ୍ୱୀକାର କଲେ ମଧ କେବଳ ଶିଳ୍ପର କ୍ରମବିକାଶର ନିୟମାନୁସାରେ ମନ୍ଦିରମାନଙ୍କ କାଳ ନିରୂପଣ କରିବା ନିତାନ୍ତ ନିରାପଦ ନୁହେଁ । ବିବର୍ତ୍ତନ ଓ ଅନୁବର୍ତ୍ତନ ନିୟମାବଳୀ ନିର୍ଦ୍ଧାରଣ କରି ତାହାଦ୍ୱାରା ଘଟଣାବଳୀର ଐତିହାସିକ ସମସ୍ୟା ସାଧନ କରିବାରେ ବର୍ତ୍ତମାନ ମଧ ଦାର୍ଶନିକମାନେ ଇତସ୍ତତଃ ହେଉଅଛନ୍ତି ଏବଂ ବିବର୍ତ୍ତନ ଓ ଅନୁବର୍ତ୍ତନ ଦର୍ଶନ ରାଜ୍ୟରେ ଅଦ୍ୟାବଧି ଗୋଟିଏ ଚୂଡ଼ାନ୍ତ ସତ୍ୟ ବୋଲି ଗୃହୀତ ହୋଇନାହିଁ । ଏପରି ସ୍ଥଳେ କେବଳ ତାହାରି ଉପରେ ନିର୍ଭର କରି ଏବଂ ମାଦଳାପାଞ୍ଜିର ସାକ୍ଷାତ ପ୍ରମାଣକୁ ଉପେକ୍ଷା କରି କୋଣାର୍କକୁ ପୁରୀ ମନ୍ଦିରର ପୂର୍ବବର୍ତ୍ତୀ ମନେ କରିବା ବଡ଼ ଦୁଃସାହସର କାର୍ଯ୍ୟ ବୋଲିବାକୁ ହେବ ।

ଶ୍ରୀ ବିଷନ୍ ସ୍ୱରୂପ ତାହାଙ୍କ ଗ୍ରନ୍ଥରେ କୋଣାର୍କ ମନ୍ଦିରର ନିର୍ମାଣକର୍ତ୍ତା ଓ ନିର୍ମାଣକାଳ ନିରୂପଣ କରିବା ନିମନ୍ତେ ଗୋଟିଏ ଦୀର୍ଘ ଅଧ୍ୟାୟ ଲେଖିଅଛନ୍ତି ** । ସେ ପ୍ରଥମତଃ ମାଦଳାପାଞ୍ଜିକୁ ସମ୍ପୂର୍ଣ୍ଣ ଭ୍ରମପୂର୍ଣ୍ଣ ଓ କାଳ୍ପନିକ ଲେଖା ବୋଲି ପ୍ରମାଣ କରିଅଛନ୍ତି ।

---

* I shall say nothing about the absence of grace as it is an intangible qunatity dependent a good deal upon fancy and I must in that respect yield to the Beamed archaeologist, though it would not be amiss to ask how far that absence is due to the covering up the details, and how much to want of taste in the architect.

– 'Antiquities of Orissa'. Vol. II. P. 11

** Konarka, Chapter X.

ଅଧ୍ୟାୟ ଆରମ୍ଭରେ ସେ କହନ୍ତି, ମାଦଳାପାଞ୍ଜିରେ ଯେତେ ଘଟଣା ଅଛି, ତାହା ସତ୍ୟ ବୋଲି ଧରାଯାଇ ନ ପାରେ । ଲୋକଙ୍କର ଯେପରି ବିଶ୍ୱାସ, ତାହା ସେପରି ସମସାମୟିକ ଲେଖା ନୁହେଁ । କଳାପାହାଡ଼ ମାଦଳାପାଞ୍ଜି ସମସ୍ତ ପୋଡ଼ି ଦେଇଥିଲା; ପରେ ତାହାର ପ୍ରତ୍ୟାଗମନ ଉତ୍ତାରୁ କେହି କେହି ନିଜର ଗୃହକୋଣରେ ବସି କଳ୍ପନା ସାହାଯ୍ୟରେ ପୁଣି ପାଞ୍ଜି ପୂରଣ କରିବାରେ ଲାଗିଗଲେ । ସୁତରାଂ ସେ କହନ୍ତି ପାଞ୍ଜି କଥାରେ ବିଶ୍ୱାସ ରଖିବା ସର୍ବଥା ଅନୁଚିତ ।

ଅବଶ୍ୟ ମାଦଳାପାଞ୍ଜିରେ ମଧ୍ୟେ ମଧ୍ୟେ ଅସଙ୍ଗତ କଥା ଥାଇପାରେ । କଳାପାହାଡ଼ ପାଞ୍ଜି ପୋଡ଼ି ଦେଇଥିବା ଯଦି ସତ୍ୟ ହୁଏ, ତାହାହେଲେ ପରେ ପୁନରାୟ ଲେଖା ହେଲା ବେଳକୁ କେତେକ ବିଷୟରେ ପ୍ରଭେଦ ରହିଥିବା ବିଚିତ୍ର ନୁହେଁ * । ପ୍ରତ୍ୟେକ ଘଟଣା ଲେଖିଲାବେଳେ ମଧ୍ୟ ଲେଖକର ଭାବ ଓ ରୁଚି ଅନୁସାରେ ନାନା ବ୍ୟତିକ୍ରମ ଦେଖାଯାଏ । ସୁତରାଂ ମାଦଳାପାଞ୍ଜିରେ ସେହିପରି କେତେକ ତ୍ରୁଟି ରହି ପାରିଥିବ; କିନ୍ତୁ ଏହା ବୋଲି ପାଞ୍ଜି ଏକାବେଳକେ ଭ୍ରମପୂର୍ଣ୍ଣ ଓ ଇତିହାସ ହିସାବରେ ପରିବର୍ଜନୀୟ କହିବା ବଡ଼ ଆପଦପୂର୍ଣ୍ଣ । ଆବୁଲଫଜଲ କଳାପାହାଡ଼ ଯିବାର ବହୁ କାଳ ପରେ ଓଡ଼ିଶାକୁ ଆସିଥିଲେ । ସେ ଯେଉଁ '୭୩୦ ବର୍ଷ ପୂର୍ବେ' ଲେଖିଅଛନ୍ତି, ତାହା ସେ କୌଣସି ବିଶେଷ ଅନୁସନ୍ଧାନ ବା ଗବେଷଣା ଦ୍ୱାରା ଆବିଷ୍କାର କରି ନଥିଲେ । କେବଳ ଯାହା ଲୋକମୁଖରୁ ଶୁଣିଲେ, ତାହା ଲେଖିଲେ । ଗ୍ଲାଡ଼ଉଇନଙ୍କ 'ଆଇନୀ ଆକବରୀ' ଅନୁବାଦରେ ଭ୍ରମ ଥିବାର ସନ୍ଦେହ କରି ଶ୍ରୀ ବିଷନ୍ ସ୍ୱରୂପ ତାହାଙ୍କ ପୁସ୍ତକରେ ଆବୁଲଫଜଲଙ୍କର କୋଣାର୍କ ବର୍ଣ୍ଣନାର ନିଜେ ଅନୁବାଦ କରିଅଛନ୍ତି । ସେଥିରେ ମଧ୍ୟ ଅଛି, 'They say' ଅର୍ଥାତ୍ ଲୋକେ କହନ୍ତି, ଏହା ୭୩୦ ବର୍ଷ ପୂର୍ବେ ନିର୍ମିତ ହୋଇଥିଲା । ଅତଏବ କଳାପାହାଡ଼ ଓଡ଼ିଶାରୁ ଯିବା ପରେ ଯେପରି ଲୋକେ ମାଦଳାପାଞ୍ଜି ପୂରଣ କରିବାକୁ ଲାଗିଲେ, ସେହିପରି କେହି ଲୋକ ଆବୁଲଫଜଲଙ୍କୁ ଏହି ସମ୍ବାଦ ଦେଇଥିଲେ । ତାହାହେଲେ ଆବୁଲଫଜଲଙ୍କ ଲେଖାଟା ସମ୍ପୂର୍ଣ୍ଣ ଭ୍ରମଶୂନ୍ୟ ଓ ବିଶ୍ୱାସ୍ୟ ଏବଂ ମାଦଳାପାଞ୍ଜିଟା ସର୍ବଥା ଭ୍ରମସଙ୍କୁଳ ଓ ପରିତ୍ୟଜ୍ୟ ହେବ ବା କାହିଁକି ?

ଶ୍ରୀ ବିଷନ୍ ସ୍ୱରୂପ ଏହିରୂପେ ମାଦଳାପାଞ୍ଜି ପରିତ୍ୟାଗ କରି ଆବୁଲଫଜଲଙ୍କ ଲେଖାର ସମର୍ଥନ କରନ୍ତି । ଆବୁଲଫଜଲଙ୍କ '୭୩୦ ବର୍ଷ ପୂର୍ବେ' ସମ୍ପୂର୍ଣ୍ଣ ସତ୍ୟ; କିନ୍ତୁ ତାହାଙ୍କ 'ରାଜା ନରସିଂହଦେବ'ରେ କିଛି ଅସତ୍ୟ ଅଛି । ସୁତରାଂ ଶ୍ରୀ ବିଷନ୍ ସ୍ୱରୂପ କହନ୍ତି ଯେ, ବୋଧହୁଏ ଆବୁଲଫଜଲଙ୍କୁ ଯେଉଁ ଲୋକ ଏ ସମସ୍ତ ସମ୍ବାଦ ଦେଇଥିଲେ, ସେ କୋଣାର୍କ ନିର୍ମାଣର ସମୟ ଠିକ୍ କହିଲେ; କିନ୍ତୁ ନିର୍ମାଣକର୍ତ୍ତାଙ୍କ ନାମ କହିବାର ଭୁଲ

* କଳାପାହାଡ଼ ମାଦଳାପାଞ୍ଜି ପୋଡ଼ି ଦେଇଥିବାର କୌଣସି ପ୍ରମାଣ ନାହିଁ । ସେ ଦେଉଳ ଲୁଣ୍ଠନ କରିଥିଲା ସତ; କିନ୍ତୁ ପାଞ୍ଜି ଦେଉଳରେ ନ ଥାଇ ସର୍ବଦା ଦେଉଳ କରଣଙ୍କ ଘରେ ଥାଏ ।

କରିଥିଲେ । କେଶରୀବଂଶରେ ନରସିଂହଦେବ ନାମରେ କେହି ରାଜା ନାହାନ୍ତି । ଉକ୍ତ ବଂଶର କେହି ରାଜା ନିଶ୍ଚୟ କୋଣାର୍କ ନିର୍ମାଣ କରିଥିଲେ । ଅତଏବ ସେହି ରାଜାଙ୍କର ନାମକରଣ କରିବାକୁ ଯାଇ ଶ୍ରୀ ବିଷକ୍ ସ୍ୱରୂପ କହନ୍ତି :— ମାଦଳାପାଞ୍ଜି ଅନୁସାରେ ପୁରନ୍ଦର କେଶରୀ କୋଣାର୍କ ନିର୍ମାଣ କରିଥିଲେ । ତାହାଙ୍କ ରାଜତ୍ୱକାଳର କୌଣସି ଉଲ୍ଲେଖ ନାହିଁ । ତେବେ କେଶରୀବଂଶର ୪୪ ଜଣ ରାଜା ମଧ୍ୟରେ ସେ ତ୍ରିଂଶତମ ରାଜା ଥିଲେ । କେଶରୀବଂଶ ୬୭୦ ବର୍ଷ ରାଜତ୍ୱ କରିଥିଲେ ଏବଂ ୧୧୦୦ ଖ୍ରୀଷ୍ଟାବ୍ଦରେ ଚୋଡ଼ଗଙ୍ଗ ଓଡ଼ିଶା ଅଧିକାର କରିବାରୁ କେଶରୀ ରାଜତ୍ୱ ଶେଷ ହେଲା । ସୁତରାଂ ୧୧୦୦ ଖ୍ରୀଷ୍ଟାବ୍ଦର ୨୩୦ ବର୍ଷ ପୂର୍ବେ ପୁରନ୍ଦର ରାଜା ହୋଇଥିବେ । ଅର୍ଥାତ୍ ପୁରନ୍ଦର ୮୭୦ ଖ୍ରୀଷ୍ଟାବ୍ଦରେ ରାଜା ଥିଲେ । ଏହା ମଧ୍ୟ ଆବୁଲଫଜଲଙ୍କ ବର୍ଣ୍ଣିତ ସମୟ ସଙ୍ଗେ ପ୍ରାୟ ସମାନ ହେଲା ।

ଉପରୋକ୍ତ ଯୁକ୍ତିର ଅସାରତା ସହଜରେ ଜଣାପଡ଼େ । ଶ୍ରୀ ବିଷକ୍ ସ୍ୱରୂପ କହନ୍ତି ଯେ, ଆବୁଲଫଜଲଙ୍କର ସମ୍ବାଦଦାତା କୋଣାର୍କ ନିର୍ମାଣର ସମୟଟି ଠିକ୍ କହିଲେ; କିନ୍ତୁ ନିର୍ମାଣକର୍ତ୍ତାଙ୍କ ନାମ କହିବାରେ ଭୁଲ କଲେ । କିନ୍ତୁ ଏହା ନିତାନ୍ତ ଅସ୍ୱାଭାବିକ । ନିର୍ମାଣକର୍ତ୍ତାଙ୍କ ନାମ ଯେତେ ମନେ ଥାଏ, ନିର୍ମାଣକାଳ କଦାପି ସେତେ ମନେରହି ନ ପାରେ । ବର୍ତ୍ତମାନ ପର୍ଯ୍ୟନ୍ତ ଇନ୍ଦ୍ରଦ୍ୟୁମ୍ନଙ୍କ ନାମ ଲୋକମୁଖରେ ଶୁଣାଯାଏ; କିନ୍ତୁ ସେ କେଉଁ ସମୟରେ ପୁରୀରେ ଜଗନ୍ନାଥ ପ୍ରତିଷ୍ଠା କରିଥିଲେ, ତାହା କେତେ ଜଣ ବର୍ତ୍ତମାନ ମନେ ରଖିଅଛନ୍ତି ? ସୁତରାଂ ଆବୁଲଫଜଲଙ୍କ 'ରାଜା ନରସିଂହଦେବ'ରେ ଯେତେ ବିଶ୍ୱାସ କରାଯାଇପାରେ, '୭୩୦ ବର୍ଷ ପୂର୍ବେ' କଥା ଉପରେ କଦାପି ସେତେ ନିର୍ଭର କରାଯାଇ ନ ପାରେ । ପୁଣି ପୁରନ୍ଦର କେଶରୀ କୋଣାର୍କ ନିର୍ମାଣ କରିଥିବା କଥା ଶ୍ରୀ ବିଷକ୍ ସ୍ୱରୂପ କାହୁଁ ଜାଣିଲେ ? ମାଦଳାପାଞ୍ଜି ବ୍ୟତୀତ ଅନ୍ୟ କୌଣସିଠାରେ ଏହାର ଉଲ୍ଲେଖ ଥିବାର ସେ କହନ୍ତି ନାହିଁ । ତାହାହେଲେ ପୁରନ୍ଦର କେଶରୀ କୋଣାର୍କ ନିର୍ମାଣ କରିଥିବା ମାଦଳାପାଞ୍ଜି ଯାହା ଲେଖିଛି ତାହା ସମ୍ପୂର୍ଣ୍ଣ ସତ୍ୟ । ପୁଣି ପାଞ୍ଜି ଯାହା ଲେଖିଅଛି ଯେ, ପୁରନ୍ଦରଙ୍କ ମନ୍ଦିର ଜୀର୍ଣ୍ଣ ହୋଇଯିବାରୁ ରାଜା ନରସିଂହଦେବ ବର୍ତ୍ତମାନ ମନ୍ଦିର ନିର୍ମାଣ କଲେ, ତାହା ଏକାବେଳକେ ଅସତ୍ୟ । ପାଞ୍ଜିରେ ଯାହା ଲେଖାଅଛି, କେଶରୀ ବଂଶରେ ୪୪ ଜଣ ରାଜା ଥିଲେ, ପୁରନ୍ଦର ତ୍ରିଂଶତମ ରାଜା ଏବଂ କେଶରୀ ବଂଶୀୟ ରାଜାମାନେ ୬୭୦ ବର୍ଷ ରାଜତ୍ୱ କରିଥିଲେ, ଇତ୍ୟାଦି ସମସ୍ତ ବିଷୟ ସମ୍ପୂର୍ଣ୍ଣ ସତ୍ୟ ଓ ଆଦରଣୀୟ; କିନ୍ତୁ ଲାଙ୍ଗୁଳା ନରସିଂହଦେବଙ୍କ ଦୁର୍ଭାଗ୍ୟକୁ କୋଣାର୍କ ନିର୍ମାଣ ଘଟଣାଟି କେବଳ ମିଥ୍ୟା, କାଳ୍ପନିକ ଓ ସର୍ବଥା ପରିବର୍ଜନୀୟ ବୋଲି ବିବେଚିତ ହେଲା ।

ଦ୍ୱିତୀୟତଃ ପାଞ୍ଜି ଅନୁସାରେ କେଶରୀ ବଂଶୀୟ ୪୪ ଜଣ ରାଜା ୬୭୦ ବର୍ଷ ରାଜତ୍ୱ କରିଥିବା ଯଦି ସତ୍ୟ ହେଲା, ତାହାହେଲେ ଚୋଡ଼ଗଙ୍ଗଙ୍କ ଓଡ଼ିଶା ବିଜୟ ସମୟ ପାଞ୍ଜି ଯାହା ଲେଖିଅଛି, ତାହା ମିଥ୍ୟା ହେବ କାହିଁକି ? ଏବଂ କେଉଁ ପ୍ରମାଣ ବଳରେ ପାଞ୍ଜିର

ସମୟକୁ ମିଥ୍ୟା ସ୍ଥାନ କରି ଶ୍ରୀ ବିଷବ୍ ସ୍ୱରୂପ ୧୧୦୦ ଖ୍ରୀଷ୍ଟାବ୍ଦରେ ଉପନୀତ ହେଲେ ? ଯେଉଁ ଖ୍ରୀଷ୍ଟାବ୍ଦରୁ ୨୩୦ ବାଦ ଦେଲେ ଆବୁଲଫଜଲଙ୍କ ଲେଖିବା ସମୟ ଆସିବ, ତାହା କ'ଣ ନିଶ୍ଚୟ ଚୋଡ଼ଗଙ୍ଗଦେବଙ୍କ ରାଜତ୍ୱ କାଳ ? ଏବଂ ସେହି ସମୟ ସମ୍ପୂର୍ଣ୍ଣ ସତ୍ୟ; କିନ୍ତୁ ମାଦଳାପାଞ୍ଜିର ସମୟ ଏକାବେଳକେ ମିଥ୍ୟା ? ପୁଣି ପୁରନ୍ଦରଙ୍କ ପରବର୍ତ୍ତୀ ୧୪ ଜଣ ରାଜାଙ୍କର ରାଜତ୍ୱ କାଳ ୨୩୦ ବର୍ଷ ହୋଇଥିବା ଶ୍ରୀ ବିଷନ୍ ସ୍ୱରୂପ ଜାଣିଲେ କିପରି ? ୬୭୦ ବର୍ଷକୁ ୪୪ ଜଣ ରାଜାଙ୍କ ମଧରେ ସମାନ ବିଭକ୍ତ କରିଦେଲେ ପ୍ରତ୍ୟେକଙ୍କ ଭାଗରେ ୧୬ ବର୍ଷ ପଡ଼େ ଏବଂ କିଛି ଭାଗଶେଷ ରହେ । ସୁତରାଂ ୧୪ ଜଣକୁ (୧୪ × ୧୬) ୨୨୪ ବର୍ଷ ଏବଂ ଉକ୍ତ ଭାଗଶେଷରୁ ୬ ବର୍ଷ ମାତ୍ର ମିଶାଇଲେ ୨୩୦ ବର୍ଷ ପୂର୍ଣ୍ଣ ହୁଏ । ଏହିପରି ହିସାବରେ ରାଜାମାନଙ୍କର ରାଜତ୍ୱକାଳ ଅନ୍ୟ କୌଣସି ଦେଶର ଇତିହାସରେ ଦେଖାଯାଏ ନାହିଁ । କିନ୍ତୁ ଶ୍ରୀ ବିଷବ୍ ସ୍ୱରୂପ ଓଡ଼ିଶାର ଯେଉଁ ସ୍ୱତନ୍ତ୍ର ଇତିହାସ ତିଆର କରିବାର ଚେଷ୍ଟାରେ ଅଛନ୍ତି, ତହିଁରେ ଏପରି ଗାଣିତିକ ସମୟ ବିଭାଗ ହୋଇପାରେ । ଶ୍ରୀ ବିଷବ୍ ସ୍ୱରୂପ ଇଞ୍ଜିନିୟର ଓ ଗଣିତଜ୍ଞ; କିନ୍ତୁ ମନୁଷ୍ୟର ମୃତ୍ୟୁବିଧାତା କ'ଣ ତାହାଙ୍କ ପରି ସମୁଦାୟ କେଶରୀ ରାଜତ୍ୱ କାଳରେ ଏତେ ଗଣିତ ହିସାବ ଠିକ୍ ରଖିଥିଲେ ?

କୋଣାର୍କର ବର୍ତ୍ତମାନ ମନ୍ଦିର ପୁରନ୍ଦର କେଶରୀଙ୍କ ଦ୍ୱାରା ନିର୍ମିତ ହୋଇଥିବା ସୁପ୍ରସିଦ୍ଧ ମନେକରି ଶ୍ରୀ ବିଷବ୍ ସ୍ୱରୂପ ପୁଣି ପ୍ରଶ୍ନ ଉଠାନ୍ତି ଯେ, ନରସିଂହଦେବ ତେବେ କେଉଁ ମନ୍ଦିର କୋଣାର୍କରେ ନିର୍ମାଣ କରିଥିଲେ ? ମାଦଳା ପାଞ୍ଜି ବ୍ୟତୀତ ଦ୍ୱିତୀୟ ନରସିଂହଦେବଙ୍କ ତାମ୍ରଶାସନରେ ମଧ ନରସିଂହଦେବ କୋଣାର୍କରେ ମନ୍ଦିର ନିର୍ମାଣ କରିଥିବାର ଉଲ୍ଲେଖ ଅଛି । ଏପରି ସ୍ଥଳେ ନରସିଂହଦେବଙ୍କ ନାମରେ ଗୋଟିଏ ମନ୍ଦିର ନ ରଖିଲେ ନ ଚଳେ । ସୁତରାଂ କୋଣାର୍କ ନାଟମନ୍ଦିରଟି କେବଳ ନରସିଂହଦେବଙ୍କ କୀର୍ତ୍ତି ବୋଲି ସେ ସ୍ଥିର କରିଅଛନ୍ତି ଏବଂ ଏହା ପ୍ରମାଣ କରିବା ନିମନ୍ତେ ଉକ୍ତ ତାମ୍ରଶାସନର ଦ୍ୱାହି ଦେଇଅଛନ୍ତି । ତାମ୍ରଶାସନର ୮୬ ଶ୍ଳୋକରେ କୋଣାର୍କ ନିର୍ମାଣ କଥା ଲେଖାଅଛି । ଶ୍ଳୋକଟି ଏହି :—

> "କୁର୍ବନ ପ୍ରକାଶମନିଶଂ ଦ୍ୱିଜ୍ୱସାଚ କୃତ୍ୱା,
> ମେରୁ ତୁଳାପୁରୁଷମୁଖ୍ୟମହାର୍ଥ-ଦାନୈଃ ।
> ସ୍ଥାତୁଂ ସୁରୈଃ ସହ ମହଃ କଳୟଂଶ୍ଚ କୋଣା-
> କୋଣେ କୁଟୀରକମଚୀକରଦୁଷ୍ମରଶ୍ମେଃ ॥" *

* 'ମୁକୁର'ରେ ପଣ୍ଡିତ ଶ୍ରୀ ମୃତ୍ୟୁଞ୍ଜୟ ରଥଙ୍କ ଦ୍ୱାରା ଉଦ୍ଧୃତ ତାମ୍ର ଅନୁଶାସନରେ କେତେକ ଯତି ଓ ବ୍ୟାକରଣ ଦୋଷ ଅଛି । ଦ୍ୱିତୀୟ ପାଦରେ 'ପୁରୁଷାଖ୍ୟ' ଅଛି; କିନ୍ତୁ ଏହାଦ୍ୱାରା ଯତି ଚଳୁ ନ ଥିବାରୁ ମୁଁ ଶ୍ରୀ ମୃତ୍ୟୁଞ୍ଜୟ ରଥଙ୍କ ସଂଶୋଧନ ଅନୁସାରେ 'ପୁରୁଷାଖ୍ୟ' ପରିବର୍ତ୍ତରେ 'ପୁରୁଷମୁଖ୍ୟ' ଲେଖିଲି । ସୁତରାଂ 'ମୁକୁର'ରେ ପଣ୍ଡିତ ଶ୍ରୀ ମୃତ୍ୟୁଞ୍ଜୟ ରଥଙ୍କର ଯେ ଅର୍ଥ ଅଛି

ଅର୍ଥାତ୍ ସେ (ପ୍ରଥମ ନରସିଂହଦେବ) (ସ୍ୱପ୍ରଭାବ) ଅହର୍ନିଶ ପ୍ରକାଶ କରି ତୁଳା ପୁରୁଷମୁଖ୍ୟ ମହାର୍ଥ ଦାନରେ ମେରୁକୁ ବିପ୍ରସାତ୍ କରି ମହଃ (ଯୋଗ୍ୟତା) ଲାଭ କରି ଦେବତାମାନଙ୍କ ସଙ୍ଗେ ସ୍ଥାନ ପାଇବା ନିମନ୍ତେ କୋଣାକୋଣ (କୋଣାର୍କ)ରେ ସୂର୍ଯ୍ୟଦେବଙ୍କର କୁଟୀରକ କରାଇଦେଲେ ।

ଶ୍ରୀ ବିଷନ୍ ସ୍ୱରୂପ କହନ୍ତି, ଶ୍ଳୋକରେ 'କୁଟୀରକଂ' ଅଛି । କୋଣାର୍କର ବଡ଼ଦେଉଳକୁ କୁଟୀରକ କୁହାଯାଇ ନ ପାରେ । ସୁତରାଂ ନାଟମନ୍ଦିରକୁ 'କୁଟୀରକ' କୁହାଯାଇଅଛି ଏବଂ ରାଜା ନରସିଂହଦେବ ଏହି ନାଟମନ୍ଦିର ନିର୍ମାଣ କରିଥିଲେ । ପୁଣି ଶେଷ ଦୁଇ ପାଦର ଅର୍ଥ ଆସିଆଟିକ୍ ସୋସାଇଟି ପତ୍ରିକାରେ ନିମ୍ନଲିଖିତ ଭାବରେ ଅଛି :—

"He built in Konakona, a place of great renown, a temple for the Sun to lie in with the other gods."

ଅର୍ଥାତ୍ ସୂର୍ଯ୍ୟ ଅନ୍ୟାନ୍ୟ ଦେବତାମାନଙ୍କ ସହିତ ରହିବା ପାଇଁ ପ୍ରସିଦ୍ଧ କ୍ଷେତ୍ର କୋଣାକୋଣରେ ସେ ଗୋଟିଏ ମନ୍ଦିର ନିର୍ମାଣ କରିଥିଲେ । ଶ୍ରୀ ବିଷନ୍ ସ୍ୱରୂପ ପତ୍ରିକାର ଉକ୍ତ ଅନୁବାଦକୁ ଦୋଷାବହ ମନେକରି କହନ୍ତି, କୋଣାକୋଣ ବା କୋଣାର୍କରେ ନିଜେ ସୂର୍ଯ୍ୟଦେବ ପ୍ରଧାନ ଦେବତା ଏବଂ ଅନ୍ୟାନ୍ୟ ଯେ ଦେବତାମାନେ ଥିଲେ, ସେମାନଙ୍କର ମହିମା ଅପେକ୍ଷାକୃତ ଅଳ୍ପ ଥିଲା ଓ ସେମାନଙ୍କ ସକାଶେ ବୃହଦ୍ ମନ୍ଦିର ବା ସେବାପୂଜାର ବ୍ୟବସ୍ଥା ହୋଇ ନ ଥିଲା । ସେମାନେ କ୍ଷେତ୍ରପାଳ ସ୍ୱରୂପ କୋଣାର୍କର ରକ୍ଷକ ମାତ୍ର ଥିଲେ । ଅତଏବ ସୂର୍ଯ୍ୟଦେବ ସେହି ଦେବତାମାନଙ୍କ ସଙ୍ଗେ ରହିବା ନିମନ୍ତେ ରାଜା ମନ୍ଦିର କରିଥିବା ସଙ୍ଗତ ନୁହେଁ । ବରଂ ସେହି ଦେବତାମାନେ ସୂର୍ଯ୍ୟଙ୍କ ସହିତ ରହିଥିଲେ । ଅତଏବ 'to live in with other gods' ବା 'ସୁରୈଃ ସ୍ଥାତୁଂ' ବା 'ଅନ୍ୟାନ୍ୟ ଦେବତାମାନଙ୍କ ସହିତ ରହିବା ପାଇଁ' କଥାର କୌଣସି ଅର୍ଥ ନାହିଁ । ସୁତରାଂ ଶ୍ରୀ ବିଷନ୍ ସ୍ୱରୂପ ନିଜର ଗୋଟିଏ ଶୁଦ୍ଧତର ଅନୁବାଦ ଦେଇଅଛନ୍ତି :—

"He erected in the well-renowned place Konakona of (belonging to) the Sun-God a building in order to stay with the gods' meaning a building where pilgrims could sit for a short time in the Devasthana."

ଅର୍ଥାତ୍ ''ଦେବତାମାନଙ୍କ ସହିତ ରହିବା ପାଇଁ (ବା ଦେବସ୍ଥାନରେ ଯାତ୍ରୀମାନେ କିଛି କାଳ ବସିବା ପାଇଁ) ସୂର୍ଯ୍ୟଦେବଙ୍କ ପ୍ରସିଦ୍ଧ କ୍ଷେତ୍ର କୋଣାକୋଣରେ ସେ ଗୋଟିଏ ଗୃହ ନିର୍ମାଣ କରାଇଥିଲେ ।'' ଅତଏବ ଶ୍ରୀ ବିଷନ୍ ସ୍ୱରୂପ ସ୍ଥିର କରନ୍ତି, ରାଜା ନରସିଂହଦେବ

---

ତାହା ଭୁଲ । ପୁଣି ତୃତୀୟ ପାଦରେ 'ମହତ୍ କଳୟତି ଅଛି; କିନ୍ତୁ ତାହାର କୌଣସି ଅର୍ଥ ନ ଲାଗିବାରୁ ମୁଁ ତାହା 'ମହଃ କଳୟଂଶ୍ଚ' କରି ପଢ଼ିଲି ।

କୋଣାର୍କ ମନ୍ଦିରର ସମ୍ମୁଖରେ ଥିବା ନାଟମନ୍ଦିରଟି ନିର୍ମାଣ କରିଥିଲେ । କାରଣ ନାଟମନ୍ଦିରରେ ଯାତ୍ରୀମାନେ ସାଧାରଣତଃ ଦେବାର୍ଚ୍ଚନ ନିମନ୍ତେ ବସନ୍ତି ।

ଶ୍ଲୋକଟିର ଶେଷ ଦୁଇ ପାଦର ଯେଉଁ ଅର୍ଥ 'ଆସିଆଟିକ ସୋସାଇଟି ପତ୍ରିକା'ରେ ପ୍ରକାଶିତ ହୋଇଅଛି ଏବଂ ଯାହାର ଅନୁସରଣରେ 'ମୁକୁର'ରେ ଅର୍ଥ କରାଯାଇଅଛି, ତାହା ଅବଶ୍ୟ ଦୋଷାବହ । ଶ୍ରୀ ବିଷକ୍ ସ୍ୱରୂପ ସେଥିରେ ଯେଉଁ ଦୋଷ ବା ଅର୍ଥର ଭିନ୍ନତା ଦେଖନ୍ତି, ତାହା ଅପେକ୍ଷା ଗୁରୁତର ଦୋଷ ସେ ଅନୁବାଦରେ ଦେଖାଯାଏ । ପ୍ରଥମତଃ 'ମହତ୍ କଳୟନ୍ତି'ର ଅର୍ଥ କିଛି ଜଣାପଡ଼େ ନାହିଁ । 'ପତ୍ରିକା'ରେ ତାହା 'କୋଣାକୋଣ'ର ବିଶେଷଣ ସ୍ୱରୂପ ଅନୁବାଦିତ ହୋଇଅଛି ଏବଂ ତାହାର ଅର୍ଥ କରାଯାଇଅଛି, ପ୍ରସିଦ୍ଧ କ୍ଷେତ୍ର କୋଣାକୋଣ (Konakona a place of great renown) । କେଉଁ ବ୍ୟାକରଣ ସୂତ୍ର ଅନୁସାରେ 'କଳୟନ୍ତି' ବିଶେଷଣ ହୋଇପାରେ ଜଣାଯାଏ ନାହିଁ । ଦୁଃଖର କଥା, ପତ୍ରିକାରେ ତାମ୍ରଶାସନର ପ୍ରକାଶକ ଶ୍ରୀ ନଗେନ୍ଦ୍ରନାଥ ବୋଷଙ୍କ ଦୃଷ୍ଟିରେ ଏହି ଦୋଷ ଧରା ପଡ଼ିଲା ନାହିଁ । ପ୍ରଥମ ପାଦର 'କୁର୍ଚ୍ଚନ୍' ସହିତ ସମାନ ଅନ୍ୱୟ କରି ମୁଁ ତାହାକୁ 'ମହଃ କଳୟନ୍' କରିଅଛି । ମହଃ ଶବ୍ଦର ଅର୍ଥ ତେଜ, କ୍ଷମତା ବା ଯୋଗ୍ୟତା, 'କଳୟନ୍'ର ଅର୍ଥ ପ୍ରାପ୍ତ ହୋଇ ।

ଦ୍ୱିତୀୟରେ 'ସୁରୈଃ ସହସ୍ଥାତୁଂ'ର ଅର୍ଥ 'ପତ୍ରିକା'ରେ ଲେଖାଅଛି, 'ସୂର୍ଯ୍ୟ ଅନ୍ୟାନ୍ୟ ଦେବତାମାନଙ୍କ ସହିତ ରହିବା ପାଇଁ'; କିନ୍ତୁ ଏଭଳି ଅର୍ଥ ଅନୁସାରେ ଶ୍ଲୋକଟି ଭୟଙ୍କର ବ୍ୟାକରଣ ଦୋଷରେ ଦୂଷିତ ହୁଏ । ତାମ୍ରଶାସନ ଲେଖକଙ୍କର ଐତିହାସିକ ଜ୍ଞାନ ଯାହାହେଉ ପଛକେ ବ୍ୟାକରଣ ଜ୍ଞାନରେ କଦାପି ସନ୍ଦେହ କରାଯାଇ ନ ପାରେ । ଯଦି ସୂର୍ଯ୍ୟଦେବ 'ସୁରୈଃ ସହସ୍ଥାତୁଂ' ପ୍ରକୃତ ଅର୍ଥ ହୋଇଥାନ୍ତା, ତାହାହେଲେ 'ସ୍ଥାତୁଂ' ଣିଜନ୍ତ ହୋଇ 'ସ୍ଥାପୟିତୁଂ' ହୋଇଥାନ୍ତା; କାରଣ ସମୁଦାୟ ବାକ୍ୟଟିର କର୍ତ୍ତା 'ସେ' ବା 'ରାଜା' । ଅତଏବ ଶ୍ରୀ ବିଷକ୍ ସ୍ୱରୂପ ଯେ ଅର୍ଥ କରନ୍ତି, ତାହା ବରଂ ବ୍ୟାକରଣ ଅନୁସାରେ ଅପେକ୍ଷାକୃତ ସମୀଚୀନ ବୋଧହୁଏ । ସେ କହନ୍ତି, ଯାତ୍ରୀମାନେ 'ସୁରୈଃ ସହସ୍ଥାତୁଂ' ।

ଶ୍ରୀ ବିଷକ୍ ସ୍ୱରୂପଙ୍କର ଉପରୋକ୍ତ ଅର୍ଥ ବ୍ୟାକରଣାନୁମୋଦିତ ହେଲେ ସୁଦ୍ଧା ପୂର୍ବାପର ସମ୍ବନ୍ଧ ଦୃଷ୍ଟିରେ ଭୟଙ୍କର ଦୋଷାବହ ବୋଧହୁଏ । ପ୍ରଥମ କଥା, ପତ୍ରିକାର temple ବା 'ଦେଉଳ' ପରିବର୍ତ୍ତରେ building ବା 'ଗୃହ' ଲେଖିବା ତାହାଙ୍କର ଗୋଟିଏ ବୃଥା ଚାତୁରୀ ଛଡ଼ା ଅନ୍ୟ କିଛି ନୁହେଁ । 'କୁଟୀରକ'ର ଅର୍ଥ କୁଡ଼ିଆ । ତାହାର ଅର୍ଥ temple ବା ଦେଉଳ ନ ହେଲେ Building ବା ଗୃହ ହେବ କାହିଁକି ? ଯେଉଁ କାରଣରୁ କୋଣାର୍କ ବଡ଼ଦେଉଳ କୁଟୀର ହୋଇ ନ ପାରେ, ସେହି କାରଣରୁ ନାଟମନ୍ଦିରକୁ ବା କୁଟୀର କୁହାଯିବ କିପରି ? ଅବଶ୍ୟ ନାଟମନ୍ଦିର ବଡ଼ଦେଉଳଠାରୁ କ୍ଷୁଦ୍ରତର; ଏହା ବୋଲି ତାହାକୁ ସାଧାରଣ

ଅର୍ଥରେ ଗୋଟିଏ କୁଡ଼ିଆଘର କହିବା ନିତାନ୍ତ ଅସଙ୍ଗତ । ଯାହାର ଶିଳ୍ପଚାତୁରୀ ଓ ଗଠନ ପ୍ରଣାଳୀ ଦେଖି ଦର୍ଶକମାନେ ବିସ୍ମିତ ହୁଅନ୍ତି, ତାହାକୁ କଦାପି ସାଧାରଣ କୁଟୀର କୁହାଯାଇ ନ ପାରେ ।

ଦ୍ୱିତୀୟତଃ, ଶ୍ଳୋକଟିର ପ୍ରଥମ ଦୁଇ ପାଦରୁ ପ୍ରକାଶ ଯେ, ରାଜା ନରସିଂହଦେବ ତୁଳାପୁରୁଷ ରୂପ ମହାଦାନ କରିଥିଲେ; ଏମନ୍ତ କି ମେରୁ ପର୍ବତ ସମାନ ସ୍ୱର୍ଣ୍ଣ ବ୍ରାହ୍ମଣମାନଙ୍କ ମଧ୍ୟରେ ବିତରଣ କରିଥିଲେ । ଏ ସମସ୍ତର ଫଳ ସ୍ୱରୂପ ସ୍ୱର୍ଗଲୋକରେ ଦେବତାମାନଙ୍କ ସହିତ ରହିବା ନିମନ୍ତେ ତାହାଙ୍କର ଯୋଗ୍ୟତା ହୋଇଥିଲା । ସ୍ୱର୍ଗ ପାଇବା ନିମନ୍ତେ ଲୋକେ ଦାନ କରନ୍ତି ବା ଦେଉଳ ତୋଳାନ୍ତି ଏବଂ ବର୍ତ୍ତମାନ ପର୍ଯ୍ୟନ୍ତ ମଧ୍ୟ ଲୋକେ ଏହି ଧାରଣାରେ ଦାନକାର୍ଯ୍ୟ କରି ଆସୁଅଛନ୍ତି । ନରସିଂହଦେବ ବିପୁଳ ସ୍ୱର୍ଣ୍ଣଦାନ କରିଥିଲେ ଏବଂ କୋଣାର୍କରେ ସୂର୍ଯ୍ୟଦେବଙ୍କର ପ୍ରସିଦ୍ଧ ମନ୍ଦିର ନିର୍ମାଣ କରାଇଥିଲେ; ସୁତରାଂ 'ସୁରୈଃ ସହସ୍ଥାତୁଂ'ର ଅର୍ଥ 'ରାଜା ନିଜେ ସ୍ୱର୍ଗର ଦେବତାମାନଙ୍କ ସହିତ ରହିବାକୁ' – ଏପରି ଅର୍ଥ ପୂର୍ବାପର ତୁଳନାରେ ସଙ୍ଗତିସମ୍ପନ୍ନ ବୋଧ ହେଉଅଛି । ତାହାହେଲେ ମୋଟରେ ଶ୍ଳୋକଟିର ଅର୍ଥ ହେବ – ସେ (ରାଜା ନରସିଂହଦେବ) ଅହର୍ନିଶ (ସ୍ୱପ୍ରଭାବ) ପ୍ରକାଶ କରି, ମେରୁ ସମାନ ତୁଳାପୁରୁଷମୁଖ୍ୟ ବିପୁଳ ସ୍ୱର୍ଣ୍ଣ ବ୍ରାହ୍ମଣମାନଙ୍କୁ ଦାନ କରିବା ଦ୍ୱାରା (ସ୍ୱର୍ଗବାସ ନିମନ୍ତେ) ଯୋଗ୍ୟତା ବା ଅଧିକାର (ମହଃ) ପ୍ରାପ୍ତ ହୋଇ (ସ୍ୱର୍ଗରେ) ଦେବତାମାନଙ୍କ ସହିତ ସ୍ଥାନ ପାଇବା ନିମନ୍ତେ କୋଣାକୋଣରେ ସୂର୍ଯ୍ୟଦେବଙ୍କର କୁଟୀର ବା ମନ୍ଦିର ନିର୍ମାଣ କରାଇଥିଲେ । ଶ୍ରୀ ବିଷନ୍ ସ୍ୱରୂପଙ୍କ ଅର୍ଥ ଅନୁସାରେ ଶ୍ଳୋକଟିର ପ୍ରଥମ ଦୁଇ ପାଦ ଓ ଶେଷ ଦୁଇ ପାଦ ମଧ୍ୟରେ କୌଣସି ସମ୍ବନ୍ଧ ନ ଥିଲା ପରି ବୁଝାଯାଏ । ପ୍ରଥମ ଦୁଇ ପାଦରେ ତାହାଙ୍କର ଅଲୌକିକ ଦାନ ଏବଂ ଶେଷ ଦୁଇ ପାଦରେ ତାହାଙ୍କ ଅପୂର୍ବ ମନ୍ଦିର ନିର୍ମାଣ କୀର୍ତ୍ତି – ଉଭୟର ଫଳରେ ରାଜାଙ୍କର ସ୍ୱର୍ଗବାସ । ବିଶେଷତଃ ଏହାର ପୂର୍ବବର୍ତ୍ତୀ ଶ୍ଳୋକରେ* ତୁଳାପୁରୁଷ ଦାନର ଉଲ୍ଲେଖ ଅଛି । ଏପରି ସ୍ଥଳରେ ପରବର୍ତ୍ତୀ ୮୬ ଶ୍ଳୋକରେ ପୁଣି ସେହି ତୁଳାପୁରୁଷ ଦାନର ଉଲ୍ଲେଖ କାହିଁକି ହୁଅନ୍ତା ? କେବଳ ଦାନର ଫଳ ଉଲ୍ଲେଖ କରିବା ନିମନ୍ତେ ପ୍ରଥମ ଦୁଇପାଦରେ ପୁନରାୟ ସେହି ଦାନର ଫଳ ଉଲ୍ଲେଖ କରାଯାଇଅଛି । ସେହି ଦାନ ଫଳରେ ରାଜା 'ମହଃ କଳୟନ୍' (ସ୍ୱର୍ଗବାସର ଅଧିକାର ପ୍ରାପ୍ତ ହୋଇ) ଦେବତାମାନଙ୍କ ସଙ୍ଗେ ସ୍ୱର୍ଗରେ ରହିବା ନିମନ୍ତେ କୋଣାର୍କରେ ମନ୍ଦିର ନିର୍ମାଣ କରାଇଥିଲେ । କେବଳ ଯଦି ନାଟମନ୍ଦିରଟି 'ଯାତ୍ରୀମାନେ ବସିବା ନିମନ୍ତେ' ନରସିଂହଦେବ କରିଥିବା

---

* ଭୁଜଭୁବି ଗିରୟୋଃଷ୍ଟୌ ଯସ୍ୟ ଭୂମୀନ୍ଦ୍ର ଭର୍ତ୍ତୁଃ
କ୍ଷିତି ଚ ରଣ ସମର୍ଥାଃ କିଷ୍ଠଦିକ୍ କୁଞ୍ଜରୋଦ୍ରାଃ ।
ଅତୁଳୟ ଦିହ ସସ୍ୱଚ୍ଛେଦ୍ (ଶାଶ୍ୱଚ୍ଛେଦ୍ ?) ତୁଳ ପୁରୁଷେଣ
କୃଭବତୁ କନକାଦ୍ରିର୍ଦ୍ଦେବତାନାଂ ଗୁହାଭୂଦ୍ ।୮୫।

ଶ୍ଳୋକରେ ଲେଖାଥାନ୍ତା, ତାହାହେଲେ କେବଳ ଦ୍ୱିରୁକ୍ତି ଦୋଷ ଦେଖାଇବା ପାଇଁ ଲେଖକ ପ୍ରଥମ ପାଦରେ ତୁଳାପୁରୁଷ ଦାନର ପୁନରୁଲ୍ଲେଖ କରି ନ ଥାନ୍ତେ । ନରସିଂହଦେବ କେବଳ ନାଟମନ୍ଦିରଟି କରିଥିଲେ – ଏହି ଭାବକୁ ମନରେ ସମ୍ପୂର୍ଣ୍ଣ ସ୍ଥାନ ଦେଇ ଶ୍ଳୋକଟିକୁ ମୋଡ଼ିମାଡ଼ି ଗୋଟିଏ ଅର୍ଥ ବାହାର କଲେ ପ୍ରକୃତ ତଥ୍ୟ ମିଳିପାରିବ ନାହିଁ । ଯେଉଁ ଅର୍ଥ ସର୍ବାପେକ୍ଷା ଯୁକ୍ତିଯୁକ୍ତ ଓ ନିର୍ଦ୍ଦୋଷ ଏବଂ ଯାହା ସହଜରେ ପାଠକକୁ ପ୍ରତୀତ ହୁଏ; ତାହା ଗ୍ରହଣ ନ କରି, ନିଜର ଅଭିମତ ଅନୁସାରେ ଅର୍ଥଟିଏ ଟାଣି ଓଟାରି ବାହାର କରିବାରେ ବୁଦ୍ଧିକୌଶଳର ଯଥେଷ୍ଟ ପରିଚୟ ମିଳେ ସତ୍ୟ; କିନ୍ତୁ ଇତିହାସର ବାସ୍ତବ ଘଟଣା ଜାଣିବା ପକ୍ଷରେ ସେଭଳି କୌଶଳ ସର୍ବଥା ପରିବର୍ଜ୍ଜନୀୟ ।

ଶ୍ରୀ ବିଷ୍ଣୁ ସ୍ୱରୂପ ତାହାଙ୍କ ଶେଷୋକ୍ତ ନୂତନ ସିଦ୍ଧାନ୍ତ ସମର୍ଥନ କରିବା ନିମନ୍ତେ ପୁନରାୟ ମାଦଳାପାଞ୍ଜି ଉପରେ ସମ୍ପୂର୍ଣ୍ଣ ବିଶ୍ୱାସ କରି ତାହାର ଆଶ୍ରୟ ନେଇଅଛନ୍ତି । ସେ କହନ୍ତି, ପୁରନ୍ଦର କେଶରୀଙ୍କ ମନ୍ଦିରର ସମ୍ମୁଖରେ ଗୋଟିଏ ଗଣ୍ଡ ଉପରେ (ପଦ୍ମତୋଳା ଗଣ୍ଡ) ନରସିଂହଦେବଙ୍କ ମନ୍ଦିର ନିର୍ମିତ ହୋଇଥିଲା । ନରସିଂହଦେବଙ୍କ ମନ୍ଦିର ଯଦି ନାଟମନ୍ଦିର ନ ହୋଇ କୋଣାର୍କ ମନ୍ଦିର ହୋଇଥାନ୍ତା, ତାହାହେଲେ ଗୋଟିଏ ଗଣ୍ଡ ପୋତାଇ ମନ୍ଦିର ନିର୍ମାଣ କରିବାର କୌଣସି କାରଣ ନ ଥିଲା । ବରଂ ଗୋଟିଏ ଉପଯୁକ୍ତତର ସ୍ଥାନରେ ମନ୍ଦିର କରାଯାଇଥାନ୍ତା । ମାଦଳାପାଞ୍ଜି କହେ, ପୁରୀ ମନ୍ଦିର ଯେତେ ବଡ଼ ହୋଇଅଛି, ତାହାଠାରୁ ଆହୁରି ବଡ଼ କରି ମନ୍ଦିରଟିଏ ନିର୍ମାଣ କରାଇବା ମହାରାଜ ଅନଙ୍ଗଭୀମଦେବଙ୍କ ସଂକଳ୍ପ ଥିଲା; କିନ୍ତୁ ସେ ସଂକଳ୍ପ ସେ କାର୍ଯ୍ୟରେ ପରିଣତ କରିପାରି ନ ଥିବାରୁ ପିତାଙ୍କର ସେହି ପାପର କ୍ଷାଳନ ନିମନ୍ତେ ତାଙ୍କର ପୁତ୍ର ବଡ଼ରାୟ ନରସିଂହଦେବ ମହାରାଜା କୋଣାର୍କ ମନ୍ଦିର ନିର୍ମାଣ କରାଇଥିଲେ । ଅତଏବ ଶ୍ରୀ ବିଷ୍ଣୁ ସ୍ୱରୂପ କହନ୍ତି, ଅନଙ୍ଗଭୀମଦେବ ପୁରୀର ଯେଡ଼େ ବଡ଼ଦେଉଳ କରିବାର ମନସ୍ଥ କରିଥିଲେ, ତାହା ଅପେକ୍ଷା ଦେଉଳଟି କ୍ଷୁଦ୍ରତର ହୋଇଗଲା । ସୁତରାଂ ସେ ବଡ଼ଦେଉଳରେ ଯେତେ ଅର୍ଥ ବ୍ୟୟ କରାଯାଇଥାନ୍ତା, ତାହା କେତେକ ଖିଳି କଳି ପଡ଼ିଲା । ପିତାଙ୍କୁ ପାପମୁକ୍ତ କରିବା ପାଇଁ ନରସିଂହଦେବ ସେହି ଅର୍ଥ ବ୍ୟୟ କରି କୋଣାର୍କରେ ନାଟମନ୍ଦିରଟି ନିର୍ମାଣ କରାଇଦେଲେ । ଏହି ସବୁ କାରଣରୁ ସିଦ୍ଧାନ୍ତ କରିଅଛନ୍ତି ଯେ, କୋଣାର୍କ ମନ୍ଦିର ପୁରନ୍ଦର କେଶରୀଙ୍କ ଦ୍ୱାରା ନବମ ଶତାବ୍ଦୀର ଶେଷାର୍ଦ୍ଧରେ ଏବଂ ନାଟମନ୍ଦିର ନରସିଂହଦେବଙ୍କ ଦ୍ୱାରା ୧୨୪୧ ଖ୍ରୀଷ୍ଟାବ୍ଦରେ ନିର୍ମିତ ହୋଇଥିଲା ।

ଉପରୋକ୍ତ ପ୍ରମାଣର ଦୁର୍ବଳତା ଅତି ସହଜରେ ଧରାପଡ଼େ ଏବଂ ଶ୍ରୀ ବିଷ୍ଣୁ ସ୍ୱରୂପଙ୍କ ପରି ଗ୍ରନ୍ଥକାର ଏଥିରେ କିପରି ସନ୍ତୁଷ୍ଟ ରହିଲେ ବୁଝାଯାଏ ନାହିଁ । ପ୍ରଥମତଃ ମାଦଳାପାଞ୍ଜି କହେ, ପଦ୍ମତୋଳା ଗଣ୍ଡ ଉପରେ କୋଣାର୍କ ମନ୍ଦିର ନିର୍ମିତ ହୋଇଥିଲା ଏବଂ 'ଶିବେଇ ସାନ୍ତରା'ଙ୍କ ଦେଉଳତୋଳା କିମ୍ବଦନ୍ତୀରୁ ମଧ୍ୟ ସେହି କଥା ଜଣାପଡ଼େ । ଶ୍ରୀ ବିଷ୍ଣୁ

ସ୍ୱରୂପ ଅର୍ଥ କରନ୍ତି, କୋଣାର୍କ ମନ୍ଦିର ସମ୍ମୁଖରେ, ବର୍ତ୍ତମାନ ଯେଉଁଠାରେ ନାଟମନ୍ଦିର ଅବଶେଷ ଅଛି, ଠିକ୍ ସେହିଠାରେ ପଦ୍ମତୋଳା ଗଣ୍ଡ ଥିଲା । ନାଟ ମନ୍ଦିରର ନିର୍ମାଣ ନିମନ୍ତେ ତାହା ପୋତାଇବାକୁ 'ଶିବେଇ ସାନ୍ତରା' ବାଧ ହୋଇଥିଲେ; କିନ୍ତୁ ଗଣ୍ଡଟା, ପାଖରେ ରଖି କେହି କେବେ ମନ୍ଦିର କଥା ତେଣେ ଥାଉ ଘରଟିଏ ପର୍ଯ୍ୟନ୍ତ ତିଆରି କରାଇବାର ଦେଖାଯାଏ ନାହିଁ । ପୁଣି କୋଣାର୍କ ମନ୍ଦିର ଏଡ଼େ ବୃହତ୍ ଏବଂ ତାହାର କାରୁକାର୍ଯ୍ୟରେ ବିସ୍ତର ଅର୍ଥବ୍ୟୟ କରାଯାଇଥିଲା । ଗୋଟିଏ ଗଣ୍ଡର ଠିକ୍ ଉପରେ ଏଡ଼େ ସୁନ୍ଦର ଓ ବୃହତ୍ ମନ୍ଦିର ନିର୍ମାଣ କରିଥିବା କୌଣସି ଇଞ୍ଜିନିୟର ପକ୍ଷରେ କଦାପି ସମ୍ଭବ ନୁହେଁ । କାରଣ ଗଣ୍ଡର କୂଳବର୍ତ୍ତୀ ସ୍ଥାନରେ ମୂଳଭିତ୍ତି ତଳକୁ ଦବିଯିବାର ବିଶେଷ ଆଶଙ୍କା । ବିଶେଷତଃ ପଦ୍ମତୋଳା ଗଣ୍ଡର କୂଳ କେବଳ ବାଲୁକାମୟ ଏବଂ କୋଣାର୍କ ମନ୍ଦିର ଭାର ବହନ କରିବା କଳ୍ପନାର ଅତୀତ । ସୁତରାଂ କୋଣାର୍କକାର ନିଶ୍ଚୟ ମନ୍ଦିର ନିର୍ମାଣ ପୂର୍ବରୁ ଗଣ୍ଡଟି ପୋତାଇ ଦେଇଥିବେ । ଏପରି ଗୋଟିଏ ପ୍ରସିଦ୍ଧ ଗଣ୍ଡର ବାଲୁକାମୟ କୂଳ ଉପରେ କୋଣାର୍କ ରୂପ ପ୍ରକାଣ୍ଡ ମନ୍ଦିର ନିର୍ମିତ ହୋଇଥିବା ଶ୍ରୀ ବିଷକ୍ ସ୍ୱରୂପଙ୍କ ପରି ଇଞ୍ଜିନିୟରଙ୍କର ସେ ବିଶ୍ୱାସ ହେଲା, ତାହାହିଁ ବିଚିତ୍ର ।

ଦ୍ୱିତୀୟତଃ ଯଦି ମାଦଳାପାଞ୍ଜିକୁ ବିଶ୍ୱାସ କରିବାକୁ ହେଲା, ତାହାହେଲେ ତାହାର ଗୋଟିଏ ବାକ୍ୟର କେତୋଟି ମାତ୍ର ଶବ୍ଦରେ ବିଶ୍ୱାସ କରି ସମୁଦାୟ ବାକ୍ୟଟି ଅବିଶ୍ୱାସ କରିବାରେ କୌଣସି କାରଣ ଦେଖାଯାଉ ନାହିଁ । ଶ୍ରୀ ବିଷକ୍ ସ୍ୱରୂପ ନିଜ 'କୋଣାର୍କ' ଗ୍ରନ୍ଥର ୫ ପୃଷ୍ଠାରେ ମାଦଳାପାଞ୍ଜିରୁ ଯେଉଁ ଅଂଶ ଉଦ୍ଧାର କରିଅଛନ୍ତି, ତହିଁରୁ ଜଣାଯାଏ ଯେ ନରସିଂହଦେବ କୋଣାର୍କ ମନ୍ଦିର ନିର୍ମାଣ କଲେ, ତାହାର ପ୍ରତିଷ୍ଠା କଲେ, ପୁରନ୍ଦର କେଶରୀଙ୍କ ମନ୍ଦିରରୁ ସୂର୍ଯ୍ୟବିଗ୍ରହ ଆଣି ସେହି ମନ୍ଦିରରେ ସ୍ଥାପନ କଲେ ଏବଂ ପରିଶେଷରେ ପୂର୍ବାପେକ୍ଷା ଅଧିକ ଜମି ଓ ଭୋଗ ଖଞ୍ଜିଦେଇ ପିତା ଅନଙ୍ଗଭୀମଦେବଙ୍କୁ ପାପରୁ ଉଦ୍ଧାର କଲେ । ଅତଏବ ଏହା ସ୍ୱୀକାର କରିବାକୁ ହେବ ଯେ, ପୁରନ୍ଦର କେଶରୀଙ୍କ ମନ୍ଦିରର ସୂର୍ଯ୍ୟବିଗ୍ରହ ନରସିଂହଦେବଙ୍କ ମନ୍ଦିରରେ ସ୍ଥାପିତ ହେଲେ ଏବଂ ଅଧିକ ଆଡ଼ମ୍ବରରେ 'ଭୋଗ' ପାଇଲେ । ନାଟମନ୍ଦିରଟି କେବଳ ଯଦି ନରସିଂହଦେବଙ୍କର ହୋଇଥିଲା, ତାହାହେଲେ ସୂର୍ଯ୍ୟବିଗ୍ରହ କ'ଣ ନାଟମନ୍ଦିରରେ ସ୍ଥାପିତ ହୋଇ ପୂଜା ପାଉଥିଲେ ? ମାଦଳାପାଞ୍ଜିର ଯେଉଁ ବାକ୍ୟ କହେ 'ପଦ୍ମତୋଳା ଗଣ୍ଡ ଉପରେ ପୁରନ୍ଦର କେଶରୀଙ୍କ ମନ୍ଦିର ସମ୍ମୁଖରେ ନରସିଂହଦେବ ମନ୍ଦିର ନିର୍ମାଣ କଲେ' ଏବଂ ଶ୍ରୀ ବିଷକ୍ ସ୍ୱରୂପ ଯାହାକୁ ଅଖଣ୍ଡନୀୟ ସତ୍ୟ ବୋଲି ଧରିଅଛନ୍ତି, ସେହି ବାକ୍ୟରେ ମଧ ଲେଖା ଅଛି, 'ପୁରନ୍ଦର କେଶରୀଙ୍କ ମନ୍ଦିରରୁ ସୂର୍ଯ୍ୟବିଗ୍ରହ ଆଣି ନରସିଂହଦେବ ନିଜ ମନ୍ଦିରରେ ସ୍ଥାପନ କଲେ' ।

ତୃତୀୟତଃ ଶ୍ରୀ ବିଷକ୍ ସ୍ୱରୂପ କହନ୍ତି, ପୁରୀ ମନ୍ଦିର ନିର୍ମାଣରୁ ଯେଉଁ ଅର୍ଥ ବଳି ପଡ଼ିଲା ତାହାରି ବ୍ୟୟରେ ନରସିଂହଦେବ କୋଣାର୍କରେ ମନ୍ଦିର ନିର୍ମାଣ କରାଇଲେ ।

ଶ୍ରୀ ବିଷନ୍ ସ୍ୱରୂପ ଆବୁଲଫଜଲଙ୍କ କୋଣାର୍କ ବର୍ଣ୍ଣନା ଉପରେ ସମ୍ପୂର୍ଣ୍ଣ ବିଶ୍ୱାସ ରଖି ତାହାଙ୍କ ଲିଖିତ ସମୟକୁ କୋଣାର୍କ ନିର୍ମାଣର ଯଥାର୍ଥ ସମୟ ଧରି ଗୋଟିଏ ବୃହତ୍ ଅଧ୍ୟାୟ ଲେଖିଗଲେ ଏବଂ ସେ ମଧ୍ୟ କହନ୍ତି *, ରାଜେନ୍ଦ୍ର ଲାଲ ଆବୁଲଫଜଲଙ୍କ ଲେଖା ଭ୍ରମସଂକୁଳ ମନେକରି ଯେପରି ଅଗ୍ରାହ୍ୟ କରିଅଛନ୍ତି ତାହା ପ୍ରକୃତରେ ସେପରି ନୁହେଁ; କେବଳ କେତେକ ସାମାନ୍ୟ କଥା; ଯଥା :— ଦ୍ୱାରମାନଙ୍କର ଦିଗ ଓ ଅରୁଣ ସ୍ତମ୍ଭ ଉଚ୍ଚତା ଛାଡ଼ିଦେଲେ ତାହାଙ୍କ ଲେଖାରେ ଲେଶମାତ୍ର ତ୍ରୁଟି ନାହିଁ । ସେହି ଆବୁଲଫଜଲ ସ୍ପଷ୍ଟ କରି ଲେଖିଅଛନ୍ତି ଏବଂ ଗ୍ଲାଡ୍ ଉଇନଙ୍କ ଅନୁବାଦ ଭ୍ରାନ୍ତିସଙ୍କୁଳ ମନେ କରି ଶ୍ରୀ ବିଷନ୍ ସ୍ୱରୂପ ନିଜେ ଅନୁବାଦ କରି କହିଅଛନ୍ତି ଯେ, "କୋଣାର୍କ ମନ୍ଦିରରେ ଓଡ଼ିଶାର ବାର ବର୍ଷର ରାଜସ୍ୱ ବ୍ୟୟିତ ହୋଇଥିଲା ।" ମୁଁ ଇତିପୂର୍ବେ (ଚତୁର୍ଥ ଅଧ୍ୟାୟ) ହିସାବ କରି କହିଅଛି ଯେ, ଓଡ଼ିଶାର ବାରବର୍ଷର ରାଜସ୍ୱର ବର୍ତ୍ତମାନ ମୂଲ୍ୟ ୨୨ କୋଟି ୭୫ ଲକ୍ଷ ଟଙ୍କା ଏବଂ ଶ୍ରୀ ମନମୋହନ ଗାଙ୍ଗୁଲୀଙ୍କ ମତରେ ୩୬ କୋଟି ଟଙ୍କା । ଏହି ୨୨।୨୩ କୋଟି ଟଙ୍କା ତେବେ କ'ଣ ପୁରୀ ମନ୍ଦିର ତିଆର ହେଉ ହେଉ ବଳିପଡ଼ିଥିଲା ଏବଂ ତାହା ସମୁଦାୟ କେବଳ କୋଣାର୍କର ନାଟମନ୍ଦିରରେ ବ୍ୟୟିତ ହୋଇଥିଲା ? ପୁଣି ନାଟମନ୍ଦିରର ନିର୍ମାଣକାଳ ୧୨୪୧ ଖ୍ରୀଷ୍ଟାବ୍ଦ ବୋଲି ଶ୍ରୀ ବିଷନ୍ ସ୍ୱରୂପ ଜାଣିଲେ କିପରି ? ମାଦଳାପାଞ୍ଜି ଅନୁସାରେ ନରସିଂହଦେବଙ୍କର ସିଂହାସନାରୋହଣ ସେ ୧୨୩୭ ଖ୍ରୀଷ୍ଟାବ୍ଦରେ ହୋଇଥିବାର ଧରିବେ, କି ନରସିଂହଦେବଙ୍କର ତାମ୍ରଶାସନ ଅନୁସାରେ ୧୨୫୩ ଖ୍ରୀଷ୍ଟାବ୍ଦ ଧରିବେ ? ତାହାଙ୍କ ଗ୍ରନ୍ଥରୁ ଯେପରି ପ୍ରକାଶ ପଡ଼େ ଏବଂ ମାଦଳାପାଞ୍ଜି ପ୍ରତି ଯେପରି ସେ ବାରମ୍ବାର ଆକ୍ରୋଶ କରିଅଛନ୍ତି, ତହିଁରୁ ସେ ତାମ୍ରଶାସନର ଉପେକ୍ଷା କରି ମାଦଳାପାଞ୍ଜିର ଅନୁସରଣ କରିବା କଦାପି ବିଶ୍ୱାସ କରାଯାଏ ନାହିଁ । ତାହାହେଲେ ୧୨୪୧ ଖ୍ରୀଷ୍ଟାବ୍ଦରେ ନରସିଂହଦେବ ନାଟମନ୍ଦିର ନିର୍ମାଣ କରାଇଥିବା କିପରି କୁହାଯାଇ ପାରେ ?

ଅତଏବ ବିଶ୍ୱାସ କରାଯାଏ, ନରସିଂହଦେବ କୋଣାର୍କ ମନ୍ଦିର ନିର୍ମାଣ କରାଇବା ପୂର୍ବରୁ ପୁରନ୍ଦର କେଶରୀଙ୍କ ମନ୍ଦିରରେ ସୂର୍ଯ୍ୟବିଗ୍ରହ ସ୍ଥାପିତ ଥାଇ ସେବା ପୂଜା ପାଉଥିଲେ । ତାହାଙ୍କ ମନ୍ଦିର କ୍ରମେ ଜୀର୍ଣ୍ଣ ହୋଇ ଯାଇ ଥିବାର ଦେଖି ନରସିଂହଦେବ ପରେ ରାଜ୍ୟର ୧୨ ବର୍ଷର ରାଜସ୍ୱ ବ୍ୟୟ କରି ପଦ୍ମତୋଳା ଗଣ୍ଡ ପୋତାଇ ତାହା ଉପରେ କୋଣାର୍କର ବର୍ତ୍ତମାନ ମନ୍ଦିର ନିର୍ମାଣ କରାଇଲେ ଏବଂ ପୁରନ୍ଦରଙ୍କ ମନ୍ଦିରରୁ ସୂର୍ଯ୍ୟବିଗ୍ରହ ଅଣାଇ ତାହାଙ୍କର ନୂତନ ମନ୍ଦିରରେ ସ୍ଥାପନ ପୂର୍ବକ ସେବା ପୂଜାର ବ୍ୟବସ୍ଥା ବିସ୍ତର ଭାବରେ କରିଦେଲେ (୧୦ମ ଅଧ୍ୟାୟ) । ସୁତରାଂ ଆବୁଲଫଜଲଙ୍କର '୭୩୦ ବର୍ଷ ପୂର୍ବେ' ଏବଂ 'ରାଜା ନରସିଂହଦେବ' ଏହି ଉଭୟ ଉକ୍ତିରେ କିଛି ସତ୍ୟ ଥିବାର କୁହାଯାଇପାରେ । ଉଭୟ ଉକ୍ତି ଏକତ୍ରରେ ବର୍ତ୍ତମାନ ମନ୍ଦିରକୁ ନ ବୁଝାଇ କୋଣାର୍କର ଦୁଇଟି ପୃଥକ୍ ମନ୍ଦିରକୁ

* Konarka, P 70.

ବୁଝାଉଛି । '୭୩୦ ବର୍ଷ ପୂର୍ବେ' ପୁରନ୍ଦର କେଶରୀ କୋଣାର୍କରେ ମନ୍ଦିର ନିର୍ମାଣ କରାଇଥିବା ଯେପରି ସତ୍ୟ, 'ରାଜା ନରସିଂହଦେବ' ୧୨୭୮ ଖ୍ରୀଷ୍ଟାବ୍ଦରେ କୋଣାର୍କର ବର୍ତ୍ତମାନ ମନ୍ଦିର ନିର୍ମାଣ କରାଇଥିବା ସେହିପରି ସତ୍ୟ । ଉକ୍ତ ଦୁଇ ମନ୍ଦିରକୁ ଏକ କରି ଭାବିବା ଆବୁଲଫଜଲଙ୍କ ପକ୍ଷରେ ନିତାନ୍ତ ଅସମ୍ଭବ ନୁହେଁ । କାରଣ କୋଣାର୍କ ବର୍ଣ୍ଣନା ନିମନ୍ତେ ସେ ବିଶେଷ ତତ୍ତ୍ୱସନ୍ଧିତ୍ସୁ ହୋଇଥିବାର ଜଣାଯାଏ ନାହିଁ; କେବଳ ଶୁଣାଶୁଣି କେତୋଟି କଥା ଲେଖି ଯାଇଥିଲେ ମାତ୍ର । ହୁଏତ ଆବୁଲଫଜଲଙ୍କ ସମ୍ବାଦଦାତା ଦୁଇ ଘଟଣାର ସ୍ମରଣରେ ଗୋଳମାଳ କରିଥିବେ ।

ଏହି ଅଧ୍ୟାୟର ପ୍ରଥମ ଭାଗରେ କୁହାଯାଇଅଛି ଯେ, ଶିଳ୍ପର ଆକାର ପ୍ରକାରରୁ କୌଣସି ମନ୍ଦିରର ସମୟ ନିରୂପଣ କରିବା ବଡ଼ ନିରାପଦ ନୁହେଁ । ମୋତେ ଯେଉଁ ଶିଳ୍ପ ନବମ ଶତାବ୍ଦୀର ବୋଧହୁଏ, ମୋର କେହି ପାଠକଙ୍କୁ ତାହା ଦ୍ୱାଦଶ ଶତାବ୍ଦୀର ବୋଧ ହେବା ନିତାନ୍ତ ଅସମ୍ଭବ ନୁହେଁ । ମନରେ ପୂର୍ବରୁ କିଛି ଧାରଣା ଥିଲେ, କୌଣସି କଳାକୁ ବିଭିନ୍ନ ସମୟର ବୋଲି ଅନୁମାନ କରିବା କବିଙ୍କ କାବ୍ୟାଦି ସମ୍ବନ୍ଧରେ ଯେପରି ସହଜ, ଶିଳ୍ପୀର ପ୍ରସ୍ତରକଳା ସମ୍ବନ୍ଧରେ ତାହା ଅପେକ୍ଷା ଅଧିକ ସହଜ । ବର୍ତ୍ତମାନ କବିତା ଓ ଭାଷା ଉପରେ ନିର୍ଭର କରି କେହି କେହି ସମାଲୋଚକ ସର୍ବପ୍ରଧାନ କବି କାଳିଦାସଙ୍କୁ ଖ୍ରୀଷ୍ଟ ଷଷ୍ଠ ଶତାବ୍ଦୀର, କେହି କେହି ଅବା ସପ୍ତମ ଶତାବ୍ଦୀର, ପୁଣି କେହି କେହି ''ମୁରାରେଃ ତୃତୀୟଃ ପନ୍ଥା'' ଅବଲମ୍ବନ କରି ଖ୍ରୀଷ୍ଟପୂର୍ବ ୧ମ ବା ୨ୟ ଶତାବ୍ଦୀର ବୋଲି ପ୍ରମାଣ କରୁଅଛନ୍ତି । କବିତା ବା ଲେଖାରେ କଳା ଯେତେ ପ୍ରକାଶ ପାଏ ଏବଂ ତାହା ପାଠକର ହୃଦୟକୁ ଯେତେ ସ୍ପର୍ଶ କରେ, ପଥର ଦେହରେ ତାହା କଦାପି ହୋଇ ନ ପାରେ । ସୁତରାଂ ଲେଖାରୁ ଏହିପରି ବିଭିନ୍ନ ଅନୁମାନମାନ ପ୍ରମାଣିତ ହେଉଥିବା ସ୍ଥଳେ କୋଣାର୍କ ଶିଳାକଳାରୁ ତାହାର ଯଥାର୍ଥ ସମୟ ନିରୂପଣ କରିବା ବିଡ଼ମ୍ବନା ମାତ୍ର । ପୁଣି ଏହିରୂପ ଅନୁମାନକୁ ଆପାତତଃ ସିଦ୍ଧାନ୍ତ କରି ଧରିଲେ ସୁଦ୍ଧା କୋଣାର୍କର ନାଟମନ୍ଦିରର କଳାରୁ ଏହା ଜଗନ୍ନାଥ ମନ୍ଦିରର ପରବର୍ତ୍ତୀ କାର୍ଯ୍ୟ ହୋଇଥିବା କୌଣସି ରୂପେ ପ୍ରମାଣ କରାଯାଇ ନ ପାରେ । କାରଣ ଫର୍ଗୁସନ୍‌ଙ୍କ ବିବର୍ତ୍ତନ ଓ ଅନୁବର୍ତ୍ତନ ନିୟମ ଅନୁସରଣ କରି ଶ୍ରୀ ବିଷନ୍ ସ୍ୱରୂପ ଯେଉଁ ମତ ପୋଷଣ କରନ୍ତି, ତାହା ଅନୁସାରେ କଳା ପ୍ରଥମତଃ ଭୁବନେଶ୍ୱର ମନ୍ଦିରରୁ ଆରମ୍ଭ ହୋଇ କୋଣାର୍କ ମନ୍ଦିରରେ ପରିଣତି ପାଇଲା ଏବଂ ତତ୍ପରେ କ୍ରମେ କ୍ରମେ ଅବନତ ହେବାକୁ ଆରମ୍ଭ କଲା ଏବଂ କଳାର ଏହି ଅବନତି ଅବସ୍ଥାରେ ପୁରୀ ମନ୍ଦିର ନିର୍ମିତ ହୋଇଥିଲା; ସୁତରାଂ ପୁରୀ ମନ୍ଦିର ପରେ କଳା ଆହୁରି ଅବନତ ହୋଇ ଶେଷରେ ବିଲୁପ୍ତ ହେବାକୁ ବସିଲା । ତାହାହେଲେ ପୁରୀ ମନ୍ଦିରର ୧୦୦ ବର୍ଷରୁ ଅଧିକ ପରେ ନିର୍ମିତ କୋଣାର୍କ ନାଟମନ୍ଦିରର କଳା ନିଶ୍ଚୟ ପୁରୀ ମନ୍ଦିର ଅପେକ୍ଷା ଆହୁରି ଅବନତି ହେବାର କଥା; କିନ୍ତୁ ଶ୍ରୀ ବିଷନ୍ ସ୍ୱରୂପ ତାହାଙ୍କ ଗ୍ରନ୍ଥରେ ଅନ୍ୟତ୍ର କୋଣାର୍କ ନାଟମନ୍ଦିରର କଳା ସମ୍ବନ୍ଧରେ ଯାହା କହନ୍ତି, ତାହା

ଉପରୋକ୍ତ ଅନୁବର୍ତ୍ତନ ନିୟମର ସମ୍ପୂର୍ଣ୍ଣ ବ୍ୟତିକ୍ରମ ଦେଖାଉଅଛି । ସେ କହନ୍ତି, ନାଟମନ୍ଦିର କୋଣାର୍କ ମନ୍ଦିରଠାରୁ କେତେକାଂଶରେ ନିକୃଷ୍ଟ ହେଲେ ସୁଦ୍ଧା ଓଡ଼ିଶାର ଅନ୍ୟାନ୍ୟ ଦେବ ମନ୍ଦିରଠାରୁ ବହୁ ପରିମାଣରେ ଉତ୍କୃଷ୍ଟ । ଯଦି ତାହାଙ୍କ ଅନୁବର୍ତ୍ତନ ନିୟମ ଯଥାର୍ଥ ହୁଏ, ତାହାହେଲେ ନାଟମନ୍ଦିର ପୁରୀ ମନ୍ଦିରଠାରୁ ଆହୁରି ନିକୃଷ୍ଟ ନ ହୋଇ ଉତ୍କୃଷ୍ଟ ହେଲା କିପରି ? ଅତଏବ ଶ୍ରୀ ବିଷନ୍ ସ୍ୱରୂପ କୋଣାର୍କ ଶିଳ୍ପରୁ ଯେଉଁ ଅନୁମାନ କରନ୍ତି ଯେ ବଡ଼ଦେଉଳ ଓ ଜଗମୋହନ ନବମ ଶତାବ୍ଦୀରେ ରାଜା ପୁରନ୍ଦର କେଶରୀଙ୍କ ଦ୍ୱାରା ଏବଂ ନାଟମନ୍ଦିର ତ୍ରୟୋଦଶ ଶତାବ୍ଦୀରେ ରାଜା ନରସିଂହଦେବଙ୍କ ଦ୍ୱାରା ନିର୍ମିତ ହୋଇଥିଲା, ତାହା ସର୍ବଥା ଅବିଶ୍ୱାସ୍ୟ । ମନ୍ଦିରର କାଳ ନିରୂପଣ ନିମନ୍ତେ ତାହାର କଳା ଉପରେ ଏକାନ୍ତ ନିର୍ଭର କରିବା, ବୁଡ଼ିଯାଉଥିବା ଲୋକ କୁଟା ଖିଅକ ଉପରେ ନିର୍ଭର କରିବା ମାତ୍ର ।

ତପୂରେ ଶ୍ରୀ ବିଷନ୍ ସ୍ୱରୂପ କୋଣାର୍କ ମନ୍ଦିରର କାରୁକାର୍ଯ୍ୟରୁ ଧର୍ମର ଆଭାସ ପଢ଼ି ମନ୍ଦିରମାନଙ୍କର କାଳ ନିରୂପଣର ପ୍ରୟାସ କରିଅଛନ୍ତି । ସେ କହନ୍ତି, କୋଣାର୍କ ବଡ଼ଦେଉଳରେ ଶୈବଧର୍ମର ଚିହ୍ନ ଦେଖାଯାଏ; ସୁତରାଂ, ଏହା ଶୈବ କେଶରୀ ରାଜତ୍ୱରେ ନିର୍ମିତ । ଦ୍ୱାଦଶ ଶତାବ୍ଦୀରେ ରାମାନୁଜଙ୍କ ପ୍ରଚାରଦ୍ୱାରା ଭକ୍ତି ଓ ପ୍ରେମରେ ଧର୍ମପୂର୍ଣ୍ଣ ହେଲା ଏବଂ ନାଟମନ୍ଦିରରେ ସେହି ଧର୍ମ ଦେଖାଯାଏ । ସୁତରାଂ ନାଟମନ୍ଦିର ନରସିଂହଦେବଙ୍କ କାର୍ଯ୍ୟ; କିନ୍ତୁ ଏସବୁ ଉପରୋକ୍ତ କଥା ପ୍ରମାଣ ଅପେକ୍ଷା ଆହୁରି ଅସାର ପ୍ରଳାପ ମାତ୍ର । ନାଟମନ୍ଦିରରେ ଭକ୍ତିପ୍ରେମ ଛଡ଼ା ଆଉ କିଛି ରହି ନ ପାରେ । ପୁଣି ବଡ଼ଦେଉଳରେ ଶୈବଧର୍ମ କେଉଁଠାରେ ଏତେ ପ୍ରତିଫଳିତ ହୋଇଅଛି, ତାହା ମୁଁ ଦେଖିପାରି ନାହିଁ । କେବଳ ଯୁକ୍ତିର ସମର୍ଥନ ନିମନ୍ତେ ଏହିପରି ଅମୂଳକ ଅନୁମାନ କରିବା ନୈୟାୟିକ ପକ୍ଷରେ ସୁନ୍ଦର ହୋଇପାରେ; କିନ୍ତୁ ଇତିହାସ ଲେଖକ ଏ ସବୁ ଦୂରରୁ ପରିହାର କରିବା ଉଚିତ ।

ପରିଶେଷରେ ଶ୍ରୀ ବିଷନ୍ ସ୍ୱରୂପ ଜ୍ୟୋତିଷଶାସ୍ତ୍ର ବାହାନାରେ ଆଉ ଗୋଟିଏ ନୂତନ ଓ ଅମୂଳକ ଅନୁମାନ କରି କୋଣାର୍କର କାଳ ନିରୂପଣ କରିଅଛନ୍ତି । ସେ କହନ୍ତି ଚନ୍ଦ୍ରଭାଗା ସ୍ନାନଯାତ୍ରା କୋଣାର୍କ ମନ୍ଦିରର ନିର୍ମାଣ ଆରମ୍ଭ ବା ଶେଷ ସମୟରେ ନିଶ୍ଚୟ ଆରମ୍ଭ କରାଯାଇଥିଲା ଏବଂ କୋଣାର୍କରେ ଯାତ୍ରୀ ସମାଗମ ବଢ଼ାଇବା ଏହାର ପ୍ରଧାନ ଉଦ୍ଦେଶ୍ୟ ଥିଲା । ମକର ଓ ମେଷର ମଧ୍ୟବର୍ତ୍ତୀ ସ୍ଥାନରେ ଅର୍ଥାତ୍ ଅଗ୍ନିକୋଣରେ ସୂର୍ଯ୍ୟ ପ୍ରବେଶ କରିବା ସମୟରେ ଏହି ଯାତ୍ରାର ଆରମ୍ଭ ହୋଇଥିବ । ଚନ୍ଦ୍ରଭାଗା ଯାତ୍ରା ବର୍ତ୍ତମାନ ପର୍ଯ୍ୟନ୍ତ ମାଘ ଶୁକ୍ଳ ସପ୍ତମୀ ଦିନ ଅନୁଷ୍ଠିତ ହୁଏ; ସୁତରାଂ ଯେଉଁ ବର୍ଷ ସୂର୍ଯ୍ୟ ଠିକ୍ ଅଗ୍ନି କୋଣରେ ଥିଲେ, ସେହି ବର୍ଷ ଏହି ଯାତ୍ରା ଆରମ୍ଭ କରାଯାଇଥିଲା । କ୍ରାନ୍ତିଚଳନହେତୁ ସୂର୍ଯ୍ୟ ବର୍ତ୍ତମାନ ଅଗ୍ନି କୋଣରେ ଦେଖାଯାଏ ନାହିଁ । ହିନ୍ଦୁ ପଞ୍ଜିକା ଅନୁସାରେ ସୂର୍ଯ୍ୟ ବର୍ତ୍ତମାନ ମାଘ ଶୁକ୍ଳ ସପ୍ତମୀ ଦିନ ପ୍ରାୟ ମକରର ୨୭-୧/୨ ଡିଗ୍ରୀ ପର୍ଯ୍ୟନ୍ତ ଯାଏ; ସୁତରାଂ ଅଗ୍ନି କୋଣଠାରୁ ଏହା ୧୭-୧/୨ ଡିଗ୍ରୀ ପଛକୁ ପଡ଼େ । ପ୍ରତ୍ୟେକ ବର୍ଷ କ୍ରାନ୍ତିଚଳନ ୧ ମିନିଟ

ଅର୍ଥାତ୍ ପ୍ରତ୍ୟେକ ୬୦ ବର୍ଷରେ ୧ ଡିଗ୍ରୀ ଲେଖାଏଁ ହୁଏ । ସୁତରାଂ ୧୭-୧/୨ ଡିଗ୍ରୀକୁ (୧୭-୧/୨×୬୦) ୧୦୫୦ ବର୍ଷ ଲାଗେ । ଏହା ସହିତ ଆଉ କେତେକ ବର୍ଷ ମିଶାଇଲେ କୋଣାର୍କ ମନ୍ଦିର ନିର୍ମାଣର ସମୟ ମିଳେ । ଏହାଦ୍ୱାରା କୋଣାର୍କ ମନ୍ଦିର ନିର୍ମାଣ ନବମ ଶତାବ୍ଦୀର ମଧ୍ୟଭାଗରେ ହୋଇଥିବା ପ୍ରମାଣିତ ହେଉଅଛି ।

ଉପରୋକ୍ତ ଯୁକ୍ତି ଶ୍ରୀ ବିଷନ୍ ସ୍ୱରୂପଙ୍କ ଅନ୍ୟାନ୍ୟ ଯୁକ୍ତିମାନଙ୍କ ପରି ଯେପରି ଅସାର ସେହିପରି ମଧ୍ୟ ଅଗଭୀର ଗବେଷଣାର ପରିଚୟ ଦେଉଅଛି । ଚନ୍ଦ୍ରଭାଗା ସ୍ନାନ ସହିତ କୋଣାର୍କ ମନ୍ଦିର ନିର୍ମାଣର ଏତେ ଘନିଷ୍ଠ ସମ୍ବନ୍ଧ ଥିବାର ବିଶ୍ୱାସ କରାଯାଇ ନ ପାରେ । ପୁଣି ଏହି ଗ୍ରନ୍ଥରେ ବାରମ୍ବାର କୁହାଯାଇଅଛି ଏବଂ ଶ୍ରୀ ବିଷନ୍ ସ୍ୱରୂପ ମଧ୍ୟ ନାନା ସ୍ଥାନରେ କହିଅଛନ୍ତି ଯେ, କୋଣାର୍କର ବର୍ତ୍ତମାନ ମନ୍ଦିର ନିର୍ମାଣ ଦିନଠାରୁ କ୍ଷେତ୍ରର ପବିତ୍ରତା ଆରମ୍ଭ ହୋଇନାହିଁ । ବର୍ତ୍ତମାନ ମନ୍ଦିର ପୂର୍ବରୁ କୋଣାର୍କରେ ସୂର୍ଯ୍ୟଦେବଙ୍କର ପୂଜା ହେଉଥିଲା ଏବଂ ପୁରନ୍ଦରଙ୍କ ପୂର୍ବରୁ କୋଣାର୍କରେ ଯେ ସୂର୍ଯ୍ୟପୂଜା ନ ଥିଲା ତାହା ମଧ୍ୟ କୁହାଯାଇ ନ ପାରେ । ପରନ୍ତୁ ସେ ନିଜେ ମଧ୍ୟ ନାନା ସ୍ଥାନରେ ଏହା ସ୍ୱୀକାର କରିଅଛନ୍ତି । ସୁତରାଂ ଯଦି "ଯାତ୍ରୀ ସମାଗମ ବଢ଼ାଇବା ନିମନ୍ତେ" ଚନ୍ଦ୍ରଭାଗା ଯାତ୍ରାର ସୃଷ୍ଟି ହୋଇଥିଲା, ତାହାହେଲେ କ୍ଷେତ୍ରର ମାହାତ୍ମ୍ୟ ଆରମ୍ଭ ଦିନଠାରୁ ଚନ୍ଦ୍ରଭାଗା ଯାତ୍ରା ଆରମ୍ଭ କରାଯାଇ ଅଛି ବୋଲିବାକୁ ହେବ । ବର୍ତ୍ତମାନ ମନ୍ଦିର ନିର୍ମାଣ ସହିତ ଏହାର କୌଣସି ସମ୍ବନ୍ଧ ନାହିଁ କି ଥିବାର କୌଣସି ରୂପେ ପ୍ରମାଣ କରାଯାଇ ନ ପାରେ ।

ପୁଣି ଶ୍ରୀ ବିଷନ୍ ସ୍ୱରୂପଙ୍କ ବିଶେଷ ଦୋଷ ଯେ, ଆପଣାର ଅଭିମତ ସମର୍ଥନ କରିବା ଏବଂ ନିଜର ଜ୍ୟୋତିଷ ଜ୍ଞାନଦ୍ୱାରା ପାଠକଙ୍କ ମନରେ ବୃଥା ବିଶ୍ୱାସ ଜନ୍ମାଇବା ନିମନ୍ତେ ସେ ଜ୍ୟୋତିଷ ଗଣନାର ଅପଚାର ପର୍ଯ୍ୟନ୍ତ କରିଅଛନ୍ତି । ପ୍ରତ୍ୟେକ ବର୍ଷରେ କ୍ରାନ୍ତିଚଳନ ବା ଅୟନ ଚଳନ ୧ ମିନିଟ ଲେଖାଏଁ ହେବା ସେ କାହୁଁ ଜାଣିଲେ ? ବରଂ ଜ୍ୟୋତିଷ ଶାସ୍ତ୍ର କ୍ରାନ୍ତିଚଳନ ବର୍ଷରେ ୧ ମିନିଟ ଲେଖାଏଁ ନ ଧରି ୫୦.୨୪ ସେକେଣ୍ଡ ବା ୭୨ ବର୍ଷରେ ଏକ ଡିଗ୍ରୀ ଧରିଅଛନ୍ତି । ତାହାହେଲେ ତାହାଙ୍କ ପ୍ରମାଣ ଅନୁସାରେ କୋଣାର୍କର ବର୍ତ୍ତମାନ ମନ୍ଦିର ୧୨୬୦ ବର୍ଷ ପୂର୍ବେ ବା ୭ମ ଶତାବ୍ଦୀର ମଧ୍ୟଭାଗରେ ଅର୍ଥାତ୍ ତାହାଙ୍କ ପ୍ରମାଣିତ ସମୟର ୨୦୦ ବର୍ଷ ପୂର୍ବେ ନିର୍ମିତ ହୋଇଥିଲା; କିନ୍ତୁ ଜ୍ୟୋତିଷ ଗଣନାକୁ ହେୟ କରି ସେ ୬୦ ବର୍ଷରେ ଅୟନ ଚଳନ ୧ ଡିଗ୍ରୀ ଧରି ୧୦୫୦ ହିସାବ କରିଅଛନ୍ତି । ପୁଣି ୧୦୫୦ ବର୍ଷ ହିସାବ କରି ମଧ୍ୟ ତାହାଙ୍କ ମତାନୁଯାୟୀ କୋଣାର୍କ ମନ୍ଦିର ନିର୍ମାଣର ସମୟ ଆସିଲା ନାହିଁ । ସୁତରାଂ ଆପଣାର ଚିରପୋଷିତ ସମୟର ନିର୍ଦ୍ଧାରଣ ନିମନ୍ତେ ସେ ୧୦୫୦ ବର୍ଷ ସହିତ ଆଉ କେତେକ ବର୍ଷ ମିଶାଇ ଅଛନ୍ତି । ଏହି ରୂପେ ସେ କୋଣାର୍କ ମନ୍ଦିରକୁ ନବମ ଶତାବ୍ଦୀର ବୋଲି ପ୍ରମାଣ କରନ୍ତି । ପ୍ରସିଦ୍ଧ ଗ୍ରନ୍ଥକାରମାନେ କିପରି ବେଳେ ବେଳେ ଆପଣାର ମନୋଗତ ଭାବର ବୃଥା ସମର୍ଥନ ନିମନ୍ତେ ନିତାନ୍ତ ଅସାର ଯୁକ୍ତି ଓ ସତ୍ୟର

ପ୍ରଳାପ କରନ୍ତି, ଶ୍ରୀ ବିଷନ୍ ସ୍ୱରୂପ ନିଜର 'କୋଣାର୍କ' ଗ୍ରନ୍ଥରେ ତାହାର ଜ୍ୱଳନ୍ତ ଉଦାହରଣ ଦେଖାଇ ଦେଇ ଅଛନ୍ତି । !

ପରିଶେଷରେ ମାଦଳାପାଞ୍ଜି ଅନୁସାରେ ବିଶ୍ୱାସ କରାଯାଏ ଯେ, କୋଣାର୍କର ସମସ୍ତ ମନ୍ଦିର ରାଜା ଲାଙ୍ଗୁଳା ନରସିଂହଦେବଙ୍କ ଦ୍ୱାରା ୧୨୭୮ ଖ୍ରୀଷ୍ଟାବ୍ଦରେ ନିର୍ମିତ ହୋଇଥିଲା । ବାସ୍ତବିକ ଆବୁଲଫଜଲ କାହାଠାରୁ ଶୁଣି ଭ୍ରମରେ '୭୩୦ ବର୍ଷ ପୂର୍ବେ' ଲେଖି ନ ଥିଲେ, କୋଣାର୍କ ନିର୍ମାଣ ବିଷୟରେ ଏତେ ଯୁକ୍ତିତର୍କ ଓ ସନ୍ଦେହ ଜାତ ହୋଇ ନ ଥାନ୍ତା । ବିବର୍ତ୍ତନ ଓ ଅନୁବର୍ତ୍ତନର ଅନୁଶୀଳନ ବୋଲ, ଜ୍ୟୋତିଷ ଓ ଧର୍ମଗତ ପ୍ରମାଣ ବୋଲ, ଏ ସମସ୍ତ କେବଳ ଆବୁଲଫଜଲଙ୍କ ଜନଶ୍ରୁତିର ସମର୍ଥନ ନିମନ୍ତେ ଗୋଟିଏ ଗୋଟିଏ ଭାଣ ମାତ୍ର । ଇତିହାସର କଠୋର ସତ୍ୟ ସମକ୍ଷରେ ଏ ସମସ୍ତ ସୂର୍ଯ୍ୟକିରଣରେ କୁହୁଡ଼ି ସଦୃଶ କେଉଁଆଡ଼େ ଅନ୍ତର୍ହିତ ହୋଇଯାଏ ।

* * * * * * *

## ଦଶମ ଅଧ୍ୟାୟ

# ଭୋଗ ଓ ଯାତ୍ରା

କୋଣାର୍କ କ୍ଷେତ୍ରର ମାହାତ୍ମ୍ୟ ଓ ପ୍ରାଚୀନତା ଇତି ପୂର୍ବେ ସବିଶେଷ ବର୍ଣ୍ଣିତ ହୋଇଅଛି । ଦ୍ୱିତୀୟ ଅଧ୍ୟାୟରେ କୁହାଯାଇଅଛି ଯେ, ବହୁସଂଖ୍ୟକ ହିନ୍ଦୁ ନରନାରୀ ନାନା ଯାତ୍ରା ଓ ପର୍ବ ଉପଲକ୍ଷରେ କୋଣାର୍କ କ୍ଷେତ୍ରରେ ସମବେତ ହେଉଥିଲେ । ତହିଁରୁ ପରିଷ୍କାର ଅନୁମାନ କରାଯାଏ ଯେ, କୋଣାର୍କରେ ସୂର୍ଯ୍ୟଦେବଙ୍କର ନାନା ଯାତ୍ରା ଓ ଭୋଗର ବ୍ୟବସ୍ଥା ଥିଲା । ବର୍ତ୍ତମାନ ସେ ସମସ୍ତ ଆଉ ନାହିଁ । ନିଜେ କୋଣାର୍କଦେବ ଆଉ କୋଣାର୍କରେ ନାହାନ୍ତି କି ତାହାଙ୍କର ଯାତ୍ରା ପର୍ବମାନ ଆଉ ଅନୁଷ୍ଠିତ ହେଉନାହିଁ । କୋଣାର୍କର ବର୍ତ୍ତମାନ ମନ୍ଦିରର ପତନ ପରେ ସୂର୍ଯ୍ୟଦେବ ପୁରୀକୁ ସ୍ଥାନାନ୍ତରିତ ହୋଇଅଛନ୍ତି ଏବଂ ତାହାଙ୍କର ସ୍ଥାନାନ୍ତର ସଙ୍ଗେ ସଙ୍ଗେ କୋଣାର୍କର ସମସ୍ତ ଅନୁଷ୍ଠାନ ଲୁପ୍ତ ହୋଇଅଛି । ତେବେ କେବଳ ବର୍ତ୍ତମାନ ମନ୍ଦିର ନୁହେଁ, ଏହାର ବହୁକାଳ ପୂର୍ବରୁ କୋଣାର୍କ ସୂର୍ଯ୍ୟକ୍ଷେତ୍ର ଓ ପଦ୍ମକ୍ଷେତ୍ର ନାମରେ ପୁରୀ ଓ ଭୁବନେଶ୍ୱର ପରି ପ୍ରସିଦ୍ଧ ଥିଲା ଏବଂ ସୂର୍ଯ୍ୟଦେବ କାଳେ କାଳେ ସେହିଠାରେ ସେବାପୂଜା ପାଇ ଆସୁଥିଲେ । ପୁରୀରେ ଜଗନ୍ନାଥଙ୍କ ମନ୍ଦିର ଯେପରି ବାରମ୍ବାର ଜୀର୍ଣ୍ଣ ହୋଇ ନୂତନ ନିର୍ମିତ ହୋଇଅଛି ଏବଂ ଜଗନ୍ନାଥେ ଏକାଦିକ୍ରମେ ସେହି ମନ୍ଦିରମାନଙ୍କରେ ପୂଜା ପାଇ ଆସୁଅଛନ୍ତି, କୋଣାର୍କର ସୂର୍ଯ୍ୟଦେବଙ୍କ ସମ୍ବନ୍ଧରେ ମଧ୍ୟ ସେହିପରି ହୋଇଥିଲା । ପୂର୍ବବର୍ତ୍ତୀ ଅଧ୍ୟାୟରେ (ନବମ) ଯେପରି ବର୍ଣ୍ଣିତ ହୋଇଅଛି, ଶାମ୍ବ ଶାପମୁକ୍ତ ହୋଇ ସୂର୍ଯ୍ୟଙ୍କ ଆଦେଶାନୁସାରେ ମିତ୍ରାଦିତ୍ୟ ସୂର୍ଯ୍ୟଙ୍କୁ କୋଣାର୍କରେ ସ୍ଥାପନ କରି ଦ୍ୱାରକା ପ୍ରସ୍ଥାନ କରିଥିଲେ । ତାହାଙ୍କ ପରେ ବହୁ ଯୁଗ ଧରି ରାଜାମାନେ ସେହିଠାରେ ସୂର୍ଯ୍ୟ ଉପାସନା କରୁଥିଲେ । କେଶରୀ ରାଜତ୍ୱରେ ଖ୍ରୀଷ୍ଟୀୟ ନବମ ଶତାବ୍ଦୀରେ ଉକ୍ତ ବଂଶୀୟ ପୁରନ୍ଦର କେଶରୀ ସେହି ସୂର୍ଯ୍ୟଦେବଙ୍କ ନିମନ୍ତେ ଗୋଟିଏ ନୂତନ ମନ୍ଦିର ନିର୍ମାଣ କରାଇ ଦେଇଥିଲେ । ତାହାଙ୍କର ପରବର୍ତ୍ତୀ କେଶରୀ ଓ ଗଙ୍ଗବଂଶୀୟ ରାଜାମାନେ ସେହିଦିନ ଠାରୁ ପୁରନ୍ଦରଙ୍କ ମନ୍ଦିରରେ ସୂର୍ଯ୍ୟ ପୂଜା କରି ଆସୁଥିଲେ । କାଳକ୍ରମେ ଉକ୍ତ ମନ୍ଦିର ପୁଣି ଜୀର୍ଣ୍ଣ ହୋଇଗଲା ଏବଂ ଲାଙ୍ଗୁଳା ନରସିଂହଦେବ ବର୍ତ୍ତମାନ-ମନ୍ଦିର ନିର୍ମାଣ କରାଇ ଦେଲେ । ପୁରନ୍ଦରଙ୍କ ମନ୍ଦିରର ସୂର୍ଯ୍ୟଦେବ ଏହି ନୂତନ ମନ୍ଦିରରେ ସ୍ଥାପିତ ହୋଇଥିଲେ । ଏହିରୂପେ ବହୁ ପ୍ରାଚୀନ କାଳରୁ କୋଣାର୍କରେ ସୂର୍ଯ୍ୟପୂଜା ଏକାଦିକ୍ରମେ ଚାଲି ଆସୁଅଛି ।

ଅବଶ୍ୟ କୋଣାର୍କ ସମ୍ବନ୍ଧରେ ନାନା ଲେଖକ ଅଛନ୍ତି । ସେମାନଙ୍କ ମଧ୍ୟରୁ କେହି କେହି କେବଳ ବର୍ତ୍ତମାନ ମନ୍ଦିର ନିର୍ମାଣ ଦିନଠାରୁ କୋଣାର୍କରେ ସୂର୍ଯ୍ୟପୂଜା ଆରମ୍ଭ ହୋଇଥିବା ବିଶ୍ୱାସ କରି ପ୍ରମାଣ କରନ୍ତି ଯେ କୋଣାର୍କର ବର୍ତ୍ତମାନ ମନ୍ଦିରରେ କଦାପି ଦେବ ପ୍ରତିଷ୍ଠା ହୋଇ ନ ଥିଲା ଏବଂ ତିଆର ହେଉ ହେଉ ମନ୍ଦିର ଭାଙ୍ଗି ଯାଇଥିଲା । ଏମ୍. ଏଇଚ୍. ଆର୍ଣ୍ଣଟ ମହାଶୟ ମନ୍ଦିର ପତନର କାରଣ ସ୍ଥିର କରିବା ପ୍ରସଙ୍ଗରେ ଲେଖିଅଛନ୍ତି * ଯେ କୋଣାର୍କ ମନ୍ଦିରର ନିର୍ମାଣ ସମ୍ପୂର୍ଣ୍ଣ ଶେଷ ନ ହେଉଣୁ ଏହା ଭାଙ୍ଗି ପଡ଼ିଥିଲା ଏବଂ ମନ୍ଦିର ମଧ୍ୟରେ ଆଦୌ ସୂର୍ଯ୍ୟଦେବଙ୍କର ପ୍ରତିଷ୍ଠା ହୋଇ ନ ଥିଲା । ସୁତରାଂ ଭୋଗର ବ୍ୟବସ୍ଥା ନିମନ୍ତେ ଜମିବାଡ଼ି ଖଞ୍ଜା କିମ୍ବା ସେବକମାନଙ୍କର ବସତି ସ୍ଥାପନାଦି କିଛି ହୋଇ ନ ଥିଲା । ଏ ମତର ସତ୍ୟାସତ୍ୟ ବୁଝିବା ବର୍ତ୍ତମାନ ସ୍ଥାନ ନୁହେଁ । ପରେ ମନ୍ଦିର ପତନର କାରଣ ଅନୁସନ୍ଧାନ ପ୍ରସଙ୍ଗରେ (୧୪ଶ ଅଧ୍ୟାୟରେ) ଏହାର ସବିଶେଷ ଆଲୋଚନା କରାଯିବ । ବର୍ତ୍ତମାନ ଏହି ମତ ଅସ୍ୱୀକାର କରି ଏତିକି ମାତ୍ର କୁହାଯାଇପାରେ ଯେ ମନ୍ଦିରରେ କୋଣାର୍କଦେବଙ୍କର ପ୍ରତିଷ୍ଠା ହୋଇଥିଲା ଏବଂ ଯଥାବିଧି ଭୋଗ ଓ ଯାତ୍ରା ଚଳୁଥିଲା ।

ଏଥିପୂର୍ବେ ମାଦଳାପାଞ୍ଜି ଆଶ୍ରୟରେ କୁହାଯାଇଅଛି ଯେ ବର୍ତ୍ତମାନ ମନ୍ଦିର ନିର୍ମାଣ ପୂର୍ବରୁ କୋଣାର୍କରେ ରାଜା ପୁରନ୍ଦର କେଶରୀ ମନ୍ଦିର ନିର୍ମାଣ କରି ତହିଁରେ କୋଣାର୍କଦେବଙ୍କର ପ୍ରତିଷ୍ଠା କରିଥିଲେ ଏବଂ ଏହା ନିକଟରେ ଆଠ ଗୋଟି ବ୍ରାହ୍ମଣ ଶାସନ ବସାଇଥିଲେ । ପୁରନ୍ଦରଙ୍କ ପୂର୍ବ ଓ ପରବର୍ତ୍ତୀ ରାଜାମାନେ କୋଣାର୍କ କ୍ଷେତ୍ରରେ ସୂର୍ଯ୍ୟଦେବଙ୍କର ପୂଜା କରି ଆସୁଥିଲେ ।

ମାଦଳାପାଞ୍ଜିରେ ଲେଖାଅଛି, ** ମୈତ୍ରେୟ ବନରେ ଚନ୍ଦ୍ରଭାଗା ନଦୀ ଉପରେ ଶାମ୍ବ ଗୋଟିଏ ମନ୍ଦିର ନିର୍ମାଣ କରାଇଥିଲେ । ତହିଁରେ ମିତ୍ରାଦିତ୍ୟ ସୂର୍ଯ୍ୟ ପ୍ରତିଷ୍ଠିତ ହୋଇ ପୂଜା ପାଉଥିଲେ । ଶାମ୍ବ ଶାପମୁକ୍ତ ହୋଇ ଦ୍ୱାରକାକୁ ପ୍ରତ୍ୟାଗମନ କଲେ । ଏଣେ ସୂର୍ଯ୍ୟପୂଜା କ୍ରମାଗତ ଚାଲିଥାଏ । ବହୁଯୁଗ ଧରି ରାଜାମାନେ ସେହିଠାରେ ସୂର୍ଯ୍ୟଦେବଙ୍କର ପୂଜା କରୁଥିଲେ । ଏହି କଳିଯୁଗରେ କେତେକ ରାଜାଙ୍କ ପରେ କେଶରୀ ବଂଶୀୟ ରାଜା ପୁରନ୍ଦର କେଶରୀ ଏହି ସ୍ଥାନରେ ଗୋଟିଏ ମନ୍ଦିର ନିର୍ମାଣ କରାଇଥିଲେ ଏବଂ ପୂର୍ବୋକ୍ତ ସୂର୍ଯ୍ୟଦେବଙ୍କର ସେବା ନିମନ୍ତେ ଆଠଗୋଟି ବ୍ରାହ୍ମଣ ଶାସନ ବସାଇ ଦେଲେ । ତତ୍ପରେ ତାହାଙ୍କର ପରବର୍ତ୍ତୀ କେଶରୀ ଓ ଗଙ୍ଗବଂଶୀୟ ରାଜାମାନେ ସୂର୍ଯ୍ୟଦେବଙ୍କର ଉପାସନା କରି ଆସୁଥିଲେ । ଅନଙ୍ଗଭୀମଦେବ ମହାରାଜାଙ୍କ ସମୟରେ ଦେଶର ରାଜସ୍ୱ ଅଧିକ ଆଦାୟ

---

* Mr M. H. Arnott in Bengal District Gazetteer. Puri, P. 279.

** Mr. Bishan Swarup - Konarka PP. 6-7.

ହେଲା * । ସୁତରାଂ ସେ ସୂର୍ଯ୍ୟଦେବଙ୍କର ଭୋଗ ଓ ଦୈନିକ ଖର୍ଚ୍ଚର ପରିମାଣ ବଢ଼ାଇଦେଲେ ଏବଂ ସୂର୍ଯ୍ୟଙ୍କର ଭୋଗ, ସେବକମାନଙ୍କର ପ୍ରାପ୍ୟ ଓ କ୍ଷେତ୍ର ଦେବତାମାନଙ୍କର ଭୋଗର ବ୍ୟୟ ନିର୍ଦ୍ଦିଷ୍ଟ କରିଦେଲେ ।

ଅନଙ୍ଗଭୀମଦେବଙ୍କ ପୂର୍ବବର୍ତ୍ତୀ ରାଜାମାନଙ୍କ ସମୟରେ ସୂର୍ଯ୍ୟଦେବଙ୍କ ଭୋଗ ନିମନ୍ତେ ୪୨୫୦୦ କାହାଣ କଉଡ଼ି ବ୍ୟୟ କରାଯାଉଥିଲା । ଅନଙ୍ଗଭୀମଦେବ ତହିଁରେ ୩୦୦୦୦ କାହାଣ କଉଡ଼ି ଅଧିକ ବ୍ୟୟ କରି ଭୋଗର ପରିମାଣ ବଢ଼ାଇ ଦେଲେ; କିନ୍ତୁ ପରେ ଈଶ୍ୱର ନାୟକ ନାମକ ଜଣେ ପାତ୍ରଙ୍କ ପରାମର୍ଶ ଅନୁସାରେ ସେ ଏହି ଅଧିକ ଅଂଶକୁ ତୃତୀୟାଂଶରେ ଅର୍ଥାତ୍ ୧୦୦୦୦ କାହାଣରେ ରଖିଲେ । ଅତଏବ ଅନଙ୍ଗଭୀମଦେବଙ୍କ ସମୟଠାରୁ ସର୍ବମୋଟରେ ୫୨୫୦୦ କାହାଣ କଉଡ଼ି କୋଣାର୍କ ଭୋଗ ନିମନ୍ତେ ନିର୍ଦ୍ଦିଷ୍ଟ ରହିଲା । ତତ୍ପରେ କଉଡ଼ି ପରିବର୍ତ୍ତରେ ସୁନାର ବ୍ୟବହାର ଚଳିଲା । ୧୫ କାହାଣ କଉଡ଼ିର ମୂଲ୍ୟ ଏକ ମାଢ଼ (ଅଧତୋଳା) ସୁନା ସଙ୍ଗେ ସମାନ ଥିଲା । ଅତଏବ କୋଣାର୍କ ଭୋଗ ନିମନ୍ତେ ୩୫୦୦ ମାଢ଼ ସୁନା ନିର୍ଦ୍ଦିଷ୍ଟ ରହିଲା ।

କୋଣାର୍କରେ ନିମ୍ନଲିଖିତ ଭୋଗର ବ୍ୟବସ୍ଥା ଥିଲା :—

୧ । ସକାଳ ଧୂପ ଭୋଗ ।
୨ । ପଞ୍ଚାମୃତ ସ୍ନାନ ଓ ରାଜଭୋଗ ।
୩ । ଦ୍ୱିପ୍ରହର ଭୋଗ ।
୪ । ଦ୍ୱିପ୍ରହର ଅବକାଶ ଭୋଗ ।
୫ । ସନ୍ଧ୍ୟା ଧୂପ ଭୋଗ ।
୬ । ବଡ଼ସିଂହାର ଭୋଗ ।
୭ । ବଲ୍ଲଭ ଭୋଗ ।

ସ୍ୱୟଂ କୋଣାର୍କଦେବଙ୍କ ନିମନ୍ତେ ଉପରୋକ୍ତ ଭୋଗମାନଙ୍କରେ ଦୈନିକ ୫ ମାଢ଼ ସୁନା ଖଞ୍ଜା ଥିଲା । ସମୁଦାୟ ବର୍ଷ ମଧ୍ୟରେ ୫ ଦିନ ଆଦୌ କୌଣସି ଭୋଗ ହେଉ ନ ଥିଲା । ସୁତରାଂ —

| | | |
|---|---|---|
| ୩୬୦ ଦିନ ପାଇଁ ଭୋଗ ନିମନ୍ତେ | | ୧୮୦୦ ମାଢ଼ |
| କ୍ଷେତ୍ର ଭୋଗ ନିମନ୍ତେ | | ୧୦୦ ମାଢ଼ |
| | ମୋଟରେ | ୧୯୦୦ ମାଢ଼ ସୁନା |

* କେଶରୀ ରାଜତ୍ୱରେ ଓଡ଼ିଶାର ପରିମାଣ ୧୧୦୦୦ ବର୍ଗମାଇଲ ଓ ରାଜସ୍ୱ ୧୫ ଲକ୍ଷ ମାଢ଼ ସୁନା ଥିଲା ଏବଂ ଅନଙ୍ଗଭୀମଦେବଙ୍କ ସମୟରେ ଓଡ଼ିଶା ବହୁତ ବଢ଼ିଯାଇ ୧୩୯୪୦୭ ବର୍ଗମାଇଲ ବିସ୍ତୃତ ହେଲା ଏବଂ ରାଜସ୍ୱର ପରିମାଣ ୩୫ ଲକ୍ଷ ମାଢ଼ ସୁନା ହୋଇଥିଲା ।

| | | |
|---|---|---|
| ମଠିଆର ଭିୟାଣ | | ୨୦୦ ମାଢ଼ |
| କର୍ପୂର ଓ ଚନ୍ଦନ ନିମନ୍ତେ ... | | ୧୦୦ ମାଢ଼ |
| ଫୁଲ ନିମନ୍ତେ | | ୧୦୦ ମାଢ଼ |
| ମାଘ ସପ୍ତମୀ ଓ ଦ୍ୱାଦଶୀ ଯାତ୍ରା | | |
| ପର୍ବମାନଙ୍କ ନିମନ୍ତେ | | ୩୦୦ ମାଢ଼ |
| ମନ୍ଦିର ସେବକମାନଙ୍କ ନିମନ୍ତେ | ... | ୪୦୦ ମାଢ଼ |
| | ମୋଟରେ | ୩୦୦୦ ମାଢ଼ |

ମାୟାଦେବୀ (ରାମଚଣ୍ଡୀ) ଅନ୍ୟାନ୍ୟ
କ୍ଷେତ୍ରଦେବତାଙ୍କ ଭୋଗ ନିମନ୍ତେ ... ?

ଅଷ୍ଟଶମ୍ଭୁ (ରାମେଶ୍ୱର, ଚିତ୍ରେଶ୍ୱର, ମଙ୍ଗଳେଶ୍ୱର, ଈଶାନେଶ୍ୱର, ମୁକ୍ତେଶ୍ୱର, ତ୍ରିବେଣୀଶ୍ୱର, ଉତ୍ପଳେଶ୍ୱର ଓ ଶୋଭନେଶ୍ୱର)ଙ୍କ
ଭୋଗ ନିମନ୍ତେ ୧୬୦ ମାଢ଼

ଅଷ୍ଟଚଣ୍ଡୀ (ଖାଲକୋଠି, ରାମଚଣ୍ଡୀ, ଭଗବତୀ, ରୁଦ୍ରାଣୀ, ଖିକେଶ୍ୱରୀ, ଚର୍ଚ୍ଚିକା, ଚିତ୍ରେଶ୍ୱରୀ)ଙ୍କ ଭୋଗ ନିମନ୍ତେ ୧୨୦ ମାଢ଼

| | | |
|---|---|---|
| ଅରୁଣ ଦେବଙ୍କ ନିମନ୍ତେ | | ୧୫ ମାଢ଼ |
| ଚାରି ଦ୍ୱାରପାଳ | ... | ୨୦ ମାଢ଼ |
| କ୍ଷେତ୍ରର ଅନ୍ୟାନ୍ୟ ଦେବତାମାନଙ୍କ ପାଇଁ | | ୬୦ ମାଢ଼ |
| ଚନ୍ଦ୍ରଭାଗା ତୀର୍ଥ ଭୋଗ | | ? |
| ଜଳସ୍ଥଳ ଓ ଆକାଶ ଭୋଗ ପାଇଁ | ... | ୧୨ ମାଢ଼ |
| ଏହିପରି ସର୍ବମୋଟ ଭୋଗ | | ୩୩୮୭ ମାଢ଼ |

ସୁତରାଂ ୩୫୦୦ ମାଢ଼ ସ୍ୱର୍ଣ୍ଣରୁ ବାକୀ ରହିଲା ୧୧୩ ମାଢ଼ । ଏଥିରୁ ବୋଧହୁଏ, ମାୟାଦେବୀ ପ୍ରଭୃତି କ୍ଷେତ୍ରଦେବତାଙ୍କ ପାଇଁ ୧୦୦ ମାଢ଼ ଏବଂ ଚନ୍ଦ୍ରଭାଗା ତୀର୍ଥ ନିମନ୍ତେ ୧୩ ମାଢ଼ ସ୍ୱର୍ଣ୍ଣ ବ୍ୟୟ କରା ଯାଉଥିଲା ।

ଅନଙ୍ଗଭୀମଦେବଙ୍କ ପରେ ତାହାଙ୍କର ପୁତ୍ର ନରସିଂହଦେବ ଭୋଗ ବଢ଼ାଇଦେଲେ ଏବଂ ତାହାପାଇଁ ଅଧିକ ଜମି ମଧ୍ୟ ଖଞ୍ଜି ଦେଲେ । ଏହିରୂପେ ସୂର୍ଯ୍ୟଦେବ ଅଧିକ ଆଡ଼ମ୍ବରରେ କେତେକ କାଳ ସେବାପୂଜା ପାଇଲେ । ତଦ୍‌ପରେ ଓଡ଼ିଶାର ଶେଷ ହିନ୍ଦୁରାଜା ମୁକୁନ୍ଦଦେବଙ୍କ ମୃତ୍ୟୁ ପରେ ଯବନମାନେ ଏ ମନ୍ଦିର ଆକ୍ରମଣ କଲେ; କିନ୍ତୁ ସେମାନେ ଏହା ଭାଙ୍ଗି ପାରିଲେ ନାହିଁ; କେବଳ କଳସ ଓ ଧ୍ୱଜପଦ୍ମ ଘେନି ଚାଲିଗଲେ । ସୁତରାଂ ଯବନସ୍ପର୍ଶରେ ମନ୍ଦିର ଅପବିତ୍ର ହୋଇଯିବାରୁ ଭୋଗରାଗ ସମସ୍ତ ବନ୍ଦ ରହିଲା ।

ମାଦଳାପାଞ୍ଜିରେ ଉପରୋକ୍ତ ପ୍ରକାରେ ଭୋଗର ବ୍ୟବସ୍ଥା ଦେଖିଲେ କୋଣାର୍କ ପ୍ରତିଷ୍ଠା ନ ହେଉଣୁ ଭାଙ୍ଗି ଯାଇଥିବାର ଆଉ ସମ୍ଭାବନା ରହେ ନାହିଁ । ତେବେ ପାଞ୍ଜିରେ ଯେପରି କ୍ରମରେ ଭୋଗର ତାଲିକା ଦିଆଯାଇଅଛି, ବୋଧହୁଏ ତାହା ସେପରି କ୍ରମରେ ହେଉ ନ ଥିଲା । ଅନ୍ୟାନ୍ୟ ଦେବସ୍ଥଳୀରେ ଭୋଗମାନଙ୍କର କ୍ରମ ଦେଖିଲେ କୋଣାର୍କରେ ନିମ୍ନଲିଖିତ କ୍ରମରେ ଭୋଗ ହେଉଥିବାର ଅନୁମାନ ହୁଏ ଏବଂ ଶ୍ରୀ ବିଷୟ୍ ସ୍ୱରୂପ ମଧ ଏହି ଅନୁମାନ କରନ୍ତି ।

ଅତି ପ୍ରତ୍ୟୁଷରେ ନିଦ୍ରାଭଙ୍ଗ ମାତ୍ରେ ଦେବଙ୍କର ପ୍ରଥମେ ପଞ୍ଚାମୃତ ସ୍ନାନ ହେଉଥିଲା । ସ୍ନାନ ପରେ କିଛି ଲଘୁ ଆହାର ବଲ୍ଲଭ ବା ବାଳଭୋଗ ସ୍ୱରୂପ ଭୋଗ ହେଉଥିଲା । ବାଳଭୋଗ ପରେ ପୂର୍ବାହ୍ନରେ ସକାଳ ଧୂପ ଭୋଗ ଏବଂ ତାହା ପରେ ଦିନବେଳାର ପ୍ରଧାନ ଭୋଗ ଅର୍ଥାତ୍ ଦ୍ୱିପ୍ରହର ଭୋଗର ବ୍ୟବସ୍ଥା ଥିଲା । ଦ୍ୱିପ୍ରହର ଭୋଗ ପରେ ଦ୍ୱିପ୍ରହର ଅବକାଶ ଭୋଗ । ତହିଁରେ ସାମାନ୍ୟ ସାମଗ୍ରୀ ଭୋଗ ଲାଗୁଥିବ । ଦ୍ୱିପ୍ରହର ଅବକାଶ ପରେ ସନ୍ଧ୍ୟା ପର୍ଯ୍ୟନ୍ତ ବିଶ୍ରାମ ଥିଲା । ସନ୍ଧ୍ୟା ଆରମ୍ଭରେ ଆରତି ଓ ସାମାନ୍ୟ ଜଳଯୋଗର ବ୍ୟବସ୍ଥା ଥିଲା । ତତ୍‌ପରେ ସନ୍ଧ୍ୟା ଧୂପ ଭୋଗ । ଏହି ଭୋଗ ପରେ ସୂର୍ଯ୍ୟଦେବଙ୍କୁ ନାନା ଅଳଙ୍କାରପତ୍ର ଦ୍ୱାରା ପୂର୍ଣ୍ଣ ଭାବରେ ବେଶ କରାଯାଇ ଭୋଗ ସମର୍ପଣ କରାଯାଉଥିଲା । ଏହି ଭୋଗର ନାମ ବଡ଼ସିଂହାର ଭୋଗ । ଏହା ପରେ ରାଜଭୋଗର ବ୍ୟବସ୍ଥା ଥିବ । ସମସ୍ତ ଭୋଗ ମଧ୍ୟରେ ଏହା ସର୍ବପ୍ରଧାନ ଏବଂ ଏହା ପରେ ଦେବଙ୍କର ରାତ୍ରିଶୟନ ହେଉଥିଲା ।

କୋଣାର୍କ କ୍ଷେତ୍ରର ଯାତ୍ରାମାନଙ୍କ ମଧ୍ୟରୁ ମାଦଳାପାଞ୍ଜିରେ ଦ୍ୱାଦଶ ଯାତ୍ରାର ଉଲ୍ଲେଖ ଅଛି । ସେଥିମଧ୍ୟରୁ କେବଳ ମାଘ ସପ୍ତମୀ ଯାତ୍ରାର ନାମ ଲେଖାଅଛି । ଏହା ଅବଶ୍ୟ ପ୍ରଧାନ ଯାତ୍ରା ଥିଲା । ଅନ୍ୟ ଯାତ୍ରାମାନଙ୍କର ନାମ ପାଞ୍ଜିରେ ନାହିଁ । କପିଳ ସଂହିତାର କୋଣାର୍କ କ୍ଷେତ୍ର ମାହାତ୍ମ୍ୟ ବର୍ଣ୍ଣନାରୁ ଜଣାଯାଏ, * ଏହି ସ୍ଥାନରେ ପୁରୀ ଓ ଭୁବନେଶ୍ୱର ପରି ରଥଯାତ୍ରା ଥିଲା । ବ୍ରହ୍ମପୁରାଣରେ ** ଦେଖାଅଛି, ଚୈତ୍ରମାସର ଶୁକ୍ଳ ପକ୍ଷରେ 'ଚୈତ୍ର ଯାତ୍ରା' ନାମରେ ଏଠାରେ ଗୋଟିଏ ଯାତ୍ରା ଅନୁଷ୍ଠିତ ହେଉଥିଲା । ସେ ସମସ୍ତ ଯାତ୍ରାମାନଙ୍କର ପରିଚୟ ପାଇବା ବର୍ତ୍ତମାନ ସାଧ୍ୟାତୀତ । ଯେ କେତୋଟିର ପରିଚୟ ମିଳୁଅଛି, ତାହାର ଆଲୋଚନା କରାଗଲା ।

**ରଥଯାତ୍ରା :—** କୋଣାର୍କରେ ରଥଯାତ୍ରାର ଅନୁଷ୍ଠାନ ଥିଲା । ମନ୍ଦିରର ପ୍ରାୟ ୧୫ ମାଇଲ ଉତ୍ତର-ପୂର୍ବ ଦିଗରେ ଗୋଟିଏ ଗୁଣ୍ଡିଚା ଘର ଥିବାର ଲୋକମୁଖରେ ଶୁଣାଯାଏ ।

---

* ଦ୍ୱିତୀୟ ଅଧ୍ୟାୟ ।

** ୨୬ ଅଧ୍ୟାୟ ।

ଏହି ଗୁଣ୍ଡିଚା ମନ୍ଦିର ସମୁଦାୟ ଇଟାରେ ତିଆରି ହୋଇଥିଲା କି କେବଳ ବେଢ଼ା ପ୍ରାଚୀର ଇଟାରେ ତିଆରି ହୋଇ ମନ୍ଦିରଟି ପଥରରେ ତିଆରି ହୋଇଥିଲା, ତାହା ସମ୍ପୂର୍ଣ୍ଣ ଜଣାପଡ଼େ ନାହିଁ । ତେବେ ସେ ସ୍ଥଳରେ ବାଲି ଉପରେ କେତେ ପୁରାକାଳର ଇଟା ପଡ଼ିଅଛି ଏବଂ କୋଣାର୍କ ନିକଟବର୍ତ୍ତୀ ବାଙ୍ଗରୀ ଗ୍ରାମର ଜଗନ୍ନାଥ ସାହୁ ନାମରେ ଜନୈକ ଜମିଦାର ସେଠାରୁ କେତେଗୁଡ଼ିଏ ଇଟା ଖୋଳାଇ ନେଇଥିବାର କୋଣାର୍କରେ ଶୁଣାଗଲା । ଉକ୍ତ ଗୁଣ୍ଡିଚା ମନ୍ଦିର ପର୍ଯ୍ୟନ୍ତ କୋଣାର୍କଠାରୁ ଗୋଟିଏ ଦାଣ୍ଡ ଥିଲା । ତାହାର ବର୍ତ୍ତମାନ କୌଣସି ଚିହ୍ନ ମିଳେ ନାହିଁ; ତଥାପି କୋଣାର୍କରେ ରଥଯାତ୍ରାର ଅନୁଷ୍ଠାନ ଥିବା ସ୍ଥଳେ ଗୋଟିଏ ପ୍ରଶସ୍ତ ଦାଣ୍ଡ ଓ ଗୁଣ୍ଡିଚା ଘରର ଅନୁମାନ କରାଯାଏ । ପୁରୀ ଓ ଭୁବନେଶ୍ୱରରେ ଗୁଣ୍ଡିଚା ମନ୍ଦିର ଦେବମନ୍ଦିରର ଉତ୍ତରରେ ପ୍ରାୟ ଅଛି । ସୁତରାଂ ଅନୁମାନ କରାଯାଏ ଯେ, କୋଣାର୍କର ଉତ୍ତର ବା ଉତ୍ତର-ପୂର୍ବ ଦିଗରେ ଗୁଣ୍ଡିଚା ମନ୍ଦିରଟିଏ ଥିଲା ।

କୋଣାର୍କରେ ରଥଯାତ୍ରା କେଉଁ ଦିନ ହେଉଥିଲା, ତାହା ନିର୍ଣ୍ଣୟ କରିବାର କୌଣସି ପ୍ରମାଣ ମିଳେ ନାହିଁ । କପିଳ ସଂହିତାରେ ରଥଯାତ୍ରାର ମାହାତ୍ମ୍ୟ ବିଶେଷ ଲେଖାଅଛି ଏବଂ ଅନ୍ୟ କୌଣସି ଯାତ୍ରାର ନାମ ଲେଖା ନାହିଁ । ସୁତରାଂ ମାଘ ସପ୍ତମୀ ଯାତ୍ରା ପରି ଏହା ମଧ୍ୟ ଗୋଟିଏ ପ୍ରଧାନ ଯାତ୍ରା ଥିଲା ଏବଂ ଦେଶ ବିଦେଶରେ ବିଖ୍ୟାତ ହୋଇଥିଲା ବୋଲି କହିବା ବାହୁଲ୍ୟ ମାତ୍ର । ବ୍ରହ୍ମପୁରାଣ କହିବା ଅନୁସାରେ 'ଚୈତ୍ର ଯାତ୍ରା' ନାମରେ ଚୈତ୍ର ମାସର ଶୁକ୍ଳ ପକ୍ଷରେ ଏହିଠାରେ ଗୋଟିଏ ଯାତ୍ରାର ଅନୁଷ୍ଠାନ ଥିଲା । ସୁତରାଂ ଶ୍ରୀ ବିଷବ୍ ସ୍ୱରୂପ ଅନୁମାନ କରନ୍ତି ଯେ, କୋଣାର୍କର ରଥଯାତ୍ରା ଚୈତ୍ର ମାସ ଶୁକ୍ଳ ଅଷ୍ଟମୀ ଦିନ ଅନୁଷ୍ଠିତ ହେଉଥିଲା । ଏହି ଅଶୋକାଷ୍ଟମୀ ଦିନ ଭୁବନେଶ୍ୱରରେ ରଥଯାତ୍ରା ହେଉଥିବା ସମସ୍ତେ ପ୍ରାୟ ଜାଣନ୍ତି । ଅତଏବ ସେହି ଦିନ କୋଣାର୍କରେ ରଥଯାତ୍ରା ହେଉଥିବାର ସମ୍ଭବ ନୁହେଁ । ଓଡ଼ିଶାର କୌଣସି ଦୁଇଟି ପ୍ରସିଦ୍ଧ ସ୍ଥଳରେ ଏକ ସମୟରେ ଦୁଇଟି ପ୍ରଧାନ ଯାତ୍ରାର ଅନୁଷ୍ଠାନ କଦାପି ଦେଖାଯାଏ ନାହିଁ । ରଥଯାତ୍ରା ଯେଉଁ ଦିନ ପୁରୀରେ ହୁଏ, ଭୁବନେଶ୍ୱରରେ ସେ ଦିନ ହୁଏ ନାହିଁ କି ଭୁବନେଶ୍ୱରର ରଥଯାତ୍ରା ଦିନ ଯାଜପୁରରେ ରଥଯାତ୍ରା ପଡ଼େ ନାହିଁ । କାରଣ ଏହି ଯାତ୍ରାମାନଙ୍କ ଦ୍ୱାରା ଦେବତାମାନଙ୍କର ଉତ୍ସବ ଯେପରି ସମାହିତ ହୁଏ, ସେହିପରି ମଧ୍ୟ ଆହୁରି ଗୋଟିଏ ମହତ୍ ଉଦ୍ଦେଶ୍ୟ ସାଧିତ ହୁଏ । ଦେଶର ଦୂରବର୍ତ୍ତୀ ଅଧିବାସୀମାନଙ୍କୁ ଏବଂ ନାନା ସ୍ଥାନରେ ପ୍ରସ୍ତୁତ ନୂତନ ଓ ଆଶ୍ଚର୍ଯ୍ୟଜନକ ପଦାର୍ଥମାନଙ୍କୁ ଏକତ୍ର କରାଇବା ଯାତ୍ରାମାନଙ୍କର ଅନ୍ୟତମ ଉଦ୍ଦେଶ୍ୟ ଥିଲା । ହିନ୍ଦୁରାଜ୍ୟ ବହୁ ବିସ୍ତୃତ ଏବଂ ଭାଷା, ରୀତି, ନୀତି ଅନୁସାରେ ନାନାଭାଗରେ ବିଭକ୍ତ । ଏଥିରେ ପୁଣି ଅଗମ୍ୟ ଜଙ୍ଗଲ, ପର୍ବତ ଓ ନଦୀ ହିନ୍ଦୁପ୍ରଦେଶମାନଙ୍କୁ ଆହୁରି ଦୂରବର୍ତ୍ତୀ କରାଇ ଦେଇଅଛି । ସୁତରାଂ ଯେ ଯୁଗରେ ଏକପ୍ରାନ୍ତର ଲୋକ ଅପର ପ୍ରାନ୍ତର ଲୋକଙ୍କୁ ଜାଣିବା, ଦେଶର ବିଭିନ୍ନ ସ୍ଥାନର ଉତ୍କୃଷ୍ଟ ଶିଳ୍ପମାନଙ୍କର ପରିଚୟ ପାଇବା ଏବଂ ତଦ୍ୱାରା ଆପଣା ଆପଣା ମଧ୍ୟରେ ଏକ ଜାତୀୟ

ପ୍ରାଣର ସ୍ପନ୍ଦନ ଅନୁଭବ କରିବା ନିମନ୍ତେ ବର୍ତ୍ତମାନ ପରି ଅନ୍ୟ କୌଣସି ଅନୁକୂଳ ଅନୁଷ୍ଠାନ ନ ଥିଲା । ସେତେବେଳେ ଜାତୀୟ ମହାସମିତି ନ ଥିଲା କି ସ୍ଥଳେ ସ୍ଥଳେ କୃଷିବାଣିଜ୍ୟର ସ୍ୱତନ୍ତ୍ର ପ୍ରଦର୍ଶନୀ ଅନୁଷ୍ଠିତ ହେଉ ନ ଥିଲା । ତେବେ ଯାହା କିଛି ଅନୁଷ୍ଠାନ ଥିଲା, ତାହା କେବଳ ଏହି ଦେବଯାତ୍ରା ଓ ମେଳନ ପ୍ରଭୃତି । ଏଥି ନିମନ୍ତେ ଧର୍ମପ୍ରାଣ ଲକ୍ଷ ଲକ୍ଷ ହିନ୍ଦୁ ନରନାରୀ ପଦବ୍ରଜରେ ସହସ୍ର ଯୋଜନ ଭ୍ରମଣ କରି ଯାତ୍ରା ଦର୍ଶନ ନିମନ୍ତେ ଆସୁଥିଲେ ଏବଂ ଅଦ୍ୟାବଧି ମଧ୍ୟ ଆସୁଅଛନ୍ତି । ଏକ ଜାତୀୟତା ସ୍ଥାପନ ଓ ଶିଳ୍ପ ବାଣିଜ୍ୟର ଉନ୍ନତି ନିମନ୍ତେ ଏହା ପ୍ରକୃଷ୍ଟ ପନ୍ଥା ଥିଲା । ସୁତରାଂ ଶ୍ରୀ ବିଷନ୍ ସ୍ୱରୂପ ଯାହା ମନେ କରନ୍ତି ଯେ, ଭୁବନେଶ୍ୱର ସଙ୍ଗେ ପ୍ରତିଯୋଗିତା ସ୍ୱରୂପ କୋଣାର୍କରେ ଅଶୋକାଷ୍ଟମୀ ଦିନ ରଥଯାତ୍ରା ହେଉଥିଲା, ତାହା ନିତାନ୍ତ ଅସଙ୍ଗତ । ଅବଶ୍ୟ ଭୁବନେଶ୍ୱରରେ ଲିଙ୍ଗରାଜଙ୍କର ଚଳନ୍ତି ବିଗ୍ରହ ଚନ୍ଦ୍ରଶେଖର ରାମେଶ୍ୱର ମନ୍ଦିରକୁ ରଥରେ ବିଜେ କରନ୍ତି । ଅତଏବ କୋଣାର୍କ ଦେବଙ୍କ ବିଗ୍ରହ ଯେ ସେହି ଦିନ ରାମେଶ୍ୱର ମନ୍ଦିରକୁ ରଥରେ ବିଜେ କରୁଥିଲେ କୁହାଯାଇ ନ ପାରେ । ଭୁବନେଶ୍ୱର ଓ କୋଣାର୍କ ମଧ୍ୟରେ ଏହିପରି କିଛି ପ୍ରତିଦ୍ୱନ୍ଦୀ ଭାବ ନ ଥିଲା କି ଏକ ସ୍ଥାନର ଯାତ୍ରାଠାରୁ ଅନ୍ୟସ୍ଥାନର ଯାତ୍ରାରେ ଅଧିକ ଆଡ଼ମ୍ବର ଦେଖାଇବା ନିମନ୍ତେ ଅନୁଷ୍ଠାତାମାନଙ୍କ ମଧ୍ୟରେ ସେପରି କିଛି ହିଂସା ବା ବିଦ୍ୱେଷ ନ ଥିଲା । ସକଳ ସ୍ଥାନର ଯାତ୍ରା ଏକ ଦେବଯାତ୍ରା ଏବଂ ତାହା ସର୍ବ ସମ୍ପ୍ରଦାୟ ପ୍ରତି ସମାନ ଆଦରଣୀୟ । ଭୁବନେଶ୍ୱରରେ ଯେଉଁଦିନ ରଥଯାତ୍ରା, କୋଣାର୍କରେ ତାହାର ପରେ ବା ପୂର୍ବରୁ ହେଉଥିବ ସନ୍ଦେହ ନାହିଁ । ଶ୍ରୀ ବିଷନ୍ ସ୍ୱରୂପ ନିଜେ ମଧ୍ୟ ତାହାଙ୍କ ଗ୍ରନ୍ଥର ଅନ୍ୟ ସ୍ଥାନରେ * କହିଅଛନ୍ତି ଯେ, ଭୁବନେଶ୍ୱର ଓ କୋଣାର୍କର ରଥଯାତ୍ରା ଦିନ ପରସ୍ପରଠାରୁ ପୃଥକ୍ ଥିଲା ।

ଏହିପରି ଓଡ଼ିଶାର ଚାରି କ୍ଷେତ୍ରରେ ରଥଯାତ୍ରା ହୁଏ । ଭାରତବର୍ଷରେ ଅନ୍ୟାନ୍ୟ କେତେକ ସ୍ଥଳରେ ରଥଯାତ୍ରା ହେବାର ଦେଖାଯାଏ । ବର୍ତ୍ତମାନ ଯୁଗର ପ୍ରତ୍ନତତ୍ତ୍ୱବିଦମାନଙ୍କ ମଧ୍ୟରୁ ଅନେକେ ଏହି ରଥଯାତ୍ରାକୁ ବୁଦ୍ଧଦେବଙ୍କ ରଥଯାତ୍ରାର ଅନୁକରଣ ମାତ୍ର ବୋଲି ପ୍ରମାଣ କରନ୍ତି । ପୁରୀର ରଥଯାତ୍ରା ସମ୍ବନ୍ଧରେ ସେହିପରି ମଧ୍ୟ ଦେଶୀ ବିଦେଶୀ ନାନା ଲେଖକ ପ୍ରମାଣ କରିଅଛନ୍ତି ଯେ, ଏହା ବୌଦ୍ଧଧର୍ମର ଅନୁକରଣରେ ପ୍ରତିଷ୍ଠିତ ହୋଇଥିଲା । ଜଗନ୍ନାଥ ନିଜେ ବୌଦ୍ଧାବତାର; ସୁତରାଂ ତାହାଙ୍କର ରଥଯାତ୍ରା ବୁଦ୍ଧଦେବଙ୍କର ରଥଯାତ୍ରା ଭିନ୍ନ ଅନ୍ୟ କିଛି ନୁହେଁ । ସେହିପରି ଶ୍ରୀଯୁକ୍ତ ବିଷନ୍ ସ୍ୱରୂପ କୋଣାର୍କର ରଥଯାତ୍ରା ବୁଦ୍ଧଦେବଙ୍କ ରଥଯାତ୍ରାର ଅନୁକରଣରେ ହେଉଥିବାର ପ୍ରମାଣ କରିବା ନିମନ୍ତେ ନାନା ବୌଦ୍ଧଗ୍ରନ୍ଥ ଓ ପର୍ଯ୍ୟଟକମାନଙ୍କର ଭ୍ରମଣ ବୃତ୍ତାନ୍ତ ଉଦ୍ଧାର କରିଅଛନ୍ତି । ବୁଦ୍ଧଦେବ ନିଜେ ରଥରେ ଭ୍ରମଣ କରୁଥିଲେ ଏବଂ ତାହାଙ୍କର ତିରୋଧାନ ପରେ ଭକ୍ତମାନେ ନାନା ସ୍ଥାନରେ ତାହାଙ୍କର ଶରୀରାବଶେଷ ଘେନି ରଥଯାତ୍ରାର ଉତ୍ସବ କରୁଥିଲେ । ଅତଏବ କେବଳ

* Konarka. P. 83.

କୋଣାର୍କ କାହିଁକି ସର୍ବତ୍ର ଯେଉଁ ରଥଯାତ୍ରାନୁଷ୍ଠାନ ଅଛି, ତାହା ହୁଏତ ସାକ୍ଷାତ୍ ବୌଦ୍ଧ ରଥଯାତ୍ରା ନ ହେଲେ ମଧ ତାହାର ଅନୁକରଣରେ ହୋଇଅଛି ବୋଲିବାକୁ ହେବ ।

ରଥଯାତ୍ରା ବୌଦ୍ଧାବଶେଷ ହୋଇଥିବା ସପକ୍ଷରେ ବର୍ତ୍ତମାନ ଯେତେ ଗ୍ରନ୍ଥାଦିରେ ଉଲ୍ଲେଖ ଅଛି, ତାହା ବିରୁଦ୍ଧରେ ମତ ବ୍ୟକ୍ତ କରିବା ବଡ଼ ସହଜ ବ୍ୟାପାର ନୁହେଁ ଏବଂ ଭିନ୍ନ ମତ ବ୍ୟକ୍ତ କଲେ ମଧ ତାହା ପାଠକମାନଙ୍କର ଅନୁକୂଳ ମତ ପାଇବ କି ନାହିଁ ସନ୍ଦେହ । ପୁଣି ପ୍ରତ୍ୟେକ କ୍ଷେତ୍ରର ରଥଯାତ୍ରାର ଉତ୍ପତ୍ତି ବିଚାର କରିବା ନିମନ୍ତେ ବର୍ତ୍ତମାନ ସ୍ଥାନ ନୁହେଁ । ତେବେ ପୁରୀର ରଥଯାତ୍ରା ସର୍ବବିଦିତ ଏବଂ ବର୍ତ୍ତମାନ ପର୍ଯ୍ୟନ୍ତ କ୍ରମାଗତ ଚାଲିଅଛି । ପୁରୀ ଯେ କୌଣସି ସମୟରେ ବୌଦ୍ଧଧର୍ମର କେନ୍ଦ୍ର ଥିଲା; ତାହାର କୌଣସି ଶାସ୍ତ୍ରୀୟ ପ୍ରମାଣ ନାହିଁ । ବୁଦ୍ଧଦେବଙ୍କ ଦନ୍ତ ପୁରୀରେ ଥିବାର ଡାକ୍ତର ଫର୍‌ଗୁସନ୍ ପ୍ରଭୃତି ଯେ ଅନୁମାନ କରିଅଛନ୍ତି, ତାହା ସମ୍ପୂର୍ଣ୍ଣ କାଳ୍ପନିକ ବୋଲି ପୂର୍ବେ (ତୃତୀୟ ଅଧ୍ୟାୟରେ) ପ୍ରମାଣ କରାଯାଇଅଛି । ପୁଣି ସେଠାରେ ମଧ କୁହାଯାଇଅଛି ଯେ ସିଂହଳର ଦନ୍ତବଂଶରେ ବର୍ଣ୍ଣିତ ବୁଦ୍ଧଦେବଙ୍କ ଦନ୍ତର ଉପାଖ୍ୟାନ ଅଦ୍ୟାବଧି ଇତିହାସରେ ପ୍ରମାଣିତ ଘଟଣା ସ୍ୱରୂପ ଗୃହୀତ ହୋଇନାହିଁ । ଯଦି ନିତାନ୍ତ ସେ ଉପାଖ୍ୟାନ ସତ୍ୟ ହୁଏ ଏବଂ ଦନ୍ତର ଉପାସନା ହେଉଥିବାରୁ ରାଜଧାନୀ ଦନ୍ତପୁର ନାମରେ ଖ୍ୟାତ ଥିବା ସ୍ୱୀକାର କରାଯାଏ; ତଥାପି ମଧ ସେଠାରେ ଯେପରି ପ୍ରମାଣ କରାଯାଇଅଛି, ଦନ୍ତପୁର ପୁରୀ ନ ହୋଇ ବରଂ କୋଣାର୍କ ନିକଟରେ ଥିଲା । ଇନ୍ଦ୍ରଦ୍ୟୁମ୍ନ ପୁରୀରେ ଜଗନ୍ନାଥ ପ୍ରତିଷ୍ଠା କରିବା ପୂର୍ବରୁ ପୁରୀ ନିତାନ୍ତ ଜଙ୍ଗଲ ଥିବାର ପୁରାଣମାନଙ୍କରେ ବର୍ଣ୍ଣିତ ଅଛି । ସୁତରାଂ ପୁରୀରେ ବୌଦ୍ଧଧର୍ମର ପ୍ରଭାବ କେବେ ବିସ୍ତୃତ ଥିଲା, ତାହାର କୌଣସି ସନ୍ତୋଷଜନକ ପ୍ରମାଣ ନାହିଁ । ଏପରି ସ୍ଥଳେ ପୁରୀର ରଥଯାତ୍ରାକୁ ବୌଦ୍ଧାବଶେଷ ବୋଲି ସ୍ୱୀକାର କରିବା ପୂର୍ବରୁ ବିଶେଷ ସାବଧାନ ହେବାର କଥା ଏବଂ ପୁରୀ ଗେଜେଟିଅର ଲେଖକ ମଧ ସେହିପରି ସନ୍ଦିଗ୍ଧ ହୋଇ କୌଣସି ମତ ସ୍ଥିର କରି ପାରିନାହାନ୍ତି * ।

ତେବେ ପୂର୍ବେ (ତୃତୀୟ ଅଧ୍ୟାୟ) ଯେପରି କୁହାଯାଇଅଛି, କୋଣାର୍କ ନିକଟରେ ଅବଶ୍ୟ ଗୋଟିଏ ପ୍ରଧାନ ବୌଦ୍ଧ କେନ୍ଦ୍ର ଥିଲା ଏବଂ ଦନ୍ତପୁର ଓ ଚିତ୍ରୋତ୍ପଳା ଏହିଠାରେ ଅବସ୍ଥିତ ଥିଲା । କାଳକ୍ରମେ ବୌଦ୍ଧଧର୍ମ ଲୁପ୍ତ ହେଲା ଏବଂ ଯେଉଁ ବୌଦ୍ଧ ମନ୍ଦିରମାନ ଥିଲା, ତାହା ମଧ କ୍ରମେ କ୍ରମେ ଭାଙ୍ଗିଗଲା । ହିନ୍ଦୁଧର୍ମର ବିଜୟ ଚିହ୍ନ ସ୍ୱରୂପ କୋଣାର୍କରେ ପଦ୍ମକ୍ଷେତ୍ର ପ୍ରତିଷ୍ଠିତ ହେଲା । ଏ ସମସ୍ତ ସତ୍ୟ ତଥାପି କୋଣାର୍କର ରଥଯାତ୍ରା ବୌଦ୍ଧାବଶେଷ ବୋଲି ପ୍ରମାଣ କରିବା ବଡ଼ ସହଜ ନୁହେଁ । ହୁଏନସାଂ ଚିତ୍ରୋତ୍ପଳା ବର୍ଣ୍ଣନାରେ ଲେଖିଅଛନ୍ତି ଯେ, ଚିତ୍ରୋତ୍ପଳା ବୌଦ୍ଧ କେନ୍ଦ୍ର ଥିଲେ ମଧ ଅନେକ ହିନ୍ଦୁ ସେଠାରେ ଦେବ ଦେବୀ

* Mr. O' Malley – Bengal District Gazetteer Puri. P. 94.

ଆରାଧନା କରୁଥିଲେ * । ସୁତରାଂ ବୌଦ୍ଧମାନଙ୍କଠାରୁ ସ୍ୱତନ୍ତ୍ର ଭାବରେ ହିନ୍ଦୁମାନେ ନିଜେ ଆପଣା ଦେବଙ୍କର ରଥଯାତ୍ରା ଅନୁଷ୍ଠାନ କରୁଥିବା ଅସମ୍ଭବ ନୁହେଁ । ପୁଣି ହୁଏନସାଂ ଚିତ୍ରୋପ୍ଳାର ବୌଦ୍ଧ ମନ୍ଦିରମାନଙ୍କର ଏତେ ଉଲ୍ଲେଖ କରିଅଛନ୍ତି; ଅଥଚ ସେଠାରେ କିମ୍ବା ଓଡିଶାର ଅନ୍ୟ ସ୍ଥାନରେ ବୌଦ୍ଧମାନଙ୍କର ରଥଯାତ୍ରା ହେଉଥିବାର ଲେଖିନାହାନ୍ତି । ଭାରତର ଅନ୍ୟାନ୍ୟ କେତେକ ବୌଦ୍ଧ କେନ୍ଦ୍ରମାନଙ୍କରେ ଅନୁଷ୍ଠିତ ରଥଯାତ୍ରାର ବିଶେଷ ବିବରଣ ତାହାଙ୍କ ଭ୍ରମଣ ବୃତ୍ତାନ୍ତରେ ଅଛି । ଅତଏବ ଅନୁମାନ କରାଯାଏ, ଓଡ଼ିଶା ବୌଦ୍ଧମାନଙ୍କ ମଧ୍ୟରେ ରଥଯାତ୍ରାର ଅନୁଷ୍ଠାନ ଆଦୌ ନ ଥିଲା । ସୁତରାଂ ପାଟଳୀପୁତ୍ର ବା ସାଞ୍ଚି ପ୍ରଭୃତି ସ୍ଥାନରେ ବୌଦ୍ଧ ରଥଯାତ୍ରା ଅନୁକରଣରେ ପୁରୀ, କୋଣାର୍କ ପ୍ରଭୃତି ହିନ୍ଦୁକ୍ଷେତ୍ରରେ ରଥଯାତ୍ରା ଅନୁଷ୍ଠିତ ହୋଇଥିବା ଅସମ୍ଭବ ବୋଧହୁଏ ** ।

ରଥଯାତ୍ରା ଭାରତରେ ଗୋଟିଏ ନୂତନ ବସ୍ତୁ ନୁହେଁ । ବୁଦ୍ଧଦେବଙ୍କ ସମୟରୁ ଏହା ଆରମ୍ଭ ହୋଇଥିବା କଦାପି କୁହାଯାଇ ନ ପାରେ । ଯେଉଁ ପ୍ରଥା ବୁଦ୍ଧଦେବଙ୍କ ପୂର୍ବରୁ ଭାରତବର୍ଷରେ ପ୍ରଚଳିତ ନ ଥିଲା ଏବଂ ବୌଦ୍ଧମାନେ ଯାହା ପ୍ରଥମତଃ ଆରମ୍ଭ କରିଥିଲେ, ତାହାକୁ ବୌଦ୍ଧପ୍ରଥା ବୋଲି କୁହାଯାଇ ପାରେ । ପକ୍ଷାନ୍ତରେ ଯାହା ବୌଦ୍ଧଧର୍ମର ପୂର୍ବରୁ ବ୍ରାହ୍ମଣମାନଙ୍କ ମଧ୍ୟରେ ପ୍ରଚଳିତ ଥିଲା ଏବଂ ବୌଦ୍ଧମାନେ ନିଜ ଧର୍ମ ଓ ସମାଜରେ ଯାହା ପ୍ରବେଶ କରାଇଥିଲେ, ତାହାକୁ ବୌଦ୍ଧପ୍ରଥା ନ କହି ବରଂ ବ୍ରାହ୍ମଣପ୍ରଥା କୁହାଯିବ । ପରବର୍ତ୍ତୀ ବ୍ରାହ୍ମଣ ଧର୍ମ ସେହି ପ୍ରଥା ବୌଦ୍ଧଧର୍ମରୁ ଅନୁକରଣ ନ କରି ବରଂ ବୌଦ୍ଧଧର୍ମ ପୂର୍ବବର୍ତ୍ତୀ ବ୍ରାହ୍ମଣ ଧର୍ମରୁ ଅନୁକରଣ କରିଥିଲା ବୋଲିବାକୁ ହେବ । ବୁଦ୍ଧଦେବ 'ତତ୍ତ୍ୱଜ୍ଞାନ' ପାଇବା ପୂର୍ବରୁ ବୌଦ୍ଧଧର୍ମର ଆରମ୍ଭ ହୋଇ ନ ଥିଲା । ସେ ନିଜେ ଯୌବନାବସ୍ଥାରେ ରଥାରୋହଣରେ ଉଦ୍ୟାନ ଭ୍ରମଣରେ ବାହାରୁଥିଲେ । ବୌଦ୍ଧମାନେ ବୁଦ୍ଧଦେବଙ୍କର ଏହି ଘଟଣାର ସ୍ମାରକ ସ୍ୱରୂପ ପରେ ତାହାଙ୍କ ଶରୀରାବଶେଷ ନେଇ ରଥଯାତ୍ରା କରୁଥିଲେ । ଅତଏବ ବୌଦ୍ଧଧର୍ମର ରଥଯାତ୍ରା ବୌଦ୍ଧଧର୍ମ ପୂର୍ବବର୍ତ୍ତୀ ଶାକ୍ୟସିଂହଙ୍କ ଜୀବନୀରୁ ଗୃହୀତ । ବୌଦ୍ଧଧର୍ମର ଆବିର୍ଭାବ ପୂର୍ବରୁ ଶାକ୍ୟସିଂହ ଯେ ରଥାରୋହଣରେ ଉଦ୍ୟାନ ଭ୍ରମଣ କରୁଥିଲେ, ତହିଁରୁ ସ୍ପଷ୍ଟ ପ୍ରମାଣ କରାଯାଏ ଯେ, ବୁଦ୍ଧଦେବଙ୍କ ଜନ୍ମ ପୂର୍ବରୁ ମଧ୍ୟ ରଥାରୋହଣ ଓ ଉଦ୍ୟାନ ଭ୍ରମଣ ଭାରତୀୟ ରାଜପୁରୁଷମାନଙ୍କର ଗୋଟିଏ ନିତ୍ୟ ବିଳାସ ବସ୍ତୁ ଥିଲା । ରାମାୟଣ ଓ ମହାଭାରତ ଯୁଗରେ ରାଜପୁରୁଷମାନେ ଯୁଦ୍ଧାଦି କାର୍ଯ୍ୟଠାରୁ ଆରମ୍ଭ କରି ସୌଖିନ ଭ୍ରମଣ ପର୍ଯ୍ୟନ୍ତ ରଥାରୋହଣ କରୁଥିଲେ । ରଥର ଗୁରୁତ୍ୱ ଓ ଆକାର

* Antiquities of Orissa. Vol. I. P. 7 and P. 136.

"There are also many heretics who frequent the temples of the Devas (Devalayas). The followers of error (Brahmanism) and of the truth (Buddhism) live pell-mell" - p. 7.

** Lt. Havell "Aryan rule in India". P. 168.

ଅନୁସାରେ ଦୁଇ ବା ତତୋଽଧିକ ଘୋଡ଼ାର ପ୍ରୟୋଜନ ହେଉଥିଲା । ବୁଦ୍ଧଦେବଙ୍କ ଜନ୍ମ ସମୟକୁ ଏହା ଗୋଟିଏ ପ୍ରାଚୀନ ପଦ୍ଧତିରେ ପରିଣତ ହୋଇଥିଲା ଏବଂ ସେହି ପ୍ରାଚୀନ ପ୍ରଥାର ଅନୁସରଣ କରି ବୁଦ୍ଧଦେବ ଯୌବନରେ ରଥାରୋହଣରେ ଉଦ୍ୟାନ ଭ୍ରମଣ କରୁଥିଲେ । ଏଥିରେ ବୌଦ୍ଧ ଧର୍ମର ନୂତନତ୍ୱ କିଛି ନାହିଁ କି ଏହାକୁ ବୌଦ୍ଧ ଅନୁଷ୍ଠାନ ବୋଲି ଆଦୌ କୁହାଯାଇ ନ ପାରେ ।

ରାଜପୁରୁଷମାନଙ୍କର ରଥଯାତ୍ରା ପ୍ରସଙ୍ଗ ବାଦ ଦେଲେ ସୁଦ୍ଧା ଦେବକାର୍ଯ୍ୟରେ ରଥଯାତ୍ରାର ଅନୁଷ୍ଠାନ ବୌଦ୍ଧମାନଙ୍କଠାରୁ ନୂତନ ଆରମ୍ଭ ହୋଇଥିବାର ପ୍ରମାଣ କରାଯାଇ ନ ପାରେ । ବୌଦ୍ଧଧର୍ମର ରଥଯାତ୍ରା ଓ ଅନ୍ୟାନ୍ୟ କ୍ରିୟାନୁଷ୍ଠାନ ପ୍ରଥମତଃ ଅଶୋକଙ୍କ ସମୟରୁ ଆରମ୍ଭ ହୋଇଥିଲା । ଅଶୋକ ସାଞ୍ଚି ପ୍ରଭୃତି ସ୍ଥାନରେ ସ୍ତୂପ ନିର୍ମାଣ କରାଇ ବୁଦ୍ଧଙ୍କର ଶରୀରାବଶେଷର ପୂଜା ଆରମ୍ଭ କରିଥିଲେ । ତାହାଙ୍କ ସମୟରେ କିମ୍ବା ତାହାଙ୍କ ପରେ ରଥଯାତ୍ରା ବୌଦ୍ଧ ଧର୍ମର ଅଙ୍ଗୀଭୂତ ହୋଇଥିଲା । ଅଶୋକଙ୍କ ଅନୁଶାସନରେ (ଖ୍ରୀଷ୍ଟ ପ୍ରତିଲୋମ ୨୫୬ ଅବ୍ଦ) ରଥଯାତ୍ରାର ଉଲ୍ଲେଖ ଅଛି । ଅତଏବ ରଥଯାତ୍ରା ଅଶୋକଙ୍କ ପୂର୍ବରୁ ବ୍ରାହ୍ମଣ ଧର୍ମର ଅଙ୍ଗୀଭୂତ ଥିବାର ଅନୁମାନ କରାଯାଏ । ଦେବତାମାନେ ରଥାରୋହଣରେ ଭ୍ରମଣ କରୁଥିବା ପୁରାଣମାନଙ୍କରେ ସର୍ବତ୍ର ବର୍ଣ୍ଣିତ ଅଛି । ରାମଚନ୍ଦ୍ର ଯେଉଁ ପୁଷ୍ପକ ରଥରେ ଅଯୋଧ୍ୟା ପ୍ରତ୍ୟାଗମନ କରିଥିଲେ, ତାହା ପ୍ରଥମତଃ କୁବେରଙ୍କର ଥିଲା । ହରିଶ୍ଚନ୍ଦ୍ର ସ୍ୱଦେହରେ ସ୍ୱର୍ଗକୁ ଯିବା ନିମନ୍ତେ ସ୍ୱର୍ଗରୁ ରଥଟିଏ ପ୍ରସ୍ତୁତ ହୋଇ ଆସିଥିଲା । ଚଣ୍ଡୀ ରଥରେ ଯୁଦ୍ଧ କରି ମହିଷାସୁର ପ୍ରଭୃତିଙ୍କୁ ନିହତ କରିଥିଲେ । ଏ ସମସ୍ତ କେବଳ ପୌରାଣିକ ଯୁଗର କଥା । ବୈଦିକ ଯୁଗରେ ମଧ୍ୟ ଦେବତାମାନେ ରଥାରୋହଣ କରୁଥିବାର ବର୍ଣ୍ଣିତ ଅଛି । ଋକ୍‌ବେଦର ନାନା ସ୍ଥାନରେ ନିଜେ ଦେବତାମାନେ ରଥରେ ଭ୍ରମଣ କରୁଥିବାର ଉଲ୍ଲେଖ ଅଛି । ପୁଣି କେଉଁ ଦେବତାଙ୍କର ରଥ କିପରି ଭାବରେ ଅଳଙ୍କୃତ, ତାହା ମଧ୍ୟ ଋକ୍‌ବେଦରେ ବର୍ଣ୍ଣିତ ହୋଇଅଛି । କାହାର ରଥ ସ୍ୱର୍ଣ୍ଣରେ ନିର୍ମିତ, କାହାର ରଥ ପୁଣି ସ୍ୱର୍ଣ୍ଣ, ରୌପ୍ୟ ଓ ତାମ୍ର ଏହି ତିନି ଧାତୁରେ ନିର୍ମିତ, କେଉଁ ଦେବତାଙ୍କ ରଥର ଅଶ୍ୱର ସାଜସଜ୍ଜା ମଧ୍ୟ ସ୍ୱର୍ଣ୍ଣରେ ନିର୍ମିତ, ଇତ୍ୟାଦି ରଥ ଓ ଅଶ୍ୱଙ୍କର ନାନା ପ୍ରକାର ବର୍ଣ୍ଣନା ଅଛି । ଏହି ସମସ୍ତ ଅବଶ୍ୟ କବିକଳ୍ପନା, ତଥାପି ଏହି କଳ୍ପନା ପ୍ରମାଣ କରୁଅଛି ଯେ, ବୌଦ୍ଧଧର୍ମର ଆବିର୍ଭାବ ପୂର୍ବରୁ ବ୍ରାହ୍ମଣ ଧର୍ମ ମଧ୍ୟରେ ରଥଯାତ୍ରା ଅନୁଷ୍ଠାନ ଅଙ୍ଗୀଭୂତ ହୋଇଥିଲା ।

ରାଜେନ୍ଦ୍ର ଲାଲ ମିତ୍ର କହନ୍ତି ଯେ, * ଭାରତୀୟ ରଥର ପ୍ରଥମ ଚିତ୍ର ଖ୍ରୀଷ୍ଟପୂର୍ବ ୧୪୯୫ ଅବ୍ଦରେ ଅଙ୍କନ କରା ଯାଇଥିଲା । 'ରଥିନ' ନାମରେ ଗୋଟିଏ ଜାତି ଏହି ଚିତ୍ର ଅଙ୍କନ କରିଥିଲେ । ହେନେରୀ ଟୋରେନ୍ସ ଏହି 'ରଥିନ'ମାନଙ୍କୁ ପଞ୍ଜାବବାସୀ ବୈଦିକ ଆର୍ଯ୍ୟ ବୋଲି ପ୍ରମାଣ କରନ୍ତି । ସାଞ୍ଚି ସ୍ତୂପରେ ବୌଦ୍ଧଶିଳ୍ପ ଅନୁସାରେ ରଥର ଦୃଶ୍ୟ ଖୋଦିତ

* Antiquities of Orissa. Vol. I. P. 129.

ହୋଇଥିଲା । ଏହି ଦୁଇ ଦୃଶ୍ୟକୁ ଦେଖି ରାଜେନ୍ଦ୍ର ଲାଲ କହିଅଛନ୍ତି ଯେ, କେତେକ ସାମାନ୍ୟ ପ୍ରଭେଦ ବାଦ ଦେଲେ ଦୁଇଟି ଦୃଶ୍ୟ ପ୍ରାୟ ସମାନ ଦେଖାଯାଏ । ପୁଣି ବେଦ ଓ ପୁରାଣାଦିରେ ରଥର ଯେପରି ବର୍ଣ୍ଣନା କରାଯାଇଅଛି, ତାହା ସାଞ୍ଚି ରଥଠାରୁ ସମ୍ପୂର୍ଣ୍ଣ ପୃଥକ୍ । ରାଜେନ୍ଦ୍ର ଲାଲ କହନ୍ତି ଯେ, ବର୍ତ୍ତମାନ ରଥଯାତ୍ରାରେ ଯେପରି ବିସ୍ତର ଅଳଙ୍କୃତ, ବୃହତ୍ ଓ ଗୁରୁଭାର ରଥମାନ ତିଆରି କରାଯାଏ, ପୌରାଣିକ ଯୁଗର ରଥ ସେହିପରି ପ୍ରାୟ ଥିଲା ଏବଂ ସାଞ୍ଚି ରଥର ଦୃଶ୍ୟଠାରୁ ଏହା ଏକାବେଳକେ ଭିନ୍ନ; ସୁତରାଂ ବୌଦ୍ଧଧର୍ମର ପୂର୍ବବର୍ତ୍ତୀ ପ୍ରାଚୀନ ପୌରାଣିକ ରଥଯାତ୍ରା ଆଜି ପର୍ଯ୍ୟନ୍ତ ଏକାଦିକ୍ରମେ ଚାଲିଅଛି କହିବା ବାହୁଲ୍ୟ ମାତ୍ର ।

ଜଗନ୍ନାଥ ବୌଦ୍ଧାବତାର ଏବଂ ଶ୍ରୀ ବିଷନ୍ ସ୍ୱରୂପ ତାହାଙ୍କ ଗ୍ରନ୍ଥରେ ସତ୍ୟ ହେଉ ବା ମିଥ୍ୟା ହେଉ ଯେପରି କହନ୍ତି, କୋଣାର୍କ ଦେବ ନିଜେ ସାକ୍ଷାତ୍ ବୁଦ୍ଧ ମୂର୍ତ୍ତି; ସୁତରାଂ ପୁରୀ ଓ କୋଣାର୍କର ରଥଯାତ୍ରାକୁ ବୌଦ୍ଧ ଅନୁଷ୍ଠାନ ବୋଲି କେହି କେହି କହି ପାରନ୍ତି; କିନ୍ତୁ ଭୁବନେଶ୍ୱରର ଲିଙ୍ଗରାଜ ଏବଂ ଯାଜପୁରର ବିରଜା ବୌଦ୍ଧ ଅବତାର ନୁହନ୍ତି କି ସାକ୍ଷାତ୍ ବୌଦ୍ଧ ମୂର୍ତ୍ତି ମଧ୍ୟ ନୁହନ୍ତି । ତାହାହେଲେ ଭୁବନେଶ୍ୱର ଓ ଯାଜପୁରର ରଥଯାତ୍ରାକୁ ବୌଦ୍ଧ ଅନୁଷ୍ଠାନ ବୋଲି କୁହାଯାଇ ନ ପାରେ । କେବଳ ଏହି ସ୍ଥାନମାନଙ୍କରେ ନୁହେଁ, ଭାରତର ଅନ୍ୟାନ୍ୟ ଧର୍ମକ୍ଷେତ୍ରମାନଙ୍କରେ ରଥଯାତ୍ରାର ଅନୁଷ୍ଠାନ ହୁଏ । ବୃନ୍ଦାବନରେ ଶ୍ରୀକୃଷ୍ଣଙ୍କର ରଥଯାତ୍ରା ହୁଏ । ସେଠା ଲକ୍ଷ୍ମୀଚାନ୍ଦଙ୍କ ମନ୍ଦିରରୁ କୃଷ୍ଣ ରଥାରୋହଣ କରି ଗୋଟିଏ ଉଦ୍ୟାନ ବାଟିକାକୁ ବିଜେ କରନ୍ତି । ଯଦି କେବଳ ବୌଦ୍ଧଧର୍ମର କେନ୍ଦ୍ର ସ୍ଥାନମାନଙ୍କରେ ରଥଯାତ୍ରାର ଅନୁଷ୍ଠାନ ହେଉଥାନ୍ତା, ତାହାହେଲେ ରଥଯାତ୍ରା ବୌଦ୍ଧ ଅନୁଷ୍ଠାନ ବୋଲି ଅବା କେହି ପ୍ରଥମତଃ ଅନୁମାନ କରନ୍ତେ । ବୃନ୍ଦାବନ ଆବହମାନ କାଳରୁ ଶ୍ରୀକୃଷ୍ଣଙ୍କର ପବିତ୍ର ଲୀଳାସ୍ଥଳୀ ହୋଇଅଛି । ରାଜେନ୍ଦ୍ର ଲାଲ କହନ୍ତି * ଯେ, ଏରିୟାନ (Arrian) ଏବଂ ପ୍ଲାଇନି (Pliny) ପ୍ରଭୃତି ପ୍ରାଚୀନ ଗ୍ରୀସୀୟ ଗ୍ରନ୍ଥକର୍ତ୍ତାମାନେ ଶ୍ରୀକୃଷ୍ଣଙ୍କର ଲୀଳାସ୍ଥଳୀ ଥିବାରୁ ବୃନ୍ଦାବନ ଓ ମଥୁରାକୁ ହିନ୍ଦୁମାନଙ୍କର ପବିତ୍ର ଦେବକ୍ଷେତ୍ର ବୋଲି ଲେଖିଅଛନ୍ତି ।

ରାଜେନ୍ଦ୍ର ଲାଲ ପୁଣି କହନ୍ତି ଯେ, ପାଣିନୀଙ୍କ ପୂର୍ବରୁ ଶ୍ରୀକୃଷ୍ଣ ଉପାସନା ପ୍ରଚଳିତ ଥିଲା ଏବଂ ବୃନ୍ଦାବନ୍ ଓ ମଥୁରା ଶ୍ରୀକୃଷ୍ଣ ଉପାସନା ନିମନ୍ତେ ପ୍ରସିଦ୍ଧ ଥିଲା । ମାକ୍ସମୂଲାରଙ୍କ ମତରେ ପାଣିନୀଙ୍କ ସମୟ ଖ୍ରୀଷ୍ଟପୂର୍ବ ୬ଷ୍ଠ ଶତାବ୍ଦୀ; କିନ୍ତୁ ରାଜେନ୍ଦ୍ର ଲାଲ ଏହା ଅସ୍ୱୀକାର କରି ପାଣିନୀଙ୍କୁ ଆହୁରି ପୂର୍ବବର୍ତ୍ତୀ ମନେକରନ୍ତି । ସେ ଯାହାହେଉ, ପାଣିନୀ ଯେ ବୁଦ୍ଧଦେବଙ୍କର ବହୁ ପୂର୍ବବର୍ତ୍ତୀ, ତାହା କହିବା ବାହୁଲ୍ୟ ମାତ୍ର । ସୁତରାଂ ବୁଦ୍ଧଦେବଙ୍କର ବହୁତ ପୂର୍ବରୁ ବୃନ୍ଦାବନ କୃଷ୍ଣ-ଉପାସନା ନିମନ୍ତେ ପ୍ରସିଦ୍ଧ ଥିଲା । କଂସନିଧନ ଶ୍ରୀକୃଷ୍ଣଙ୍କ ଜୀବନର ପ୍ରଧାନ ଘଟଣା । ଏହି ଉପଲକ୍ଷରେ ସେ ରଥରେ ବସି କଂସପୁର ମଥୁରାକୁ ଯାଇଥିଲେ ।

* Antiquities of Orissa. Vol. I. P. 152.

ଅତଏବ କୃଷ୍ଣ ଉପାସନା ସଙ୍ଗେ ତାହାଙ୍କର ରଥଯାତ୍ରା ଅନୁଷ୍ଠାନ କରାଯାଇଥିବା ଏବଂ ତାହା ବୌଦ୍ଧ ରଥଯାତ୍ରାର ଅନୁକରଣରେ ହୋଇଥିବା ଆଦୌ ବିଶ୍ୱାସ କରାଯାଇ ନ ପାରେ ।

ପାଟଣା ପ୍ରଭୃତି ସ୍ଥାନରେ ବୌଦ୍ଧ ରଥଯାତ୍ରା ନିମନ୍ତେ ଯେଉ ଦିନ ନିର୍ଦ୍ଦିଷ୍ଟ ଥିଲା, ତାହା ପୁରୀ ରଥଯାତ୍ରା ଦିନଠାରୁ ସମ୍ପୂର୍ଣ୍ଣ ଭିନ୍ନ । 'ଜାତକ' ଗ୍ରନ୍ଥ ଅନୁସାରେ ବୌଦ୍ଧ ରଥଯାତ୍ରା 'ଆଷାଲି' ମାସର ପୂର୍ଣ୍ଣିମା ଦିନ ହେଉଥିଲା । 'ଆଷାଲି' ଆଷାଢ଼ ମାସ ହୋଇ ନ ଥିବା ଶ୍ରୀ ବିଷନ୍ ସ୍ୱରୂପ ନିଜେ ସ୍ୱୀକାର କରନ୍ତି ଏବଂ ପ୍ରମାଣ କରନ୍ତି ଯେ, ଏହା ଫାଲ୍‌ଗୁନ୍ ପୂର୍ଣ୍ଣିମା ବା ଚୈତ୍ର ପୂର୍ଣ୍ଣିମା ଥିଲା । ତେବେ ଫାଲ୍‌ଗୁନ୍ ପୂର୍ଣ୍ଣିମା ଦିନ ହିନ୍ଦୁ ରାଜ୍ୟରେ ସର୍ବତ୍ର ଦୋଳ ଉତ୍ସବ ହେଉଥିବାରୁ ସେ ମନେ କରନ୍ତି ଯେ, ଏହି ଦିନ ବୌଦ୍ଧ ରଥଯାତ୍ରା ହେଉଥିଲା । ଏହି ଯୁକ୍ତି ଓ ଅନୁମାନର ଅସାରତା ସହଜରେ ଜଣାପଡ଼େ । ଫାଲ୍‌ଗୁନ୍ ପୂର୍ଣ୍ଣିମା ଦିନ ଭାରତରେ ସର୍ବତ୍ର ଦୋଳଯାତ୍ରା ହୁଏ ବୋଲି ସେହିଦିନ ଯେ ବୁଦ୍ଧଦେବଙ୍କ ଜନ୍ମ ବା ସନ୍ୟାସ ଗ୍ରହଣ ଏବଂ ସେହି ଉପଲକ୍ଷରେ ରଥଯାତ୍ରା ହେଉଥିଲା କହିବା ବିଡ଼ମ୍ବନା ମାତ୍ର । ସେହିଦିନ ବୁଦ୍ଧଦେବଙ୍କର ରଥଯାତ୍ରା ହେଉଥିବା ଯଦି ସତ୍ୟ ବୋଲି ଧରାଯାଏ, ତାହାହେଲେ ତାହାର ଅନୁକରଣରେ ଅନୁଷ୍ଠିତ ରଥଯାତ୍ରାମାନ ମଧ୍ୟ ସେହିଦିନ ହେଉଥାନ୍ତା । ସୁତରାଂ ପୁରୀରେ ଆଷାଢ଼ ଶୁକ୍ଳ ଦ୍ୱିତୀୟା, ଭୁବନେଶ୍ୱରରେ ଚୈତ୍ର ଶୁକ୍ଳ ଅଷ୍ଟମୀ ଏବଂ ଯାଜପୁରରେ ଆଶ୍ୱିନ ଶୁକ୍ଳ ଅଷ୍ଟମୀ ବା ନବମୀ ଏବଂ କୋଣାର୍କରେ ଅନ୍ୟ ଗୋଟିଏ ସ୍ୱତନ୍ତ୍ର ଦିନରେ ରଥଯାତ୍ରା ହେଉଥିବାରେ କୌଣସି କାରଣ ନ ଥିଲା ।

ଉପରୋକ୍ତ ସମୁଦାୟ ବିଷୟ ଏକତ୍ର ବିଚାର କଲେ ବିଶ୍ୱାସ କରାଯାଏ ଯେ, କୋଣାର୍କର ଅଥବା ଅନ୍ୟ ହିନ୍ଦୁ କ୍ଷେତ୍ରମାନଙ୍କରେ ବର୍ତ୍ତମାନ ଅନୁଷ୍ଠିତ ରଥଯାତ୍ରାରେ ବୌଦ୍ଧ ରଥଯାତ୍ରାର କୌଣସି ଅବଶେଷ ଦେଖାଯାଏ ନାହିଁ । ବର୍ତ୍ତମାନ ରଥଯାତ୍ରା ବୌଦ୍ଧମାନଙ୍କର ଅନୁକରଣରେ ଅନୁଷ୍ଠିତ ନ ହୋଇ ବରଂ ବୌଦ୍ଧ ରଥଯାତ୍ରା ପୂର୍ବବର୍ତ୍ତୀ ବୈଦିକ ଓ ପୌରାଣିକ ଯୁଗର ଅନୁକରଣରେ ଅନୁଷ୍ଠିତ ହୋଇଥିଲା ବୋଲିବାକୁ ହେବ ।

**ଚନ୍ଦ୍ରଭାଗା ଯାତ୍ରା :—** କୋଣାର୍କର ଯାତ୍ରାମାନଙ୍କ ମଧ୍ୟରେ କେବଳ ଚନ୍ଦ୍ରଭାଗା ଯାତ୍ରା ବର୍ତ୍ତମାନ ପର୍ଯ୍ୟନ୍ତ ଅନୁଷ୍ଠିତ ହେଉଅଛି । ଇତିପୂର୍ବେ (ଦ୍ୱିତୀୟ ଅଧ୍ୟାୟରେ) କୁହାଯାଇଅଛି ଯେ, 'ପ୍ରାଚୀମାହାତ୍ମ୍ୟ'ର ଅର୍କତୀର୍ଥ ଏହି ଚନ୍ଦ୍ରଭାଗା । କୋଣାର୍କ ମନ୍ଦିର ନିକଟରେ ଯେଉଁ ନଦୀ ପୂର୍ବେ ବୋହିଯାଇ ସମୁଦ୍ରରେ ପଡ଼ିଥିଲା, ତାହାର ନାମ 'ପ୍ରାଚୀମାହାତ୍ମ୍ୟ'ରେ 'ପ୍ରାଚୀ ଚିତ୍ରୋତ୍ପଳା' ଏବଂ ଚନ୍ଦ୍ରଭାଗା ଏହାର ନାମାନ୍ତର ଥିଲା । ନଦୀଟି ବର୍ତ୍ତମାନ ସମୁଦ୍ର କୂଳରୁ ଚାରି ମାଇଲ ଦୂର ପର୍ଯ୍ୟନ୍ତ ବାଲିରେ ପୋତି ହୋଇ ଯାଇଅଛି ଏବଂ ତୀର୍ଥଟି କେବଳ ନିତାନ୍ତ କ୍ଷୁଦ୍ର ଆକାରରେ ମୁକ୍ତି ତୀର୍ଥରୂପେ ଅଦ୍ୟାପି ରହିଅଛି ।

ମାଘ ମାସର ଶୁକ୍ଳ ସପ୍ତମୀ ଦିନ ଚନ୍ଦ୍ରଭାଗା ସ୍ନାନ ଅନୁଷ୍ଠିତ ହୁଏ । ପୂର୍ବ ଷଷ୍ଠୀ ଦିନ ନାନା ସ୍ଥାନରୁ ଲୋକେ ସେଠାରେ ଏକତ୍ର ହୁଅନ୍ତି । ସେହି ରାତ୍ର ନାନା ଉତ୍ସବ ଓ କୀର୍ତ୍ତନରେ ଅତିବାହିତ ହୁଏ । ରାତ୍ରରେ କାହାର ପଲକ ପଡ଼ିବାକୁ ନାହିଁ, ପ୍ରତି ମୁହୂର୍ତ୍ତ ପୂର୍ବ ଦିଗ୍‌ବଳୟ ଉପରେ ଚକ୍ଷୁ ପଡ଼ୁଥାଏ, କେବଳ ଅପେକ୍ଷା ଦିଗ୍‌ବଳୟ ଉଜ୍ଜ୍ୱଳ ଦିଶିଲେ ପୁଣ୍ୟ ତୀର୍ଥରେ ସ୍ନାନ କରି ଜୀବନ କୃତାର୍ଥ କରିବେ । ଚାହୁଁ ଚାହୁଁ ପହରକ ପରେ ପହରେ ରାତି ମାଡ଼ି ଆସେ । ଗୋଟିଏ ପରେ ଗୋଟିଏ ତାରା ପୂର୍ବ ଗଗନରେ ସାଗର ବକ୍ଷରୁ ବାହାରି ମୁହୂର୍ମୁହୁ ଆଶା ଓ ଅପେକ୍ଷା ତେଜାଇ ଦେଉଥାଏ । ହଠାତ୍ ଏକ ଜୟଧ୍ୱନୀ ଚହଳ ପଡ଼ିଯାଏ, ସମସ୍ତେ ଏକାବେଳକେ ଉଠି ଦଣ୍ଡାୟମାନ; ଚନ୍ଦ୍ରଭାଗାର ପୁଣ୍ୟ ବାରିରେ ସ୍ନାନ କରି ସକଳ ପାପ କ୍ଷାଳନ କରିବେ । କିଏ କି ଭଙ୍ଗୀରେ ମନ୍ତ୍ର ପଢ଼ି * ବୁଡ଼ ପକାଇ ଆତ୍ମା ଶୀତଳ କରେ । ନବୋଦିତ ଦିନମଣିଙ୍କ ଦର୍ଶନଲାଭ ଆଶାରେ ସମୁଦ୍ର ଧାରରେ ସମସ୍ତେ ଦଣ୍ଡାୟମାନ ହୁଅନ୍ତି । ଆଜିକାର ସୂର୍ଯ୍ୟ ସବୁଦିନର ସୂର୍ଯ୍ୟ ନୁହନ୍ତି । କେତେ ଆଶା, କେତେ ଆଶ୍ୱସନା ସଂସାର-ପ୍ରାଣରେ ଜାଗ୍ରତ କରାଇବା ଲାଗି ଆଜି ଭାସ୍କରଦେବଙ୍କର ଉଦୟ ହେବ । କେଉଁଦିନ ବୃକ୍ଷମାଳାର ଅନ୍ତରାଳରେ, କେଉଁଦିନ ପର୍ବତଶ୍ରେଣୀର ପଶ୍ଚାଦ୍ଦେଶରେ, କେଉଁଦିନ ଅବା ଘନାବୃତ ମେଘମାଳାର ଆଭରଣ ଉପରେ ସୂର୍ଯ୍ୟଦେବ ଉଦିତ ହୋଇ ସଂସାରରେ କେବଳ ଅଗ୍ନିରାଶି ବିଛୁରିଦିଅନ୍ତି । ଆଜି ସୂର୍ଯ୍ୟ ସେପରି ନୁହନ୍ତି; ଆଜି ସୂର୍ଯ୍ୟ ହେମୋଜ୍ଜ୍ୱଳ ବେଶରେ ଅନନ୍ତ ସାଗର ବକ୍ଷରୁ ନିର୍ମମ ହୃଦୟରେ ଲମ୍ଫ ପ୍ରଦାନ କରି ଚନ୍ଦ୍ରଭାଗା-ଯାତ୍ରୀଙ୍କ ପ୍ରାଣରେ ଆଶାର ଅମୃତମୟ ସୁଶୀତଳ ରଶ୍ମି ଢାଳି ଦେବେ — ଚନ୍ଦ୍ରଭାଗା-ଯାତ୍ରୀଙ୍କର ବହୁ ତପସ୍ୟା ଫଳରେ ଦିବ୍ୟ ବପୁରେ ସୂର୍ଯ୍ୟଦେବ ଆଜି ଉଦିତ ହେବେ । ସାଗରର କରାଳ ଲହରୀ ପ୍ରତି ଆଦୌ ଭ୍ରୂକ୍ଷେପ ନାହିଁ; ଏକ ଧ୍ୟାନରେ, ଏକ ସ୍ୱରରେ ସାଗରଭେଦି-ନିନାଦରେ ମନ୍ତ୍ର ଉଚ୍ଚାରଣ ପୂର୍ବକ ସୂର୍ଯ୍ୟଦେବଙ୍କ ଅପେକ୍ଷାରେ ସମସ୍ତେ ଦଣ୍ଡାୟମାନ । ସମୁଦ୍ରର ଭୀଷଣ ଗର୍ଜ୍ଜନ ଏହି ଧ୍ୟାନଭଙ୍ଗରେ ଅସମର୍ଥ । ଚାହୁଁ ଚାହୁଁ ସାଗରର ପରପାରରେ ରକ୍ତବର୍ଣ୍ଣ ରେଖା ଉଦିତ ହୋଇ କୋଣାର୍କର ଭଗ୍ନସୌଧ ଚୁମ୍ବନ କରେ । ଯାତ୍ରୀମାନଙ୍କର 'ଜୟ ସୂର୍ଯ୍ୟ ନାରାୟଣ ଜୟ' ଧ୍ୱନିରେ ସାଗର ଯେପରି କମ୍ପିତ ହୋଇ ସେ ରକ୍ତପିଣ୍ଡଟି ଭକ୍ତମାନଙ୍କ ଆଡ଼କୁ ଫିଙ୍ଗିଦିଏ । ହଠାତ୍ ସସାଗରା ଧରା ହେମରଶ୍ମିରେ ରଞ୍ଜିତ ହୁଏ । କୋଣାର୍କ ଏ ଜୀର୍ଣ୍ଣଦଶାରେ ମଧ୍ୟ ସେ ଅମୃତମୟ ହେମରଶ୍ମିରେ ପୁନର୍ଜ୍ଜୀବନ ପାଇଲା ପରି ଦିଶେ । ଯାତ୍ରୀମାନେ କୋଣାର୍କର ନବସୌଧ ଦର୍ଶନ ଆଶାରେ ଧାବମାନ ହୋଇ, ପରିଶେଷରେ ଅଶ୍ରୁପୂର୍ଣ୍ଣ ନୟନରେ ଗୃହାଭିମୁଖରେ ପ୍ରତ୍ୟାଗମନ କରନ୍ତି ।

---

* ମନ୍ତ୍ର ଯଥା :— "ଜନନୀ ସର୍ବ ଭୂତାନାଂ ସପ୍ତମୀ ସପ୍ତ ସୃପ୍ତିକେ
ସର୍ବ ବ୍ୟାହୃତିକେ ଦେବି ନମସ୍ତେ ରବିମଣ୍ଡଳେ"।

ପୂର୍ବେ ଯାତ୍ରୀମାନେ ଚନ୍ଦ୍ରଭାଗାରୁ ଫେରି କୋଣାର୍କ ଦେବଙ୍କର ଆରାଧନା କରୁଥିଲେ । ବର୍ତ୍ତମାନ ନବଗ୍ରହ ପାଟରେ ଗ୍ରହମାନଙ୍କ ଛଡ଼ା କୋଣାର୍କରେ ଅନ୍ୟ କୌଣସି ଦେବାରାଧନା ନାହିଁ । ସେଦିନ କୋଣାର୍କରେ କେତେ ଗୁଡ଼ିଏ ଦୋକାନ ବଜାର ବସେ ।

ଚନ୍ଦ୍ରଭାଗା ଯାତ୍ରା ନିମନ୍ତେ କୋଣାର୍କ କ୍ଷେତ୍ରର ଦେବ-ଦେବୀମାନେ ତୀର୍ଥସ୍ଥାନରେ ସମବେତ ହେଉଥିଲେ । ବର୍ତ୍ତମାନ ପର୍ଯ୍ୟନ୍ତ ଅଷ୍ଟଶମ୍ଭୁମାନଙ୍କ ମଧ୍ୟରୁ ତ୍ରିବେଣୀଶ୍ୱର, ଈଶାନେଶ୍ୱର, ପ୍ରଭୃତିଙ୍କର ଚନ୍ଦ୍ରଭାଗା କୂଳରେ ମେଳନ ହୁଏ । ଚନ୍ଦ୍ରଭାଗା ଯାତ୍ରା କୋଣାର୍କ ଛଡ଼ା ଅନ୍ୟତ୍ର ଅନୁଷ୍ଠିତ ହୁଏନାହିଁ । କେବଳ ଭୁବନେଶ୍ୱରରେ ସେହିଦିନ ଲିଙ୍ଗରାଜ ଦେବଙ୍କର ଚଳନ୍ତି ବିଗ୍ରହ ଚନ୍ଦ୍ରଶେଖର ଭାସ୍କରେଶ୍ୱରଙ୍କ ମନ୍ଦିରକୁ ବିଜେ କରନ୍ତି । କୋଣାର୍କ ସୂର୍ଯ୍ୟବିଗ୍ରହଙ୍କର ଚନ୍ଦ୍ର ଓ ସୂର୍ଯ୍ୟ ନାମରେ ଦୁଇଟି ଧାତବ ମୂର୍ତ୍ତି ଚଳନ୍ତି ପ୍ରତିମା ସ୍ୱରୂପ ଥିଲେ । ବର୍ତ୍ତମାନ ପୁରୀ ବେଢ଼ା ମଧ୍ୟସ୍ଥ ଇନ୍ଦ୍ରଙ୍କ ମନ୍ଦିର ମଧ୍ୟରେ ଉକ୍ତ ମୂର୍ତ୍ତିଦ୍ୱୟ ସୂର୍ଯ୍ୟଦେବଙ୍କ ସହ ପୂଜା ପାଉଛନ୍ତି । ସୁତରାଂ ସେହି ଦିନ ଅବଶ୍ୟ ଉକ୍ତ ସୂର୍ଯ୍ୟ ଓ ଚନ୍ଦ୍ର ପ୍ରତିମାଦ୍ୱୟ ଚନ୍ଦ୍ରଭାଗା ତୀର୍ଥକୁ ବିଜେ କରୁଥିଲେ । ଭୁବନେଶ୍ୱରରେ ଏହି ଯାତ୍ରା ଅନୁଷ୍ଠିତ ହେଉଥିବାରୁ ଅନୁମାନ କରାଯାଏ ଯେ, ଶୈବଧର୍ମ ସହିତ ଚନ୍ଦ୍ରଭାଗା ସ୍ଥାନର ବିଶେଷ କିଛି ସମ୍ବନ୍ଧ ଥିଲା । ବାସ୍ତବିକ, ଦକ୍ଷିଣ-ପୂର୍ବ କୋଣ ନିକଟରେ ସୂର୍ଯ୍ୟ ଉଦିତ ହେଲାବେଳେ 'ଶିବ' ନାମରେ କୌଣସି କୌଣସି ପୁରାଣମାନଙ୍କରେ ଅଭିହିତ ହୋଇଅଛନ୍ତି । ଏହି ହେତୁରୁ ପରେ ଭୁବନେଶ୍ୱରରେ ଶୈବ କ୍ଷେତ୍ର ସ୍ଥାପିତ ହେବାରୁ ଚନ୍ଦ୍ରଭାଗା ଯାତ୍ରା ଅନୁକରଣରେ ସେଠାରେ ମଧ ଗୋଟିଏ ଯାତ୍ରାର ଅନୁଷ୍ଠାନ କରାଗଲା ।

ଚନ୍ଦ୍ରଭାଗା ଯାତ୍ରାର ଆରମ୍ଭ ସମୟ ନିର୍ଦ୍ଦେଶ କରିବାର କୌଣସି ସହଜ ପନ୍ଥା ପ୍ରାୟ ଦେଖାଯାଏ ନାହିଁ । ଶାମ୍ବ ଚନ୍ଦ୍ରଭାଗାରେ ସ୍ନାନ କରିବା ସମୟରେ ପଦ୍ମାସନରେ ଉପବିଷ୍ଟ ସୂର୍ଯ୍ୟଦେବଙ୍କର ପ୍ରସ୍ତର ବିଗ୍ରହ ପାଇଥିବାର ଏବଂ ସେ ନିଜେ କୁଷ୍ଠରୋଗରୁ ମୁକ୍ତିଲାଭ କରିଥିବାର ପ୍ରଥମ ଅଧ୍ୟାୟରେ ଉଲ୍ଲେଖ କରାଯାଇଅଛି । ଉକ୍ତ ଅଧ୍ୟାୟରେ ଆହୁରି କୁହାଯାଇଅଛି ଯେ, ଶାମ୍ବ ଖ୍ରୀଷ୍ଟପୂର୍ବ ୧୯୦୦ ଅବ୍ଦ ପୂର୍ବେ ପରୀକ୍ଷିତଙ୍କର ପ୍ରାୟ ସମସାମୟିକ ଥିଲେ । ତେବେ ଏହା ଚନ୍ଦ୍ରଭାଗା ଯାତ୍ରାର ଆରମ୍ଭ ସମୟ ଧରାଯାଇ ନ ପାରେ । କାରଣ ଶାମ୍ବଙ୍କ ସମୟରେ ଏହା ଜଙ୍ଗଲମୟ ଥିଲା ଏବଂ ଏହା ଲୋକମାନଙ୍କର ମନ ଆକର୍ଷଣ କରୁ କରୁ ବହୁ ସମୟ ଅତିବାହିତ ହୋଇଥିବ । ଶ୍ରୀ ବିଷନ୍ ସ୍ୱରୂପ କହନ୍ତି * ଯେ, ଏହା ବ୍ରହ୍ମପୁରାଣ ଓ କପିଳ ସଂହିତା ପରେ ଆରମ୍ଭ କରାଯାଇଥିଲା; କାରଣ ଉକ୍ତ ଦୁଇ ଗ୍ରନ୍ଥରେ ଚନ୍ଦ୍ରଭାଗାର ଉଲ୍ଲେଖ ନାହିଁ । କିନ୍ତୁ ଅନ୍ୟତ୍ର ** ସେ ଉକ୍ତ ଦୁଇ ପୁରାଣରୁ କ୍ଷେତ୍ରମାହାତ୍ମ୍ୟର ଯେଉଁ ବର୍ଣ୍ଣନା ଉଦ୍ଧାର କରିଅଛନ୍ତି, ତହିଁରେ ପବିତ୍ର ତୀର୍ଥ ଅର୍କକ୍ଷେତ୍ରର ଉଲ୍ଲେଖ ଅଛି । ବ୍ରହ୍ମପୁରାଣ କହେ, "ଏହିଠାରେ ଶୁକ୍ଳ ସପ୍ତମୀ ଦିନ ସ୍ନାନ କରି ପିତୃତର୍ପଣ

* Konarka. P. 45.
** Ibd. P. P. 40-42

କରିବ ଓ ସୂର୍ଯ୍ୟଦେବଙ୍କୁ ଅର୍ଘ୍ୟ ଦେବ ।'' 'ସୂର୍ଯ୍ୟଗଙ୍ଗା'ର ମାହାତ୍ମ୍ୟ ମଧ୍ୟ ବର୍ଣ୍ଣିତ ଅଛି । ସୂର୍ଯ୍ୟଗଙ୍ଗା ପୂର୍ବେ ଚନ୍ଦ୍ରଭାଗା ନଦୀର ଅଂଶ ନ ଥିଲା ବୋଲି କୁହାଯାଇ ନ ପାରେ । କପିଳ ସଂହିତାରେ ପରିଷ୍କାର ଲେଖାଅଛି, 'ଯେ ସବିଧି ଚନ୍ଦ୍ରଭାଗା ଜଳରେ ସ୍ନାନ କରିବ, ସେ ଚନ୍ଦ୍ର ତୁଲ୍ୟ ବପୁ ଧାରଣ କରି ଚନ୍ଦ୍ରଲୋକକୁ ଗମନ କରିବ' । ଶ୍ରୀ ବିଷନ୍ ସ୍ୱରୂପ ନିଜେ ମଧ୍ୟ କପିଳ ସଂହିତାରୁ କୋଣାର୍କ ମାହାତ୍ମ୍ୟର ଉଦ୍ଧାର କରିଅଛନ୍ତି ଏବଂ ତହିଁରେ ଚନ୍ଦ୍ରଭାଗାର ଉଲ୍ଲେଖ ଅଛି; କିନ୍ତୁ ତାହାର ପରପୃଷ୍ଠାରେ ସେ ଦମ୍ଭରେ କହୁଅଛନ୍ତି ଯେ, 'କପିଳ ସଂହିତା'ରେ ଏହାର ଉଲ୍ଲେଖ ନାହିଁ ।

'କପିଳ ସଂହିତା' ଅବଶ୍ୟ 'ବ୍ରହ୍ମପୁରାଣ'ର ପରବର୍ତ୍ତୀ ଗ୍ରନ୍ଥ । ବ୍ରହ୍ମପୁରାଣ ପୂର୍ବରୁ ଚନ୍ଦ୍ରଭାଗା ଜଳ ଯେ ପବିତ୍ର ବୋଲି ଧରାଯାଇଥିଲା ସନ୍ଦେହ ନାହିଁ । ବ୍ରହ୍ମପୁରାଣକୁ କେହି କେହି ଅଷ୍ଟମ ଶତାବ୍ଦୀ ବା ତତ୍‌ପୂର୍ବବର୍ତ୍ତୀ ଗ୍ରନ୍ଥ ବୋଲି ମନେ କରନ୍ତି । ଅତଏବ ବ୍ରହ୍ମପୁରାଣ ବା ଖ୍ରୀଷ୍ଟ ସପ୍ତମ ବା ଅଷ୍ଟମ ଶତାବ୍ଦୀର ପୂର୍ବରୁ ଚନ୍ଦ୍ରଭାଗା ଜଳ ପବିତ୍ର ଥିବା ଅନୁମାନ କରାଯାଏ ।

ଚନ୍ଦ୍ରଭାଗା ସ୍ନାନବିଧି ଉପରେ ଯେଉଁରୂପେ ବର୍ଣ୍ଣନା କରାଯାଇଅଛି, ତହିଁରୁ ସ୍ପଷ୍ଟ ବୁଝାଯାଏ ଯେ, ଉକ୍ତ ସ୍ନାନ ସହିତ ସୂର୍ଯ୍ୟଙ୍କର ବିଶେଷ ସମ୍ବନ୍ଧ ରହିଅଛି । ଚନ୍ଦ୍ରଭାଗା ସ୍ନାନ ମନ୍ତ୍ର କେବଳ ସୂର୍ଯ୍ୟଙ୍କୁ ବୁଝାଉଅଛି; ସୁତରାଂ ସୂର୍ଯ୍ୟ ଭ୍ରମଣ-ପଥରେ କୌଣସି ବିଶିଷ୍ଟ ସ୍ଥାନରେ ପ୍ରବେଶ କଲାବେଳେ କିମ୍ବା ତାହାଙ୍କର ଅନ୍ୟାନ୍ୟ କୌଣସି ଅବସ୍ଥା ପରିବର୍ତ୍ତନ ଉଦ୍ଦେଶ୍ୟରେ ଉକ୍ତ ଯାତ୍ରା ଅନୁଷ୍ଠିତ ହୋଇଥିବାର ସମ୍ଭାବନା କରିବା ନିତାନ୍ତ ଅଯୌକ୍ତିକ ନୁହେଁ । ଅତଏବ ଜ୍ୟୋତିଷ ଶାସ୍ତ୍ର ଅନୁସାରେ ସୂର୍ଯ୍ୟଙ୍କର ଚଳନ ଗଣନା କରି ଚନ୍ଦ୍ରଭାଗାର କାଳ ନିର୍ଣ୍ଣୟ କରାଯାଇପାରେ । ପୂର୍ବବର୍ତ୍ତୀ ଅଧ୍ୟାୟର ଶେଷ ଭାଗରେ ଶ୍ରୀ ବିଷନ୍ ସ୍ୱରୂପ ଜ୍ୟୋତିଷ ପ୍ରମାଣ ଦ୍ୱାରା କୋଣାର୍କର କାଳ ନିରୂପଣ କରିଥିବାର ଆଲୋଚନା କରାଯାଇଅଛି । ସେଠାରେ ପ୍ରମାଣ କରାଯାଇଅଛି ଯେ, ଶ୍ରୀ ବିଷନ୍ ସ୍ୱରୂପଙ୍କ ଜ୍ୟୋତିଷ ପ୍ରମାଣ ଦ୍ୱାରା କୋଣାର୍କର କାଳ ନିରୂପିତ ହେବା ପରିବର୍ତ୍ତରେ ବରଂ ଚନ୍ଦ୍ରଭାଗା ଯାତ୍ରାର ଆରମ୍ଭ କାଳ ଜଣାପଡ଼ି ପାରେ । ଶ୍ରୀ ବିଷନ୍ ସ୍ୱରୂପ କହନ୍ତି, ସୂର୍ଯ୍ୟ ଅଗ୍ନିକୋଣରେ ଅର୍ଥାତ୍ ୪୫ ଡିଗ୍ରୀ ଦକ୍ଷିଣ-ପୂର୍ବ କୋଣରେ ପ୍ରବେଶ କରିବା ସମୟରେ ସମୁଦ୍ରରୁ ବାହାରିବାର ପୂର୍ବେ ଏହି ସ୍ଥାନରୁ ପରିଷ୍କାର ଦେଖା ଯାଉଥିଲେ । ସେହି ସମୟରେ ଚନ୍ଦ୍ରଭାଗା ଯାତ୍ରା ଆରମ୍ଭ କରାଯାଇଥିଲା ଏବଂ ସେହି ସମୟରେ ମାଘ ଶୁକ୍ଳ ସପ୍ତମୀ ଦିନ ସୂର୍ଯ୍ୟ ଅଗ୍ନି କୋଣରୁ ବାହାରିବାର ଦେଖା ଯାଉଥିଲେ । କ୍ରାନ୍ତି ଚଳନ ହେତୁରୁ ବର୍ତ୍ତମାନ ସୂର୍ଯ୍ୟ ଆଉ ସେଠାରେ ଦେଖା ନ ଯାଇ ମାଘ ଶୁକ୍ଳ ସପ୍ତମୀକୁ ମକର ରାଶିର ୨୭-୧/୨ ଡିଗ୍ରୀ ପର୍ଯ୍ୟନ୍ତ ଯାଆନ୍ତି । ମାଘ ସପ୍ତମୀକୁ ଫେବ୍ରୁୟାରୀ ୧୦ ତାରିଖ ଏବଂ ପ୍ରତ୍ୟେକ ଡିଗ୍ରୀ କ୍ରାନ୍ତି ଚଳନକୁ ୭୦ ବର୍ଷ ଧରି ସେ ୧୦୫୦ ବର୍ଷ ଚନ୍ଦ୍ରଭାଗା ସ୍ନାନର କାଳ ହୋଇଥିବା ସିଦ୍ଧାନ୍ତ କରିଅଛନ୍ତି ।

ପୂର୍ବବର୍ତ୍ତୀ ଅଧ୍ୟାୟରେ ମନ୍ଦିରର କାଳ ନିରୂପଣ ସଂକ୍ରାନ୍ତରେ କୁହାଯାଇଅଛି ଯେ, ପ୍ରତ୍ୟେକ ଡିଗ୍ରୀ କ୍ରାନ୍ତିଚଳନ (Precession) ନିମନ୍ତେ ୬୦ ବର୍ଷ ଧରିବା ନିତାନ୍ତ ଭ୍ରମ । ପରନ୍ତୁ ଜ୍ୟୋତିଷ ଶାସ୍ତ୍ରମାନଙ୍କରେ ଏକ ବର୍ଷରେ ୫୦.୨୪ ସେକେଣ୍ଡ ଅର୍ଥାତ୍ ଏକ ଡିଗ୍ରୀ କ୍ରାନ୍ତିଚଳନକୁ ୭୨ ବର୍ଷ ଧରାଯାଇଅଛି । ମୁଁ ସନ୍ଦେହ ମୋଚନ ନିମନ୍ତେ ମୋର ଭକ୍ତିଭାଜନ ଅଧ୍ୟାପକ ରାୟ ଯୋଗେଶ ଚନ୍ଦ୍ର ରାୟବାହାଦୁର ବିଦ୍ୟାନିଧିଙ୍କ ସହିତ ଶ୍ରୀ ବିଷନ୍ ସ୍ୱରୂପଙ୍କର ଉକ୍ତ ଜ୍ୟୋତିଷ ପ୍ରମାଣ ବିଷୟରେ ଆଲୋଚନା କରିଥିଲି । ଉତ୍ତର ସ୍ୱରୂପ ସେ ମୋତେ ଯେଉଁ ପତ୍ର ଲେଖିଥିଲେ, ତାହା ଅନୁସାରେ * ଶ୍ରୀ ବିଷନ୍ ସ୍ୱରୂପଙ୍କ ଉପରୋକ୍ତ ସମସ୍ତ ପ୍ରମାଣ କାଳ୍ପନିକ ଓ ଭ୍ରାନ୍ତିମୂଳକ ବୋଧହୁଏ । ଅଧ୍ୟାପକ ମହାଶୟ ଯେପରି କହନ୍ତି, ସୂର୍ଯ୍ୟ ଅଗ୍ନି କୋଣରୁ ଉଦିତ ହେବାର ଓଡ଼ିଶା କଥା ଦୂରେ ଥାଉ, ଭାରତବର୍ଷର କୌଣସି ସ୍ଥାନକୁ ଦେଖାଯାନ୍ତି ନାହିଁ । ସେହି ସମୟରେ ସୂର୍ଯ୍ୟ ଯେଉଁ ସ୍ଥାନରୁ ଉଦିତ ହେଉଥିଲେ, ତାହା ପ୍ରକୃତ ଅଗ୍ନି କୋଣ ନୁହେଁ କିମ୍ବା ଯେଉଁ ସ୍ଥାନକୁ ସେପରି ଉଦିତ ହେବାର ଦେଖାଯାଉଥିବେ, ତାହା ଭାରତବର୍ଷର କୌଣସି ସ୍ଥାନ ନୁହେଁ । ଅତଏବ ଯେତେ ଅତୀତ ହେଉ ପଛକେ ସୂର୍ଯ୍ୟ ଅଗ୍ନି କୋଣରୁ ଉଦିତ ହେବାର କୋଣାର୍କରେ କଦାପି ଦେଖାଯାଉ ନ ଥିଲେ । ଏପରି ସ୍ଥଳେ ମାଘ ଶୁକ୍ଳ ସପ୍ତମୀ ଦିନ ପୂର୍ବେ କୌଣସି ସମୟରେ ଯଥାର୍ଥ ଅଗ୍ନି କୋଣରେ (ଅର୍ଥାତ୍ ପୂର୍ବ ଦିଗରୁ ୪୫ ଡିଗ୍ରୀ ଦକ୍ଷିଣକୁ) ସୂର୍ଯ୍ୟୋଦୟ ଦେଖାଯାଉ ଥିବାର ଅନୁମାନ କେବଳ କାଳ୍ପନିକ ବ୍ୟତୀତ ଆଦୌ କୌଣସି ରୂପେ ସତ୍ୟମୂଳକ ନୁହେଁ ।

କୋଣାର୍କର ନାମରୁ ଅନୁମାନ କରାଯାଏ ଯେ, ସୂର୍ଯ୍ୟଙ୍କର ଗତି ଓ ଉଦୟ ସ୍ଥାନ ସହିତ କ୍ଷେତ୍ରର ନିଶ୍ଚୟ କିଛି ସମ୍ବନ୍ଧ ଅଛି ଏବଂ ଚନ୍ଦ୍ରଭାଗା ସ୍ନାନ ବିଧିରୁ ମଧ୍ୟ ଏହି ଅନୁମାନ ଆପାତତଃ ପ୍ରମାଣିତ ପରି ବୋଧହୁଏ । କୌଣସି କୋଣରୁ ମାଘ ଶୁକ୍ଳ ସପ୍ତମୀ ଦିନ ସୂର୍ଯ୍ୟୋଦୟ ଦେଖି ଚନ୍ଦ୍ରଭାଗା ସ୍ନାନ ଆରମ୍ଭ କରାଯାଇ ଥିବାର ବୋଧହୁଏ । କୋଣାର୍କ ପ୍ରତି ମାଘ ଶୁକ୍ଳ ସପ୍ତମୀ ଦିନ ସୂର୍ଯ୍ୟୋଦୟ ଅଗ୍ନି କୋଣ ବ୍ୟତୀତ ଅନ୍ୟ କୌଣସି କୋଣ ବା ତାହା ନିକଟରେ ହେବାର ସମ୍ଭବ ନୁହେଁ । ପରନ୍ତୁ ପୂର୍ବେ ଯେପରି କୁହାଯାଇଅଛି, ଯଥାର୍ଥ ଅଗ୍ନି କୋଣରୁ ସୂର୍ଯ୍ୟୋଦୟ କଦାପି ଦେଖାଯାଇ ନ ଥିଲା । ସୁତରାଂ ଅଧ୍ୟାପକ ମହାଶୟଙ୍କ ପତ୍ର ଅନୁସାରେ ** ଅନୁମାନ କରାଯାଏ ଯେ ଯେଉଁଦିନ ସୂର୍ଯ୍ୟ ପ୍ରାୟ ଅଗ୍ନି କୋଣ ନିକଟରେ

* Professor J. C. Ray thus writes :– "A little consideration will show that such (sun-rising in the Agnikona, i.e. 45° to the South from the East) could never have been the case. No one could ever see the sun-rise due S-E. from any place in India, not to speak of Orissa. Therefore, either it was not true Agnikona or it was not any place in India. If Mr. Swarup has based his calculation entirely on his Agnikona theory, it is wrong."

** "If it is not true Agnikona which I think was not meant, then the only possible explanation is that the Sun had to be seen to rise on the day when he had reached the southern limit of his course, i.e. at the end of his

ଉଦିତ ହେଉଥିଲେ ଅର୍ଥାତ୍ ଯେଉଁଦିନ ସୂର୍ଯ୍ୟ ଦକ୍ଷିଣାୟନ ଶେଷ କରି ଉତ୍ତରାଭିମୁଖ ହେଉଥିଲେ, ସେହିଦିନ ଚନ୍ଦ୍ରଭାଗା ସ୍ନାନ-ଉତ୍ସବ ଅନୁଷ୍ଠିତ ହେଉଥିଲା । ସୂର୍ଯ୍ୟଙ୍କର ଦକ୍ଷିଣାୟନ ପରେ ଉତ୍ତରାୟଣ ଆରମ୍ଭ ସଙ୍ଗେ ସଙ୍ଗେ ପୃଥିବୀର ଉତ୍ତରାର୍ଦ୍ଧବାସୀଗଣ ଆପଣା ଆପଣା ଦେଶ ଓ ଧର୍ମର ପ୍ରଥାନୁସାରେ ନାନା ମହୋତ୍ସବ ଆରମ୍ଭ କରିବାର ବହୁତ ଦେଖାଯାଏ । ତାହା ହେବାର କଥା; କାରଣ ଦକ୍ଷିଣାୟନ ସମୟରେ ଶୀତର ପ୍ରଭାବ ହେତୁ ସୂର୍ଯ୍ୟକିରଣର ଉପାଦେୟତା ଶୀତାର୍ତ୍ତ ମାତ୍ରେ ଅନୁଭବ କରୁଥିବେ । ଅତଏବ ସେହି ବହୁବାଞ୍ଛିତ ସୂର୍ଯ୍ୟକିରଣ ପାଇବା ଆଶା ମନୁଷ୍ୟ ପ୍ରତି ବଡ଼ ଅଳ୍ପ ଆନନ୍ଦଜନକ ନୁହେଁ । ବିଶେଷତଃ ଚିର ସୂର୍ଯ୍ୟ-ଉପାସକ ଭାରତବାସୀଙ୍କ ପକ୍ଷରେ ସେହିଦିନ ବିଶେଷ ମହୋତ୍ସବମୟ ହେବା ସ୍ୱାଭାବିକ । ସୂର୍ଯ୍ୟପରାଗ (ରାହୁ) ମୁକ୍ତ ହେଲାବେଳେ ଯେଉଁମାନେ ସ୍ନାନାଦିଦ୍ୱାରା କାୟୋମନ ଆନନ୍ଦିତ କରନ୍ତି, ଦକ୍ଷିଣାପଥଗାମୀ ସୂର୍ଯ୍ୟଙ୍କର ପ୍ରତ୍ୟାବର୍ତ୍ତନରେ ଆନନ୍ଦ ପ୍ରକାଶ କରିବା ସେମାନଙ୍କ ପକ୍ଷରେ କିଛି ଅଦ୍ଭୁତ ବା ଅସମ୍ଭବ ନୁହେଁ । ସେହି ଉତ୍ସବ ଉପଲକ୍ଷରେ ଚନ୍ଦ୍ରଭାଗା ସ୍ନାନ ଅନୁଷ୍ଠିତ ହୋଇଥିଲା । କାରଣ ଚନ୍ଦ୍ରଭାଗାକୁ ଅଗ୍ନି କୋଣ ନିକଟବର୍ତ୍ତୀ ସ୍ଥଳରୁ (ଅର୍ଥାତ୍ ଦକ୍ଷିଣାୟନର ପରଦିନ) ସୂର୍ଯ୍ୟୋଦୟ ଅତି ସୁନ୍ଦର ଭାବରେ ଦେଖାଯାଏ ଏବଂ ଚନ୍ଦ୍ରଭାଗାର ସ୍ନାନ-ମନ୍ତ୍ରରେ ସୂର୍ଯ୍ୟଦେବଙ୍କୁ ଅଭିବାଦନ କରାଯାଏ; ସୁତରାଂ ବିଶ୍ୱାସ କରାଯାଏ ଯେ ସୂର୍ଯ୍ୟଙ୍କର ଉତ୍ତରାୟଣ ଆରମ୍ଭ ଉପଲକ୍ଷରେ ଚନ୍ଦ୍ରଭାଗା ସ୍ନାନୋତ୍ସବର ଅନୁଷ୍ଠାନ କରାଯାଉଥିଲା ।

ପୁଣି ମାଘ ଶୁକ୍ଳ ସପ୍ତମୀ ଦିନ ଚନ୍ଦ୍ରଭାଗା ସ୍ନାନଯାତ୍ରା ଅନୁଷ୍ଠିତ ହେବାର ଅର୍ଥ ଏହି ଯେ, ପୂର୍ବେ କୌଣସି ସମୟରେ ମାଘ ଶୁକ୍ଳ ଷଷ୍ଠୀ ଦିନ ସୂର୍ଯ୍ୟଙ୍କର ଦକ୍ଷିଣାୟନ ଶେଷ ହେଉଥିଲା ଏବଂ ସପ୍ତମୀ ଦିନ ତାହାଙ୍କର ଉତ୍ତରାୟଣ ଆରମ୍ଭ ହେଉଥିଲା । ଅଧ୍ୟାପକ ବିଦ୍ୟାନିଧି ମହାଶୟ ମଧ୍ୟ ଏହି ବିଶ୍ୱାସ କରିଥିବାର ତାହାଙ୍କ ପତ୍ରରେ ସ୍ପଷ୍ଟ ଉଲ୍ଲେଖ କରାଯାଇଅଛି । ଉପରୋକ୍ତ ସମସ୍ତ ବିଷୟ ସ୍ୱୀକାର କଲେ ଚନ୍ଦ୍ରଭାଗା ସ୍ନାନର ଆରମ୍ଭ କାଳ ନିର୍ଣ୍ଣୟ କରିବା ଆଉ କଷ୍ଟସାଧ୍ୟ ହୁଏନାହିଁ । କାରଣ ଆଧୁନିକ ପାଶ୍ଚାତ୍ୟ ଗଣନା ଅନୁସାରେ ଡିସେମ୍ବର ମାସ ୨୧ ତାରିଖରେ ସୂର୍ଯ୍ୟଙ୍କର ଦକ୍ଷିଣାୟନ ଶେଷ ଏବଂ ଡିସେମ୍ବର ୨୨ ତାରିଖରେ ଉତ୍ତରାୟଣ ଆରମ୍ଭ ହୁଏ । ଅତଏବ ବହୁ-ପୂର୍ବକାଳରେ ଅର୍ଥାତ୍ ଚନ୍ଦ୍ରଭାଗା ସ୍ନାନର ଆରମ୍ଭ ସମୟରେ ଯେଉଁଦିନ ଡିସେମ୍ବର ୨୨ ତାରିଖ ପଡ଼ିବାର କଥା ସେହି ଦିନ ମାଘ ମାସର ଶୁକ୍ଳ ସପ୍ତମୀ ହୋଇଥିଲା । କାଳକ୍ରମେ କ୍ରାନ୍ତିଚଳନ (Precession) ହେତୁ ଉକ୍ତ ଦୁଇ ଦିନ ମଧ୍ୟରେ ଏତେ ବ୍ୟବଧାନ ଘଟିଅଛି । ଚାନ୍ଦ୍ର ମଳ ମାସ ଓ ସୌରମାନ ମାସ ମଧ୍ୟରେ ଏତେ ବ୍ୟବଧାନ ଥିବା ସ୍ଥଳେ କୌଣସି ଇଂରେଜ ମାସ ସହିତ ଚାନ୍ଦ୍ର ମଳ ମାସର

---

Dakshinayana and beginning of his Uttarayana. We know that this happened on the 7th day of the bright half of Magha long long ago".

– Prof. J. C. Ray.

ଚିରଦିନ ସାମ୍ୟ ରହିବା ଅସମ୍ଭବ । ଶ୍ରୀ ବିଷନ୍ ସ୍ୱରୂପ ତାଙ୍କର ଗ୍ରନ୍ଥ ସମୟରେ ମାଘ ଶୁକ୍ଳ ସପ୍ତମୀକୁ ଫେବୃଆରୀ ୧୦ ତାରିଖ ଧରିଅଛନ୍ତି; କିନ୍ତୁ ବର୍ତ୍ତମାନ ବିଗତ ପାଞ୍ଚ ବର୍ଷର ଅନ୍ତତଃ ହିସାବ ଦେଖିଲେ * ମାଘ ଶୁକ୍ଳ ସପ୍ତମୀ ଜାନୁଆରୀ ୨୨ ତାରିଖରୁ ଫେବୃଆରୀ ୧୩ ତାରିଖ ମଧ୍ୟରେ ପଡ଼େ । ଏପରି ସ୍ଥଳେ ହାରାହାରି ଜାନୁଆରୀ ୩୦ ବା ୩୧ ତାରିଖ ମାଘ ଶୁକ୍ଳ ସପ୍ତମୀ ସ୍ୱରୂପ ଧରାଯାଇପାରେ । ଅତଏବ କ୍ରାନ୍ତିଚଳନ ବଶତଃ ଡିସେମ୍ବର ୨୨ ତାରିଖ ଓ ମାଘ ଶୁକ୍ଳ ସପ୍ତମୀ ମଧ୍ୟରେ ବର୍ତ୍ତମାନ ପ୍ରାୟ ୪୦ ଦିନର ପ୍ରଭେଦ ହୋଇ ପଡିଅଛି । ଏକ ଦିନ କ୍ରାନ୍ତିଚଳନକୁ ପ୍ରାୟ ଏକ ଡିଗ୍ରୀ ଧରାଯାଇ ପାରେ । ପୂର୍ବେ କୁହାଯାଇଅଛି ଯେ, ଏକ ଡିଗ୍ରୀ କ୍ରାନ୍ତିଚଳନ ନିମନ୍ତେ ୭୨ ବର୍ଷ ଲାଗେ । (ଶ୍ରୀ ବିଷନ୍ ସ୍ୱରୂପଙ୍କ ୬୦ ବର୍ଷ ସତ୍ୟ ନୁହେଁ) । ସୁତରାଂ ୪୦ ଡିଗ୍ରୀ କ୍ରାନ୍ତିଚଳନ ନିମନ୍ତେ (୭୨ × ୪୦) ୨୮୮୦ ବର୍ଷ ଲାଗିଅଛି; ଅର୍ଥାତ୍ ପ୍ରାୟ ୨୯୦୦ ବର୍ଷ ପୂର୍ବେ ବା ଖ୍ରୀଷ୍ଟପୂର୍ବ ଦଶମ ଶତାବ୍ଦୀରେ ମାଘ ଶୁକ୍ଳ ସପ୍ତମୀ ଦିନ ସୂର୍ଯ୍ୟଙ୍କର ଉତ୍ତରାୟଣ ଆରମ୍ଭ ହୋଇଥିଲା ଏବଂ ଉକ୍ତ ବର୍ଷ ଚନ୍ଦ୍ରଭାଗା ସ୍ନାନ ଆରମ୍ଭ କରାଯାଇ ଅଦ୍ୟାବଧି ଅନୁଷ୍ଠିତ ହୋଇ ଆସୁଅଛି ।

ପରିଶେଷରେ ଏହି ସମ୍ପର୍କରେ ମୈତ୍ରେୟ ବନରେ ଶାମ୍ବଙ୍କର ସୂର୍ଯ୍ୟପ୍ରତିଷ୍ଠା ସ୍ୱତଃ ମନରେ ପଡ଼େ । ପ୍ରଥମ ଅଧ୍ୟାୟ ଶେଷରେ ସ୍ଥିର କରାଯାଇଅଛି ଏବଂ ଶ୍ରୀ ବିଷନ୍ ସ୍ୱରୂପ ଗୋଟିଏ ଜ୍ୟୋତିଷ ପ୍ରମାଣ ଦ୍ୱାରା ମଧ୍ୟ ତାହା ସମର୍ଥନ କରିଅଛନ୍ତି ଯେ, ଖ୍ରୀଷ୍ଟପୂର୍ବ ପ୍ରାୟ ଊନବିଂଶ ଶତାବ୍ଦୀରେ ଶାମ୍ବ ମୈତ୍ରେୟ ବନରେ ତପସ୍ୟା କରି ଚନ୍ଦ୍ରଭାଗା ଜଳରେ ସୂର୍ଯବିଗ୍ରହ ଦେଖିଲେ ଏବଂ ଆପେ ଚନ୍ଦ୍ରଭାଗାରେ ସ୍ନାନ କରି କୁଷ୍ଠରୋଗରୁ ମୁକ୍ତିଲାଭ କରିଥିଲେ । ଶାମ୍ବଙ୍କଦ୍ୱାରା ଚନ୍ଦ୍ରଭାଗାର ପବିତ୍ରତା ଆରମ୍ଭ ହେଲା ସତ୍ୟ, ତଥାପି ନଦୀଟି ନିବିଡ଼ ଜଙ୍ଗଲ ମଧ୍ୟରେ ଥିବାରୁ ତହିଁର ସ୍ନାନ ଅନୁଷ୍ଠାନାଦି ପ୍ରଚାରିତ ହେବା ନିମନ୍ତେ ବହୁକାଳ ଅତିବାହିତ ହୋଇଥିବ । ଅତଏବ ଏହି ସମସ୍ତ ବିଷୟ ଏକତ୍ର ବିଚାର କଲେ ବର୍ତ୍ତମାନ ପ୍ରମାଣିତ ସମୟ ଏବଂ ପ୍ରଥମ ଅଧ୍ୟାୟରେ ନିର୍ଦ୍ଧାରିତ ସମୟ ଆପାତତଃ ବିଶ୍ୱାସ୍ୟ ବୋଲି ଧରାଯାଏ ।

*******

* ୧୯୧୬ ସାଲରେ ଫେବୃଆରୀ ୧୦ ତାରିଖରେ ମାଘ ସପ୍ତମୀ
୧୯୧୫ ସାଲରେ ଜାନୁଆରୀ ୨୨ ତାରିଖରେ ମାଘ ସପ୍ତମୀ
୧୯୧୪ ସାଲରେ ଫେବୃଆରୀ ୦୨ ତାରିଖରେ ମାଘ ସପ୍ତମୀ
୧୯୧୩ ସାଲରେ ଫେବୃଆରୀ ୧୩ ତାରିଖରେ ମାଘ ସପ୍ତମୀ
୧୯୧୨ ସାଲରେ ଜାନୁଆରୀ ୨୬ ତାରିଖରେ ମାଘ ସପ୍ତମୀ
୧୯୧୭ ସାଲରେ ଜାନୁଆରୀ ୨୯ ତାରିଖରେ ମାଘ ସପ୍ତମୀ

# ଏକାଦଶ ଅଧ୍ୟାୟ

## କୋଣାର୍କ କି ବୌଦ୍ଧାବଶେଷ ?

ଇତିପୂର୍ବେ କୁହାଯାଇଅଛି (ତୃତୀୟ ଅଧ୍ୟାୟ) ଯେ, କୋଣାର୍କର ନିକଟବର୍ତ୍ତୀ ସ୍ଥାନ ବୌଦ୍ଧଧର୍ମର ଗୋଟିଏ ପ୍ରଧାନ କେନ୍ଦ୍ର ଥିଲା । ହୁଏନସାଂଙ୍କ 'ଚେଲିତାଲୋ' ବା ଚିତ୍ରୋତ୍ପଳା ଏହି ସ୍ଥାନରେ ଅବସ୍ଥିତ ଥିଲା । ବୌଦ୍ଧଯୁଗରେ କଳିଙ୍ଗ ରାଜଧାନୀ 'ଦନ୍ତପୁର' ଓ ତତ୍ ପୂର୍ବବର୍ତ୍ତୀ 'ଓଦନ୍ତପୁର' ଏହି ଚିତ୍ରୋତ୍ପଳାର ନାମାନ୍ତର ଥିଲା । 'ଗୟାସୁର' ଉପାଖ୍ୟାନ ଯଦି ସତ୍ୟ ବୋଲି ଗ୍ରହଣ କରାଯାଏ, ତାହାହେଲେ କୋଣାର୍କ ବା ପଦ୍ମକ୍ଷେତ୍ରରେ ବୌଦ୍ଧ ପ୍ରଭାବ ପ୍ରବଳ ଥିବାର ସ୍ୱୀକାର କରିବାର କଥା । 'ପୁରୁଷୋତ୍ତମ ମାହାତ୍ମ୍ୟ'ରେ ବର୍ଣ୍ଣିତ ଅଛି, ଗୟାସୁର ସହିତ ବିଷ୍ଣୁଙ୍କର ଘୋର ଯୁଦ୍ଧ ହୋଇଥିଲା । ପଣ୍ଡିତମାନେ କହନ୍ତି, ବୌଦ୍ଧଧର୍ମକୁ ମନୁଷ୍ୟ ଆକାରରେ କଳ୍ପନା କରି 'ପୁରୁଷୋତ୍ତମ ମାହାତ୍ମ୍ୟ' 'ଗୟାସୁର' ଆଖ୍ୟା ଦେଇଥିଲେ । ବିଷ୍ଣୁ ନିଜେ ବୈଷ୍ଣବ ଧର୍ମର ପ୍ରତିଷ୍ଠା ନିମନ୍ତେ ଗୟାସୁର ସଙ୍ଗେ ଯୁଦ୍ଧ କରିଥିଲେ । ଯୁଦ୍ଧରେ ଗୟାସୁର ନିହତ ହେଲା ଏବଂ ଆପଣାର ବିଜୟ ଚିହ୍ନ ସ୍ୱରୂପ ବିଷ୍ଣୁ ପୁରୀରେ ଶଙ୍ଖ, ଭୁବନେଶ୍ୱରରେ ଚକ୍ର, ଯାଜପୁରରେ ଗଦା, କୋଣାର୍କରେ ପଦ୍ମ ଏବଂ ଗୟାରେ ପାଦଚିହ୍ନ ରଖିଦେଲେ । ଅତଏବ ଗୟାସୁର ଉପାଖ୍ୟାନରେ ଯଦି କିଛି ସତ୍ୟ ଥାଏ, ତାହାହେଲେ କୋଣାର୍କ 'ପଦ୍ମକ୍ଷେତ୍ର' ନାମରେ ଅଭିହିତ ହେବା ପୂର୍ବରୁ ପୁରୀ, ଗୟା ପ୍ରଭୃତି ସ୍ଥାନ ପରି ଗୋଟିଏ ବୌଦ୍ଧକେନ୍ଦ୍ର ଥିଲା ।

ଉପରୋକ୍ତ ଗୟାସୁର ଉପାଖ୍ୟାନରୁ ରାଜେନ୍ଦ୍ର ଲାଲ ପ୍ରଭୃତି ପଣ୍ଡିତମାନେ ଅନୁମାନ କରନ୍ତି ଯେ, ଖ୍ରୀଷ୍ଟୀୟ ଦ୍ୱାଦଶ ଓ ତ୍ରୟୋଦଶ ଶତାବ୍ଦୀରେ ବୈଷ୍ଣବ ଧର୍ମ ପ୍ରଚାର ପର୍ଯ୍ୟନ୍ତ ବୌଦ୍ଧଧର୍ମ ଭାରତରେ ପ୍ରବଳ ଥିଲା । କିନ୍ତୁ ଭାରତ ଇତିହାସରେ ବୈଷ୍ଣବ ଧର୍ମ ପ୍ରଚାରକମାନଙ୍କ କାଳ ଓ ପ୍ରଚାରିତ ଧର୍ମର ପ୍ରକୃତି ଦେଖିଲେ ଏହି ଅନୁମାନ ସତ୍ୟମୂଳକ ବୋଧହୁଏ ନାହିଁ । ରାମାନନ୍ଦ, ରାମାନୁଜ ପ୍ରଭୃତି ମହାପୁରୁଷମାନେ ବୌଦ୍ଧଧର୍ମ ବିରୁଦ୍ଧରେ ବୈଷ୍ଣବ ମତ ସ୍ଥାପନ ନ କରି ବରଂ ମୁସଲମାନ ଧର୍ମର ପ୍ରବଳ ଆକ୍ରମଣରୁ ହିନ୍ଦୁ ଧର୍ମ ରକ୍ଷା କରିବା ନିମନ୍ତେ ଭକ୍ତି ଓ ପ୍ରେମ ପ୍ରଚାର କରିଥିଲେ । ପରନ୍ତୁ କୁମାରିଲ ଓ ଶଙ୍କର ପ୍ରଭୃତି ମାହାତ୍ମାମାନଙ୍କର ଶୈବଧର୍ମ ପ୍ରଚାର ଦ୍ୱାରା ବୌଦ୍ଧଧର୍ମ ଏକାବେଳକେ ଭାରତରୁ ତିରୋହିତ ହୋଇଥିଲା । ଅତଏବ ଗୟାସୁର ଉପାଖ୍ୟାନରୁ ରାଜେନ୍ଦ୍ର ଲାଲ ପ୍ରଭୃତି ଯେଉଁ ଅନୁମାନ

କରନ୍ତି ଯେ, ବୈଷ୍ଣବଧର୍ମ ପ୍ରଚାର ଦ୍ୱାରା ବୌଦ୍ଧଧର୍ମ ଲୁପ୍ତ ହୋଇଥିଲା, ତାହା ଏକାବେଳକେ ଅସତ୍ୟ । ପକ୍ଷାନ୍ତରେ ଗୟାସୁର ଉପାଖ୍ୟାନରେ ଯଦି ପ୍ରକୃତ କିଛି ସତ୍ୟ ଥାଏ, ତାହାହେଲେ ବିଶ୍ୱାସ କରାଯାଏ, ବିଷ୍ଣୁଙ୍କ ବିଜୟଦ୍ୱାରା ବୈଷ୍ଣବ ଧର୍ମ ପ୍ରତିଷ୍ଠା ସୂଚିତ ନ ହୋଇ ବରଂ ସାଧାରଣରେ ହିନ୍ଦୁଧର୍ମର ପ୍ରତିଷ୍ଠା ହୋଇଅଛି ବୋଲିବାକୁ ହେବ । ବସ୍ତୁତଃ ହିନ୍ଦୁ ଧର୍ମ ଶୈବ ଧର୍ମ ଆକାରରେ ପ୍ରଚାରିତ ହୋଇ ବୌଦ୍ଧଧର୍ମର ମୂଳୋତ୍ପାଟନ କରିଅଛି ।

ଉକ୍ତ ଗୟାସୁର ଉପାଖ୍ୟାନ ହିନ୍ଦୁଧର୍ମର ବିଭିନ୍ନ ସମ୍ପ୍ରଦାୟମାନଙ୍କ ସମ୍ବନ୍ଧ ବିଷୟରେ ଆମ୍ଭମାନଙ୍କୁ ଯଥେଷ୍ଟ ପରିଚୟ ଦେଉଅଛି । ହିନ୍ଦୁଧର୍ମ ଯେତେ ଶାଖା ଓ ସମ୍ପ୍ରଦାୟରେ ବିଭକ୍ତ, ପୃଥିବୀର ଅନ୍ୟ କୌଣସି ଧର୍ମରେ ସେପରି ଦେଖାଯାଏ ନାହିଁ । ତଥାପି ସେହି ସମ୍ପ୍ରଦାୟମାନଙ୍କ ମଧ୍ୟରେ କୌଣସି ଗଭୀର ବିଦ୍ୱେଷ ବା ହିଂସା ନ ଥିଲା । ଅବଶ୍ୟ ବାହାରରୁ ଦେଖିଲେ ପ୍ରତ୍ୟେକ ସମ୍ପ୍ରଦାୟ ଆପଣା ଆପଣାର ସ୍ୱାତନ୍ତ୍ର୍ୟ ଯଥେଷ୍ଟ ରଖୁଥିଲେ । ଶୈବ ଶିବଙ୍କୁ, ବୈଷ୍ଣବ ବିଷ୍ଣୁଙ୍କୁ, ଶାକ୍ତ ଶକ୍ତିଙ୍କୁ ଓ ଗାଣପତ୍ୟ ଗଣପତିଙ୍କୁ ଅନ୍ୟାନ୍ୟ ଦେବତାମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ମଣି ଉପାସନା କରୁଥିଲେ; କିନ୍ତୁ କେହି କାହା ପ୍ରତି ଘୃଣା ବା ହିଂସା କରିଥିବାର କେବେ ଦେଖାଯାଇନାହିଁ । ଇଉରୋପର ଧର୍ମ ଶାଖାମାନଙ୍କ ମଧ୍ୟରେ ଘୋର ବିଦ୍ୱେଷ ଓ ନୃଶଂସ ରକ୍ତପାତରେ ଇଉରୋପୀୟ ମଧ୍ୟଯୁଗର ଇତିହାସ ଯେପରି କଳଙ୍କିତ ହୋଇଅଛି, ଭାରତର ଏତେ ସହସ୍ର ବର୍ଷବ୍ୟାପୀ ଈଶ୍ୱର ଚିନ୍ତା ଓ ଧର୍ମ ସମସ୍ୟାରେ ଦିନେ ସେପରି କିଛି ଦେଖାଯାଇନାହିଁ । ଧର୍ମ ବିଷୟରେ ଭାରତର ଉଦାର ନୀତି ପୃଥିବୀରେ ଅନ୍ୟତ୍ର ସ୍ୱପ୍ନପ୍ରାୟ । ଭାରତରେ ସେଣ୍ଟ ବାର୍ଥେଲମିଉ ହତ୍ୟାକାଣ୍ଡ ନ ଥିଲା କି ସ୍ପେନର ଇନ୍‌କ୍ୱିସନ୍ କେବେ ସ୍ଥାନ ପାଇ ନ ଥିଲା । ଭାରତୀୟ ରାଜନ୍ୟବର୍ଗ ସର୍ବଧର୍ମ ଓ ଉପସନାର ସମାନ ଆଦର କରି ଭାରତକୁ ଧର୍ମ ତଥା ସ୍ୱାଧୀନ ଚିନ୍ତାର ପ୍ରିୟ ନିକେତନ କରିଥିଲେ । ସେହି ହେତୁରୁ ଦେଖାଯାଏ, ଶଙ୍କରାଚାର୍ଯ୍ୟ ନିଜେ ଶୈବ ଓ ଶୈବଧର୍ମ ପ୍ରଚାରକ; ତଥାପି ଅନ୍ୟାନ୍ୟ ସମ୍ପ୍ରଦାୟମାନଙ୍କ ପରି ସେ ବିଷ୍ଣୁ, ଶକ୍ତି, ଗଣପତି ପ୍ରଭୃତି ହିନ୍ଦୁ ଦେବ ଦେବୀଙ୍କ ନାମରେ ସ୍ତବପାଠ କରିଅଛନ୍ତି । ତାହାଙ୍କ ସ୍ତୋତ୍ରମାଳା ମଧ୍ୟରେ ଶିବସ୍ତୁତି ଯେ ପରିମାଣରେ ଅଛି, ବିଷ୍ଣୁ, ଦୁର୍ଗା, ଗଣେଶ, ଗଙ୍ଗା ପ୍ରଭୃତିଙ୍କ ସ୍ତୁତି ମଧ୍ୟ ସେହି ପରିମାଣରେ ଦେଖାଯାଏ । ବର୍ତ୍ତମାନ ମଧ୍ୟ ହିନ୍ଦୁ ଯେ କୌଣସି ସମ୍ପ୍ରଦାୟର ହେଉ ପଛକେ ଜଗନ୍ନାଥଙ୍କୁ ଯେପରି ଶିବ, ଦୁର୍ଗା, ଗଣେଶ ପ୍ରଭୃତିଙ୍କୁ ମଧ୍ୟ ସେହିପରି ଭକ୍ତି କରୁଅଛି । ସୁତରାଂ ବୌଦ୍ଧଧର୍ମ ପରେ ଯେଉଁ ଶୈବଧର୍ମ ରୂପରେ ବ୍ରାହ୍ମଣଧର୍ମର ପୁନରୁତ୍‌ଥାନ ହେଲା, ତାହା ସହିତ ବିଷ୍ଣୁଙ୍କର ସମ୍ବନ୍ଧ ରହିବା କିଛି ଆଶ୍ଚର୍ଯ୍ୟଜନକ ନୁହେଁ । ପୁଣି ବୌଦ୍ଧଧର୍ମ ବ୍ରାହ୍ମଣଧର୍ମଠାରୁ ଏକାବେଳକେ ପୃଥକ୍ । ସେହି ପାର୍ଥକ୍ୟ ଦୃଷ୍ଟିରେ ଶୈବ ଓ ବୈଷ୍ଣବ ଧର୍ମର ପାର୍ଥକ୍ୟ ଆଦୌ ଧର୍ତ୍ତବ୍ୟ ନୁହେଁ ।

ବ୍ରାହ୍ମଣଧର୍ମର ବିଭିନ୍ନ ଶାଖାମାନଙ୍କ ମଧ୍ୟରେ ଯେପରି ଉଦାରତା ଓ ଭ୍ରାତୃଭାବ ରହିବାର କଥା, ବ୍ରାହ୍ମଣ ଓ ବୌଦ୍ଧଧର୍ମ ମଧ୍ୟରେ ସେପରି ଆଶା କରାଯାଇ ନ ପାରେ ।

ଅବଶ୍ୟ ହିଂସା, ରକ୍ତପାତ ପ୍ରଭୃତି ନ ଥିଲା; ତଥାପି ବିରୋଧ ଥିଲା । ଶଙ୍କର ଓ ବୌଦ୍ଧ ଦର୍ଶନ ମତ ମଧ୍ୟରେ ଆକାଶ ପାତାଳ ପ୍ରଭେଦ । ଶଙ୍କର ପୂର୍ଣ୍ଣ ଅଦ୍ୱୈତ, ଶାଶ୍ୱତ ବ୍ରାହ୍ମବାଦୀ । ତାହାଙ୍କ ମତରେ କେବଳ ବ୍ରହ୍ମ ହିଁ ସତ୍ୟ; ସମସ୍ତ ଜଗତ ପରିବର୍ତ୍ତନଶୀଳ, ମାୟାମୟ ଓ ମିଥ୍ୟା । ବୌଦ୍ଧ ମତରେ ଜଗତର ପରିବର୍ତ୍ତନ ହିଁ ସତ୍ୟ; ବ୍ରହ୍ମ, ଆତ୍ମା ସମସ୍ତ ମିଥ୍ୟା । ପରିବର୍ତ୍ତନ ବ୍ୟତୀତ ଜଗତରେ ଅନ୍ୟ କୌଣସି ସତ୍ୟ ନାହିଁ । ଏପରି ସ୍ଥଳେ ଭାରତୀୟ ଚିନ୍ତାର ପାରମ୍ପରିକ ଓ ସହଜ ଉଦାରତା ସତ୍ତ୍ୱେ ବିରୋଧ ଅବଶ୍ୟମ୍ଭାବୀ । ଭାରତୀୟ ରାଜାମାନେ ବୌଦ୍ଧ ହୁଅନ୍ତୁ ବା ବ୍ରାହ୍ମଣ ହୁଅନ୍ତୁ, ଉଭୟ ଧର୍ମ ପ୍ରତି ସମାନ ଆସ୍ଥା ଦେଖାଉଥିଲେ । ଗୁପ୍ତ ରାଜାମାନେ ବ୍ରାହ୍ମଣ ଥାଇ ବୌଦ୍ଧମାନଙ୍କ ପ୍ରତି ଯେପରି ସ୍ନେହ ଦେଖାଉଥିଲେ ହର୍ଷବର୍ଦ୍ଧନ ବୌଦ୍ଧ ଥାଇ ବ୍ରାହ୍ମଣମାନଙ୍କୁ ସେହିପରି ସମାନ ଆଦର କରୁଥିଲେ ।

ଅବସ୍ଥା ବିଶେଷ ଉପରେ ଅନୁକରଣ ପ୍ରବୃତ୍ତି ନିର୍ଭର କରେ । କୌଣସି ଧର୍ମ ବା ସମ୍ପ୍ରଦାୟ ରାଜାଶ୍ରୟରେ ବିଶେଷ ପ୍ରବଳ ହେଲେ ଏବଂ ଅପର ଧର୍ମମାନଙ୍କୁ ଏକାବେଳକେ ଗ୍ରାସ କରିବାକୁ ବସିଲେ ଦୁର୍ବଳ ଧର୍ମ ନିଶ୍ଚୟ ଆତ୍ମରକ୍ଷା ନିମନ୍ତେ ପ୍ରବଳ ଧର୍ମର କେତେକ ଅନୁଷ୍ଠାନ ଅନୁକରଣ କରି ତାହାଦ୍ୱାରା ନିଜର ପୁଷ୍ଟି ସାଧନ କରିବ । ତାହା ନ ହେଲେ ଦୁର୍ବଳ ଧର୍ମ କେବଳ ନିଜତ୍ୱ ଉପରେ ନିର୍ଭର କରି ବହୁକାଳ ରହି ନ ପାରେ । ମୁସଲମାନ ଧର୍ମ ରାଜାଶ୍ରୟରେ ପ୍ରାୟ ୬୦୦ ବର୍ଷ ଭାରତରେ ପ୍ରବଳ ହୋଇଥିଲା । ତାହାର ସର୍ବଗ୍ରାସୀ କ୍ଷମତା ବୌଦ୍ଧଧର୍ମ କଥା ଦୂରେ ଥାଉ, ପୃଥିବୀର ଅନ୍ୟ କୌଣସି ଧର୍ମର ଅଛି କି ନାହିଁ ସନ୍ଦେହ । ସୁତରାଂ ବ୍ରାହ୍ମଣ ଧର୍ମ ଆତ୍ମରକ୍ଷା ନିମନ୍ତେ ମୁସଲମାନ ଧର୍ମରୁ କେତେକ ଭାବ ଆପଣା ମଧ୍ୟରେ ଅଙ୍ଗୀଭୂତ କରିଥିଲା । ବୌଦ୍ଧ ଧର୍ମ ଅବଶ୍ୟ ରାଜାଶ୍ରୟରେ ୫୦୦ ବର୍ଷ ପର୍ଯ୍ୟନ୍ତ ପ୍ରବଳ ହୋଇଥିଲା ସତ; ତଥାପି ବଳପୂର୍ବକ ଲୋକଙ୍କୁ ଦୀକ୍ଷିତ କରିବା ବୌଦ୍ଧ ନୀତି ନ ଥିଲା ଏବଂ ବୌଦ୍ଧ ରାଜାମାନେ ବ୍ରାହ୍ମଣ ଧର୍ମ ଉପରେ ସମାନ ଆସ୍ଥା ରଖିଥିଲେ । ଯେଉଁ ବୌଦ୍ଧରାଜା ବ୍ରାହ୍ମଣ ଧର୍ମ ପ୍ରତି ବିମୁଖ ହୋଇ କେବଳ ଆପଣାର ବୌଦ୍ଧମତ ପ୍ରବର୍ତ୍ତନରେ ଦୃଢ଼ସଂକଳ୍ପ ହୋଇଥିଲେ, ସେ ତାହାଙ୍କ ରାଜ୍ୟ ଓ ଧର୍ମର ଅବନତିର ସୂତ୍ରପାତ କରିଥିଲେ ମାତ୍ର । ଅଶୋକ ଏ କ୍ଷେତ୍ରରେ ପ୍ରଧାନ ଦୃଷ୍ଟାନ୍ତ । ଅତଏବ ବ୍ରାହ୍ମଣ ଓ ବୌଦ୍ଧଧର୍ମ ମଧ୍ୟରେ ଏପରି ସମଭାବ ଥିବା ସ୍ଥଳେ ଏକ ଅପରଠାରୁ ବିଶେଷ କିଛି ଅନୁକରଣ କରିବା ସମ୍ଭବ ନୁହେଁ । ହିନ୍ଦୁ ଓ ମୁସଲମାନ ଧର୍ମ ମଧ୍ୟରେ ବିରୋଧ ଅତ୍ୟନ୍ତ ତୀବ୍ର ଥିଲା ଏବଂ ମୁସଲମାନ ଧର୍ମଦ୍ୱାରା ହିନ୍ଦୁ ଧର୍ମ ଅତ୍ୟନ୍ତ ପ୍ରପୀଡ଼ିତ ହୋଇଥିଲା । ସୁତରାଂ ହିନ୍ଦୁ ମୁସଲମାନମାନଙ୍କଠାରୁ କିଛି ଆପଣା ଧର୍ମର ଅଙ୍ଗୀଭୂତ କରି ନ ଥିଲେ ଆତ୍ମରକ୍ଷା କଷ୍ଟକର ହୋଇଥାନ୍ତା । ବୌଦ୍ଧ ଓ ହିନ୍ଦୁ ଧର୍ମ ମଧ୍ୟରେ ଅଶୋକଙ୍କ ବ୍ୟତୀତ ଅନ୍ୟ କୌଣସି ରାଜତ୍ୱରେ ଏତେ ତାରତମ୍ୟ ଓ ବିରୋଧ ଆଦୌ ଦେଖାଯାଇ ନ ଥିଲା, ସୁତରାଂ ଅନୁକରଣର ଆବଶ୍ୟକତା ମଧ୍ୟ ନ ଥିଲା । ଅବଶ୍ୟ ଉଭୟ ଧର୍ମ ସ୍ୱତନ୍ତ୍ର ଭାବରେ ବହୁକାଳ ଧରି ରହିଥିବା ସ୍ଥଳେ ଅଜ୍ଞାତସାରରେ ଏକ

ଧର୍ମ ଅପର ଧର୍ମରୁ କିଛି ନା କିଛି ଗ୍ରହଣ କରିଥିବା ନିତାନ୍ତ ଅସମ୍ଭବ ନୁହେଁ । ଏପରି କି ବିରୋଧ ମଧ୍ୟରେ ସୁଦ୍ଧା ପରସ୍ପରର ଅଜ୍ଞାତ ଆଦାନ ପ୍ରଦାନ ହୋଇଥାଏ । ସୁତରାଂ ବ୍ରାହ୍ମଣ ଧର୍ମ ଆଚାର, ରୀତିନୀତି ପ୍ରଭୃତି ଅଲକ୍ଷିତ ଭାବରେ ବୌଦ୍ଧଭାବ କେତେକ ଗ୍ରହଣ କରିଥିବ; କିନ୍ତୁ ସାକ୍ଷାତ୍ ଭାବରେ କୌଣସି ବୌଦ୍ଧ ଅନୁଷ୍ଠାନ ଅବିକଳ ଅଙ୍ଗୀଭୂତ କରିଥିବା ବ୍ରାହ୍ମଣଧର୍ମ ପକ୍ଷରେ ଏକାବେଳକେ ଅସମ୍ଭବ ବୋଧହୁଏ ।

କୋଣାର୍କ ପ୍ରାଚୀନକାଳରୁ ମୈତ୍ରେୟ ବନଠାରୁ ଆରମ୍ଭ କରି ଅଦ୍ୟାବଧି ଗୋଟିଏ ପ୍ରଧାନ ହିନ୍ଦୁ କ୍ଷେତ୍ର । ଯେଉଁ ସମୟରେ ବୌଦ୍ଧଧର୍ମ ସେଠାରେ ପ୍ରବଳ ଥିଲା, ସେତେବେଳେ ମଧ ବ୍ରାହ୍ମଣମାନେ ଆପଣାର ଦେବୋରାଧନା କରୁଥିବାର ହୁଏନସାଂଙ୍କ ବର୍ଣ୍ଣନାରୁ ଜଣାଯାଏ । କ୍ରମେ କ୍ରମେ ବୌଦ୍ଧଧର୍ମର ଅବସାନ ସଙ୍ଗେ ସଙ୍ଗେ କୋଣାର୍କରେ ହିନ୍ଦୁଭାବ ପ୍ରବଳ ହେଲା ଏବଂ ଯାହା କିଛି ବୌଦ୍ଧ ଅନୁଷ୍ଠାନ ଥିଲା, ତାହା କାଳଗର୍ଭରେ ଲୁପ୍ତ ହୋଇଗଲା । ଯଦି ନିତାନ୍ତ କୋଣାର୍କରେ ବୌଦ୍ଧଭାବ କିଛି ଥାଏ, ତାହା କଦାପି ସାକ୍ଷାତ୍ ଭାବରେ ସାଧାରଣ ଦୃଷ୍ଟିରେ ପଡ଼ିବା ଭଳି ନ ଥିବ । ଅତଏବ ଯେଉଁ ଲେଖକମାନେ କୋଣାର୍କରେ କେବଳ ବୌଦ୍ଧ ଅନୁଷ୍ଠାନର ଅବଶେଷ ମାତ୍ର ଦେଖନ୍ତି, ସେମାନଙ୍କର ଆଲୋଚନା ଆବଶ୍ୟକ ।

ଉପରୋକ୍ତ ଲେଖକମାନଙ୍କ ମଧ୍ୟରେ ଶ୍ରୀଯୁକ୍ତ ବିଷନ୍ ସ୍ୱରୂପ ଅଗ୍ରଗଣ୍ୟ । କୋଣାର୍କ ମନ୍ଦିରର କୌଣସି ବିଶିଷ୍ଟ କାର୍ଯ୍ୟ ବା ଦେବଙ୍କର ଅନୁଷ୍ଠାନ ବିଶେଷକୁ ବୌଦ୍ଧ ବୋଲି କହିବାରେ ସେ ତୃପ୍ତ ନୁହନ୍ତି । କୋଣାର୍କର ଉତ୍ପତ୍ତିଠାରୁ ଆରମ୍ଭ କରି ପରିଣାମ ପର୍ଯ୍ୟନ୍ତ ଦେବଙ୍କର ରଥଯାତ୍ରା ପ୍ରଭୃତି ଅନୁଷ୍ଠାନ ବିଶେଷରୁ ଆରମ୍ଭ କରି ନିଜେ କୋଣାର୍କଦେବଙ୍କ ପର୍ଯ୍ୟନ୍ତ ସମସ୍ତ କେବଳ ବୌଦ୍ଧାବଶେଷ ଓ ବୌଦ୍ଧ ଧର୍ମର ଅବିକଳ ଅନୁକରଣ ବୋଲି ସେ ପ୍ରମାଣ କରିଅଛନ୍ତି * । ଇତିପୂର୍ବେ (ପ୍ରଥମ ଅଧ୍ୟାୟ) କୁହାଯାଇଅଛି ଯେ, କୋଣାର୍କର ଉତ୍ପତ୍ତି ପୂର୍ବରୁ କ୍ଷେତ୍ରର ନାମ ମୈତ୍ରେୟ ବା ମୈତ୍ରବନ ଥିଲା । ଶ୍ରୀ ବିଷନ୍ ସ୍ୱରୂପ କହନ୍ତି ଯେ, ଭବିଷ୍ୟତ ବୁଦ୍ଧଙ୍କର ଅନ୍ୟ ନାମ 'ମୈତ୍ରେୟ' (ପାଲି ଭାଷାରେ 'ମିତେୟ') ଥିଲା । ସୁତରାଂ ସ୍ଥାନର ଆଦ୍ୟ ଅବସ୍ଥା ଅର୍ଥାତ୍ ମୈତ୍ରେୟ ବନ ବୁଦ୍ଧଦେବଙ୍କର ନାମାନୁସାରେ ହୋଇଥିଲା ।

ଇତିପୂର୍ବେ ମୈତ୍ରେୟ ବନ ସମ୍ପର୍କରେ (ପ୍ରଥମ ଓ ଦ୍ୱିତୀୟ ଅଧ୍ୟାୟ) କପିଳ ସଂହିତା ଅବଲମ୍ବନରେ କୁହାଯାଇଅଛି ଯେ, 'ମୈତ୍ରେୟ ତପସାର୍ଜ୍ଜିତଂ' ଅର୍ଥାତ୍ ମୈତ୍ରେୟ ମହର୍ଷିଙ୍କର ତପସ୍ୟା ଦ୍ୱାରା ଏହାର ଉତ୍ପତ୍ତି ହୋଇଥିବାରୁ ନାମ 'ମୈତ୍ରେୟ ବନ' ହୋଇଥିଲା । କପିଳସଂହିତା ବୁଦ୍ଧଦେବଙ୍କୁ 'ମୈତ୍ରେୟ ମହର୍ଷି' ବୋଲି କହିଥିବା ଅସମ୍ଭବ । ପୁଣି ବୁଦ୍ଧଦେବ ଯେ ଏହି କୋଣାର୍କରେ ତପସ୍ୟା କରିଥିଲେ, ଏପରି କଦାପି ଅନୁମାନ କରାଯାଇ ନ ପାରେ । ସୁତରାଂ କପିଳ ସଂହିତା ସ୍ଥାନର ଉତ୍ପତ୍ତି ସମ୍ବନ୍ଧରେ ଏତେ ପରିଷ୍କାର କରି

* Konarka. Chapter - XI.

ଲେଖିଥିବା ସ୍ଥଳେ ବୁଦ୍ଧଦେବଙ୍କର ନାମାନୁସାରେ ସ୍ଥାନର ଏହି ରୂପ ନାମ ହୋଇଥିବା ନିତାନ୍ତ ଅଯୌକ୍ତିକ ଜଣାପଡ଼େ । ପ୍ରଥମ ଅଧ୍ୟାୟରେ ମୈତ୍ରେୟ ବନର ଅର୍ଥ ଦିଆଯାଇଅଛି । ରାଜେନ୍ଦ୍ର ଲାଲ କହନ୍ତି ଯେ, 'ମିତ୍ର' ବା ବନ୍ଧୁ ଶବ୍ଦରୁ ବନର ଏପରି ନାମ ହୋଇଥିଲା, ଅର୍ଥାତ୍ ଶାମ୍ବ ଏହି ବନରେ ତପସ୍ୟା କରି ଆରୋଗ୍ୟ ଲାଭ କରିଥିଲେ । ପୁଣି ମୁଁ କହିଅଛି, ମିତ୍ର ଦ୍ୱାଦଶ ସୂର୍ଯ୍ୟଙ୍କ ମଧ୍ୟରୁ ଅନ୍ୟତମ । ଶାମ୍ବଙ୍କ ତପସ୍ୟାରେ ତୁଷ୍ଟ ହୋଇ ମିତ୍ର ଶାମ୍ବଙ୍କୁ ବରଦାନ କରିଥିଲେ । ଅତଏବ ସେହି ମିତ୍ରଙ୍କ ନାମ ଅନୁସାରେ ମୈତ୍ରେୟ ବନ ନାମ ହୋଇଥିବାରେ ସନ୍ଦେହ କାହିଁକି ? ପରନ୍ତୁ ବୁଦ୍ଧଦେବଙ୍କ ନାମ ଯେ 'ମୈତ୍ରେୟ' ବା ମିତ୍ରେୟ ଥିଲା, ତାହା ତାହାଙ୍କର ପୂର୍ବବର୍ତ୍ତୀ କୌଣସି ମୈତ୍ରେୟ ମହର୍ଷିଙ୍କ ନାମାନୁସାରେ ଯେ ହୋଇ ନ ଥିଲା, ତାହାର ପ୍ରମାଣ ବା କ'ଣ ? ଏପରି ସ୍ଥଳେ କୋଣାର୍କରେ ବୁଦ୍ଧଦେବଙ୍କ ନାମାନୁସାରେ ମୈତ୍ରେୟ ବନ ଥିବାର ଅନୁମାନ ନିତାନ୍ତ ସମୀଚୀନ ନୁହେଁ ।

ଦ୍ୱିତୀୟ ଅଧ୍ୟାୟରେ ଲେଖାଯାଇଅଛି ଯେ, କୋଣାର୍କ କ୍ଷେତ୍ରରେ ଗୋଟିଏ ଅର୍କବଟ ଥିଲା । ସୂର୍ଯ୍ୟ ନିଜେ ଜୀବରାଜ୍ୟର ମଙ୍ଗଳ ନିମନ୍ତେ ସେହି ବଟବୃକ୍ଷ ଆକାରରେ ମର୍ତ୍ତ୍ୟରେ ଆବିର୍ଭୂତ ହୋଇଥିଲେ । ତାହାର ମୂଳରେ ନାନା ଯୋଗୀ ଋଷିମାନେ ଭଗବଦ୍ ଚିନ୍ତାରେ ମଗ୍ନ ରହୁଥିଲେ । ସେହି ବଟବୃକ୍ଷ ମୂଳରେ ଯେଉଁ ବଟେଶ୍ୱର ମହାଦେବ ପ୍ରତିଷ୍ଠିତ ଥିଲେ, ବର୍ତ୍ତମାନ ସେ ସେହିଠାରେ ପୂଜା ପାଉଛନ୍ତି । କପିଳ ସଂହିତା ଅନୁସାରେ ସାଧକ ସେହି ବଟବୃକ୍ଷ ମୂଳରେ ସୂର୍ଯ୍ୟ ମନ୍ତ୍ର ଜପ କଲେ ତିନି ପକ୍ଷ ମଧ୍ୟରେ ତାହାର ଅଭୀଷ୍ଟ ସିଦ୍ଧ ହୁଏ । କଥିତ ଅଛି, ବୁଦ୍ଧଦେବ ବୋଧିଦ୍ରୁମ ତଳେ ୪୯ ଦିନ (ତିନି ପକ୍ଷରୁ କିଞ୍ଚିତ ଅଧିକ) ପର୍ଯ୍ୟନ୍ତ ଅନାହାର ଓ ଅନିଦ୍ରାରେ ଘୋର ତପସ୍ୟା କରି 'ବୁଦ୍ଧି' ବା ତତ୍ତ୍ୱଜ୍ଞାନ ଲାଭ କରିଥିଲେ । ଏହି ହେତୁରୁ ଶ୍ରୀ ବିଷବ୍ ସ୍ୱରୂପ କହନ୍ତି, ହିନ୍ଦୁମାନେ ବଟବୃକ୍ଷକୁ ଯେ ଏତେ ପବିତ୍ର ଜ୍ଞାନ କରି ତାହା ତଳେ ତପସ୍ୟାଦି ଆଚରଣ କରନ୍ତି, ତାହା ଗୋଟିଏ ବୌଦ୍ଧ ପ୍ରଥାର ଅନୁସରଣ ମାତ୍ର । ସୁତରାଂ 'ଅର୍କବଟ', 'କଳ୍ପବଟ' ପ୍ରଭୃତି ବୌଦ୍ଧମାନଙ୍କର ବୋଧିଦ୍ରୁମ ଅନୁକରଣରେ ପବିତ୍ର ହିନ୍ଦୁ କ୍ଷେତ୍ରମାନଙ୍କରେ ପ୍ରତିଷ୍ଠିତ ହେଉଥିଲା ।

ପୂର୍ବବର୍ତ୍ତୀ ଅଧ୍ୟାୟରେ କୁହାଯାଇଅଛି, ଯେଉଁ ଅନୁଷ୍ଠାନ କେବଳ ବୌଦ୍ଧମାନେ ଆରମ୍ଭ କରିଥିଲେ ଏବଂ ବୌଦ୍ଧଯୁଗ ପୂର୍ବେ ଯାହାର ଆଦୌ ଅସ୍ତିତ୍ୱ ନ ଥିଲା, କେବଳ ସେହି ଅନୁଷ୍ଠାନକୁ ବୌଦ୍ଧ ଅନୁଷ୍ଠାନ କୁହାଯିବ । ଯାହା ବୌଦ୍ଧମାନଙ୍କ ପୂର୍ବରୁ ଭାରତରେ ପ୍ରଚଳିତ ଥିଲା ଏବଂ ବୌଦ୍ଧମାନେ ଯାହା ନିଜ ଧର୍ମର ଅଙ୍ଗୀଭୂତ କରିଥିଲେ, ସେ ଅନୁଷ୍ଠାନ କଦାପି ବୌଦ୍ଧ ବୋଲି କୁହାଯାଇ ନ ପାରେ । ବୁଦ୍ଧଦେବ ଯେ ଗୋଟିଏ ଛାୟାପ୍ରଦ ବଟବୃକ୍ଷ ମୂଳରେ ବସି ତପସ୍ୟା କରିଥିଲେ, ତାହା କ'ଣ ବୁଦ୍ଧଦେବଙ୍କର ଗୋଟିଏ ନୂତନତ୍ୱ ? ବୁଦ୍ଧଦେବଙ୍କ ପୂର୍ବରୁ କେତେ ଯୋଗୀ ଋଷି ଅରଣ୍ୟ ବୃକ୍ଷଛାୟାରେ ଧ୍ୟାନମଗ୍ନ ରହି ମାନବ ଜାତିର ମଙ୍ଗଳ

ନିମନ୍ତେ ଜ୍ଞାନ ଉପାର୍ଜନ କରୁଥିଲେ । କେତେ ବେଦ ମନ୍ତ୍ର, କେତେ ପୁରାଣ କାହାଣୀ ଓ କେତେ ଦର୍ଶନ ତତ୍ତ୍ୱ ସୁଶୀତଳ ବୃକ୍ଷଛାୟା ତଳରୁ ବାହାରିଥିଲା । ବୁଦ୍ଧଦେବଙ୍କ ପୂର୍ବରୁ ପ୍ରାୟ ତିନି ସହସ୍ର ବର୍ଷ କାଳ ଭାରତୀୟ ସଭ୍ୟତା, ଧର୍ମ ଓ ପ୍ରାଣ ଅରଣ୍ୟ ବୃକ୍ଷଛାୟା ତଳରେ ଗଢ଼ା ହୋଇଥିଲା । ବର୍ତ୍ତମାନ ପର୍ଯ୍ୟନ୍ତ ମଧ୍ୟ ପରମ୍ପରା ଅନୁସାରେ ଧର୍ମାତ୍ମା ହିନ୍ଦୁ ସୁରମ୍ୟ ଅଟ୍ଟାଳିକା ଅପେକ୍ଷା ବୃକ୍ଷଛାୟା ଅଧିକ ପସନ୍ଦ କରନ୍ତି । ବୁଦ୍ଧଦେବ ଯେ ରାଜପ୍ରାସାଦ ଛାଡ଼ି ବୃକ୍ଷ ତଳେ ତପସ୍ୟା କରିଥିଲେ ଏବଂ ତାହାଙ୍କ ପରେ ବୌଦ୍ଧମାନେ ସେହି ବଟବୃକ୍ଷର ପୂଜା କଲେ, ତାହା କେବଳ ପୂର୍ବବର୍ତ୍ତୀ ବ୍ରାହ୍ମଣ ସଭ୍ୟତାର ଅନୁସରଣ ମାତ୍ର । ବର୍ତ୍ତମାନ ସନ୍ନ୍ୟାସୀମାନେ ଯେଉଁ ପରମ୍ପରା ଅନୁସରଣ କରି ଛାୟାପ୍ରଦ ବୃକ୍ଷତଳ ଆଶ୍ରୟ କରନ୍ତି, ବୁଦ୍ଧଦେବ ନିଜେ ସେହି ପରମ୍ପରା ଅନୁସରଣ କରି 'ବୁଦ୍ଧି' ଲାଭ କରିଥିଲେ । ବଟବୃକ୍ଷ ପରି ସୁଶୀତଳ ଛାୟାପ୍ରଦ ବୃକ୍ଷକୁ ଧର୍ମପ୍ରାଣ ହିନ୍ଦୁ ଦେବସ୍ଥାନ କଳ୍ପନା କରି ଭକ୍ତି କରିବାରେ ବୌଦ୍ଧଧର୍ମର ଅବଶେଷ କିଛି ନାହିଁ । ବୌଦ୍ଧଧର୍ମର ବହୁଯୁଗ ପୂର୍ବରୁ ରାମଚନ୍ଦ୍ରଙ୍କର ବନବାସ କାଳରେ ସୀତା 'ଶ୍ୟାମବଟ' ନାମରେ ଗୋଟିଏ ବଟବୃକ୍ଷ ପୂଜା କରିଥିଲେ । ଭାରତବର୍ଷ ପରି ଗ୍ରୀଷ୍ମପ୍ରଧାନ ଦେଶରେ ବଟବୃକ୍ଷର ଉପାସନା ବଡ଼ ବିଚିତ୍ର ନୁହେଁ * ।

ଅର୍କବଟ ମୂଳେ ତିନି ପକ୍ଷରେ ସିଦ୍ଧି ଲାଭହେବା ସଙ୍ଗେ ବୋଧିଦ୍ରୁମ ତଳେ ୪୯ ଦିନରେ ବୁଦ୍ଧଦେବଙ୍କର 'ବୁଦ୍ଧି' ଲାଭ ହୋଇଥିବାର ଦେଖି ଶ୍ରୀ ବିଷନ୍ ସ୍ୱରୂପ ଏହି ରୂପ ଅନୁମାନ କରିଅଛନ୍ତି । ଅବଶ୍ୟ ୪୯ ଦିନ ସହିତ ତିନି ପକ୍ଷର କିଛି ସାମ୍ୟ ଅଛି; କିନ୍ତୁ ସେ ସମ୍ବନ୍ଧ ଏତେ ଦୂରବର୍ତ୍ତୀ ଓ ଅସାର ଯେ, ତହିଁରୁ ଅର୍କବଟକୁ 'ବୋଧିଦ୍ରୁମ'ର ଅନୁକରଣ ମନେ କରିବା ନିତାନ୍ତ ଦୁଃସାହସର କଥା । ପରନ୍ତୁ ୩ ପକ୍ଷ, ୩ ମାସ, ୭ ଦିନ, ୨୧ ଦିନ ପ୍ରଭୃତି ହିନ୍ଦୁମାନେ ଯେ କୌଣସି ଧର୍ମକାର୍ଯ୍ୟ ସହିତ ଯୋଗ କରିଥାନ୍ତି । ସେଥିରେ ବୌଦ୍ଧଧର୍ମ ଆରୋପ କରିବା ବ୍ରାହ୍ମଣ ସଭ୍ୟତା ବିଷୟରେ କେବଳ ଅନାସ୍ଥା ଓ ଅଜ୍ଞାନତା ପ୍ରକାଶ କରିବା ବ୍ୟତୀତ ଅନ୍ୟ କିଛି ନୁହେଁ ।

ହୁଏନସାଂଙ୍କ 'ଚେଳିତାଲୋ' ବର୍ଣ୍ଣନାରେ ଦେଖାଯାଏ (ତୃତୀୟ ଅଧ୍ୟାୟ), ନଗରର ବହିର୍ଦ୍ଦେଶରେ ପାଞ୍ଚଟି ବୌଦ୍ଧମନ୍ଦିର ଥିଲା । ଶ୍ରୀ ବିଷନ୍ ସ୍ୱରୂପ ଅନୁମାନ କରନ୍ତି ଯେ, ନିଜେ କୋଣାର୍କ ମନ୍ଦିର ତହିଁରୁ ଅନ୍ୟତମ ଥିଲା । କୋଣାର୍କ ମନ୍ଦିର ରଥାକାର ଏବଂ ରଥ ବୌଦ୍ଧମାନଙ୍କର ପ୍ରଧାନ ଆଦରଣୀୟ । ସିଦ୍ଧାର୍ଥଙ୍କ ରଥ ଅନୁକରଣରେ ଏହି କୋଣାର୍କ ରଥ ପ୍ରଥମରେ ଚାରି ଚକ ସହିତ ତିଆର କରାଯାଇ ଥିଲା । ପରେ ପୁଣି ଚକସଂଖ୍ୟା ବଢ଼ା ହୋଇଥିଲା ।

---

* Havell - Aryan Rule in India, P. P. 109-112. and his 'Ancient and Medeueval Architecture of India'.

ପୂର୍ବବର୍ତ୍ତୀ ଅଧ୍ୟାୟରେ ରଥଯାତ୍ରା ପ୍ରସଙ୍ଗରେ ପ୍ରମାଣ କରାଯାଇ ଅଛି ଯେ, ରଥ କେବଳ ବୌଦ୍ଧମାନଙ୍କର ଆଦରଣୀୟ ନ ଥିଲା; ବୌଦ୍ଧ ପୂର୍ବବର୍ତ୍ତୀ ଯୁଗରେ ରଥର ବିଶେଷ ଆଦର ଥିବାରୁ ବୌଦ୍ଧମାନେ ପରମ୍ପରାନୁକ୍ରମେ ରଥ ଉତ୍ସବ ପ୍ରଭୃତି କରୁଥିଲେ । ପୁଣି 'କୋଣାର୍କ ମନ୍ଦିର ସିଦ୍ଧାର୍ଥଙ୍କ ରଥ ଅନୁକରଣରେ ପୂର୍ବେ ଚାରି ଚକ ସହିତ ତିଆର କରାଯାଇଥିଲା', ଏହିପରି ଉକ୍ତି ନିତାନ୍ତ ଅମୂଳକ ଓ ଅଳୀକ ମାତ୍ର । କେବଳ ଅପଣାର ମତ ସମର୍ଥନ ନିମନ୍ତେ ସତ୍ୟର ପ୍ରଳାପ କରିବା କୌଣସିମତେ ସୁନ୍ଦର ନୁହେଁ । ପରନ୍ତୁ ଋକ୍‌ବେଦର ଆରମ୍ଭ ସମୟରୁ ଦେବଦେବୀମାନେ ରଥରେ ଭ୍ରମଣ କରୁଥିବାର କଳ୍ପନା କରାଯାଇଅଛି । ନିଜେ ସୂର୍ଯ୍ୟ ଅନ୍ୟାନ୍ୟ ଦେବତାମାନଙ୍କ ମଧ୍ୟରେ ଆପଣାର ସପ୍ତାଶ୍ୱ ରଥ ନିମନ୍ତେ ଚିରକାଳ ପ୍ରସିଦ୍ଧ ହୋଇ ଅଛନ୍ତି । କୋଣାର୍କକାର ସୂର୍ଯ୍ୟଙ୍କ ରଥ ନିର୍ମାଣ ନିମନ୍ତେ ଏତେ ବୈଦିକ ଓ ପୌରାଣିକ ସାକ୍ଷାତ ପ୍ରମାଣ ଉପେକ୍ଷା କରି ସିଦ୍ଧାର୍ଥଙ୍କ ରଥ ଅନୁକରଣ କରିବାକୁ ଯାଇଥିବା ନିତାନ୍ତ ଅସମ୍ଭବ ଓ ଅସ୍ୱାଭାବିକ ।

ହୁଏନସାଂ 'ଚେଳିତାଲୋ' ବର୍ଣ୍ଣନାରେ ଲେଖିଅଛନ୍ତି * ଯେ, ସେହିଠାରେ ବୌଦ୍ଧ ଓ ବ୍ରାହ୍ମଣମାନେ ମିଳାମିଶା ହୋଇ ଚଳୁଥିଲେ । ସେହି ରାଜଧାନୀରେ ବହୁ ଦେବ ଉପାସକ ବ୍ରାହ୍ମଣ ବାସ କରୁଥିଲେ ଏବଂ କେତେକ ଦେବମନ୍ଦିର ମଧ୍ୟ ଥିଲା । ହୁଏନସାଂ ଏ ଦେଶକୁ ଆସିବାର ପ୍ରାୟ ଦୁଇ ଶତ ବର୍ଷ ପୂର୍ବରୁ ଶୈବଧର୍ମ ଯଥେଷ୍ଟ ବୃଦ୍ଧି ପାଇଥିଲା ଏବଂ ଭୁବନେଶ୍ୱର ଓଡ଼ିଶାର ପ୍ରଧାନ ଶିବକ୍ଷେତ୍ର ସ୍ୱରୂପ ପ୍ରତିଷ୍ଠିତ ହୋଇଥିଲା । ହୁଏନସାଂଙ୍କ ସାକ୍ଷ୍ୟ ଅନୁସାରେ କୋଣାର୍କରେ ହିନ୍ଦୁ ଦେବମନ୍ଦିର ଥିଲା । କୋଣାର୍କ ମନ୍ଦିର ସେହି ଦେବମନ୍ଦିର ମଧ୍ୟରୁ ଗୋଟିଏ ନ ଥାଇ ବୌଦ୍ଧ ମନ୍ଦିରଟିଏ ଥିବାର ସମ୍ଭବ ନୁହେଁ । 'ପ୍ରାଚୀ ମାହାତ୍ମ୍ୟ'ରୁ ଜଣାଯାଏ ଯେ, ଚିତ୍ରୋତ୍ପଳା ନଦୀ କୂଳରେ ବହୁତ ମନ୍ଦିର, ମଠ ପ୍ରଭୃତି ଥିଲା । ବର୍ତ୍ତମାନ କେତେକ ସ୍ଥାନରେ ମନ୍ଦିରର ଭଗ୍ନାବଶେଷ ବହୁତ ଦେଖାଯାଏ । ଏହି ଭଗ୍ନାବଶେଷ ମଧ୍ୟରୁ କେହି କେହି ବୌଦ୍ଧମନ୍ଦିର ହୋଇଥିବା ବିଚିତ୍ର ନୁହେଁ । ବୌଦ୍ଧମାନଙ୍କର ତିରୋଧାନ ସଙ୍ଗେ ସଙ୍ଗେ ବୌଦ୍ଧମନ୍ଦିରମାନ ଯତ୍ନ ଅଭାବରୁ କାଳଗର୍ଭରେ ଲୀନ ହୋଇଗଲା । କୋଣାର୍କ ସାକ୍ଷାତ୍ ସୂର୍ଯ୍ୟଦେବଙ୍କ ମନ୍ଦିର ଓ ବ୍ରାହ୍ମଣ ଧର୍ମର ଗୋଟିଏ ପୀଠ ଥିବା ସ୍ଥଳେ କୋଣାର୍କ ମନ୍ଦିରକୁ ବୌଦ୍ଧମନ୍ଦିର କହିବା ବୃଥା କଳ୍ପନା ମାତ୍ର ।

ଶ୍ରୀ ବିଷବ୍ ସ୍ୱରୂପ କୋଣାର୍କର କେବଳ କେତେକ ଅନୁଷ୍ଠାନରେ ବୌଦ୍ଧସତ୍ତା ଆରୋପ କରିବାରେ ସନ୍ତୁଷ୍ଟ ନୁହନ୍ତି; କୋଣାର୍କ ମନ୍ଦିର ସଙ୍ଗେ ସଙ୍ଗେ ନିଜେ କୋଣାର୍କଦେବଙ୍କୁ ମଧ୍ୟ ସେ ଏହି ମାୟାଜାଲରେ ଛନ୍ଦି ଅଛନ୍ତି । ଏହି ପୁସ୍ତକର ନାନା ସ୍ଥାନରେ କୁହାଯାଇଅଛି ଯେ, କୋଣାର୍କ ମନ୍ଦିର ପତନ ପରେ ରାଜା ନରସିଂହଦେବ ସୂର୍ଯ୍ୟବିଗ୍ରହ ନେଇ ଜଗନ୍ନାଥଙ୍କ ବେଢ଼ା ମଧ୍ୟସ୍ଥ ଇନ୍ଦ୍ରଙ୍କ ମନ୍ଦିରରେ ସ୍ଥାପନ କରିଥିଲେ । ଶ୍ରୀ ବିଷବ୍ ସ୍ୱରୂପ

* Antiquities of Orissa. Vol. I. P. 136.

କହନ୍ତି ଯେ, ସେହି ସୂର୍ଯ୍ୟବିଗ୍ରହ ନିଜେ ବୁଦ୍ଧଦେବଙ୍କ ମୂର୍ତ୍ତି ଏବଂ କୋଣାର୍କ ବେଢ଼ା ମଧ୍ୟରେ ବଡ଼ଦେଉଳର ଦକ୍ଷିଣ-ପଶ୍ଚିମ କୋଣରେ ଯେଉଁ ମନ୍ଦିରର ଭଗ୍ନାବଶେଷ ଦେଖାଯାଏ, ତାହା ମାୟାଦେବୀଙ୍କ ମନ୍ଦିର ଥିଲା । ମାୟାଦେବୀ ବୁଦ୍ଧଦେବଙ୍କର ମାତା । ଅତଏବ କୋଣାର୍କରେ ସ୍ୱୀୟ ମାତାଙ୍କ ସହିତ ନିଜେ ବୁଦ୍ଧଦେବ ପୂଜା ପାଉଥିଲେ ସନ୍ଦେହ ନାହିଁ ।

ଇତିପୂର୍ବେ (ଦ୍ୱିତୀୟ ଓ ସପ୍ତମ ଅଧ୍ୟାୟମାନଙ୍କରେ) ପ୍ରମାଣ କରାଯାଇଅଛି ଯେ, କୋଣାର୍କ ବେଢ଼ାମଧ୍ୟସ୍ଥ ଦକ୍ଷିଣ-ପଶ୍ଚିମ ମନ୍ଦିରରେ ରାମଚଣ୍ଡୀ ପ୍ରତିଷ୍ଠିତ ଥିଲେ । କଳାପାହାଡ଼ର ମନ୍ଦିର ଆକ୍ରମଣ ଦିନଠାରୁ ରାମଚଣ୍ଡୀ ବର୍ତ୍ତମାନ ଲିଆଖିଆ ନଦୀ ମୁହାଣରେ ସ୍ଥାପିତ ହୋଇଅଛନ୍ତି । ଅବଶ୍ୟ ବୁଦ୍ଧଦେବଙ୍କ ମାତାଙ୍କ ନାମ ମାୟାଦେବୀ ଥିଲା ଏବଂ ବୌଦ୍ଧ 'ଜାତକ' ଗ୍ରନ୍ଥ ତାହାଙ୍କୁ 'ମହାମାୟା' ବୋଲି ମଧ୍ୟ କହିଅଛନ୍ତି । ବୁଦ୍ଧଦେବଙ୍କ ଜନ୍ମ ପୂର୍ବରୁ ତାହାଙ୍କ ମାତାର ନାମ ମାୟାଦେବୀ ବା ମହାମାୟା ଥିଲା । କୌଣସି ଦେବଦେବୀ ବା ମହାପୁରୁଷଙ୍କ ନାମ ଅନୁସାରେ ସନ୍ତାନର ନାମକରଣ କରିବା ହିନ୍ଦୁ ଜାତିର ଚିରନ୍ତନ ପ୍ରଥା । ମାୟାଦେବୀଙ୍କ ଜନ୍ମ ସମୟରେ ତାହାଙ୍କର ପିତାମାତା କଦାପି ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ ଯେ ସେମାନଙ୍କର ନବଜାତ ପୁତ୍ର ଦିନେ ସମୁଦାୟ ବ୍ରାହ୍ମଣ ଧର୍ମର ଉଚ୍ଛେଦ ସାଧନ କରିବା ନିମନ୍ତେ ଗୋଟିଏ ନୂତନ ଧର୍ମ ସୃଷ୍ଟି କରିବେ । ସୁତରାଂ ବ୍ରାହ୍ମଣ ଧର୍ମର ଚିରନ୍ତନ ପ୍ରଥା ଅନୁସାରେ ସେମାନେ କନ୍ୟାର ନାମ ମାୟାଦେବୀ ରଖିଥିଲେ । ଅନ୍ତତଃ ଏହ ଘଟଣାରୁ ଜଣାଯାଏ ଯେ, ବୁଦ୍ଧଦେବ ତଥା ବୌଦ୍ଧଧର୍ମର ଆବିର୍ଭାବର ବହୁକାଳ ପୂର୍ବେ ମାୟାଦେବୀ ବା ମହାମାୟାଙ୍କ ନାମ ଭାରତ ପିତାମାତାଙ୍କ ନିକଟରେ ସୁପରିଚିତ ଥିଲା ଏବଂ ସେହି ନାମରେ ନିଶ୍ଚୟ କୌଣସି ଦେବୀ ଥିଲେ ।

ବୌଦ୍ଧ ପୂର୍ବବର୍ତ୍ତୀ ଯୁଗରେ ମାୟା, ମହାମାୟା ନାମ ଯେପରି ସୁପରିଚିତ ଥିଲା, ବର୍ତ୍ତମାନ ମଧ୍ୟ ସେପରି ଅଛି ଏବଂ ସ୍ଥାନେ ସ୍ଥାନେ ଦୁର୍ଗା 'ମହାମାୟା' ନାମରେ ପ୍ରତିଷ୍ଠିତ ଅଛନ୍ତି । ଶିବଙ୍କ ପତ୍ନୀ ଉମା ବା ଦୁର୍ଗା ବୈଦିକ ଯୁଗରୁ ବ୍ରାହ୍ମଣ ଧର୍ମରେ ସ୍ଥାନ ପାଇଅଛନ୍ତି । ଋକ୍‌ବେଦରେ ସୃଷ୍ଟିର କାରଣ ସ୍ୱରୂପ ଈଶ୍ୱରଙ୍କ ସହିତ ଗୋଟିଏ ସ୍ତ୍ରୀ ଶକ୍ତିର କଳ୍ପନା କରାଯାଇଅଛି । ପରେ ସାମ ବେଦରେ ପରିଷ୍କାର ଭାବରେ ଲେଖାଅଛି, 'ଏକାକୀ ରହିବା ନିମନ୍ତେ ଈଶ୍ୱରଙ୍କର ଆଗ୍ରହ ହେଲା ନାହିଁ; ସେ ଅନ୍ୟ ଜଣଙ୍କୁ ପାଇବାର ଇଚ୍ଛା କଲେ ଏବଂ ଇଚ୍ଛାମାତ୍ରେ ହଠାତ୍ ସେ ନିଜେ ସ୍ୱାମୀ ଓ ସ୍ତ୍ରୀ ରୂପରେ ଦୁଇ ଜଣ ହେଲେ ଏବଂ ଉଭୟଙ୍କଠାରୁ ସୃଷ୍ଟିର ଆରମ୍ଭ ହେଲା' । ପରେ ବ୍ରାହ୍ମଣ ଓ ଉପନିଷଦରେ ଏହି ସ୍ତ୍ରୀ ଶକ୍ତି ଉମା, ସରସ୍ୱତୀ ପ୍ରଭୃତି ନାମରେ ପରିଚିତ ହେଲେ । ବେଦାନ୍ତ ଦର୍ଶନରେ ଏହି ଶକ୍ତି ପୁଣି 'ମାୟା' ନାମରେ କଳ୍ପିତ ହୋଇଅଛନ୍ତି । ମାୟା ସୃଷ୍ଟିର ଆଦିକାରଣ; ମାୟା ବ୍ୟତୀତ ବ୍ରହ୍ମ ଶକ୍ତିହୀନ ଓ ନିର୍ବିକାର । ମାୟା ପ୍ରଭାବରେ ବ୍ରହ୍ମଙ୍କ ଶକ୍ତିର ବିକାଶ ପାଏ ଏବଂ ଜଗତ ସୃଷ୍ଟି ହୁଏ । ବେଦାନ୍ତର 'ମାୟା'

ପୁଣି ସାଂଖ୍ୟଦର୍ଶନର 'ପ୍ରକୃତି' । 'ପ୍ରକୃତି' ବ୍ୟତିରେକେ ପୁରୁଷ ସର୍ବ ଶକ୍ତିହୀନ; ସୁତରାଂ ଜଗତର ସୃଷ୍ଟି ବା ପରିଣାମ ଅସମ୍ଭବ । ତନ୍ତ୍ରରେ ଏହି ଆଦ୍ୟା ଶକ୍ତିକୁ 'ଅଷ୍ଟମାତୃକା' ସ୍ୱରୂପ କଳ୍ପନା କରାଯାଇଅଛି ଏବଂ ଖ୍ରୀଷ୍ଟିୟାନ ଧର୍ମ ଅନୁସାରେ ମେରୀ ଯେପରି କୋଳରେ ଯୀଶୁଙ୍କୁ ଧରି ବସିଥିବାର ଦେଖାଯାଏ, ଏହି 'ଅଷ୍ଟମାତୃକା' ପ୍ରତ୍ୟେକେ ସେହିପରି ଗୋଟିଏ ଗୋଟିଏ ସନ୍ତାନ କୋଳରେ ଧରିଥାନ୍ତି । ତନ୍ତ୍ର ମତରେ ଏହା ସୃଷ୍ଟି ପ୍ରକ୍ରିୟାର ନିଦର୍ଶନ ସ୍ୱରୂପ । 'ଶଙ୍କର ବିଜୟ' ଅନୁସାରେ ଶକ୍ତି ଶିବଙ୍କର ବଳକାରିଣୀ ଏବଂ ଶକ୍ତି ବିନା 'ତୃଣଚଳନ କ୍ରିୟା'ରେ ଶିବ ଅସମର୍ଥ । ସୁତରାଂ ଶକ୍ତି ଶିବଙ୍କର କାରଣ; ''ସମସ୍ତ ନିତ୍ୟ ପଦାର୍ଥ ମଧ୍ୟରେ ଶକ୍ତି ଅଧିକ ନିତ୍ୟ'' । ଅତଏବ ଉମା, ମାୟା, ପ୍ରକୃତି, ଶକ୍ତି ପ୍ରଭୃତି ସୃଷ୍ଟିର ଏକ ଆଦ୍ୟା ଦେବୀଙ୍କର ବିଭିନ୍ନ ନାମ ମାତ୍ର । 'ଶ୍ରୀଚଣ୍ଡୀ'ରେ ଏହି ଶକ୍ତିଙ୍କଠାରେ ସାରା ବିଶ୍ୱର ସମସ୍ତ ଶକ୍ତି କେନ୍ଦ୍ରୀଭୂତ ହୋଇଅଛି ଏବଂ ବ୍ରହ୍ମା ଚଣ୍ଡୀଙ୍କୁ ସ୍ତୁତି କରି ତାହାଙ୍କୁ 'ମହାବିଦ୍ୟା', 'ମହାମାୟା' ପ୍ରଭୃତି ଆଖ୍ୟା ଦେଇଅଛନ୍ତି * । ବିଶ୍ୱର ସୃଷ୍ଟି, ସ୍ଥିତି ଓ ପାଳନ ସମସ୍ତ ଏହି ଦେବୀଙ୍କ କାର୍ଯ୍ୟ । ସୁତରାଂ ଏହି ଦେବୀଙ୍କୁ ମହାମାୟା ବା ମାୟାଦେବୀ ସ୍ୱରୂପ ବୌଦ୍ଧଧର୍ମ ପୂର୍ବରୁ ବ୍ରାହ୍ମଣମାନେ ପୂଜା କରି ଆସୁଥିଲେ ଏବଂ ଏହି ଦେବୀଙ୍କର ନାମାନୁସାରେ ବୁଦ୍ଧଦେବଙ୍କ ମାତାଙ୍କର ନାମ 'ମାୟାଦେବୀ' ବା 'ମହାମାୟା' ରଖା ହୋଇଥିଲା । ଯେଉଁମାନେ ବୁଦ୍ଧଦେବଙ୍କର ଐତିହାସିକ ବ୍ୟକ୍ତିତ୍ୱ ଅସ୍ୱୀକାର କରନ୍ତି, ସେମାନେ ବୁଦ୍ଧଦେବଙ୍କ ମାତା ମାୟାଦେବୀଙ୍କୁ ସାଂଖ୍ୟଦର୍ଶନର 'ପ୍ରକୃତି' ବା ବେଦାନ୍ତର 'ମାୟା' ବୋଲି ପ୍ରମାଣ କରନ୍ତି । ଏ ସମସ୍ତ ସତ୍ତ୍ୱେ ଶ୍ରୀ ବିଷଦ୍ ସ୍ୱରୂପ ଆପଣାର ଅଜ୍ଞାନତା ଉପରେ ଏକାନ୍ତ ନିର୍ଭର କରି ବଡ଼ ଦୁଃସାହସର ସହିତ କହନ୍ତି ଯେ, ହିନ୍ଦୁମାନଙ୍କର 'ମାୟାଦେବୀ' ନାମରେ କୌଣସି ଦେବତା ନାହାନ୍ତି ଏବଂ

---

* ''ତ୍ୱମେବ ସା ତ୍ୱଂ ସାବିତ୍ରୀ ତ୍ୱଂ ଦେବୀ ଜନନୀ ପରା ।
ତ୍ୱୟୈବ ଧାର୍ଯ୍ୟତେ ସର୍ବଂ (ତ୍ୱୟୈତଦ୍ଧାର୍ଯ୍ୟତେବିଶ୍ୱଂ)
ତ୍ୱୟୈତତ୍ ସୃଜ୍ୟତେ ଜଗତ୍ ।୭୫।

ତ୍ୱୟୈତତ୍ ପାଲ୍ୟତେ ଦେବି ତ୍ୱମତ୍ସ୍ୟନ୍ତେ ଚ ସର୍ବଦା ।
ବିସୃଷ୍ଟୌ ସୃଷ୍ଟି ରୂପାତ୍ୱଂ ସ୍ଥିତିରୂପା ଚ ପାଲନେ ।୭୬।

ତଥା ସଂହୃତି ରୂପାନ୍ତେ, ଜଗତୋଽସ୍ୟ ଜଗନ୍ମୟେ ।
ମହାବିଦ୍ୟା, ମହାମାୟା, ମହାମେଧା, ମହାସ୍ମୃତିଃ ।୭୭।

× × × ×

ପରାପରାଣାଂ ପରମା ତ୍ୱମେବ ପରମେଶ୍ୱରୀ ।
ଯଚ୍ଚ କିଞ୍ଚିଦ୍ କ୍ୱଚିଦ୍ ବସ୍ତୁ ସଦସଦ ବା ଖିଳାତ୍ମିକେ ।୮୨।
ତସ୍ୟ ସର୍ବସ୍ୟ ଯା ଶକ୍ତିଃ ସାତ୍ୱଂକି ସ୍ତୂୟସେ ତଦା ।''

— ଶ୍ରୀଚଣ୍ଡୀ — ପ୍ରଥମ ଚରିତ୍ରେ ପ୍ରଥମ ମାହାତ୍ମ୍ୟଂ ।

କୋଣାର୍କର 'ମାୟାଦେବୀ' ବୁଦ୍ଧଙ୍କ ମାତା ଭିନ୍ନ ଅନ୍ୟ କେହି ହିନ୍ଦୁ ଦେବୀ ନ ଥିଲେ । କେବଳ ବୌଦ୍ଧ 'ଜାତକ'କୁ ଏକମାତ୍ର ଗ୍ରନ୍ଥ ମନେକରି ଯେଉଁ ଲେଖକ ପ୍ରାଚୀନ ବ୍ରାହ୍ମଣ ଧର୍ମର ତତ୍ତ୍ୱ ବୁଝିବାକୁ ବସନ୍ତି, ଏହି ରୂପ ଅସାର ପ୍ରଳାପ ତାହାଙ୍କ ପକ୍ଷରେ ଏକା ସୁନ୍ଦର ।

ଶ୍ରୀ ବିଷଦ୍ ସ୍ୱରୂପଙ୍କର ଅଧିକ ଦୁଃସାହସର କଥା ଯେ; ସେ ନିଜେ କୋଣାର୍କ ଦେବଙ୍କୁ ବୁଦ୍ଧଦେବଙ୍କର ପ୍ରତିମୂର୍ତ୍ତି ବୋଲି ମନେ କରନ୍ତି । କୋଣାର୍କର ସୂର୍ଯ୍ୟନାରାୟଣ ମୂର୍ତ୍ତି ବର୍ତ୍ତମାନ ପୁରୀ ବେଢ଼ା ମଧ୍ୟସ୍ଥ ଇନ୍ଦ୍ରଙ୍କ ମନ୍ଦିରରେ ସ୍ଥାପିତ ହୋଇ ପୂଜା ପାଉଅଛନ୍ତି । ଉକ୍ତ ମନ୍ଦିରର ବଡ଼ଦେଉଳ ବା ବିମାନ ମଧ୍ୟରେ ସୂର୍ଯ୍ୟ ଓ ଚନ୍ଦ୍ରଙ୍କର ଦୁଇଟି ଧାତବ ମୂର୍ତ୍ତି ସିଂହାସନର ଉଭୟ ପାର୍ଶ୍ୱରେ ସ୍ଥାପିତ ହୋଇ ଅଛନ୍ତି । ଉଭୟ ମୂର୍ତ୍ତିର ପ୍ରତ୍ୟେକ ହସ୍ତରେ ଗୋଟିଏ ଲେଖାଏଁ ପଦ୍ମଫୁଲ ଅଛି । ପଣ୍ଡାମାନଙ୍କ ମୁଖରେ ଶୁଣାଯାଏ ଯେ, ଦକ୍ଷିଣ ପାର୍ଶ୍ୱର ମୂର୍ତ୍ତି (ସୂର୍ଯ୍ୟ ମୂର୍ତ୍ତି) ଅଷ୍ଟ ଧାତୁରେ ନିର୍ମିତ । ଉଭୟ ବିଗ୍ରହର ମଧ୍ୟସ୍ଥଳରେ ସାମାନ୍ୟ ଉଚ୍ଚ ବେଦୀ ଉପରେ ସୂର୍ଯ୍ୟନାରାୟଣଙ୍କ ମୂର୍ତ୍ତି ବିରାଜିତ । ମୂର୍ତ୍ତିଟି ଯେଉଁ ପୀଠ ଉପରେ ନିର୍ମିତ, ତାହା ଦେହରେ ସପ୍ତାଶ୍ୱ ଖୋଦିତ ଅଛି । ମୂର୍ତ୍ତିଟିରୁ ଅବଶ୍ୟ କୋଣାର୍କର ଅନ୍ୟାନ୍ୟ ସୂର୍ଯ୍ୟନାରାୟଣ ମୂର୍ତ୍ତିପରି କାରୁକାର୍ଯ୍ୟର ପରାକାଷ୍ଠା ଦେଖା ପଡୁନାହିଁ । ଶ୍ରୀ ବିଷଦ୍ ସ୍ୱରୂପ କହନ୍ତି, କୋଣାର୍କରୁ ଯେଉଁ ସୂର୍ଯ୍ୟବିଗ୍ରହ ଅଣା ହୋଇଥିଲା, ସେ ଏ ମୂର୍ତ୍ତି ନୁହଁନ୍ତି । ଏହି ମୂର୍ତ୍ତିର ପଛରେ କଳାପଥରର ଆଉ ଗୋଟିଏ ବୃହତ୍ତର ମୂର୍ତ୍ତି ଅଛି । ଶ୍ରୀ ବିଷଦ୍ ସ୍ୱରୂପ ଏହାକୁ କୋଣାର୍କର ସୂର୍ଯ୍ୟ ମୂର୍ତ୍ତି ବୋଲି ସ୍ଥିର କରିଅଛନ୍ତି । ତାହାଙ୍କର ପ୍ରମାଣ ଏହି ଯେ, ସମ୍ମୁଖସ୍ଥ ମୂର୍ତ୍ତିର କାରୁକାର୍ଯ୍ୟ କୋଣାର୍କର ଅନ୍ୟାନ୍ୟ ମୂର୍ତ୍ତିମାନଙ୍କ ପରି ନୁହେଁ । ପଛ ଭାଗର ମୂର୍ତ୍ତିଟିର ମାପ କୋଣାର୍କ ବଡ଼ଦେଉଳ ସିଂହାସନର ଉପର ବେଦୀର ମାପ ସଙ୍ଗେ ପ୍ରାୟ ସମାନ ଏବଂ ଏହା ଗୋଟିଏ ବୁଦ୍ଧମୂର୍ତ୍ତି ।

ଅବଶ୍ୟ ଉପରେ ଯେପରି ସ୍ୱୀକାର କରାଯାଇଅଛି, ଏହି ସୂର୍ଯ୍ୟନାରାୟଣ ମୂର୍ତ୍ତିଙ୍କର କାରୁକାର୍ଯ୍ୟ କୋଣାର୍କ ସହିତ ଆଦୌ ତୁଳନୀୟ ନୁହେଁ । ଏହା ବୋଲି ସେ ମୂର୍ତ୍ତି କୋଣାର୍କର ସୂର୍ଯ୍ୟବିଗ୍ରହ ନୁହେଁ କହିବା ନିତାନ୍ତ ଅଜ୍ଞାନତାର କାର୍ଯ୍ୟ । କୋଣାର୍କର ବର୍ତ୍ତମାନ ମନ୍ଦିର ରାଜା ନରସିଂହଦେବ ୧୨୭୮ ଖ୍ରୀଷ୍ଟାବ୍ଦରେ ଶେଷ କରିଥିଲେ; ସୁତରାଂ କୋଣାର୍କର ବର୍ତ୍ତମାନ ମୂର୍ତ୍ତିଗୁଡ଼ିକ ସେହି ସମୟରେ ଓଡ଼ିଶା କଳାର ଅତି ଉନ୍ନତ ଅବସ୍ଥାରେ ନିର୍ମିତ ହୋଇଥିଲା । ଏହି ମନ୍ଦିର ନିର୍ମାଣ ଦିନଠାରୁ କୋଣାର୍କରେ ସୂର୍ଯ୍ୟପୂଜା ଆରମ୍ଭ ହୋଇନାହିଁ । ରାଜା ନରସିଂହଦେବଙ୍କ ପୂର୍ବରୁ ପୁରନ୍ଦର କେଶରୀ କୋଣାର୍କ ଦେବଙ୍କ ନିମନ୍ତେ ମନ୍ଦିର ନିର୍ମାଣ କରିଥିଲେ ଏବଂ ସେହି ମନ୍ଦିର ଜୀର୍ଣ୍ଣ ହୋଇଯିବାରୁ ବର୍ତ୍ତମାନ ମନ୍ଦିର ନିର୍ମିତ ହୋଇଥିଲା । ପୁରନ୍ଦର କେଶରୀଙ୍କ ପୂର୍ବରୁ କୋଣାର୍କରେ ସୂର୍ଯ୍ୟପୂଜା ଚଳୁଥିବାର ନାନା ସ୍ଥାନରେ କୁହାଯାଇ ଅଛି । ପୀଠଦେବ ସୂର୍ଯ୍ୟନାରାୟଣ ପ୍ରତ୍ୟେକ ବାର ମନ୍ଦିର ନିର୍ମାଣ ସଙ୍ଗେ ସଙ୍ଗେ ନୂତନ

ତିଆର ହେଉଥିଲେ କହିବା ବିଡ଼ମ୍ବନା ମାତ୍ର । ପୁରୀ ମନ୍ଦିରର କାରୁକାର୍ଯ୍ୟ ସହିତ ଜଗନ୍ନାଥ ମୂର୍ତ୍ତିର ସାମ୍ୟ ନାହିଁ । ସତ୍ୟବାଦୀ ଦେବଙ୍କ ଗଠନ ସୌନ୍ଦର୍ଯ୍ୟ ସହିତ ମନ୍ଦିରର କାମ ଆଦୌ ତୁଳନୀୟ ନୁହେଁ । ଏହା ବୋଲି ଜଗନ୍ନାଥଙ୍କୁ ପୁରୀ ମନ୍ଦିରରେ ଏବଂ ସତ୍ୟବାଦୀଙ୍କୁ ସତ୍ୟବାଦୀ ମନ୍ଦିରରେ ପ୍ରତିଷ୍ଠିତ ମୂର୍ତ୍ତି ନୁହନ୍ତି କହିବା ବୃଥା ବିତଣ୍ଡା ବ୍ୟତୀତ ଆଉ କ'ଣ ହୋଇପାରେ ?

ଏହି ସୂର୍ଯ୍ୟ ବିଗ୍ରହର ପଛ ଭାଗରେ ଯେଉଁ ମୂର୍ତ୍ତିଟି ଅଛି ତାହାର କାରୁକାର୍ଯ୍ୟ ଅପେକ୍ଷାକୃତ ସୁନ୍ଦର । କିନ୍ତୁ ରାମଚଣ୍ଡୀ ମନ୍ଦିର ପଶ୍ଚିମ ପାର୍ଶ୍ୱଦେବତା (ଅଷ୍ଟମ ଅଧ୍ୟାୟ ୧ମ ମୂର୍ତ୍ତି) ସୂର୍ଯ୍ୟ ମୂର୍ତ୍ତି ସହିତ ଏହା ଆଦୌ ତୁଳନୀୟ ନୁହେଁ । ପୁଣି କୋଣାର୍କ ବଡ଼ଦେଉଳର ସିଂହାସନ ଉପରେ ଯେଉଁ ବେଦୀ ଅଛି, ତାହା ତୁଳନାରେ ଏହି ମୂର୍ତ୍ତିର ପ୍ରସାର ଅଧିକ ଦେଖାଯାଏ । ବରଂ ସମ୍ମୁଖସ୍ଥ ସୂର୍ଯ୍ୟନାରାୟଣ ମୂର୍ତ୍ତିର ପ୍ରସାର ଉକ୍ତ ବେଦୀ ଉପରେ ଥିବା ଚିହ୍ନ ମାପ ସହିତ ସମାନ । ପୁଣି ପଛ ମୂର୍ତ୍ତିକୁ ବୁଦ୍ଧମୂର୍ତ୍ତି କହିବାର କୌଣସି ବିଶେଷ କାରଣ ନାହିଁ । କେବଳ ଶ୍ରୀ ବିଷନ୍ ସ୍ୱରୂପ ନୁହନ୍ତି, ଶ୍ରୀ ମନମୋହନ ଗାଙ୍ଗୁଲୀ ମଧ୍ୟ ଏହାକୁ ବୁଦ୍ଧଦେବ ବୋଲି କହିଅଛନ୍ତି * । 'କ୍ଷେତ୍ରମାହାତ୍ମ୍ୟ' ଓ ପଣ୍ଡାମାନଙ୍କଠାରୁ ଜଣାଯାଏ ଯେ, ଏହା ଇନ୍ଦ୍ରଙ୍କର ମୂର୍ତ୍ତି ଏବଂ ଇନ୍ଦ୍ରଙ୍କ ମନ୍ତ୍ରରେ ଏହାଙ୍କ ପୂଜା ହୁଏ । ଏପରି ସ୍ଥଳେ ଏହାକୁ ବୁଦ୍ଧମୂର୍ତ୍ତି କହିବାର ପ୍ରମାଣ କ'ଣ ? ଗଠନ ବୁଦ୍ଧଦେବଙ୍କ ମୂର୍ତ୍ତିପରି ଦେଖାଯିବା କୌଣସି ପ୍ରମାଣ ନୁହେଁ । କାରଣ ଯେଉଁ ବୁଦ୍ଧମୂର୍ତ୍ତିମାନ ଦେଖିବାକୁ ମିଳେ, ତାହା କେହି ବୁଦ୍ଧଦେବଙ୍କ ଜୀବିତାବସ୍ଥାରେ ତାହାଙ୍କୁ ସମ୍ମୁଖରେ ରଖି ତିଆର କରି ନ ଥିଲେ । ସେ ସମସ୍ତ ମୂର୍ତ୍ତି କେବଳ କାଳ୍ପନିକ । କୋଣାର୍କରେ ବର୍ତ୍ତମାନ ଯେଉଁ ସୂର୍ଯ୍ୟମୂର୍ତ୍ତିମାନ ଅଛି, ସେ ସବୁ କେତେକାଂଶରେ ବୁଦ୍ଧଙ୍କ ମୂର୍ତ୍ତିପରି ମଧ୍ୟ ଦେଖାଯାଏ । ଯେଉଁପରି କଳ୍ପନାରେ ବୁଦ୍ଧଦେବଙ୍କ ମୂର୍ତ୍ତି ତିଆର କରାଯାଇଅଛି ହିନ୍ଦୁ ଦେବମାନଙ୍କ ମୂର୍ତ୍ତି ମଧ୍ୟ ସେହିପରି ହୋଇଅଛି । ବୁଦ୍ଧଦେବଙ୍କୁ ଯେପରି କାରିଗର ଆଖି ଆଗରେ ଦେଖି ନ ଥିଲେ, ଇନ୍ଦ୍ରଙ୍କୁ ମଧ୍ୟ କେହି ସେହିପରି ଦେଖି ମୂର୍ତ୍ତି ନିର୍ମାଣ କରି ନାହାନ୍ତି । ସୁତରାଂ ଇନ୍ଦ୍ରଙ୍କ ମୂର୍ତ୍ତିକୁ ବୁଦ୍ଧମୂର୍ତ୍ତି ବୋଲି ଭ୍ରମ କରିବା ବିଚିତ୍ର ନୁହେଁ । ବିଶେଷତଃ ଏହି ଇନ୍ଦ୍ରମୂର୍ତ୍ତିର ଉଭୟ ପାର୍ଶ୍ୱରେ ଅପ୍‌ସରୀ ଓ କେତେକ ଦେବତାଙ୍କର ପ୍ରତିକୃତି ଥିବାରୁ ବୁଦ୍ଧମୂର୍ତ୍ତି ଭ୍ରମ ଦୂର ହେଉଅଛି । ଭାରତୀୟ ପ୍ରତ୍ନତତ୍ତ୍ୱ ବିଭାଗର ଆସିଷ୍ଟାଣ୍ଟ ସୁପରିନ୍‌ଟେଣ୍ଡେଣ୍ଟ ଶ୍ରୀଯୁକ୍ତ ରାଖାଲଦାସ ବନ୍ଦୋପାଧ୍ୟାୟ ଏ କ୍ଷେତ୍ରରେ ପ୍ରଧାନ ସାକ୍ଷୀ । ସେ ମହାଶୟ ଖଣ୍ଡିଏ ପତ୍ରରେ ମୋ ପାଖକୁ ଲେଖିଅଛନ୍ତି, ** କୋଣାର୍କର ସୂର୍ଯ୍ୟମୂର୍ତ୍ତି କଦାପି

* Orissa and Her Remains. P. 429.

** " ... I can assure you that the Sungod of Konarka is not a Buddha image. The god in the compound of the Great Temple at Puri (i.e. the image of Indra) is not a Buddha image. It is true that some Buddha and Bodhisathya image have crowns, but I can assure you, that the image in question is not Buddhist."

– Calcuttta, Sept. 25. 1916.

Babu Rakhal Das Banerjee,
Asst. Superintendent of the Archeological Survey of India.

ବୁଦ୍ଧମୂର୍ତ୍ତି ନୁହେଁ। ପୁରୀ ମନ୍ଦିରର ବେଢ଼ା ମଧ୍ୟସ୍ଥ ମୂର୍ତ୍ତି ବୌଦ୍ଧମୂର୍ତ୍ତି ନୁହେଁ। କୌଣସି କୌଣସି ବୌଦ୍ଧମୂର୍ତ୍ତିଙ୍କର ଅବଶ୍ୟ ମସ୍ତକରେ ମୁକୁଟ ଥାଏ; କିନ୍ତୁ ତଥାପି ମୁଁ ଆପଣଙ୍କୁ ନିଶ୍ଚୟ କରି କହୁଅଛି, ଉପସ୍ଥିତ ମୂର୍ତ୍ତି (ପୁରୀ ମନ୍ଦିରର ଇନ୍ଦ୍ରମୂର୍ତ୍ତି) କଦାପି ବୁଦ୍ଧମୂର୍ତ୍ତି ନୁହେଁ।

ପଣ୍ଡିତମାନେ କହନ୍ତି ଯେ, ବ୍ରାହ୍ମଣ ଧର୍ମ ଆପଣାକୁ ସବଳ କରିବା ଏବଂ ବୌଦ୍ଧମାନଙ୍କୁ ଭୁଲାଇବା ନିମନ୍ତେ ବୌଦ୍ଧଧର୍ମକୁ ଅଙ୍ଗୀଭୂତ କରି ନେଇଥିଲା। ଏହା ଯଦି ଉଦ୍ଦେଶ୍ୟ ଥିଲା, ତାହାହେଲେ ବ୍ରାହ୍ମଣଧର୍ମ ମଧ୍ୟରେ ବୌଦ୍ଧଭାବ ଲୋକଦୃଷ୍ଟିରେ ପଡ଼ିଲା ଭଳି ରହିଥିବାର କଥା। ସେପରି ନ ହେଲେ କେବଳ ଅଜ୍ଞାତ ଭାବରେ ବୌଦ୍ଧଧର୍ମ ରହିଥିଲେ, ବୌଦ୍ଧ ଲୋକମାନଙ୍କୁ ଭୁଲାଇବାର ଉଦ୍ଦେଶ୍ୟ ଆଦୌ ସିଦ୍ଧ ହୋଇ ନ ଥିଲା ବୋଲିବାକୁ ହେବ। ଜଗନ୍ନାଥଙ୍କର ବୁଦ୍ଧଦେବଙ୍କଠାରୁ ସମସ୍ତ ପ୍ରଭେଦ ସତ୍ତ୍ୱେ 'ବୁଦ୍ଧାବତାର' ପ୍ରକାଶ୍ୟ ଭାବରେ ଲୋକେ ଜାଣନ୍ତି। ଉପରୋକ୍ତ ମୂର୍ତ୍ତିକୁ ଲୋକେ ବୁଦ୍ଧମୂର୍ତ୍ତିର ଆଶଙ୍କା ନ କରି ବରଂ ପରିଷ୍କାର ରୂପେ ଇନ୍ଦ୍ର ବିଗ୍ରହ ବୋଲି ପୂଜା କରନ୍ତି ଏବଂ ପୂଜା ମଧ୍ୟ ଇନ୍ଦ୍ର ମନ୍ତ୍ରରେ ହୁଏ। ଏପରି ଅବସ୍ଥାରେ ବୁଦ୍ଧଦେବଙ୍କର ମୂର୍ତ୍ତିକୁ ଇନ୍ଦ୍ରମୂର୍ତ୍ତି ବୋଲି ଧରି ପୂଜା କରିବାରେ ବ୍ରାହ୍ମଣ ଧର୍ମ ବୌଦ୍ଧଧର୍ମକୁ ଅଙ୍ଗୀଭୂତ କରିବାର କୌଣସି ଅର୍ଥ ନାହିଁ। ସୁତରାଂ ଶ୍ରୀ ବିଷଦ୍ ସ୍ୱରୂପ ନିଜେ ଆପଣାର ଲକ୍ଷ୍ୟ ହରାଇ କେବଳ ବିପଥଗାମୀ ହୋଇଅଛନ୍ତି ବୋଲିବାକୁ ହେବ।

ଶ୍ରୀ ବିଷଦ୍ ସ୍ୱରୂପ କହନ୍ତି, 'ଅମରକୋଷ' ଅନୁସାରେ ବୁଦ୍ଧଦେବଙ୍କର ଅନ୍ୟ ନାମ 'ଅର୍କବନ୍ଧୁ' ଏବଂ 'କୋଣାର୍କ'ର ଅର୍ଥ କୁଣ ଧାତୁରୁ ସାହାଯ୍ୟ କରିବା ଓ ଅର୍କ ଅର୍ଥାତ୍ ସୂର୍ଯ୍ୟ। ଦେବତାଙ୍କ ନାମ ଅନୁସାରେ ସ୍ଥାନର ନାମ କୋଣାର୍କ ହେଲା। ନରସିଂହଦେବଙ୍କ ତାମ୍ରଶାସନର ୮୭ ଶ୍ଳୋକରେ ଏହି ସ୍ଥାନକୁ 'କୋଣାକୋଣ' କୁହାଯାଇଅଛି। ବୁଦ୍ଧଦେବଙ୍କର ଗୋଟିଏ ନାମ 'କୋଣାଗମନ' ବା 'କୋଣାକମନ'। ଅତଏବ ଶ୍ରୀ ବିଷଦ୍ ସ୍ୱରୂପ କହନ୍ତି, କୋଣାର୍କ ବୁଦ୍ଧଦେବଙ୍କର ନାମାନ୍ତର ମାତ୍ର ଏବଂ ସେଠାରେ ହିନ୍ଦୁ ଧର୍ମ ବାହାନାରେ କେବଳ ବୌଦ୍ଧ ଉପାସନା ହେଉଥିଲା।

ଶ୍ରୀ ବିଷଦ୍ ସ୍ୱରୂପ କୋଣାର୍କର ଯେଉଁ ପ୍ରକାର ଅର୍ଥ କରନ୍ତି, ତହିଁରେ ବିଶେଷ ବୁଦ୍ଧିମତ୍ତାର ପରିଚୟ ମିଳେ; କିନ୍ତୁ ବାସ୍ତବରେ ତାହା କୋଣାର୍କର ପ୍ରକୃତ ଅର୍ଥ କି ନୁହେଁ ସନ୍ଦେହ। କୋଣାର୍କର ସାଧାରଣ ଅର୍ଥ କୋଣ ଓ ଅର୍କ। ପୁରୀ କ୍ଷେତ୍ରର ଉତ୍ତର-ପୂର୍ବ କୋଣରେ ଅର୍କଦେବଙ୍କର କ୍ଷେତ୍ର ଥିବାରୁ ନାମ କୋଣାର୍କ ହୋଇଥିବାର କେହି କେହି ଅର୍ଥ କରନ୍ତି। ଆଉ ମଧ୍ୟ କେହି କେହି କହନ୍ତି ଯେ, ଅଗ୍ନି କୋଣରେ ସୂର୍ଯ୍ୟ ପ୍ରବେଶ କରିବା ସମୟରେ ଏହି ସ୍ଥାନରେ ସମୁଦ୍ରରୁ ବାହାରିବା ମାତ୍ରେ ଦେଖା ଯାଉଥିବାରୁ ସ୍ଥାନର ଏପରି ନାମ ହୋଇଅଛି। କ୍ଷେତ୍ରର ଏହି ଅର୍ଥ ଶ୍ରୀ ବିଷଦ୍ ସ୍ୱରୂପ ନିଜେ ଅନ୍ୟତ୍ର କରିଅଛନ୍ତି। ସେ କହନ୍ତି ଯେ, ଅଗ୍ନି କୋଣରେ ସୂର୍ଯ୍ୟ ଶିବ ରୂପ ଧାରଣ କରନ୍ତି ଏବଂ କୋଣାର୍କ ନିଜେ ଶିବକ୍ଷେତ୍ର। କୋଣାର୍କର କାଳ ନିର୍ଣ୍ଣୟ ପ୍ରକରଣରେ ଯେ ଏହିପରି ଅର୍ଥ କରିଅଛନ୍ତି, ସେ ପୁଣି

କୋଣାର୍କ ଦେବଙ୍କୁ ବୁଦ୍ଧଦେବ ବୋଲି ପ୍ରମାଣ କରିବା ସ୍ଥଳରେ ଅନ୍ୟ ପ୍ରକାର ଅର୍ଥ କରିବା ବଡ଼ ବିଚିତ୍ର କଥା । ପୁରାଣମାନଙ୍କରେ ଏହା 'ରବିକ୍ଷେତ୍ର', 'ସୂର୍ଯ୍ୟକ୍ଷେତ୍ର' ପ୍ରଭୃତି ନାମରେ ଅଭିହିତ ହୋଇଅଛି । 'କୋଣାର୍କ' କେବଳ ସ୍ଥାନୀୟ ନାମ, ଏପରି କି 'ପ୍ରାଚୀମାହାତ୍ମ୍ୟ' ମଧ୍ୟ କୌଣସି ସ୍ଥାନରେ ଏହାକୁ 'ଅର୍କକ୍ଷେତ୍ର' ଭିନ୍ନ 'କୋଣାର୍କ' କହି ନାହାନ୍ତି । ଅତଏବ କେବଳ ସ୍ଥାନୀୟ ନାମ ଭିତରେ ଏତେ ଗୂଢ଼ ଅର୍ଥ ନିହିତ ଥିବା ବଡ଼ ସମ୍ଭବ ବୋଧହୁଏ ନାହିଁ । ପୁଣି 'କୋଣାଗମନ' ସହିତେ 'କୋଣାକୋଣ'ର କି ଅର୍ଥଗତ ସମ୍ବନ୍ଧ ଅଛି, ବୁଝାଯାଏ ନାହିଁ । ଆମ୍ଭମାନଙ୍କ ଅଞ୍ଚଳରେ ଇତର ଜାତି ପାଟକରେ 'ହାତୀ' ଓ 'ଜାତି'ର ସାମଞ୍ଜସ୍ୟ ବିଚାର କରାଗଲା ପରି 'କୋଣାଗମନ' ଓ 'କୋଣାକୋଣ'ର ସାମ୍ୟ ସ୍ଥିର କରିବାରେ ବିଚାରକର୍ତ୍ତାଙ୍କର ବୌଦ୍ଧ ଆନ୍ତରିକତାର ପରିଚୟ ଯେତେ ମିଳେ, ଐତିହାସିକ ଅନୁସନ୍ଧିତ୍ସାର ପରିଚୟ ସେତେ ମିଳେ ନାହିଁ ।

ଯୁକ୍ତି ସ୍ଥଳରେ ଅନ୍ତତଃ 'ମାୟାଦେବୀ'ଙ୍କୁ ବୁଦ୍ଧଦେବଙ୍କ ମାତା, କୋଣାର୍କଦେବଙ୍କୁ ବୁଦ୍ଧଦେବ ବୋଲି ସ୍ୱୀକାର କଲେ ମଧ୍ୟ ବ୍ରାହ୍ମଣଧର୍ମ ବୌଦ୍ଧଧର୍ମକୁ ଏତେ ପ୍ରକାଶ୍ୟ ଓ ବିସ୍ତର ଭାବରେ ଅଙ୍ଗୀଭୂତ କରିଥିବା ସମ୍ପୂର୍ଣ୍ଣ ଅସମ୍ଭବ ଜଣାପଡ଼େ । ଏହିପରି ପ୍ରକାଶ୍ୟ ଭାବରେ ବୌଦ୍ଧପୂଜା ଭାରତବର୍ଷର ଅନ୍ୟ କୌଣସି ବ୍ରାହ୍ମଣଧର୍ମର କ୍ଷେତ୍ରରେ ଦେଖାଯାଏ ନାହିଁ । ଜଗନ୍ନାଥ ଅବଶ୍ୟ ବୌଦ୍ଧାବତାର ବୋଲି କେହି କେହି କହନ୍ତି ଏବଂ କେହି କେହି ମଧ୍ୟ ଅସ୍ୱୀକାର କରନ୍ତି । ପୁରାଣମାନଙ୍କ ମଧ୍ୟରେ ବ୍ରହ୍ମ ପୁରାଣ ପ୍ରଭୃତି ଜଗନ୍ନାଥଙ୍କର ବୌଦ୍ଧାବତାର ସ୍ୱୀକାର କରନ୍ତି ନାହିଁ । ବ୍ରହ୍ମ ପୁରାଣ ଅଷ୍ଟ ଶତାବ୍ଦୀର ଗ୍ରନ୍ଥ । ସୁତରାଂ ରାଜେନ୍ଦ୍ର ଲାଲ ପ୍ରଭୃତି ଅନୁମାନ କରନ୍ତି ଯେ, ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରେ (ଅର୍ଥାତ୍ ବ୍ରହ୍ମ ପୁରାଣ ପରେ) ଜଗନ୍ନାଥଙ୍କର ବୌଦ୍ଧାବତାର କଳ୍ପନା କରାଗଲା * । କୋଣାର୍କ ଅଷ୍ଟମ ଶତାବ୍ଦୀ ପୂର୍ବରୁ ପ୍ରତିଷ୍ଠିତ । ହିନ୍ଦୁରାଜ୍ୟର ସର୍ବପ୍ରଧାନ ଦେବତା ଜଗନ୍ନାଥଙ୍କର ବୌଦ୍ଧାବତାର କଳ୍ପନା କରିବା ପୂର୍ବରୁ କୋଣାର୍କରେ ସାକ୍ଷାତ ବୁଦ୍ଧମୂର୍ତ୍ତି ବ୍ରାହ୍ମଣମାନେ ପୂଜା କରୁଥିବା ଅସମ୍ଭବ ବୋଧହୁଏ । ଅଷ୍ଟମ ଶତାବ୍ଦୀ ପରେ (ଶଙ୍କରାଚାର୍ଯ୍ୟଙ୍କ ବିଜୟ ପରେ) ବୌଦ୍ଧଧର୍ମର ପ୍ରାବଲ୍ୟ ଆଦୌ ନ ଥିଲା; ସୁତରାଂ ତାହାକୁ ଅଙ୍ଗୀଭୂତ କରିବା ବ୍ରାହ୍ମଣଧର୍ମ ପକ୍ଷରେ କୌଣସି ପ୍ରୟୋଜନ ନ ଥିଲା ** । ଜଗନ୍ନାଥଙ୍କର ବୌଦ୍ଧାବତାର ସ୍ୱୀକାର କଲେ ମଧ୍ୟ ତାହାଙ୍କଠାରେ ବୌଦ୍ଧଧର୍ମ ଏତେ ପ୍ରକାଶ୍ୟ ଭାବରେ ଅଙ୍ଗୀଭୂତ ହୋଇଥିବାର ଜଣାପଡ଼େ ନାହିଁ । ଜଗନ୍ନାଥଙ୍କର ନାମ ଓ ରୂପ ସହିତ ବୁଦ୍ଧଦେବଙ୍କର କୌଣସି ସାମଞ୍ଜସ୍ୟ ନାହିଁ । ଲୋକ ସାଧାରଣ ଦେବଙ୍କର ଆକୃତି ଓ ନାମଦ୍ୱାରା ଯେତେ ଆକୃଷ୍ଟ ହୁଅନ୍ତି, ତାହାଙ୍କର ସୁଦୂର

* Antiquities of Orissa. Vol. II. P. 107.

** Havell - Aryan Rule in India. P. P. 131-139 & P. 145.

"How Buddha came to be worshipped, how the idea Buddhisattwa arose and how Hindu Trinity was taken up for Buddha, Sangha and Dharma."

ଐତିହାସିକ ସମ୍ବନ୍ଧ ସେତେ ଭାବି ପାରନ୍ତି ନାହିଁ । ସୁତରାଂ କୋଣାର୍କରେ ସାକ୍ଷାତ ବୁଦ୍ଧମୂର୍ତ୍ତି ଓ ତାହାଙ୍କ ମାତା ମାୟାଦେବୀ ଏତେ ପ୍ରକାଶ୍ୟ ଭାବରେ ପୂଜା ପାଉଥିବା ସମ୍ପୂର୍ଣ୍ଣ ଅଳୀକ ଓ ଅସମ୍ଭବ । ହୁଏତ କୋଣାର୍କ ମନ୍ଦିରର ଶିଳ୍ପରେ ସ୍ଥାନେ ସ୍ଥାନେ ବୌଦ୍ଧ ଆଭାସ ଥାଇପାରେ, କୌଣସି କୌଣସି ମୂର୍ତ୍ତି ବୌଦ୍ଧ ଛାଞ୍ଚରେ ଗଢ଼ା ହୋଇପାରିଥିବ; କିନ୍ତୁ ନିଜେ କ୍ଷେତ୍ରର ପୀଠଦେବ ବୁଦ୍ଧମୂର୍ତ୍ତି ଓ 'ମାୟାଦେବୀ' ବୁଦ୍ଧଦେବଙ୍କର ମାତା ପ୍ରଭୃତି ଅନୁମାନ ନିତାନ୍ତ ଅମୂଳକ ଓ ପରିତ୍ୟଜ୍ୟ ।

କୋଣାର୍କ ମନ୍ଦିରର କେତେଗୁଡ଼ିଏ ମୂର୍ତ୍ତି ବୌଦ୍ଧଦୃଶ୍ୟ ଅନୁସାରେ ଗଠିତ ହୋଇଥିବାର ଶ୍ରୀ ବିଷନ୍ ସ୍ୱରୂପ ପ୍ରମାଣ କରନ୍ତି । ସେଥି ନିମନ୍ତେ ସେ ବୌଦ୍ଧ 'ଜାତକ'ରୁ ବୁଦ୍ଧଦେବଙ୍କ ଜୀବନର ଘଟଣାବଳୀ ବହୁତ ଉଦ୍ଧାର କରିଅଛନ୍ତି ।

ପ୍ରଥମ ଦୃଶ୍ୟ - ଶିକ୍ଷାଦାନ (ଅଷ୍ଟମ ଅଧ୍ୟାୟର ୫ମ ମୂର୍ତ୍ତି) । ଏହି ଦୃଶ୍ୟରେ ଶିଷ୍ୟମାନଙ୍କ ମଧ୍ୟରେ ଜଣେ ରାଜା ଥିବାର ଶ୍ରୀ ବିଷନ୍ ସ୍ୱରୂପ ଅନୁମାନ କରନ୍ତି ଏବଂ କହନ୍ତି ଯେ, ବୁଦ୍ଧଦେବଙ୍କ ପୂର୍ବବର୍ତ୍ତୀ ଯୁଗରେ ବେଳେ ବେଳେ ବ୍ରାହ୍ମଣମାନେ ରାଜାମାନଙ୍କୁ ପୁରାଣ କାହାଣୀ ଶୁଣାଉଥିଲେ ସତ; କିନ୍ତୁ ବର୍ତ୍ତମାନ ଦୃଶ୍ୟରେ ଯେପରି ଦେଖାଯାଏ, ରାଜାଠାରୁ ପ୍ରଜା ପର୍ଯ୍ୟନ୍ତ ନାନା ଶ୍ରେଣୀର ଶିଷ୍ୟମାନଙ୍କୁ ଏକାସନରେ ବସାଇ ଶିକ୍ଷା ଦେବା ବ୍ରାହ୍ମଣ ପ୍ରଥା ନ ଥିଲା । ଏହା ଗୋଟିଏ ବୌଦ୍ଧଦୃଶ୍ୟ ଏବଂ ବୁଦ୍ଧଦେବ ନିଜେ ଛାତ୍ରମାନଙ୍କୁ ଉପଦେଶ ଦେଉଅଛନ୍ତି ।

ଉପରୋକ୍ତ ଯୁକ୍ତି ଓ ଅନୁମାନ ବ୍ରାହ୍ମଣ, ଆଚାର୍ଯ୍ୟ ଓ ଗୁରୁମାନଙ୍କ ଶିକ୍ଷାଦାନ ପ୍ରଣାଳୀ ବିଷୟରେ ଶ୍ରୀ ବିଷନ୍ ସ୍ୱରୂପଙ୍କ ଅଜ୍ଞାନତାର ଯଥେଷ୍ଟ ପରିଚୟ ଦେଉଅଛି ମାତ୍ର । ବର୍ତ୍ତମାନ ପ୍ରାୟ ପ୍ରତ୍ୟେକେ ଜାଣନ୍ତି, ପ୍ରାଚୀନ ଭାରତରେ ରାଜାଠାରୁ ପ୍ରଜା ପର୍ଯ୍ୟନ୍ତ ସମସ୍ତେ ଏକ ଭାବରେ ଗୁରୁକୁଳରେ ରହି ବ୍ରହ୍ମଚର୍ଯ୍ୟ ପାଳୁଥିଲେ । ବ୍ରହ୍ମଚାରୀମାନେ ରାଜା ହେଉନ୍ତୁ ବା ପ୍ରଜା ହେଉନ୍ତୁ, ଏକ ଆସନରେ ବସି ଏକ ସମୟରେ, ଏକ ଭକ୍ତିରେ ଗୁରୁଙ୍କ ମୁଖରୁ ଶିକ୍ଷା ଗ୍ରହଣ କରୁଥିଲେ । ବୁଦ୍ଧଦେବଙ୍କର ଆବିର୍ଭାବ ପୂର୍ବରୁ ଏହି ଦୃଶ୍ୟ ଭାରତରେ ନିତ୍ୟ ନୈମିତ୍ତିକ ଥିଲା । ବୁଦ୍ଧଦେବ ନିଜେ ରାଜପୁତ୍ର, ବୌଦ୍ଧଧର୍ମ ପ୍ରଚାର ପୂର୍ବରୁ ସେ ନିଜେ ବହୁ ଶିଷ୍ୟପରିବେଷ୍ଟିତ ଗୁରୁମାନଙ୍କ ନିକଟରେ ଶିକ୍ଷା ଗ୍ରହଣ କରୁଥିଲେ । କୋଶଳ ରାଜା ପ୍ରସେନଜିତ୍ ଉତ୍ତର କାଳରେ ବୁଦ୍ଧଦେବଙ୍କଠାରୁ ନବ ଧର୍ମ ଗ୍ରହଣ କରିଥିଲେ; କିନ୍ତୁ ତାହାର ବହୁ ପୂର୍ବରୁ ଯୌବନରେ ସେ ତକ୍ଷଶିଳାରେ ସୁଚାରୁ ଅଧ୍ୟୟନ କରିଥିଲେ * । ରାଜଧାନୀମାନଙ୍କରେ ଶିକ୍ଷାର ଯେତେ ସୁବ୍ୟବସ୍ଥା ଥିଲେ ମଧ୍ୟ ରାଜକୁମାର ଓ ପ୍ରଜାମାନେ ରାଜଧାନୀ ବିଦ୍ୟା ଶେଷ ପରେ ତକ୍ଷଶିଳାକୁ ନ ଗଲେ ଶିକ୍ଷା ଶେଷ ହେଉ ନ ଥିଲା ** ।

* Rhys Davids - 'Buddhist India.' P. 8.

** Havell - 'Aryan Rule in India.'

ସେତେବେଳେ ତକ୍ଷଶିଳାରେ ବର୍ତ୍ତମାନ ପ୍ରଥା ପରି ସ୍ୱତନ୍ତ୍ର ରାଜକୁମାର କଲେଜ ନ ଥିଲା । ରାଜା ଓ ପ୍ରଜା, ଧନୀ ଓ ଦରିଦ୍ର ସମସ୍ତେ ବ୍ରହ୍ମଚର୍ଯ୍ୟ ଅବସ୍ଥାରେ ଏକ ଜୀବନ ଧାରଣ କରୁଥିଲେ । ବୁଦ୍ଧ ସେହି ପ୍ରଥା ଅନୁସରଣ କରି ପ୍ରଥମତଃ ବ୍ରାହ୍ମଣ ଆଚାର୍ଯ୍ୟମାନଙ୍କଠାରୁ ଶିକ୍ଷା ଗ୍ରହଣ କରିଥିଲେ ଏବଂ ପରେ ନିଜେ ରାଜା ଓ ପ୍ରଜା ଉଭୟଙ୍କୁ ଏକତ୍ର କରି ଧର୍ମଶିକ୍ଷା ଦେଉଥିଲେ । ସୁତରାଂ ଉପସ୍ଥିତ ଶିକ୍ଷାଦାନ ଦୃଶ୍ୟରେ କେବଳ ବୌଦ୍ଧପ୍ରଥା ଆରୋପ କରିବା ଅଯଥା ବୌଦ୍ଧ ଆନ୍ତରିକତାର ପରିଚୟ ମାତ୍ର ।

ଦ୍ୱିତୀୟ ଦୃଶ୍ୟ - ଅସ୍ତ୍ରକୌଶଳ ପ୍ରଦର୍ଶନ (ଅଷ୍ଟମ ଅଧ୍ୟାୟର ୧୪ଶ ଦୃଶ୍ୟ) । ସିଦ୍ଧାର୍ଥ ଦିନେ ଆତ୍ମୀୟ ସ୍ୱଜନଙ୍କ ସମ୍ମୁଖରେ ଅସ୍ତ୍ରକୌଶଳ ଦେଖାଇଥିବା ବୌଦ୍ଧ 'ଜାତକ'ରେ ବର୍ଣ୍ଣିତ ଅଛି । ସେହି ହେତୁରୁ ବିଷୟ୍ ସ୍ୱରୂପ କହନ୍ତି ଯେ, ଏହି ରାଜା ନିଜେ ବୁଦ୍ଧଦେବ ଏବଂ ଏଥିରେ ତାହାଙ୍କର ଅସ୍ତ୍ରକୌଶଳ ପ୍ରଦର୍ଶନ ବର୍ଣ୍ଣିତ ଅଛି ।

ଅବଶ୍ୟ ବୁଦ୍ଧଦେବ ଯୌବନରେ ଅସ୍ତ୍ରକୌଶଳରେ ପାରଦର୍ଶୀ ଥିଲେ, ସନ୍ଦେହ ନାହିଁ ଏବଂ ଆତ୍ମୀୟ ସ୍ୱଜନଙ୍କ ସମ୍ମୁଖରେ ନିଜ ବିଦ୍ୟା ଦେଖାଇଥିବେ; କିନ୍ତୁ ଏହି ଅସ୍ତ୍ରବିଦ୍ୟା ଶିକ୍ଷା ଓ ଅସ୍ତ୍ରକୌଶଳ ପ୍ରଦର୍ଶନ ବୁଦ୍ଧଦେବ ନୂତନ କରି ଆରମ୍ଭ କରି ନ ଥିଲେ । ରାଜପୁତ୍ରମାନେ ଅସ୍ତ୍ରବିଦ୍ୟାରେ ପାରଦର୍ଶୀ ହେବା ତାହାଙ୍କ ପୂର୍ବବର୍ତ୍ତୀ ସଭ୍ୟତାର ଗୋଟିଏ ପ୍ରଥା ଥିଲା । ବୁଦ୍ଧଦେବ ସେହି ପ୍ରଥା ଅନୁସରଣ କରିଥିଲେ ମାତ୍ର । ଅସ୍ତ୍ରକୌଶଳ ଦେଖାଇଲାବେଳେ ବ୍ରାହ୍ମଣଧର୍ମ ବିରୁଦ୍ଧରେ ଗୋଟିଏ ନୂତନ ଧର୍ମ ବାହାର କରିବା ସେ କଦାପି ଭାବି ନ ଥିଲେ; ସୁତରାଂ ଯୌବନରେ ସେ କୌଣସି ନୂତନତ୍ୱ ଦେଖାଇ ନ ଥିଲେ । ରାଜା ନରସିଂହଦେବ କୋଣାର୍କ ନିର୍ମାତା । କୋଣାର୍କ-ଶିଳ୍ପୀ ଅବଶ୍ୟ ମନ୍ଦିର ଦେହରେ ଆପଣା ରାଜାଙ୍କ ଜୀବନର କେତୋଟି ଘଟଣା ଦେଖାଇଥିବା ସମ୍ପୂର୍ଣ୍ଣ ସମ୍ଭବ । ମୁଁ ଓ ମୋର ବନ୍ଧୁମାନେ ଏହି ଦୃଶ୍ୟ ଦେଖିବା ମାତ୍ରେ ରାଜାଙ୍କୁ ନରସିଂହଦେବ ବୋଲି ସ୍ୱତଃ ଭାବିନେଲୁ । ଷ୍ଟର୍ଲିଙ୍ଗଙ୍କ ପ୍ରଶଂସା ଅନୁସାରେ ନରସିଂହଦେବ ଜଣେ ପ୍ରଧାନ ବୀର ପୁରୁଷ ଥିଲେ ଏବଂ ଅସ୍ତ୍ରକୌଶଳ ପ୍ରଭୃତିରେ ସେ ଏତେ ପାରଦର୍ଶୀ ଥିଲେ ଯେ, ଲୋକେ ତାହାଙ୍କଠାରେ ଅତିମାନୁଷିକ ଶକ୍ତି ଆରୋପ କରିଥିଲେ । ସେ ଅତ୍ୟନ୍ତ ଯୁଦ୍ଧପ୍ରିୟ ଥିଲେ ଏବଂ ଦାକ୍ଷିଣାତ୍ୟରେ ବହୁ ଦୂର ପର୍ଯ୍ୟନ୍ତ ଯୁଦ୍ଧଯାତ୍ରା କରିଥିଲେ * । ଅତଏବ କୋଣାର୍କ-ଶିଳ୍ପୀ ଆପଣାର ରାଜା ନରସିଂହଦେବଙ୍କର ଶରଭେଦ-କୌଶଳ ନ ଦେଖାଇ ବୁଦ୍ଧଦେବଙ୍କ ଅସ୍ତ୍ରକୌଶଳ ନିମନ୍ତେ ବୌଦ୍ଧ 'ଜାତକ' ଗ୍ରନ୍ଥ ଖୋଜିଥିବା ନିତାନ୍ତ ଅସମ୍ଭବ ବୋଧହୁଏ ।

* His great personal strength, and skill in athletic excercises seem to have invested him with a sort of supernatural character in the eyes of his subjects, ....He is said to have been of a very martial turn, and to have waged a long war to the southward." – Sterling's 'Orissa.' P. 93.

ତୃତୀୟ ଦୃଶ୍ୟ - ଶେଷଦେବ (ଅଷ୍ଟମ ଅଧ୍ୟାୟର ୧ମ ଦୃଶ୍ୟ) । ଏହି ଶେଷଦେବଙ୍କୁ ଶ୍ରୀ ବିଷନ୍ ସ୍ୱରୂପ ନିଜେ ବୁଦ୍ଧଦେବ ମନେ କରନ୍ତି । 'ଜାତକ' ଗ୍ରନ୍ଥରୁ ଗୋଟିଏ ଉପାଖ୍ୟାନ ଉଦ୍ଧାର କରି ସେ କହନ୍ତି ଯେ, ଗୌତମ ବୁଦ୍ଧତ୍ୱ ପାଇବା ପୂର୍ବରୁ 'ସୁଜାତା' ଓ 'ପୁନା' ନାମ୍ନୀ ଦୁଇଟି ମହିଳା ତାହାଙ୍କୁ ପୂଜା କରିଥିଲେ । ସର୍ପ ଫେଣରୁ ସେ ଅନୁମାନ କରନ୍ତି ଯେ, ଗୌତମ ବୁଦ୍ଧତ୍ୱ ପାଇବା ପରେ ସପ୍ତାହେ ପର୍ଯ୍ୟନ୍ତ ପ୍ରବଳ ଝଡ଼ ଓ ବର୍ଷା ହେଲା, ତହିଁରୁ ତାହାଙ୍କୁ ରକ୍ଷା କରିବା ପାଇଁ ସର୍ପରାଜ ମୁଚାଲିନ୍ଦ (Muchalinda) ତାହାଙ୍କୁ ଆଶ୍ରୟ ଦେଇଥିଲେ । ସେ ଅନ୍ୟତ୍ର କହନ୍ତି ଯେ, * ହିନ୍ଦୁମାନଙ୍କର ଏପରି ଦେବତା କୌଣସିଠାରେ ଦେଖାଯାଏ ନାହିଁ । ଅନନ୍ତ ମୂର୍ତ୍ତି ସର୍ବଦା ଶୟନ ଅବସ୍ଥାରେ ବର୍ଣ୍ଣିତ ଅଛନ୍ତି ଏବଂ କେବଳ ଲକ୍ଷ୍ମୀ ତାହାଙ୍କ ପାଦ ତଳେ ବସିଥାନ୍ତି, ଇତ୍ୟାଦି ।

ଅବଶ୍ୟ ଏହିପରି ଦୃଶ୍ୟଟିଏ ବୌଦ୍ଧ ଜାତକରେ ବର୍ଣ୍ଣିତ ହୋଇଥିବ; କିନ୍ତୁ ହିନ୍ଦୁମାନଙ୍କର ଏପରି ଦେବତା ନାହାନ୍ତି କହିବା ପୁରାଣ ବିଷୟରେ ଅନଭିଜ୍ଞତା ଦେଖାଇବା ମାତ୍ର । ଅନନ୍ତ ଶୟନରେ ବିଷ୍ଣୁ ଶୟାନ ବା ଅର୍ଦ୍ଧଶୟାନ ଅବସ୍ଥାରେ ବର୍ଣ୍ଣିତ ଅଛନ୍ତି ସତ; କିନ୍ତୁ କେବଳ ଲକ୍ଷ୍ମୀ ଯେ ତାହାଙ୍କ ପାଖରେ ଥାଆନ୍ତି ତାହା ନୁହେଁ । ଲକ୍ଷ୍ମୀଙ୍କ ସଙ୍ଗେ ସଙ୍ଗେ ସରସ୍ୱତୀ ମଧ୍ୟ ବିଷ୍ଣୁଙ୍କ ପାଖରେ ଥାଆନ୍ତି ** । ଶ୍ରୀକୃଷ୍ଣଙ୍କ ଅଙ୍ଗୁଷ୍ଠପାନ ଦୃଶ୍ୟରେ ଶ୍ରୀକୃଷ୍ଣ ସପ୍ତଫେଣୀ ସର୍ପ ତଳେ ବସିଥାନ୍ତି ଏବଂ ତାହାଙ୍କ ମାତା ପାଖରେ ଠିଆ ରହିଥାନ୍ତି । ତେବେ ଏହି ଦୃଶ୍ୟ ଏ ସମସ୍ତ ନ ବୁଝାଇ ବରଂ ଶେଷଦେବଙ୍କୁ ଦେଖାଉଅଛି । ଶେଷଦେବଙ୍କର ସହସ୍ର ଶୀର୍ଷ; କିନ୍ତୁ ଚିତ୍ର ଓ ସ୍ଥାପତ୍ୟର ସୁବିଧା ନିମନ୍ତେ ସେ ସପ୍ତଶୀର୍ଷ ବିଶିଷ୍ଟ ହୋଇଥାନ୍ତି । ଶେଷଦେବଙ୍କର 'ଇଳା' ଓ 'ଉର୍ଜ୍ଜା' ନାମରେ ଦୁଇଟି ଶକ୍ତି ସର୍ବଦା ସ୍ତ୍ରୀ ରୂପରେ ପାଖରେ ଥାଆନ୍ତି । ଆଠଗଡ଼ରେ ଶେଷଦେବଙ୍କର ଗୋଟିଏ ସୁନ୍ଦର ମୂର୍ତ୍ତି ପୂଜା ପାଉଥିବାର ଦେଖାଯାଏ । ଶ୍ରୀ ବିଷନ୍ ସ୍ୱରୂପ ସୁଜାତା ଓ ପୁନାଙ୍କର ଉପାଖ୍ୟାନ ଯାହା ଉଦ୍ଧାର କରିଅଛନ୍ତି, ସେହି ସମୟ ଓ ବୁଦ୍ଧଦେବଙ୍କର ସର୍ପରାଜ ଆଶ୍ରୟରେ ରହିବା ସମୟ ମଧ୍ୟରେ ଯଥେଷ୍ଟ ବ୍ୟବଧାନ ଥିଲା । କୋଣାର୍କ-ଶିଳ୍ପୀ ଆପଣାର ସୁପରିଚିତ ପୁରାଣ ପ୍ରସିଦ୍ଧ ଶେଷଦେବଙ୍କୁ ପରିହାର କରି 'ଜାତକ' ଦେହରୁ ବୁଦ୍ଧଦେବଙ୍କ ଜୀବନର ଦୁଇଟି ଏପରି ଅସଂଲଗ୍ନ ଉପାଖ୍ୟାନ ଏକତ୍ର ଯୋଗ କରି ଗୋଟିଏ ମୂର୍ତ୍ତି ଗଢ଼ିଥିବା ବଡ଼ ଅସମ୍ଭବ ବୋଧହୁଏ ନାହିଁ କି ?

ଏଥି ପୂର୍ବେ କୋଣାର୍କ ମନ୍ଦିରର ପୀଠ ବର୍ଣ୍ଣନାରେ (ଚତୁର୍ଥ ଅଧ୍ୟାୟ) କୁହାଯାଇଅଛି ଯେ, ପୀଠର ତଳପଥର ଦେହରେ ଏକ ଶ୍ରେଣୀ ହାତୀମୂର୍ତ୍ତି ଖୋଳା ଅଛି । ମନ୍ଦିର ବର୍ଣ୍ଣନା ଅଧ୍ୟାୟମାନଙ୍କରୁ ଜଣାଯାଇଅଛି ଯେ, କୋଣାର୍କରେ ହାତୀ କାମ ବଡ଼ ପ୍ରଚୁର ହୋଇଅଛି

* Konarka. P. 31.

** ଭାଗବତ – ଦଶମ ସ୍କନ୍ଧ, ପୂର୍ବଭାଗର ପଞ୍ଚମ ଅଧ୍ୟାୟ

ଏବଂ ବିଶେଷତଃ ସିଂହାସନର ସମ୍ମୁଖରେ ଜଣେ ରାଜା ବସି ରହି ହାତୀକୁ କିଛି ଖୁଆଉ ଅଛନ୍ତି (ପଞ୍ଚମ ଅଧ୍ୟାୟ) । ଏହି ସମସ୍ତ ଦେଖି ଶ୍ରୀ ବିଷନ୍ ସ୍ୱରୂପ ସିଦ୍ଧାନ୍ତ କରିଅଛନ୍ତି ଯେ, କୋଣାର୍କର ହାତୀ କାମ କେବଳ ବୌଦ୍ଧ ଭାବର ପରିଚୟ ଦେଉଅଛି ଏବଂ ସିଂହାସନ ଦୃଶ୍ୟରେ ନିଜେ ବୁଦ୍ଧଦେବ ହାତୀ ମଣ କରି ଖୁଆଉଅଛନ୍ତି । 'ଜାତକ'ରେ ବର୍ଣ୍ଣିତ ଅଛି, ବୁଦ୍ଧଦେବଙ୍କ ଜନ୍ମ ପୂର୍ବରୁ ତାହାଙ୍କ ମାତା ଗୋଟିଏ ଶୁକ୍ଳ ହାତୀ ତାହାଙ୍କ ଗର୍ଭ ମଧ୍ୟରେ ପ୍ରବେଶ କରିବାର ସ୍ୱପ୍ନ ଦେଖିଥିଲେ । ସୁତରାଂ ବୌଦ୍ଧମାନେ ହାତୀକୁ ଅତ୍ୟନ୍ତ ପବିତ୍ର ମନେ କରୁଥିଲେ ।

ହାତୀ ବୌଦ୍ଧମାନଙ୍କ ପ୍ରତି ବଡ଼ ପବିତ୍ର ଥାଇପାରେ; କିନ୍ତୁ ହିନ୍ଦୁମାନଙ୍କ ପ୍ରତି ତାହା ବୌଦ୍ଧମାନଙ୍କ ଅପେକ୍ଷା ଅଳ୍ପ ପବିତ୍ରତର ନୁହେଁ । ଇନ୍ଦ୍ର ଦେବତାମାନଙ୍କ ରାଜା ଏବଂ ହାତୀ ତାହାଙ୍କ ବାହାନ । ବୃଷ୍ଟିର ପ୍ରଧାନ କାରଣ ଐରାବତ । ଐରାବତ କେବଳ ଅନୁଗ୍ରହ କଲେ ସୃଷ୍ଟିରେ ପାଳକ ହେବ, ଲୋକେ ସୁଖ ସ୍ୱାଚ୍ଛନ୍ଦ୍ୟରେ ରହିବେ । ଐରାବତ ଅନୁଗ୍ରହ କରି ନ ଥିଲେ, ତ୍ରିଲୋକ ପାବିନୀ ଗଙ୍ଗା ମର୍ତ୍ତ୍ୟକୁ ଅବତରଣ କରିପାରି ନ ଥାନ୍ତେ । ବର୍ତ୍ତମାନ ମଧ୍ୟ ପୁରୀରେ କୌଣସି କୌଣସି ଯାତ୍ରା ଉପଲକ୍ଷରେ ଦେବଙ୍କ ଆଗେ ଆଗେ ମାହନ୍ତ ସୁସଜ୍ଜିତ ହାତୀ ଉପରେ ବସି ଆସନ୍ତି ଏବଂ ଯାତ୍ରୀମାନେ ସଭକ୍ତିରେ ହାତୀ ଥୋଡ଼ରେ ପଇସା ଦେବାରେ ଆନନ୍ଦ ପ୍ରକାଶ କରନ୍ତି ।

ଏ ସବୁ ଧର୍ମ ବିଚାର ବ୍ୟତୀତ ଓଡ଼ିଶାର ନାନା ସ୍ଥାନରେ ହାତୀ କାମ ଏତେ ହୋଇଥିବାର ପ୍ରଧାନ କାରଣ, ଓଡ଼ିଶାର ଜଙ୍ଗଲମାନ ହାତୀ ନିମନ୍ତେ ଚିରକାଳ ପ୍ରସିଦ୍ଧ । ଓଡ଼ିଶାର ବୌଦ୍ଧ ଗୁମ୍ଫାମାନଙ୍କରେ ଯେପରି ହାତୀ କାମ ଦେଖାଯାଏ, ହିନ୍ଦୁ ମନ୍ଦିରମାନଙ୍କରେ ମଧ୍ୟ ସେହିପରି ପ୍ରଚୁର ଦେଖାଯାଏ । ଶ୍ରୀଯୁକ୍ତ ମନମୋହନ ଗାଙ୍ଗୁଲୀ ଯଥାର୍ଥତଃ କହନ୍ତି * ଓଡ଼ିଶା ଆବହମାନ କାଳରୁ ହାତୀ ନିମନ୍ତେ ପ୍ରସିଦ୍ଧ; ସୁତରାଂ ଓଡ଼ିଶାର ନାନା ସ୍ଥାନରେ ହାତୀ ପ୍ରଚୁର ପରିମାଣରେ ଖୋଦିତ ଥିବାର ଦେଖାଯାଏ । ଓଡ଼ିଶା ହାତୀର କଥା ମହାଭାରତରେ ଲେଖାଅଛି, ଏମନ୍ତ କି କାଶ୍ମୀର ଓ ଭାରତର ଅନ୍ୟାନ୍ୟ ସୀମାନ୍ତ ପ୍ରଦେଶମାନଙ୍କରେ ହାତୀ ଧରିବା ବିଷୟରେ ଓଡ଼ିଶା ସୁଖ୍ୟାତି ପ୍ରଚଳିତ ଥିଲା । 'ରାଜତରଙ୍ଗିଣୀ'ରେ ଏହାର ଉଲ୍ଲେଖ ଥିବାର ଦେଖାଯାଏ । ଚନ୍ଦ୍ରଗୁପ୍ତ କଳିଙ୍ଗର ଗଜ ସାହାଯ୍ୟରେ ନନ୍ଦମାନଙ୍କୁ ପରାଜୟ କରିଥିଲେ । କାଳିଦାସ କଳିଙ୍ଗ ରାଜାଙ୍କୁ 'ଗଜ ସାଧନ' ଆଖ୍ୟା ପ୍ରଦାନ କରିଛନ୍ତି । ବର୍ତ୍ତମାନ

---

* "Orissa had been noted from time immemorial for elephants, and hence we find them abundantly sculptured. Reference to it is found in the 'Mahavarat'; the reputation of the place for the rearing of elephants reached even Kashmere and the farthest limits of India. I have come across a reference to it in the 'Rajtarangini', a book of the 12th century."

– Orissa and Her Remains. P. 74.

ସୁଦ୍ଧା ଦାକ୍ଷିଣାତ୍ୟରେ କଳିଙ୍ଗର ରାଜା 'ଗଜପତି' ନାମରେ ଅଭିହିତ * । ଅତଏବ ଓଡ଼ିଶା ହାତୀ ନିମନ୍ତେ ଚିର ପ୍ରସିଦ୍ଧ ଥିଲା ଏବଂ ହାତୀ ଧରିବା ଓ ପାଳିବା, ହାତୀରେ ଯୁଦ୍ଧ କରିବା ଓ ମୃଗୟାଦି ବ୍ୟସନ କରିବା ଓଡ଼ିଆ ରାଜାମାନଙ୍କର ନିତ୍ୟ ବିଳାସ ବସ୍ତୁ ଥିଲା । ଏହି ଶିକ୍ଷା ଓଡ଼ିଶାକୁ ବୌଦ୍ଧଧର୍ମ ଦେଲା କି ଜଙ୍ଗଲମାନ ହାତୀମୟ ଥିବାରୁ ଓଡ଼ିଆମାନେ ହାତୀର ଏତେ ବ୍ୟବହାର କରୁଥିଲେ ? ବୁଦ୍ଧଦେବ ଅବଶ୍ୟ ହାତୀ ପାଳିଥିବେ; କାରଣ ବୁଦ୍ଧଦେବଙ୍କ ରାଜ୍ୟ କପିଳବାସ୍ତୁ ହିମାଳୟ ଜଙ୍ଗଲ ନିକଟରେ । ବୁଦ୍ଧଦେବଙ୍କର ହାତୀ ପାଳିବା କୋଣାର୍କ ଶିଳ୍ପୀଙ୍କୁ ଏତେ ପବିତ୍ର ବୋଧ ହୋଇଥିଲା ଯେ, ସେମାନେ କୋଣାର୍କ ଦେବଙ୍କ ସିଂହାସନରେ ତାହାର ଦୃଶ୍ୟ ଖୋଦନ କରିଥିଲେ; କିନ୍ତୁ ବୌଦ୍ଧଗୁମ୍ଫାମାନଙ୍କର ଶିଳ୍ପୀମାନେ କୌଣସି ଗୁମ୍ଫାରେ ଆପଣାର ଧର୍ମ ପ୍ରତିଷ୍ଠାତାଙ୍କର ଏହିପରି ଗୋଟିଏ ଦୃଶ୍ୟ ଦେଖାଇ ନ ଥିଲେ ।

ଅବଶ୍ୟ ବୌଦ୍ଧ ଗୁମ୍ଫାମାନଙ୍କରେ ହାତୀର ବିସ୍ତର ବ୍ୟବହାର କରାଯାଇଛି । ରାଣୀ ଗୁମ୍ଫାର ଦକ୍ଷିଣ ଓ ବାମ ଭାଗରେ ହାତୀଯୁଦ୍ଧର ଦୃଶ୍ୟ ଅଛି; ଜଣେ ପୁରୁଷ ଓ କେତେକ ସ୍ତ୍ରୀ ଗଦାଦ୍ୱାରା ହାତୀ ସଙ୍ଗେ ଯୁଦ୍ଧ କରୁଅଛନ୍ତି । ଅନନ୍ତ ଗୁମ୍ଫାର ଦୁଇ ପାଖରେ ଦୁଇଟି ହାତୀ ଓ ମଧରେ ଲକ୍ଷ୍ମୀଙ୍କର ମୂର୍ତ୍ତି; ଗଣେଶ ଗୁମ୍ଫାର ବାରଣ୍ଡାରେ ଥିବା ପାହାଚର ଦୁଇ ପାଖରେ ହାତୀ ମୂର୍ତ୍ତି ଅଛି । ହାତୀ ଯଦି ବୌଦ୍ଧମାନଙ୍କ ପ୍ରତି ଏତେ ପବିତ୍ର ଥିଲା, ତାହାହେଲେ ଯେଉଁ ପାହାଚ ଉପରେ ମନୁଷ୍ୟ ପାଦ ଦେଇ ଯିବେ, ତାହା ଦେହରେ ହାତୀର ଦୃଶ୍ୟ ରହିଥିଲା କିପରି ? ପୁଣି ଆପଣାର ଆରାଧ ବସ୍ତୁକୁ ଭକ୍ତ କଦାପି ହତ୍ୟା କରିବାକୁ ପ୍ରସ୍ତୁତ ହୁଏନାହିଁ । ତାହାହେଲେ ରାଣୀ ଗୁମ୍ଫାର ଦୁଇ ପାଖରେ ବୌଦ୍ଧ ସ୍ତ୍ରୀ ଓ ପୁରୁଷ କିପରି ପବିତ୍ର ହାତୀ ମାରିବାକୁ ଗଦା ଉତ୍ତୋଳନ କରୁଅଛନ୍ତି ? ଅନ୍ତତଃ କୋଣାର୍କ ରତ୍ନ ସିଂହାସନ ଦେହରେ ଯେଉଁ ପବିତ୍ରତା ସହିତ ହାତୀ ମୂର୍ତ୍ତି ଅଛି, ସେପରି ପବିତ୍ରତା କୌଣସି ଗୁମ୍ଫା ଦେହର ହାତୀରେ ଦେଖାଯାଏ ନାହିଁ । ଗୁମ୍ଫାମାନଙ୍କରେ ହାତୀର ଏତେ ଦୃଶ୍ୟ ଅଛି; କିନ୍ତୁ କୌଣସି ଗୁମ୍ଫା ଦେହରେ ବୁଦ୍ଧଦେବଙ୍କର ହାତୀ ପାଳିବା ବା ଖୁଆଇବାର ଦୃଶ୍ୟ ଦେଖାଯାଏ ନାହିଁ । ଏ ସମସ୍ତ ବିଚାର କଲେ କୋଣାର୍କ ସିଂହାସନର ହାତୀ ଦୃଶ୍ୟରେ ବୁଦ୍ଧଦେବଙ୍କ ହାତୀ ପାଳନ ଆରୋପ କରିବା କେବଳ ବୃଥା ତର୍କ ମାତ୍ର । ଶିଳ୍ପୀ ଆପଣାର ପ୍ରବଳପ୍ରତାପ ମହାରାଜା ନରସିଂହଦେବଙ୍କର ହସ୍ତୀ ପାଳନ ଦୃଶ୍ୟ କୋଣାର୍କ ଦେବଙ୍କ ସିଂହାସନରେ ଦେଖାଇ ଆପଣା ରାଜଭକ୍ତିର ପରିଚୟ ଦେଇଥିଲେ । ଏହି ହାତୀ ଦୃଶ୍ୟର ଉପରେ ବୀର ପୁରୁଷ ରାଜାଙ୍କର ଦେବଦର୍ଶନ ଦୃଶ୍ୟ ଥିବାରୁ ଉପରୋକ୍ତ ସିଦ୍ଧାନ୍ତ ମଧ ଆହୁରି ଦୃଢ଼ୀଭୂତ ହୁଏ । କେବଳ ଏହି ଦୃଶ୍ୟ ନୁହେଁ, କୋଣାର୍କର ଯେ କୌଣସି ହାତୀ କାମରେ ବୌଦ୍ଧଭାବ ଆରୋପ କରିବା କେବଳ ହିନ୍ଦୁ ପଦ୍ଧତି ଓ ଓଡ଼ିଶାର ପ୍ରାକୃତିକ ଅବସ୍ଥା ବିଷୟରେ ଯଥେଷ୍ଟ ଅନଭିଜ୍ଞତା

* Havell's – "Aryan Rule in India" P. P. 348-49.

"Malwa Raja Hushang came to Orissa for elephantis."

ଦେଖାଇବା ବ୍ୟତୀତ ଅନ୍ୟ କିଛି ନୁହେଁ । ହାତୀ ବୌଦ୍ଧମାନଙ୍କ ପ୍ରତି ପବିତ୍ର ଥିବାର ଯଦି କିଛି କାରଣ ଥିଲା, ହିନ୍ଦୁ ବିଶେଷତଃ ଓଡ଼ିଆମାନଙ୍କ ପ୍ରତି ପବିତ୍ର ହେବାରେ ତାହା ଅପେକ୍ଷା ବହୁତର କାରଣ ଅଛି । ଏଥିରେ ବୌଦ୍ଧଧର୍ମର ଆଦୌ କୌଣସି ପ୍ରଭାବ ଥିବାର କଥା ନୁହେଁ ।

ଏହିରୂପ ଅସାର କଳ୍ପନା ବଳରେ ଶ୍ରୀ ବିଷଦ୍ ସ୍ୱରୂପ କୋଣାର୍କର ଅନ୍ୟାନ୍ୟ କେତେକ ସୂକ୍ଷ୍ମ ସୂକ୍ଷ୍ମ ବିଷୟରେ ବୌଦ୍ଧଭାବ ଆରୋପ କରିଅଛନ୍ତି; ସେ ସମସ୍ତର ବିଚାର ଅନାବଶ୍ୟକ ।

ଏପର୍ଯ୍ୟନ୍ତ ମୁଁ ଦେଖାଇଅଛି ଯେ, କୋଣାର୍କରେ ଯେଉଁ କାମ ହୋଇଅଛି, ତହିଁରେ ବୌଦ୍ଧାବଶେଷର କୌଣସି ପରିଚୟ ନାହିଁ । ବର୍ତ୍ତମାନ ଦେଖାଇବାର ପ୍ରୟୋଜନ ଯେ, ବୌଦ୍ଧ ଶିଳ୍ପର ଯାହା ବିଶେଷତ୍ୱ ଏବଂ ଯଥାର୍ଥ ବୌଦ୍ଧ ସ୍ତୂପ ବା ମନ୍ଦିରମାନଙ୍କରେ କେବଳ ଯାହା ବିଶେଷ ଭାବରେ ଦେଖାଯାଏ, ତାହାର କୌଣସି ଆଭାସ କୋଣାର୍କରେ ନାହିଁ । ବୌଦ୍ଧ ସ୍ତୂପମାନଙ୍କରେ ବେଢ଼ା ପ୍ରାଚୀର ନାନା କାରୁକାର୍ଯ୍ୟରେ ଭୂଷିତ ଥାଏ । ସାଞ୍ଚି ପ୍ରଭୃତି ବୌଦ୍ଧ ସ୍ତୂପମାନଙ୍କର ବେଢ଼ା ପ୍ରାଚୀର ଦେହରେ 'ଜାତକ'ର ନାନା ଘଟଣାବଳୀ ଖୋଦିତ ଥିବାର ଜଣାଯାଏ ଏବଂ ଆହୁରି କେତେକ ଦୃଶ୍ୟ ମଧ୍ୟ ଅଛି, ସେ ସମସ୍ତଙ୍କର ପରିଚୟ ଏପର୍ଯ୍ୟନ୍ତ ମିଳି ନାହିଁ * । ଏହି ରୂପେ ବୌଦ୍ଧ ମନ୍ଦିରମାନଙ୍କ ବେଢ଼ାର କାରୁକାର୍ଯ୍ୟ ଇତିହାସରେ ବହୁ ପ୍ରଶଂସିତ; କିନ୍ତୁ କେବଳ କୋଣାର୍କ କାହିଁକି ଓଡ଼ିଶାର କୌଣସି ମନ୍ଦିରର ବେଢ଼ାପ୍ରାଚୀରରେ କିଛି ମାତ୍ର କାରୁକାର୍ଯ୍ୟ ନାହିଁ ** । ଅର୍ଥବ୍ୟୟ ସଂକୋଚ ବା ପରିଶ୍ରମ ଲାଘବ କଦାପି ଏହି ପ୍ରଧାନ ଅଭାବର କାରଣ ହୋଇ ନ ପାରେ । ଯେଉଁ ରାଜାମାନେ ଏତେ ଏତେ ଧନ୍ ଦେବକାର୍ଯ୍ୟରେ ଅମ୍ଳାନ ବଦନରେ ବ୍ୟୟ କରୁଥିଲେ, ସେମାନେ ପ୍ରାଚୀର ମଣ୍ଡନ କରିବାରେ ବ୍ୟୟସଂକୋଚର ଭାବ ହୃଦୟରେ ଆଦୌ ସ୍ଥାନ ଦେଇ ନ ଥିଲେ । ଯେଉଁ ରୁଚି ଅନୁସାରେ ମନ୍ଦିରଗୁଡ଼ିକ ସେମାନେ ଏତେ ଅଳଙ୍କୃତ କରୁଥିଲେ ତାହାଦ୍ୱାରା ସେମାନେ ପ୍ରାଚୀର ମଣ୍ଡନ କରିଥାନ୍ତେ । ପୁଣି କୋଣାର୍କ ଓ ପୁରୀ ମନ୍ଦିର ଅପେକ୍ଷା ଭୁବନେଶ୍ୱର ମନ୍ଦିର ଓଡ଼ିଶାରେ ଆଦ୍ୟ । ତାହାର ବେଢ଼ା ଏକାବେଳକେ ମୁଣ୍ଡା ଏବଂ ପୁରୀ ଓ କୋଣାର୍କରେ ବେଢ଼ା ଉପରେ ତ୍ରିକୋଣ ବିଶିଷ୍ଟ ପଥର ସମାନ ସମାନ ବ୍ୟବଧାନରେ ଥିବାରୁ କିଞ୍ଚିତ ହେଲେ ସୁନ୍ଦର ଦେଖାଯାଏ । ବୌଦ୍ଧଧର୍ମର ପ୍ରଭାବ ହ୍ରାସ ପାଇବା ସଙ୍ଗେ ସଙ୍ଗେ ଭୁବନେଶ୍ୱର ମନ୍ଦିର ନିର୍ମିତ ହୋଇଥିଲା । ହିନ୍ଦୁ ଶିଳ୍ପରେ ଯଦି କିଛି ବୌଦ୍ଧ ପ୍ରଭାବ ଥାନ୍ତା, ତାହାହେଲେ ଭୁବନେଶ୍ୱରରେ ବୌଦ୍ଧ ଶିଳ୍ପର ବିଶେଷତ୍ୱ ବିଶେଷ ଭାବରେ ଦେଖା ଯାଇଥାନ୍ତା । ସୁତରାଂ

* Rhys Davids - Buddhist India. P. 198.

** Antiquities of Orissa – 'The walls were invariably plain, both inside and outside in marked contrast to the Buddhist railings which are most elaborately sculptured" - Vol. I. P. 33.

ଅନୁମାନ କରାଯାଏ ଯେ, ହିନ୍ଦୁ ଶିଳ୍ପ ଏତେ ବିସ୍ତର ଭାବରେ ବୌଦ୍ଧଭାବ ଅଙ୍ଗୀଭୂତ କରିବାର ଚେଷ୍ଟା ନ କରି ବରଂ ଯେତେ ପାରିଥିଲା ଦୂରରୁ ତାହା ପରିହାର କରିଥିଲା । କାଳକ୍ରମେ ବିରୋଧଭାବ ମିଳାଇ ଯିବାରୁ ପୁରୀ ଓ କୋଣାର୍କ ବେଢ଼ାକୁ ସାମାନ୍ୟ ସୁନ୍ଦର କରିବାର ଚେଷ୍ଟା କରାଗଲା ।

ଓଡ଼ିଶାର ପ୍ରଧାନ ପ୍ରଧାନ ବଡ଼ଦେଉଳ ବାଡ଼ଠାରୁ ବେକୀ ପର୍ଯ୍ୟନ୍ତ ସାଧାରଣତଃ ଦଶ ଭୂମିରେ ବିଭକ୍ତ । ବୁଦ୍ଧଗୟାର ବୌଦ୍ଧମନ୍ଦିରରେ ଏହିପରି କେତେକ ଭୂମି ଅଛି ଏବଂ ପ୍ରତ୍ୟେକ ଭୂମି ମଧ୍ୟକୁ ଆଲୋକ ଓ ପବନ ଗତାୟତ ନିମନ୍ତେ ବ୍ୟବଧାନମାନ ପଞ୍ଜର ସ୍ୱରୂପ ଥାଏ; କିନ୍ତୁ ଓଡ଼ିଶା ମନ୍ଦିରମାନଙ୍କରେ ଲେଶମାତ୍ର ଛିଦ୍ର ନ ଥାଏ । ଭୁବନେଶ୍ୱରର ପଣ୍ଡାମାନଙ୍କଠାରୁ ଶୁଣାଯାଏ ଯେ, କେହି ଥରେ ଭୁବନେଶ୍ୱର ମନ୍ଦିରର ଉପର ଭୂମିକୁ ଯାଇଥିଲେ; କିନ୍ତୁ ଆଲୋକ ଓ ପବନ ଅଭାବରୁ ପ୍ରାଣତ୍ୟାଗ କରିଥିଲେ । ବୁଦ୍ଧଗୟା ମନ୍ଦିରରେ ପଞ୍ଜର ଥିବାରୁ ଉପର ଭୂମିମାନଙ୍କରେ ଠାକୁରଙ୍କର ଅଳଙ୍କାରାଦି ସୁନ୍ଦର ରହିପାରେ । ବୌଦ୍ଧପ୍ରଥା ଅନୁକରଣ କରିବାର ସାମାନ୍ୟ ପ୍ରବୃତ୍ତି ଥିଲେ, ଓଡ଼ିଆ ଶିଳ୍ପୀମାନେ କ୍ଷୁଦ୍ର କ୍ଷୁଦ୍ର ଛିଦ୍ରଦ୍ୱାରା ଉପର ଭୂମିକୁ ଆଲୋକିତ କରିପାରିଥାନ୍ତେ; ସୁତରାଂ ଏତେ ଅନ୍ତରାୟ ସତ୍ତ୍ୱେ କୋଣାର୍କରେ ବୌଦ୍ଧାଭାସ ଆରୋପ କରିବା କେବଳ ବିଡ଼ମ୍ବନା ମାତ୍ର ।

ଉପରଲିଖିତ ଯୁକ୍ତିଦ୍ୱାରା ମୁଁ ପ୍ରମାଣ କରିଅଛି ଯେ କୋଣାର୍କକାର ସାକ୍ଷାତ ଭାବରେ କୌଣସି ବୌଦ୍ଧଦୃଶ୍ୟ ଦେଖାଇ ନାହାନ୍ତି । ବୌଦ୍ଧଧର୍ମ ଯେତେବେଳେ ଏତେ କାଳ ଏତେ ପ୍ରବଳ ଥିଲା, ହିନ୍ଦୁମାନେ ବୌଦ୍ଧଭାବ କେତେକ ସ୍ଥଳରେ ଗ୍ରହଣ କରିଥିବା ନିତାନ୍ତ ଅସମ୍ଭବ ନୁହେଁ । ଶ୍ରୀ ବିଷନ୍ ସ୍ୱରୂପ ପ୍ରଭୃତି ବୌଦ୍ଧ ପକ୍ଷପାତୀ ଲେଖକମାନଙ୍କର ଯୁକ୍ତିତର୍କରୁ ଜଣାଯାଏ ଯେ, ବୌଦ୍ଧଧର୍ମ ଭାରତୀୟ ଭାବ ଓ କାର୍ଯ୍ୟରୁ ଯେପରି ଏକାବେଳକେ ସ୍ୱତନ୍ତ୍ର ଏବଂ ଏହା ଯେପରି ଅନ୍ୟ ସ୍ଥାନରୁ ଆସି ଭାରତରେ ହଠାତ୍ ଆରୋପିତ ହୋଇଥିଲା । ପରନ୍ତୁ ବୌଦ୍ଧଧର୍ମ ଭାରତର ଧର୍ମ, ଭାରତୀୟ ଭାବ ଓ କାର୍ଯ୍ୟଦ୍ୱାରା ଆବିର୍ଭୂତ ଓ ପରିବର୍ଦ୍ଧିତ ହୋଇଥିଲା । ଯେତେ ବ୍ରାହ୍ମଣଧର୍ମ ବିରୁଦ୍ଧରେ ଯାଇଥିଲେ ସୁଦ୍ଧା କେହି ବ୍ରାହ୍ମଣଧର୍ମର ରୀତି ନୀତି, ସେହି ଚିରନ୍ତନ ପ୍ରଥା ପଦ୍ଧତି ସମୁଦାୟ ବୌଦ୍ଧଧର୍ମ ବ୍ୟାପୀ ରହିଥିଲା । ଯେଉଁ ଲେଖକମାନେ ବୁଦ୍ଧଦେବଙ୍କର ଐତିହାସିକ ବ୍ୟକ୍ତିତ୍ୱ ଅସ୍ୱୀକାର କରି କହନ୍ତି ଯେ, ବୌଦ୍ଧ ଧର୍ମ ସାଂଖ୍ୟ ଦର୍ଶନ ଉପରେ ପ୍ରତିଷ୍ଠିତ, ବୁଦ୍ଧ ନିଜେ ସାଂଖ୍ୟକାର କପିଳ, ବୁଦ୍ଧଙ୍କ ଜନ୍ମସ୍ଥାନ କପିଳବାସ୍ତୁ ବା ସେହି କପିଳଙ୍କର ବାସସ୍ଥାନ ଏବଂ ତାହାଙ୍କ ମାତା ମାୟାଦେବୀ ଅର୍ଥାତ୍ ସାଂଖ୍ୟର 'ପ୍ରକୃତି' ବା 'ମାୟା' ଇତ୍ୟାଦି; ସେମାନଙ୍କର ସମସ୍ତ ଭ୍ରମ ସତ୍ତ୍ୱେ ଏହି ସତ୍ୟ ଅନ୍ତତଃ ସ୍ୱୀକାର କରିବାକୁ ହେବ ଯେ, ବୌଦ୍ଧଧର୍ମ ଅନ୍ୟ କୌଣସିଠାରୁ ଆସି ହଠାତ୍ ଭାରତରେ ପ୍ରବେଶଲାଭ କରି ନ ଥିଲା; ବରଂ ଯୁଗ ଯୁଗାନ୍ତର ବ୍ୟାପୀ ଭାରତ ଜ୍ଞାନ, ଧର୍ମ ଓ

ଦର୍ଶନରୁ ତାହାର କ୍ରମିକ ଉତ୍ପତ୍ତି ହୋଇଥିଲା * । ଯାହାସବୁ ବୌଦ୍ଧପ୍ରଥା ବା ରୀତି ନୀତି ବୋଲି ଆଜି ଲେଖକମାନଙ୍କୁ ପ୍ରତୀତ ହୁଏ; ତାହା ମଧ୍ୟରୁ ଅଧିକାଂଶ ପୂର୍ବବର୍ତ୍ତୀ ବୈଦିକ ଓ ପୌରାଣିକ ଯୁଗରୁ ବୌଦ୍ଧଧର୍ମରେ ଗ୍ରହଣ କରାଯାଇଥିଲା । ସୁତରାଂ ବୌଦ୍ଧଧର୍ମ ଯେତେବେଳେ ବ୍ରାହ୍ମଣଧର୍ମର ଗୋଟିଏ ଶାଖା ସଦୃଶ ତାହାର ଭାବ ଓ ଚିନ୍ତାରେ ବର୍ଦ୍ଧିତ ହୋଇଥିଲା, ବୌଦ୍ଧଧର୍ମର କେତେକ ନୂତନ ଭାବ ବ୍ରାହ୍ମଣଧର୍ମ ଅଙ୍ଗୀଭୂତ କରିଥିବା ବଡ଼ ବିଚିତ୍ର ନୁହେଁ ।

ଅତଏବ କୋଣାର୍କର କୌଣସି କାର୍ଯ୍ୟରେ ବୌଦ୍ଧାଭାସ ପଡ଼ି ପାରିଥିବ; କିନ୍ତୁ ମୋର କହିବାର କଥା ଏହି ଯେ, ଶ୍ରୀ ବିଷନ୍ ସ୍ୱରୂପ କୋଣାର୍କର ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ, ପୀଠ ଦେବଙ୍କଠାରୁ ଆରମ୍ଭ କରି କ୍ଷୁଦ୍ର କ୍ଷୁଦ୍ର ମୂର୍ତ୍ତି ପର୍ଯ୍ୟନ୍ତ, ମନ୍ଦିରର ଆକୃତିଠାରୁ ସୂକ୍ଷ୍ମ ସୂକ୍ଷ୍ମ ଶିଳ୍ପଛଟା ପର୍ଯ୍ୟନ୍ତ, ସର୍ବତ୍ର ଯେ ଏକ ବୁଦ୍ଧ ଓ ବୌଦ୍ଧଧର୍ମ ଆରୋପ କରିଅଛନ୍ତି, ତାହା ନିତାନ୍ତ କାଳ୍ପନିକ ଓ ଅସମ୍ଭବ । ଶ୍ରୀ ବିଷନ୍ ସ୍ୱରୂପ ନିଜେ ପ୍ରମାଣ କରନ୍ତି ଯେ, ବର୍ତ୍ତମାନ କୋଣାର୍କ ମନ୍ଦିର ଶୈବଧର୍ମାବଲମ୍ବୀ କେଶରୀ ବଂଶୀୟ କୀର୍ତ୍ତି (ପୂର୍ବେ ନବମ ଅଧ୍ୟାୟରେ ସମାଲୋଚନା କରାଯାଇଅଛି) । ତାହାଙ୍କର ସେହି ପ୍ରମାଣଦ୍ୱାରା ମଧ୍ୟ କୋଣାର୍କରେ ବୌଦ୍ଧପୂଜା ଏକାବେଳକେ ଅସମ୍ଭବ ବୋଧହୁଏ । ବୌଦ୍ଧଧର୍ମକୁ ବିଦୂରିତ କରିବା ବିଷୟରେ ଶୈବଧର୍ମ ମୂଳ ** । ହଣ୍ଟରଙ୍କ ଏହି ମତ ଶ୍ରୀ ବିଷନ୍ ସ୍ୱରୂପ ନିଜେ ମଧ୍ୟ ସ୍ୱୀକାର କରନ୍ତି *** । ଅନ୍ୟ ଧର୍ମ ପ୍ରତି ବୈଷ୍ଣବଧର୍ମର ଭକ୍ତି ଓ ପ୍ରେମରେ ଯେତେ ଉଦାରତା ଥିଲା, ଶୈବ ଧର୍ମରେ ସେତେ ନ ଥିଲା । ବୈଷ୍ଣବଧର୍ମ ବୌଦ୍ଧଧର୍ମକୁ ଯେତେ ଅଙ୍ଗୀଭୂତ କରି ପାରିଥିଲା, ଶୈବଧର୍ମ ସେତେ କରି ନ ଥିଲା **** । ବାସ୍ତବିକ ଶୈବଧର୍ମ ପ୍ରଚାର ସମୟରେ ବୈଷ୍ଣବଧର୍ମ ପ୍ରବଳ ହୋଇଥିଲେ, ବୈଷ୍ଣବଧର୍ମରେ ଯାହା କିଛି ଅଛି, ତାହା ଅପେକ୍ଷା ଆହୁରି ଅଧିକ ବୌଦ୍ଧଭାବ ଅଙ୍ଗୀଭୂତ ହୋଇପାରିଥାନ୍ତା । ଶେଷର ହଣ୍ଟର ଯେପରି କହନ୍ତି, ***** ବୈଷ୍ଣବଧର୍ମ

---

* Havell – Aryan Rule in India. P. P. 50-51.

"Buddhism was not an innovation, but grew quite out of Hinduism."

Rhys David's Buddhism.

P. P. 33-34 & P. 181.

** Hunter – Statistical Account of Bengal. Vol. XIX. P. 81.

*** Konarka – "It is therefore clear that Buddhism in Orissa was replaced everywhere by Shaivism. P. 6-7

**** "Buddhism in Orissa does not appear to have possessed that power of assimilation with Siva worship which it exhibited on the slopes of the Himalayas."

– Hunter's Orissa Vol. I. P. 273.

***** Expiring Buddhism effected its last great compromise with Vaisnavism, and the two combined to supplant the terrors of Saivism by a religion of beauty."

– Hunter's Orissa. Vol. I. P. 282.

ବୌଦ୍ଧଭାବରେ ଉନ୍ନତତର ହୋଇ ଶୈବଧର୍ମର ସମୂଳ ଉତ୍ପାଟନରେ ପ୍ରୟାସୀ ହେଲା; ସୁତରାଂ ଶୈବଧର୍ମ ବୌଦ୍ଧଧର୍ମର କିଛି ଗ୍ରହଣ କରି ନ ଥିବା ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ । ପରନ୍ତୁ ଅଶୋକଙ୍କ ସମୟରେ ମଧ୍ୟ ବୌଦ୍ଧ ଧର୍ମ ହିନ୍ଦୁଧର୍ମଦ୍ୱାରା ପ୍ରଭାବିତ ହୋଇଥିଲା * ।

ଶୈବ ଓ ବୈଷ୍ଣବଧର୍ମ ଯେଉଁ ଯୁଗରେ ପ୍ରବଳ ହୋଇଥିଲା, ତାହା ବିଚାର କଲେ ଜଣାଯାଏ ଯେ, ଶୈବଧର୍ମ ବୌଦ୍ଧଧର୍ମକୁ ଅଙ୍ଗୀଭୂତ କରିବାର ପ୍ରୟୋଜନ ମଧ୍ୟ ନ ଥିଲା । ଦେଶରେ ବୌଦ୍ଧଧର୍ମ କ୍ରମେ କ୍ରମେ ଅବନତ ହେଲା ଏବଂ ତାହାର ପୂର୍ବ ନୈତିକତା ହରାଇ ବସିଲା । ଦେଶର ଚିନ୍ତାଶୀଳ ବ୍ୟକ୍ତିମାନେ ଓ ମୁଖ୍ୟ ମୁଖ୍ୟ ରାଜପୁରୁଷମାନେ ବୌଦ୍ଧଧର୍ମ ପ୍ରତି ବିମୁଖ ହୋଇ ବ୍ରାହ୍ମଣଧର୍ମ ଛୋଡ଼ିଲେ; ସୁତରାଂ ଶଙ୍କର ପ୍ରଭୃତି ପ୍ରଚାରକମାନେ ଅନାୟାସରେ ରାଜାଶ୍ରୟ ଲାଭ କଲେ । ବୌଦ୍ଧଧର୍ମ ସହିତ ଆପଣା ଧର୍ମ ମିଳାଇ ମିଶାଇ ନେବା ପରିବର୍ତ୍ତରେ ସେମାନେ ବୌଦ୍ଧଧର୍ମର ସମୂଳ ଉତ୍ପାଟନରେ ଯତ୍ନବାନ ହେଲେ । ପକ୍ଷାନ୍ତରେ ଯେଉଁ ସମୟରେ ବୈଷ୍ଣବ ଧର୍ମ ପ୍ରବଳ ହେଲା, ସେତେବେଳେ ମୁସଲମାନ ଧର୍ମ ରାଜଧର୍ମ । ଅଗତ୍ୟା ବୈଷ୍ଣବ ପ୍ରଚାରକମାନେ ମୁସଲମାନ ଧର୍ମ ସହିତ ଆପଣା ଧର୍ମର ସାମ୍ୟ ପ୍ରତିପାଦନ କରିବାରେ ପ୍ରୟାସୀ ହୋଇଥିଲେ ଏବଂ ଉକ୍ତ ଧର୍ମରୁ କେତେକ ଭାବ ଆପଣା ମଧ୍ୟରେ ଗ୍ରହଣ କରିଥିଲେ । ପରନ୍ତୁ ଶୈବଧର୍ମ ପିଉରିଟାନ୍ ଧର୍ମ ପରି ଏକାବେଳକେ ନିରାଟ ଓ ନିର୍ମମ ହେବାର ଚେଷ୍ଟା କରିଥିଲା । ଆପଣାର ବ୍ୟକ୍ତିତ୍ୱ ଓ ସ୍ୱାତନ୍ତ୍ର୍ୟ ଉପରେ ଅଟଳ ବିଶ୍ୱାସ ଓ ନିର୍ଭର ରଖି ଶୈବମାନେ ଏପର୍ଯ୍ୟନ୍ତ ନାନା ପ୍ରତିଦ୍ୱନ୍ଦୀ ନବ ଧର୍ମ ପ୍ରଚାର ବିରୁଦ୍ଧରେ ଆପଣାର ବିଶ୍ୱାସ ଅଟଳ ରଖିପାରି ଅଛନ୍ତି । ଏପରି ସ୍ଥଳେ ଶ୍ରୀ ବିଷନ୍ ସ୍ୱରୂପଙ୍କ ସହିତ କୋଣାର୍କକୁ ଶୈବକୀର୍ତ୍ତି ମନେକଲେ କୌଣସି ବିଷୟରେ ବୌଦ୍ଧଭାବର ଅନୁସରଣ ଏକାବେଳକେ ଅସମ୍ଭବ ବୋଧହୁଏ । ଶ୍ରୀଯୁକ୍ତ ରାଖାଲଦାସ ବନ୍ଦୋପାଧ୍ୟାୟ ମହାଶୟ ଯଥାର୍ଥରେ ପୂର୍ବୋକ୍ତ ପତ୍ରରେ ଲେଖିଅଛନ୍ତି, ** "କୋଣାର୍କରେ କିମ୍ୱା ଅର୍କକ୍ଷେତ୍ର ନିକଟରେ କୌଣସି ବୌଦ୍ଧାବଶେଷ ଏପର୍ଯ୍ୟନ୍ତ ଦେଖାଯାଇ ନାହିଁ ।"

*******

---

* Havell's Aryan Rule in India. P. 99.

** "No Buddhistic remains have ever been found at Konarka or in the vicinity of the Arkakshetra.

I have come across Jain remains at Puri and at Khandagiri but not at Bhubaneswar and Konarka. The only Buddhist remains of note in Orissa are at Naltigiri. I hope this information will be of use to you."

- R. D. Banerjee, Calcutta, Sept. 25th. 1916.

## ଦ୍ୱାଦଶ ଅଧ୍ୟାୟ

## ଶିଳ୍ପ ଓ ସ୍ଥାପତ୍ୟ

କୋଣାର୍କ ମନ୍ଦିରର ଭଗ୍ନାବଶେଷ ମାତ୍ର ବର୍ତ୍ତମାନ ରହିଅଛି । ମନ୍ଦିର ପୂର୍ଣ୍ଣ ଅବସ୍ଥାରେ ଥିଲେ ଦର୍ଶକ ଓ ସମାଲୋଚକମାନେ ସମୁଦାୟ ମନ୍ଦିରଟି ଦେଖିପାରୁଥାନ୍ତେ । ପୂର୍ବେ କୁହାଯାଇଅଛି, କୋଣାର୍କ ମନ୍ଦିର ଓଡ଼ିଶାର ମନ୍ଦିରମାନଙ୍କ ମଧ୍ୟରେ ବୃହତ୍ତମ ଥିଲା । ଓଡ଼ିଶାର ମନ୍ଦିରମାନଙ୍କ ମଧ୍ୟରୁ ଆବୁଲଫଜଲ କେବଳ କୋଣାର୍କ ମନ୍ଦିରର ବର୍ଣ୍ଣନା କରିଅଛନ୍ତି । ସେ ଲେଖିଛନ୍ତି, ଯେଉଁ ସମାଲୋଚକମାନଙ୍କୁ ସନ୍ତୁଷ୍ଟ କରିବା ବଡ଼ କଷ୍ଟକର, ସେମାନେ ମଧ୍ୟ କୋଣାର୍କ ଶିଳ୍ପରେ ମୁଗ୍ଧ ହୋଇ ଯାଉଥିଲେ । ଆବୁଲଫଜଲ ନିଜେ ମଧ୍ୟ କୋଣାର୍କ ବର୍ଣ୍ଣନାରେ ଅତ୍ୟନ୍ତ ତନ୍ମୟ ହୋଇଯାଇ ଥିବାର ଜଣାଯାଏ । ଓଡ଼ିଶାର ଅନ୍ୟାନ୍ୟ ମନ୍ଦିରମାନଙ୍କଠାରୁ କୋଣାର୍କ କେତେ ଉତ୍କୃଷ୍ଟ ତାହା ତାହାଙ୍କ ବର୍ଣ୍ଣନାରୁ ଅନୁମିତ ହୁଏ । ମନ୍ଦିରଟି ପୂର୍ଣ୍ଣ ଅବସ୍ଥାରେ ଥିଲେ ଦର୍ଶକମାନେ କୋଣାର୍କର ସୌନ୍ଦର୍ଯ୍ୟ ସାକ୍ଷାତରେ ଦେଖିପାରୁଥାନ୍ତେ । ବର୍ତ୍ତମାନ ଯାହା କିଛି ଅଛି, ତହିଁରୁ ସମସ୍ତ ମନ୍ଦିରର କାରୁକାର୍ଯ୍ୟ କଳ୍ପନା କରି ଅନେକ ପରିମାଣରେ କେବଳ ଅନୁମାନ ରାଜ୍ୟରେ ସୌନ୍ଦର୍ଯ୍ୟ ଅନୁଭବ କରିବାକୁ ହୁଏ । ମନ୍ଦିରର ଅଖଣ୍ଡ ଅବସ୍ଥାର ଯେ ସବୁ ବିଶ୍ୱାସଜନକ ପ୍ରମାଣ ଅଛି, ତାହା ଏହି ଅନୁଭବରେ ଯଥେଷ୍ଟ ସାହାଯ୍ୟ କରେ । ଏହି ଅନୁମାନ ସମସ୍ତଙ୍କ ପକ୍ଷରେ ବଡ଼ ସହଜ ବ୍ୟାପାର ନୁହେଁ । ତଥାପି ଆବୁଲଫଜଲଙ୍କଠାରୁ ଆରମ୍ଭ କରି ଆଜି ପର୍ଯ୍ୟନ୍ତ କୋଣାର୍କର ଦର୍ଶକବୃନ୍ଦ ଏକମୁଖରେ ଏହାର ଭୂୟସୀ ପ୍ରଶଂସା କରି ଆସିଅଛନ୍ତି । ରାଜେନ୍ଦ୍ର ଲାଲ ପ୍ରଭୃତିଙ୍କ ସମୟରେ ମନ୍ଦିରଟି ବାଲି ପଥରରେ ପୋତି ହୋଇ ପଡ଼ିଥିବାରୁ ସେମାନେ ଏହାର ଶିଳ୍ପର ବିଶେଷତ୍ୱ ଅନୁସନ୍ଧାନ କରିବାର ସେତେ ସୁବିଧା ପାଇ ନ ଥିଲେ । ବର୍ତ୍ତମାନ ଯାହାହେଉ, ମନ୍ଦିରର ଯାହା କିଛି ଅବଶେଷ ଥିଲା, ଦେଖାଗଲାଣି । ଏହି ଭଗ୍ନାବଶେଷର ସୌନ୍ଦର୍ଯ୍ୟ ମଧ୍ୟ ଯେ କୌଣସି ସମାଲୋଚକଙ୍କୁ ମୁଗ୍ଧ କରିବା ପାଇଁ ଯଥେଷ୍ଟ । ଶ୍ରୀ ବିଷନ୍ ସ୍ୱରୂପ ଯେପରି କହନ୍ତି, କେବଳ ମନୁଷ୍ୟ ଓ ଅପର ଜୀବଜନ୍ତୁମାନଙ୍କର ଆକାର ଓ ଗଠନ ପ୍ରଣାଳୀ ବିଚାର କଲେ କୋଣାର୍କକୁ ଓଡ଼ିଶାର ସମସ୍ତ ମନ୍ଦିରମାନଙ୍କ ମଧ୍ୟରେ ଶ୍ରେଷ୍ଠ ବୋଲି ଧରାଯିବ । ଏହା ବ୍ୟତୀତ କୋଣାର୍କର ପ୍ରଧାନ ବିଶେଷତ୍ୱ ତାହାର ଗଠନ ପ୍ରଣାଳୀ ଓ ଶିଳ୍ପଛଟା । ତାହାର ସୂକ୍ଷ୍ମ ସୂକ୍ଷ୍ମ ଶିଳାଦ୍ୱାରା ମନ ଯେପରି ସୌନ୍ଦର୍ଯ୍ୟରେ ଉତ୍ଫୁଲ୍ଲିତ ହୁଏ, ସମୁଦାୟ ମନ୍ଦିରକୁ ଏକ ଦୃଷ୍ଟିରେ ଦେଖିଲାବେଳେ ହୃଦୟ ସେହିପରି ଅପାର ବିସ୍ମୟରେ

ସ୍ତମ୍ଭୀଭୂତ ହୋଇଯାଏ । ଦର୍ଶକ କେତେ ଉତ୍ସାହ ଆନନ୍ଦରେ କୋଣାର୍କ ଦେଖିବାକୁ ଯାଇଥାଏ; କିନ୍ତୁ ଦେଖିବା ଓ ଦେଖି ଫେରିବା ସମୟରେ ସେ ଏକପ୍ରକାର ଗଭୀର ବିଷାଦରେ ଅଭିଭୂତ ହୁଏ । ଏହି ବିଷାଦର କାରଣ ମନ୍ଦିରର ଭଗ୍ନଦଶା କେବଳ ନୁହେଁ, ତାହାର ବିରାଟ ଆକାର, କଳ୍ପନାତୀତ ଶିଳ୍ପଛଟା, ଅବଶେଷରେ ପର୍ବତରୂପୀ ବିଶାଳ ଶିଳାଖଣ୍ଡ ପ୍ରଭୃତି ସମୁଦାୟ ଦେଖିଲେ ଦର୍ଶକ ଏକାବେଳକେ ଆତ୍ମଜ୍ଞାନ ହରାଇ ବସେ ଏବଂ ମନ୍ଦିରର ଦଶାବିପର୍ଯ୍ୟୟର ଦୀର୍ଘନିଃଶ୍ୱାସଟିଏ ପକାଇବାର ଅବକାଶ ପର୍ଯ୍ୟନ୍ତ ପାଏ ନାହିଁ । ଦର୍ଶକ ମନରେ ଏହିପରି ଯୁଗପଦ୍ ହର୍ଷ ଓ ବିଷାଦ – ସୂକ୍ଷ୍ମ ସୂକ୍ଷ୍ମ ବିଶିଷ୍ଟ କାରୁକାର୍ଯ୍ୟଦ୍ୱାରା ଆନନ୍ଦ ଏବଂ ସମୁଦାୟ ଦୃଷ୍ଟିଦ୍ୱାରା ଅପାର ବିସ୍ମୟ ଜନ୍ମାଇବା ନିମନ୍ତେ କୋଣାର୍କ ଅଦ୍ୟାବଧି କେବଳ ଓଡ଼ିଶା ବା ଭାରତବର୍ଷ ନୁହେଁ, ସମସ୍ତ ପୃଥିବୀରେ ଶିଳ୍ପର ସର୍ବୋତ୍କୃଷ୍ଟ ନିଦର୍ଶନ ରୂପେ ପରିଗଣିତ ହୋଇ ଆସୁଅଛି ।

ଶ୍ରୀ ବିଷନ୍ ସ୍ୱରୂପ କୋଣାର୍କ ଶିଳ୍ପର ନିମ୍ନଲିଖିତ ବିଶେଷତ୍ୱମାନ ବର୍ଣ୍ଣନା କରିଅଛନ୍ତି * :–

ପ୍ରଥମତଃ କୋଣାର୍କ ମନ୍ଦିରର ପୀଠ (ପୂର୍ବେ ଚତୁର୍ଥ ଅଧ୍ୟାୟରେ ବର୍ଣ୍ଣିତ) । ଓଡ଼ିଶାର ଅନ୍ୟ କୌଣସି ମନ୍ଦିରରେ ଏହିପରି ଉଚ୍ଚ ଓ ବୃହତ୍ ପୀଠ ଦେଖାଯାଏ ନାହିଁ । ଭୁବନେଶ୍ୱର ମନ୍ଦିରରେ ପୀଠ ଆଦୌ ନାହିଁ, ଦେଉଳର ବାଡ଼ ଏକାବେଳକେ ମୂଳରୁ ଆରମ୍ଭ ହୋଇଅଛି । ପୁରୀ ମନ୍ଦିରରେ ପୀଠ ପ୍ରାୟ ନାହିଁ କହିଲେ ଚଳେ । ଯାହା ଅବା ଅଛି, ତାହା ମନ୍ଦିର ତୁଳନାରେ ଅତି ଅଳ୍ପ ଉଚ୍ଚ । ପୀଠ ଉପରେ ବାରଣ୍ଡା ମଧ୍ୟ ନାହିଁ । ପରିଶେଷରେ ସେହି ପୀଠ ଏତେ ବୃଥାରେ ଦନ୍ତୁରିତ ହୋଇଅଛି ଯେ, ମନ୍ଦିରର ଆକାର ଓ ମନ୍ଦିର ବାଡ଼ର ପାଗମାନଙ୍କ ଦ୍ୱାରା ଘଟିତ ଉନ୍ନତି ଓ ଅବନତି ସହିତ ତାହାର କୌଣସି ସମ୍ବନ୍ଧ ଥିବା ପରି ଜଣାପଡ଼େ ନାହିଁ । ପରନ୍ତୁ କୋଣାର୍କ ମନ୍ଦିରର ପୀଠ,- ପୂର୍ବେ ଯେପରି କୁହାଯାଇଅଛି ୧୬ ଫୁଟ ୬ ଇଞ୍ଚ ଉଚ୍ଚ ଏବଂ ମନ୍ଦିର ଆକାର ବାଡ଼ ଦେହର ପାଗମାନଙ୍କର ଉନ୍ନତି ଓ ଅବନତି ସହିତ ଏହାର ସମ୍ପୂର୍ଣ୍ଣ ସାମଞ୍ଜସ୍ୟ ରହିଅଛି । ପୁଣି ଏହି ପୀଠ ଉପରେ ୮ ରୁ ୧୨ ଫୁଟ ପର୍ଯ୍ୟନ୍ତ ମନ୍ଦିରର ଚତୁର୍ଦ୍ଦିଗରେ ଗୋଟିଏ ବିସ୍ତୃତ ବାରଣ୍ଡା ଅଛି । ଏହି ବିସ୍ତୃତ ବାରଣ୍ଡା ହେତୁରୁ ମନ୍ଦିରଠାରୁ ପୀଠଟି ସମ୍ପୂର୍ଣ୍ଣ ପୃଥକ୍ ଜଣାପଡ଼େ । ପୀଠର ଉଚ୍ଚତା, ବିସ୍ତୃତି ଓ ସ୍ୱାତନ୍ତ୍ର୍ୟ ବଶତଃ ଦର୍ଶକଙ୍କୁ ମନ୍ଦିର ଯେପରି ଶକ୍ତ ଓ ସୁଦୃଢ଼ ବୋଧହୁଏ, ସେହିପରି ମଧ୍ୟ ତାହାର ଗଠନ ପରିପାଟୀ ହୃଦୟ ସମ୍ପୂର୍ଣ୍ଣ ଅଧିକାର କରେ ।

ଦ୍ୱିତୀୟତଃ କୋଣାର୍କ ମନ୍ଦିରର ଆକାର । କୋଣାର୍କ ମନ୍ଦିର ଓଡ଼ିଶାର ଅନ୍ୟାନ୍ୟ ମନ୍ଦିର ଅପେକ୍ଷା ବହୁଗୁଣରେ ଅଧିକ ଅଳଙ୍କୃତ । ତଥାପି ସେ ସମସ୍ତ କାରୁକାର୍ଯ୍ୟ ମଧ୍ୟରେ

* Konarka. P. P. 52-53.

ମନ୍ଦିରର ଆକାରଗତ ସ୍ୱାତନ୍ତ୍ୟ ସମ୍ପୂର୍ଣ୍ଣ ସୁରକ୍ଷିତ ରହିଅଛି । ପୁରୀ ମନ୍ଦିରରେ କାରୁକାର୍ଯ୍ୟ ଥାଉ ବା ନ ଥାଉ ବର୍ତ୍ତମାନ ତାହା ଆଦୌ ଦେଖାଯାଏ ନାହିଁ । ଭୁବନେଶ୍ୱର ମନ୍ଦିରରେ ଶିଳ୍ପୀ ନାନା ବିଭାଗରେ ନାନା କାରୁକାର୍ଯ୍ୟ ଦେଖାଇଅଛି ଏବଂ ସେହି କାରୁକାର୍ଯ୍ୟମାନ ସମାଲୋଚକମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଯଥେଷ୍ଟ ମଧ୍ୟ ହୋଇଅଛି । ତଥାପି ଭୁବନେଶ୍ୱରର ପ୍ରଧାନ ଦୋଷ ଯେ, ଶିଳ୍ପୀ ମନ୍ଦିରର ବିଭିନ୍ନ ଅଂଶରେ ଶିଳ୍ପ ଚାତୁରୀ ଦେଖାଉ ଦେଖାଉ ସମୁଦାୟ ମନ୍ଦିରଟିର ଆକାର ପ୍ରତି ଆଦୌ ଦୃଷ୍ଟି ଦେଇ ନାହାନ୍ତି । କୋଣାର୍କ ମନ୍ଦିର ପରି ପୁରୀ ଓ ଭୁବନେଶ୍ୱର ମନ୍ଦିର ମଧ୍ୟ ପଞ୍ଚରଥ ଦେଉଳ; କିନ୍ତୁ ପୁରୀ ଓ ଭୁବନେଶ୍ୱର ମନ୍ଦିରର ପାଗଗୁଡ଼ିକ ପରସ୍ପରଠାରୁ ଯଥେଷ୍ଟ ପୃଥକ୍ ଦେଖାଯାଏ ନାହିଁ । ଅଥଚ ଏହା ଏପରି ଭାବରେ ନିର୍ମିତ ଯେ, ମନ୍ଦିରର ପ୍ରତ୍ୟେକ ପାଖ ସିଧା ନ ହୋଇ ବରଂ ବକ୍ରାକାର ହୋଇଅଛି । ଫଳତଃ ପୁରୀ ଓ ଭୁବନେଶ୍ୱର ମନ୍ଦିର ଯେତେ ପରିମାଣରେ ବୃତ୍ତାକାର ହେବାକୁ ଯାଇଅଛି, ସେତେ ପରିମାଣରେ ଚୌରସ ବା ଚତୁର୍ଭୁଜାକାର ଦେଖାଯାଏ ନାହିଁ । ଏପରି କି ଭୁବନେଶ୍ୱରର ଯେଉଁ ମନ୍ଦିରକୁ ଫର୍ଗୁସନ୍ 'Gem of Orissan Architecture' * ଅର୍ଥାତ୍ 'ଓଡ଼ିଆ ଶିଳ୍ପ ରତ୍ନ' ବୋଲି କହିଅଛନ୍ତି ଏବଂ ଶ୍ରୀ ମନମୋହନ ଗାଙ୍ଗୁଲୀ ଯାହାକୁ 'Epitome of Orissan Architecture', 'A Dream in sand stone' etc. ** ଅର୍ଥାତ୍ 'ଓଡ଼ିଆ ଶିଳ୍ପର ସାରସଂଗ୍ରହ', 'କନ୍ଦାପଥରରେ ଗୋଟିଏ ସ୍ୱପ୍ନ' ପ୍ରଭୃତି ଆଖ୍ୟା ଦେଇଛନ୍ତି, ସେହି ମୁକ୍ତେଶ୍ୱର ମନ୍ଦିର ମଧ୍ୟ ଏହି ଦୋଷରୁ ଏକାବେଳକେ ବିମୁକ୍ତ କି ନା ସନ୍ଦେହ ।

ଓଡ଼ିଶାର ସମସ୍ତ ମନ୍ଦିରମାନଙ୍କ ମଧ୍ୟରେ କୋଣାର୍କ ଏହି ବିଷୟରେ ସର୍ବୋତ୍କୃଷ୍ଟ । ଏହାର ପାଗଗୁଡ଼ିକ ପରସ୍ପରଠାରୁ ଯଥେଷ୍ଟ ପୃଥକ୍ ଅଥଚ ତାହାଦ୍ୱାରା ମନ୍ଦିରର ଚୌରସ ଆକାରରେ ଲେଶମାତ୍ର ବ୍ୟାଘାତ ଘଟିନାହିଁ । ଟି. ବେରି ମହାଶୟ ଭାରତ ଓ ମିଶର ଦେଶର ଶିଳ୍ପ ତୁଳନା କରି ଲେଖିଅଛନ୍ତି – ''ମିଶରଶିଳ୍ପୀ ମନ୍ଦିରର ଆକାର ପ୍ରତି ଯେତେ, ତାହାର ସୂକ୍ଷ୍ମ ସୂକ୍ଷ୍ମ ଅଂଶର କାରୁକାର୍ଯ୍ୟ ପ୍ରତି ସେତେ ଦୃଷ୍ଟି ଦେଇ ନ ଥାଏ । ସମସ୍ତ କାରୁକାର୍ଯ୍ୟ ମଧ୍ୟରେ ମିଶର ଶିଳ୍ପୀ ମନ୍ଦିରର ଆକାର ସମ୍ପୂର୍ଣ୍ଣ ଚୌରସ ରଖିଥାଏ; କିନ୍ତୁ ଭାରତରେ ସୂକ୍ଷ୍ମ ସୂକ୍ଷ୍ମ ବିଭାଗମାନଙ୍କର କାରୁକାର୍ଯ୍ୟରେ ଶିଳ୍ପୀ ଏତେ ତନ୍ମୟ ହୋଇଥାଏ ଯେ, ମନ୍ଦିରର ଆକାର ପ୍ରତି ସେ ଏକାବେଳକେ ଉଦାସୀନ । ଯଥାର୍ଥରେ ଆକାର ସୌନ୍ଦର୍ଯ୍ୟର ସର୍ବପ୍ରଧାନ ଏବଂ ପ୍ରଥମ ଉପାଦାନ । ଆକାର ଯଥାର୍ଥ ନ ରହିଲେ ମନ୍ଦିର ଯେତେ ବୃହତ୍ ଓ କାରୁଖଚିତ ହେଉ ପଛକେ ଦର୍ଶକ ମନରେ ତାହା ସମ୍ବନ୍ଧରେ ଭିନ୍ନ ଭାବ ଜାତ ହୁଏ ।'' ବେରୀ ମହାଶୟ ଭାରତ ମନ୍ଦିରମାନଙ୍କ ସମ୍ବନ୍ଧରେ ଯେଉଁ ଦୋଷ ଦେଖାଇଅଛନ୍ତି, କୋଣାର୍କ ମନ୍ଦିର ତହିଁରୁ

* History of Indian and Eastern Architecture. P. 419.

** Orissa and Her Remains. P. 275.

ଏକାବେଳକେ ବିମୁକ୍ତ । ଅତଏବ କୋଣାର୍କ କେବଳ ଓଡ଼ିଶାରେ ନୁହେଁ, ସମୁଦାୟ ଭାରତବର୍ଷରେ ସର୍ବୋତ୍କୃଷ୍ଟ ମନ୍ଦିର । ପୁଣି ମିଶର ଦେଶୀୟ ମନ୍ଦିରମାନଙ୍କର ଆକାରଗତ ବିଶେଷତ୍ୱ କୋଣାର୍କରେ ଅତି ସୁନ୍ଦର ଭାବରେ ସୁରକ୍ଷିତ ହୋଇଅଛି; ପରନ୍ତୁ କୋଣାର୍କର କାରୁକାର୍ଯ୍ୟ ମିଶରରେ ନାହିଁ । ଚକର ଅନିକିଳାଠାରୁ ଆରମ୍ଭ କରି ସୁବୃହତ୍ କୁମ୍ଭପଥର ପର୍ଯ୍ୟନ୍ତ କୋଣାର୍କ ମନ୍ଦିରର ସମୁଦାୟ ଯେପରି ଅସାଧାରଣ ସୂକ୍ଷ୍ମ କାରୁକାର୍ଯ୍ୟରେ ଭୂଷିତ, କୋଣାର୍କ ଶିଳ୍ପରେ ଯେପରି ପରିପାଟୀ ଓ ବୈଚିତ୍ର୍ୟ ଦେଖାଯାଏ, ମିଶର ଦେଶ ଶିଳ୍ପୀ ପକ୍ଷରେ ତାହା ସ୍ୱପ୍ନାତୀତ । ସୁତରାଂ କୋଣାର୍କ ମିଶର ଦେଶର ମନ୍ଦିରମାନଙ୍କ ଅପେକ୍ଷା ଯେ ଉତ୍କୃଷ୍ଟ କହିବା ବାହୁଲ୍ୟ ମାତ୍ର । ଶ୍ରୀଯୁକ୍ତ ମନମୋହନ ଗାଙ୍ଗୁଲୀ ଯଥାର୍ଥରେ କହିଅଛନ୍ତି * 'କୋଣାର୍କ ସମସ୍ତ ପୃଥିବୀରେ ଅଦ୍ୱିତୀୟ ମନ୍ଦିର' ଏବଂ ଫର୍‌ଗୁସନ୍ ମଧ୍ୟ କହନ୍ତି, 'ସମସ୍ତ ପୃଥିବୀରେ କୋଣାର୍କ ସର୍ବପେକ୍ଷା ଅଧିକ ଅଳଂକୃତ ମନ୍ଦିର ।'

ତୃତୀୟତଃ କୋଣାର୍କ ମୁଖଶାଳାର ଉପର ଜଙ୍ଘା । ପୂର୍ବେ (ଷଷ୍ଠ ଅଧ୍ୟାୟରେ) ଯେପରି ବର୍ଣ୍ଣିତ ହୋଇଅଛି, ମୁଖଶାଳା ପୀଢ଼ଦେଉଳ ଏବଂ ମନ୍ଦିରର ପୀଢ଼ ବାଡ଼ ଦେହରୁ ବାହାରକୁ ଯଥେଷ୍ଟ ବାହାରିଅଛି । ଉପର ଜଙ୍ଘା ସାଧାରଣତଃ ସପ୍ତକର୍ମ; କିନ୍ତୁ ଏହି ମୁଖଶାଳାର ଉପର ଜଙ୍ଘାରେ ଦଶ କାମ ଅଛି । ଉପର ପୀଢ଼ ଓ ତଳ ବାଡ଼ ସହିତ ସମନ୍ୱୟ ରଖିବା ବିଷୟରେ ସେହି ଜଙ୍ଘାର ଉପାଦେୟତା ସୁନ୍ଦର ଅନୁଭବ କରାଯାଏ । ଅବଶ୍ୟ ପୁରୀ ମୁଖଶାଳା ଦେହରେ ଉପର ଜଙ୍ଘା ଅଛି; କିନ୍ତୁ ତହିଁରେ କିଛି କାମ ନାହିଁ କି ମନ୍ଦିରର ସୌନ୍ଦର୍ଯ୍ୟ ବଢ଼ାଇବା ନିମନ୍ତେ ତାହାର ଉପାଦେୟତା ଆଦୌ ବୋଧ କରାଯାଏ ନାହିଁ । ଜଙ୍ଘାଟି ମୁଖଶାଳା ବାଡ଼ର ଅଂଶ ସତ; କିନ୍ତୁ ପୀଢ଼ ସହିତ ତାହାର କିଛି ଅଭିନ୍ନ ସମ୍ବନ୍ଧ ଥିବାପରି ଜଣାଯାଏ ନାହିଁ । ପରନ୍ତୁ କୋଣାର୍କ ମୁଖଶାଳାର ଉପର ଜଙ୍ଘା ଯେପରି ବିଚିତ୍ର କାରୁଖଚିତ, ସେହିପରି ମଧ୍ୟ ମନ୍ଦିରର ସୌନ୍ଦର୍ଯ୍ୟର ଅନ୍ୟତମ ଅଙ୍ଗ ସ୍ୱରୂପ ହୋଇଅଛି । ଜଙ୍ଘାର ଉପରିସ୍ଥ ପୀଢ଼ଭୂମିର ସମାନ୍ତର ଭାବରେ ମୁଖଶାଳାର ଚତୁର୍ଦ୍ଦିଗରେ ବୁଲିଅଛି । ପୁଣି ଜଙ୍ଘାର ତଳେ ବାଡ଼ ଲମ୍ବାକାର ଖମ୍ଭ କାମରେ ବିଭକ୍ତ । ଏହି ଦୁଇ ପ୍ରକାର କାମ ପରସ୍ପରଠାରୁ ଏତେ ବିଭିନ୍ନ ଯେ, ଦୁଇଟି ମଧ୍ୟରେ କୌଣସି ସମ୍ବନ୍ଧ ସ୍ଥିରୀକୃତ କରାଯାଇ ପାରନ୍ତା ନାହିଁ ଏବଂ ଉପର ଜଙ୍ଘା ନ ଥିଲେ ସମୁଦାୟ ମନ୍ଦିରଟି ଅଙ୍ଗହୀନ ଓ କଦାକାର ଦେଖାଯାଉଥାନ୍ତା, କିନ୍ତୁ ଅତି କୌଶଳ ସହକାରେ ଶିଳ୍ପୀ ଏହି ଦୁଇଟି ପରସ୍ପର ବିପରୀତ କାମ ମଧ୍ୟରେ ଉପର ଜଙ୍ଘାର କାମ ଏତେ ବିସ୍ତୃତ ଭାବରେ ଦେଖାଇଅଛି । ବାଡ଼ର ଖମ୍ଭମାନଙ୍କ ଉତ୍‌ଥାନ ପତନ ସହିତ ସାମ୍ୟ ରହିବା ନିମନ୍ତେ ସେହି ଜଙ୍ଘା କେଉଁଠାରେ ବାହାରକୁ ବାହାରି ପଡ଼ିଛି ଏବଂ କେଉଁଠାରେ ଅବା ଭିତରକୁ ପଶି ଯାଇଅଛି । ପୁଣି ପୀଢ଼ର ଠିକ୍ ତଳେ ସମାନ୍ତର ଭାବରେ ମୁଖଶାଳାର ଚତୁର୍ଦ୍ଦିଗରେ ବୁଲିଥିବାରୁ ତାହା ହଠାତ୍ ପୀଢ଼ର

* Orissa and Her Remains P. 437.

ଗୋଟିଏ ଅଂଶ ସ୍ୱରୂପ ଜଣାପଡ଼େ । ସୁତରାଂ ଏହାଦ୍ୱାରା ବାଡ଼ ଓ ପୀଢ଼ର ସାମ୍ୟ ଓ ବୈଷମ୍ୟ ଏବଂ ଆଲୋକ ଓ ଛାୟାର କ୍ରୀଡ଼ା ଅତି ଆଶ୍ଚର୍ଯ୍ୟ ଭାବରେ ଦେଖାଯାଉଅଛି । ସ୍ଥଳରେ ମନ୍ଦିରର ପୀଢ଼ ବାଡ଼ଠାରୁ ଏକାବେଳକେ ପୃଥକ୍ ଜଣା ନ ଯାଇ ବରଂ ସେହି ଜଙ୍ଘାଦ୍ୱାରା ଏକ ମନ୍ଦିରର ପରସ୍ପର ସଂଲଗ୍ନ ଓ ଅଭିନ୍ନ ଅଙ୍ଗ ସ୍ୱରୂପ ହୋଇ ଅତ୍ୟନ୍ତ ପ୍ରୀତିକର ଦେଖାଯାଏ ।

ଚତୁର୍ଥରେ ବିମାନର ପାର୍ଶ୍ୱମନ୍ଦିର (ପଞ୍ଚମ ଅଧ୍ୟାୟରେ ବର୍ଣ୍ଣିତ) । ପାର୍ଶ୍ୱମନ୍ଦିର ଓଡ଼ିଶାର ପ୍ରାୟ ସମସ୍ତ ବଡ଼ଦେଉଳମାନଙ୍କରେ ଦେଖାଯାଏ । କୋଣାର୍କର ପାର୍ଶ୍ୱମନ୍ଦିର କିନ୍ତୁ ସମୁଦାୟ ବିମାନର ସୌନ୍ଦର୍ଯ୍ୟ ବଢ଼ାଇବା ପକ୍ଷରେ ଅନ୍ୟାନ୍ୟ ସ୍ଥଳର ପାର୍ଶ୍ୱମନ୍ଦିରମାନଙ୍କଠାରୁ ସ୍ୱତନ୍ତ୍ର । ଏହି ମନ୍ଦିରମାନଙ୍କର ପ୍ରଧାନ କାର୍ଯ୍ୟ ସୌନ୍ଦର୍ଯ୍ୟ ବଢ଼ାଇବା ସଙ୍ଗେ ସଙ୍ଗେ ବିମାନକୁ ସୁଦୃଢ଼ ବୋଧ କରାଇବା । ସ୍ଥଳତଃ ପୂର୍ବ ଦିଗରେ ମୁଖଶାଳା ବିମାନକୁ ଯେପରି ଦମ୍ଭ ଓ ସୁନ୍ଦର ଦେଖାଏ, ପାର୍ଶ୍ୱମନ୍ଦିରଗୁଡ଼ିକ ଯଥାର୍ଥରେ ଅନ୍ୟାନ୍ୟ ଦିଗରୁ ସେହିପରି କରେ । ଏମାନଙ୍କ ଅଭାବରେ ବିମାନ ଦୁର୍ବଳ ଓ ଅସୁନ୍ଦର ଦେଖା ଯାଉଥାନ୍ତା । ଭୁବନେଶ୍ୱର ଓ ପୁରୀର ପାର୍ଶ୍ୱମନ୍ଦିରଗୁଡ଼ିକ ବିମାନ ତୁଳନାରେ ନିତାନ୍ତ କ୍ଷୁଦ୍ର; ସୁତରାଂ ସେଗୁଡ଼ିକ ମନ୍ଦିରର ଯଥାଯୋଗ୍ୟ ଅଙ୍ଗ ସ୍ୱରୂପ ଦେଖାଯାଏ ନାହିଁ । ପରନ୍ତୁ କୋଣାର୍କରେ ପାର୍ଶ୍ୱମନ୍ଦିରର କଳ୍ପନା ଚମତ୍କାର ଥିଲା । ମନ୍ଦିରର ଅନୁପାତରେ ବିସ୍ତୃତ ଓ ବୃହତ୍ ହୋଇଥିବାରୁ ସେଗୁଡ଼ିକ ମୁଖଶାଳା ପରି ବିମାନକୁ ସୁଦୃଢ଼ ଓ ସୁନ୍ଦର ଦେଖାଇବା ସଙ୍ଗେ ସଙ୍ଗେ ବିମାନର ନିରବଚ୍ଛିନ୍ନ ଅଙ୍ଗ ସ୍ୱରୂପ ଦେଖାଯାଉଥିଲା । ସମୁଦାୟ କୋଣାର୍କ ମନ୍ଦିରକୁ ଏହିପରି ଗୋଟିଏ ଯଥାଯୋଗ୍ୟ ଅଙ୍ଗପ୍ରତ୍ୟଙ୍ଗ ବିଶିଷ୍ଟ ଜୀବନ୍ତ ଶରୀର ସଦୃଶ କରି ପାରିଥିବା କୋଣାର୍କ-ଶିଳ୍ପୀ ପକ୍ଷରେ ଅତ୍ୟନ୍ତ ଗୌରବାବହ ।

ପଞ୍ଚମରେ କୋଣାର୍କ ଶିଳ୍ପରେ ଆଲୋକ ଓ ଛାୟାର କ୍ରୀଡ଼ା । ଓଡ଼ିଶାର ପ୍ରାୟ ସମୁଦାୟ ପ୍ରାଚୀନ ମନ୍ଦିରମାନଙ୍କରେ ଆଲୋକ ଓ ଛାୟାର କ୍ରୀଡ଼ା ସୁନ୍ଦର ଭାବରେ ଦେଖାଯାଏ; କିନ୍ତୁ କୋଣାର୍କରେ ଏହା ଆହୁରି ମନୋମୁଗ୍ଧକର । ଫର୍‌ଗୁସନ୍‌ଙ୍କ ମତରେ କୋଣାର୍କର ଆଲୋକ ଓ ଛାୟାର କ୍ରୀଡ଼ା ପୃଥିବୀରେ ଅଦ୍ୱିତୀୟ । ଶିଳ୍ପକୁ ହୃଦୟସ୍ପର୍ଶୀ କରାଇବା ନିମନ୍ତେ ସାମ୍ୟ ଓ ବୈଷମ୍ୟ ଯଥା ପରିମାଣରେ ଶିଳ୍ପରେ ଦେଖାଇବା ଆବଶ୍ୟକ । ବୈଷମ୍ୟ ବ୍ୟତିରେକେ କେବଳ ସାମ୍ୟ ଯେପରି ପରିଶେଷରେ ବିରକ୍ତିଜନକ ବୋଧହୁଏ, ସାମ୍ୟ ବ୍ୟତିରେକେ ବୈଷମ୍ୟ ମଧ୍ୟ ସେହିପରି ଶିଳ୍ପକୁ କଦାକାର ଓ ଶୃଙ୍ଖଳାହୀନ କରି ପକାଏ । ଶିଳ୍ପର ସୌନ୍ଦର୍ଯ୍ୟ ବଢ଼ାଇବା ନିମନ୍ତେ ଉଭୟ ପରସ୍ପର ଉପରେ ସମ ପରିମାଣରେ ନିର୍ଭର କରେ । ଏକର ଅଭାବରେ ଅପର ନିରର୍ଥକ ଓ ବିରକ୍ତିକର ବୋଧହୁଏ । କୋଣାର୍କରେ ଏହି ସାମ୍ୟ ଓ ବୈଷମ୍ୟ ନୀତି ଅତି ସୁନ୍ଦର ଭାବରେ ପରିସ୍ଫୁଟ ହୋଇଅଛି । ଏକ ଲତା ବା ହାତୀ ଧାଡ଼ି ସମସ୍ତ ମନ୍ଦିରର ଚାରି ପାଖରେ ସମାନ ଭାବରେ ବୁଲିଅଛି; କିନ୍ତୁ ଏହି

ସାମ୍ୟଭାବ କାଳେ ବିରକ୍ତିଜନକ ହେବ, ସେଥିପାଇଁ ଶିଳ୍ପୀ ଅତି ଚମତ୍କାର ଭାବରେ ମଧ୍ୟେ ମଧ୍ୟେ ମନ୍ଦିର ଦେହରେ ଲତାପତ୍ର ପ୍ରଭୃତିର କାମ ଲମ୍ବ ଭାବରେ ଖଞ୍ଜି ଦେଇଅଛି । ମନ୍ଦିରର ଲମ୍ବାକାର ପାଗଗୁଡ଼ିକ ନାନା କାରୁକାର୍ଯ୍ୟଦ୍ୱାରା ଭୂମିର ସମାନ୍ତର ଭାବରେ ଯଥୋଚିତ ପରିମାଣରେ ବିଭକ୍ତ ହୋଇଅଛି ଏବଂ ଏହା ମଧ୍ୟ ପୁନରାୟ ଲମ୍ବଭାବରେ ଖଣ୍ଡ ଖଣ୍ଡ ହୋଇଅଛି । ଏ ସମସ୍ତ ସତ୍ତ୍ୱେ ଏତେ ଭାଗ, ବିଭାଗ ଓ ଅତି ବିଭାଗ ମଧ୍ୟରେ ମନ୍ଦିରର ଆକାର କୌଣସିରୂପେ ଲୁପ୍ତ ବା ବିକୃତ ହୋଇନାହିଁ । ସମସ୍ତ ମନ୍ଦିରର ସାମ୍ୟଭାବ ନାନା ବୈଷମ୍ୟ ମଧ୍ୟରେ ଅତି ବିଚିତ୍ର ଭାବରେ ବର୍ତ୍ତମାନ ଭଗ୍ନ ଅବସ୍ଥାରେ ମଧ୍ୟ ଦର୍ଶକର ହୃଦୟ ସମ୍ପୂର୍ଣ୍ଣ ଆକର୍ଷଣ କରୁଅଛି ।

କାଗଜ ଉପରେ ଚିତ୍ରାଙ୍କନରେ ଆଲୋକ ଛାୟା ଯେପରି ସହଜବୋଧ ହୁଏ ପଥରର କାରୁକାର୍ଯ୍ୟରେ ସେପରି ହୁଏନାହିଁ । ତେଣୁ ସାଧାରଣଙ୍କ ପ୍ରତି କୋଣାର୍କର ସାମ୍ୟ ଓ ବୈଷମ୍ୟ ନୀତି, ଆଲୋକ ଓ ଛାୟାର କ୍ରୀଡ଼ା ବଡ଼ ସହଜବୋଧ ନୁହେଁ । ଉପରେ ଯେଉଁ ସାମ୍ୟ ବୈଷମ୍ୟର କଥା ଲେଖା ଯାଇଅଛି, ତାହାର ସଂଯୋଗ ସ୍ଥଳ ସମ୍ବନ୍ଧରେ କଲିକତା କଳା ବିଦ୍ୟାଳୟର ତଦାନୀନ୍ତନ ଅଧ୍ୟାପକ ଏଇଚ୍. ଏଇଚ୍. ଲକ୍ ମହାଶୟ ରାଜେନ୍ଦ୍ର ଲାଲଙ୍କ ନିକଟକୁ ନିମ୍ନଲିଖିତ ଭାବରେ ଲେଖିଥିଲେ * :—

''ଏହି ସଂଯୋଗ-ସ୍ଥଳଗୁଡ଼ିକ ଆଲୋକ ଓ ଛାୟାରେଖା ମଧ୍ୟରେ ଅବକାଶ ସ୍ଥଳ । ବେଳେ ବେଳେ ଏହି ଅବକାଶ ସ୍ଥଳଗୁଡ଼ିକ ଛାୟା ମଧ୍ୟରେ ଆଲୋକବିନ୍ଦୁ ଏବଂ ବେଳେ ବେଳେ ଆଲୋକଧାରା ମଧ୍ୟରେ ଛାୟାବିନ୍ଦୁ ସ୍ୱରୂପ । ଏହି ଉଭୟ ଅବସ୍ଥାରେ ଏହା ଓଡ଼ିଶା ଶିଳ୍ପର ଗୋଟିଏ ପ୍ରଧାନ ବିଶେଷତ୍ୱ ଏବଂ ଏହାଦ୍ୱାରା ଓଡ଼ିଆ ଶିଳ୍ପୀମାନେ ଅସମତଳ କ୍ଷେତ୍ରରେ ପତିତ ଗଭୀର ଛାୟାରେଖାର ମୂଲ୍ୟ କେତେ ସୁନ୍ଦର ଭାବରେ ବୁଝିଥିଲେ, ତାହା ପରିଷ୍କାର ବୁଝା ଯାଉଅଛି । ଗୋଟିଏ ଲମ୍ବା ଅସମତଳ କ୍ଷେତ୍ର ଉପରେ ସୂର୍ଯ୍ୟ ସମ୍ମୁଖରେ ଗୋଟିଏ କାଠି ଧର, ଦେଖାଯିବ, କିପରି କାଠିର ଛାୟା ଉଚ୍ଚ ନୀଚ ସର୍ବତ୍ର ପଡ଼ି କ୍ଷେତ୍ର ଅନୁସାରେ ଛାୟାର ଆକାର ହେବ ଏବଂ ସୂର୍ଯ୍ୟକିରଣ ଯେତେ ପ୍ରଖର ଭାବରେ ପଡ଼ିବ, କ୍ଷେତ୍ରର ଅସମାନତାଜନିତ ଛାୟା ନଷ୍ଟ ହୋଇ ପତିତ ଛାୟା ସେତେ ପରିଷ୍କାର ଦେଖାଯିବ । ହିନ୍ଦୁମାନେ ନିଶ୍ଚୟ ଏହା ଯଥେଷ୍ଟ ଅନୁଭବ କରିଥିଲେ ଏବଂ ଛାୟା ଓ ଆଲୋକ ଅଭାବରୁ ଗୋଟିଏ ଲମ୍ବା କାମ କଦାପି ବିରକ୍ତିକର ହେବାକୁ ଦେଉ ନ ଥିଲେ । ଉକ୍ତ ଅବକାଶ ସ୍ଥଳଗୁଡ଼ିକ ପ୍ରତ୍ୟେକ କାମରେ ବାରମ୍ବାର ଦେଖିବାକୁ ମିଳେ; ତାହାଦ୍ୱାରା ଗଭୀର ଛାୟା ଚତୁର୍ଦ୍ଦିଗର ଲମ୍ବା କାମକୁ ଅତ୍ୟନ୍ତ ସୁନ୍ଦର ଓ ମନୋମୁଗ୍ଧକର କରିଦିଏ । ଜଣାଯାଏ, ଆଲୋକ ଓ ଛାୟାର ବୈଚିତ୍ର୍ୟ ଦେଖାଇବା ନିମନ୍ତେ ଓଡ଼ିଆ ଶିଳ୍ପୀମାନଙ୍କର ଗୋଟିଏ ଅଦମ୍ୟ ଆକାଂକ୍ଷା ଥିଲା । ଖମ୍ବମାନଙ୍କର ମୂଳ ଦେଶରେ ଭୂମିର ସମାନ୍ତର କାମଗୁଡ଼ିକ ଦୁଇ

---

* Antiquities of Orissa - Vol. I. P. 76.

ତିନି ଫୁଟରୁ ଅଧିକ ଲମ୍ବ ନୁହେଁ । ତହିଁରେ ମଧ୍ୟ ଏହିପରି ଅବକାଶ ସ୍ଥଳମାନ ଦେଖାଯାଏ ଏବଂ ସେମାନଙ୍କ ଦେହରୁ ଲମ୍ବଭାବରେ ଗୋଟିଏ ଗୋଟିଏ କାମ ବାହାରିଥାଏ; ସୁତରାଂ ସମାନ୍ତର କାମଗୁଡ଼ିକ ଲମ୍ବ କାମଦ୍ୱାରା ମଧ୍ୟେ ମଧ୍ୟେ ସଂଯୁକ୍ତ ହୋଇ ଅତ୍ୟନ୍ତ ମନୋହର ହୋଇଥାଏ ।

କୋଣାର୍କରେ ସର୍ବତ୍ର ଏହି ଆଲୋକ ଛାୟାର କ୍ରୀଡ଼ା ସୁନ୍ଦର ପରିସ୍ଫୁଟ ହୋଇଅଛି । ମୁଖଶାଳାର ବାଢ଼ ଓ ପୀଢ଼ ଏବଂ ବାଢ଼ର ପ୍ରତ୍ୟେକ ଲମ୍ବ ଓ ସମାନ୍ତର କାମରେ ଏହା ଯେତେ କମନୀୟ ରୂପେ ପ୍ରତିଭାତ ହୁଏ, ଓଡ଼ିଶାରେ ଅନ୍ୟ ମନ୍ଦିରମାନଙ୍କରେ ସେପରି ଦେଖାଯାଏ ନାହିଁ । ଫଳତଃ କୋଣାର୍କର ପ୍ରତ୍ୟେକ ଇଞ୍ଚରେ ମଧ୍ୟ ଆଲୋକ ଓ ଛାୟାବିନ୍ଦୁ ହଠାତ୍ ଦୃଷ୍ଟି ଆକର୍ଷଣ କରେ ।

ରାମଚଣ୍ଡୀ ମନ୍ଦିରର ଅଳ୍ପ ଅବଶେଷ ମାତ୍ର ଅଛି; ତଥାପି ତହିଁରୁ ସମୁଦାୟ ମନ୍ଦିରର କଳାକୌଶଳ ପରିଷ୍କାର ବୋଧ କରାଯାଏ । ମନ୍ଦିରର ଗଠନ ଓ ଶିଳ୍ପର ପରିପାଟୀ କୋଣାର୍କ ମନ୍ଦିର ସଙ୍ଗେ ସମ୍ପୂର୍ଣ୍ଣ ସମାନ । ଛାୟା ଓ ଆଲୋକର କ୍ରୀଡ଼ା, ସାମ୍ୟ ଓ ବୈଷମ୍ୟର ଖେଳ ଦେଖାଇବା ନିମନ୍ତେ କୋଣାର୍କ ମନ୍ଦିର ଯେପରି, ରାମଚଣ୍ଡୀ ମନ୍ଦିର ମଧ୍ୟ ସେହିପରି ପ୍ରସିଦ୍ଧ ।

ନାଟମନ୍ଦିରର ଶିଳ୍ପ ସାମାନ୍ୟ ଭିନ୍ନ । ଏହାର ପୀଠ ଓ ବାଢ଼ ମୁଖଶାଳା ଓ ବିମାନର ପୀଠ ଓ ବାଢ଼ଠାରୁ ଭିନ୍ନ । ଏଥିରେ ମୁଖଶାଳା ପରି ଆଲୋକ ଓ ଛାୟାର କ୍ରୀଡ଼ା ସେତେ ପରିସ୍ଫୁଟ ନୁହେଁ; ମୁଖଶାଳା ଓ ବଡ଼ଦେଉଳରେ ଯେପରି ଏତେ ବୈଷମ୍ୟ ମଧ୍ୟରେ ଆକାରଗତ ସାମ୍ୟ ସମ୍ପୂର୍ଣ୍ଣ ରକ୍ଷା କରାଯାଇଅଛି, ନାଟମନ୍ଦିରରେ ସେପରି ହୋଇପାରି ନାହିଁ । ସେଥିରେ ମନ୍ଦିରର ଆକାରଗତ ସାମ୍ୟ ରକ୍ଷା କରିବାକୁ ଯାଇ ଶିଳ୍ପୀ ବୈଷମ୍ୟ ଦେଖାଇବାରେ ତ୍ରୁଟି କରିଅଛି । ମୁଖଶାଳା ପରି ନାଟମନ୍ଦିରର ବାଢ଼ ବା ପୀଠ ଦେହରେ ସେତେ ଉତ୍‌ଥାନ ପତନ ହୋଇନାହିଁ; ତଥାପି ଓଡ଼ିଶାର ମନ୍ଦିରମାନଙ୍କ ମଧ୍ୟରେ ଏହାର ସ୍ଥାନ ଅତି ଉଚ୍ଚ । ଏହାର ଗଠନ ପ୍ରଣାଳୀ, ଉଚ୍ଚ ପୀଠ, ପ୍ରଶସ୍ତ ବାରଣ୍ଡା, ସୁନ୍ଦର ଲତାପତ୍ର, ଜୀବଜନ୍ତୁ ଓ ନର ଦେବତା କାମ ଓଡ଼ିଶାର ଅନ୍ୟାନ୍ୟ ମନ୍ଦିରମାନଙ୍କ ମଧ୍ୟରେ ଏହାକୁ ବହୁଗୁଣରେ ଶ୍ରେଷ୍ଠ କରିଅଛି ।

ଓଡ଼ିଶାର ମନ୍ଦିରମାନଙ୍କ ଗଠନପ୍ରଣାଳୀ ପ୍ରାୟ ଏକପ୍ରକାର । ରେଖ ପ୍ରଣାଳୀର ଗୋଟିଏ ବିମାନ, ତାହା ସମ୍ମୁଖରେ ପୀଢ଼ ଦେଉଳ ଇତ୍ୟାଦି ପ୍ରାୟ ସମୁଦାୟ ପ୍ରସିଦ୍ଧ ମନ୍ଦିରମାନଙ୍କରେ ଦେଖାଯାଏ । ଏହି ହେତୁରୁ କେହି କେହି ସମାଲୋଚକ ଓଡ଼ିଆ ଶିଳ୍ପୀମାନଙ୍କୁ ଦୋଷ ଦିଅନ୍ତି ଯେ, ସେମାନେ ଶିଳ୍ପରେ ବୈଷମ୍ୟ ଓ ବୈଚିତ୍ର୍ୟ ଦେଖାଇବାରେ ପରାଂମୁଖ ଥିଲେ । ଅବଶ୍ୟ ସ୍ୱୀକାର କରିବାକୁ ହେବ ଯେ, ଓଡ଼ିଶାର ପ୍ରଧାନ ପ୍ରଧାନ ମନ୍ଦିରମାନଙ୍କରେ ଏହି ଅଭାବ ଦେଖାଯାଏ । ମନ୍ଦିରମାନଙ୍କରେ ଆକାରଗତ ବୈଷମ୍ୟ ପ୍ରାୟ

ନାହିଁ କହିଲେ ଚଳେ । ଏମନ୍ତ କି ସତ୍ୟବାଦୀରେ ସାକ୍ଷୀଗୋପାଳଙ୍କ ମନ୍ଦିର ପ୍ରାୟ ୬୦ ବର୍ଷ ପୂର୍ବେ ନିର୍ମିତ ହୋଇଥିଲା; ଅଥଚ ଖ୍ରୀଷ୍ଟ ପଞ୍ଚମ ଓ ଷଷ୍ଠ ଶତାବ୍ଦୀର ମନ୍ଦିରମାନଙ୍କର ଆକାର ସମ୍ପୂର୍ଣ୍ଣ ଭାବରେ ସତ୍ୟବାଦୀ ମନ୍ଦିରରେ ରକ୍ଷିତ ହୋଇଅଛି । ଏହିସବୁ ସତ୍ତ୍ୱେ ଓଡ଼ିଆ ଶିଳ୍ପୀମାନେ ବୈଷମ୍ୟ ନୀତିରେ ଏକାବେଳକେ ଅନଭିଜ୍ଞ ଥିଲେ, ବୋଲିବା ଅଳୀକ ଓ ଅସଙ୍ଗତ । ପରନ୍ତୁ ସେମାନେ ବୈଷମ୍ୟ ନୀତି ଯେ ପୂର୍ଣ୍ଣମାତ୍ରାରେ ଅବଗତ ଥିଲେ ଏବଂ ଶିଳ୍ପରେ ଅତି ମନୋହର ଭାବରେ ତାହା ଦେଖାଇ ଅଛନ୍ତି, ତାହାର ଭୂରି ଭୂରି ନିଦର୍ଶନ ରହିଅଛି । ବିଶେଷତଃ ଉପରେ ଯେପରି କୁହାଯାଇଅଛି, କୋଣାର୍କରେ ଏବଂ ଭୁବନେଶ୍ୱରର ମୁକ୍ତେଶ୍ୱରେ ମନ୍ଦିରରେ ଯେ ସାମ୍ୟ ଓ ବୈଷମ୍ୟ ନୀତି ପ୍ରଦର୍ଶିତ ହୋଇଅଛି, ତାହା ସର୍ବମୁଖରେ ସମଗ୍ର ପୃଥିବୀରେ ଅଦ୍ୱିତୀୟ ବୋଲି ପ୍ରଶଂସିତ ହୋଇଥିବା ସ୍ଥଳେ କିଏ କହିବ ଯେ, ଓଡ଼ିଆ ଶିଳ୍ପୀମାନଙ୍କର ବୈଚିତ୍ର୍ୟ ବିକାଶ ଶକ୍ତି ନ ଥିଲା ?

ମନ୍ଦିରମାନଙ୍କରେ ଆକାରଗତ ବୈଷମ୍ୟ ନ ଦେଖାଇବା ଯଦି ଗୋଟିଏ ତ୍ରୁଟି ବୋଲି ଧରାଯାଏ, ତାହାହେଲେ ଓଡ଼ିଆ ଶିଳ୍ପୀମାନେ କେବଳ ଏହି ଦୋଷରେ ଦୋଷୀ ନୁହନ୍ତି । ମନ୍ଦିରମାନଙ୍କରେ ଏହି ଆକାରଗତ ସାମ୍ୟ ରକ୍ଷା କରିବା ନିମନ୍ତେ ଓଡ଼ିଆ ଶିଳ୍ପୀମାନଙ୍କର ପ୍ରୟାସ ଭାରତ ଜାତୀୟ ପ୍ରବୃତ୍ତିର ଅନ୍ୟତମ ଅଭିବ୍ୟକ୍ତି ମାତ୍ର । ଆପଣାର ସମସ୍ତ ଚିନ୍ତା ଓ କାର୍ଯ୍ୟରେ ନାନା ବୈଷମ୍ୟ ମଧ୍ୟରେ ଏକତ୍ୱ ରକ୍ଷା କରିବା ନିମନ୍ତେ ଭାରତବାସୀ ନିରନ୍ତର ଯତ୍ନବାନ । ଏମନ୍ତ କି ଭାରତୀୟ କାବ୍ୟ, ନାଟକ, ଦର୍ଶନ, ପୁରାଣରେ ମଧ୍ୟ ଆକାରଗତ ବୈଷମ୍ୟ ନାହିଁ କହିଲେ ଚଳେ । ସର୍ବତ୍ର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଚିନ୍ତା ଓ କାର୍ଯ୍ୟର ଏକତ୍ୱ ପୂର୍ଣ୍ଣ ରୂପେ ପ୍ରତିପାଦିତ ହୋଇଅଛି । ଏହି ଏକତ୍ୱ ରକ୍ଷାନୀତି ଭାରତର ବିଶେଷତ୍ୱ ଏବଂ ଏହାକୁ ଗୋଟିଏ ତ୍ରୁଟି ଜ୍ଞାନ କରି ପରିହାର କରିବା ପରିବର୍ତ୍ତରେ ବହୁକାଳବ୍ୟାପୀ ସାଧନାଲବ୍ଧ ଗୋଟିଏ ଗୁଣ ବୋଲି ଭାରତବାସୀ ଯୁଗେ ଯୁଗେ ଅନୁସରଣ କରି ଆସୁଅଛନ୍ତି । ଇଉରୋପୀୟ ସମାଲୋଚକଙ୍କ ଦୃଷ୍ଟିରେ ଏହି ନୀତିର ମୂଲ୍ୟ ନାହିଁ । ପାଶ୍ଚାତ୍ୟ ଦେଶରେ ଏହି ନୀତିର ଆଦର ହେବା ଅସମ୍ଭବ । କାରଣ, ସେମାନଙ୍କର ଭାବ ଓ ଜାତୀୟତା ଆମ୍ଭମାନଙ୍କଠାରୁ ବହୁ ପୃଥକ୍ । ଚିନ୍ତାର ବୈଷମ୍ୟ ପ୍ରତି ସେମାନେ ଯେପରି ଆକୃଷ୍ଟ, ଆମ୍ଭେମାନେ ଏକତ୍ୱକୁ ସେହିପରି ଆଦର କରୁ । ସେମାନେ ଜାତୀୟତାରେ ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟ ଯେତେ ବୋଧ କରନ୍ତି, ଆମ୍ଭେମାନେ ସେତେ ବୁଝୁନାହିଁ । ଜାତୀୟ ବା ସାମାଜିକ ସ୍ୱାତନ୍ତ୍ର୍ୟ ପୂର୍ଣ୍ଣମାତ୍ରାରେ ରକ୍ଷା କରିବାରେ ଭାରତବାସୀ ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟ ଭୁଲି ଯାଆନ୍ତି । ଜାତିଗତ ସ୍ୱାତନ୍ତ୍ର୍ୟ ଆମ୍ଭମାନଙ୍କର ଉପେୟ, ବ୍ୟକ୍ତିଗତ ସ୍ୱାଧୀନତା ତାହାର ଉପାୟ ମାତ୍ର । ଉପେୟର ମହତ୍ତ୍ୱଦ୍ୱାରା ଉପାୟର ମହତ୍ତ୍ୱ ଯେପରି ବଢ଼ିଥାଏ, ଭାରତବାସୀଙ୍କ ମତରେ ଜାତୀୟତାର ଗୌରବଦ୍ୱାରା ବ୍ୟକ୍ତିଗତ ଜୀବନର ମୂଲ୍ୟ ସେହିପରି ବଢ଼ିଯାଏ । ଅତଏବ ଇଉରୋପରେ ଯାହା ଗୁଣ, ଭାରତରେ ତାହା ଦୋଷ । ଭାରତୀୟ ଓ ଇଉରୋପୀୟ

ସଭ୍ୟତାର ନୀତି ଓ ପ୍ରକୃତିରେ ଏହିପରି ବିରୋଧ ଭାବ ଥିବା ସ୍ଥଳେ ଭାରତ ଯାହା ଗୁଣ ବୋଲି ଯୁଗେ ଯୁଗେ ନିରବଚ୍ଛିନ୍ନ ଭାବରେ ଅନୁସରଣ କରି ଆସୁଅଛି, ଇଉରୋପୀୟ ଲେଖକମାନେ ଭାରତର ସେହି ବିଶେଷତ୍ୱକୁ ଆଦର ସହକାରେ ଗ୍ରହଣ କରି ନ ପାରିବାରେ ବିଚିତ୍ର କ'ଣ ? ଓଡ଼ିଶାର ତଥା ଭାରତର ମନ୍ଦିରମାନଙ୍କର ନାନା ଅଂଶଗତ ପାର୍ଥକ୍ୟ ବା ବୈଷମ୍ୟ ସତ୍ତ୍ୱେ ଆକାରଗତ ସାମ୍ୟ ରକ୍ଷା କରିବା ଭାରତର ଚିରନ୍ତନ ଧର୍ମ । ଏହାହିଁ ଭାରତର ରକ୍ଷଣଶୀଳତାର ଅନ୍ୟତମ ଦୃଷ୍ଟାନ୍ତ ।

କୋଣାର୍କ ମନ୍ଦିର ଶିଳ୍ପ ନିମନ୍ତେ ଯେପରି ପ୍ରସିଦ୍ଧ, ସ୍ଥାପତ୍ୟ ନିମନ୍ତେ ତଦପେକ୍ଷା ଆହୁରି ମହନୀୟ । ଚକର ସାମାନ୍ୟ ଅନିକିଳୀଠାରୁ ଆରମ୍ଭ କରି ବଡ଼ ବଡ଼ ପର୍ବତରୂପୀ ବିଶାଳ ଶିଳାଖଣ୍ଡ ପର୍ଯ୍ୟନ୍ତ, ପାଦଠାରୁ ଆରମ୍ଭ କରି ଚୂଡ଼ା ପର୍ଯ୍ୟନ୍ତ କାରିଗରର ସୂଚିଦ୍ୱାରା ସର୍ବତ୍ର ଅତି ସୂକ୍ଷ୍ମ ଭାବରେ ବିଦ୍ଧ ହୋଇଅଛି । ଏହାର ସୂଚିକାମର ସୌନ୍ଦର୍ଯ୍ୟ ଓ ସୂକ୍ଷ୍ମତା ଅନୁମାନ କରିବା ନିମନ୍ତେ ମନୁଷ୍ୟ କଳ୍ପନାର ବିଳାସମୟ ଅନନ୍ତ ତରଙ୍ଗରେ ଆପଣାକୁ ଭସାଇ ଦେବା ଆବଶ୍ୟକ । ଏହିଠାରେ ଅନୁମାନ ସର୍ବତୋଭାବରେ ପରାହତ ହୁଏ ଏବଂ ଅନୁଭବ ହିଁ ମନୁଷ୍ୟର ଏକମାତ୍ର ସହାୟ । ବାରମ୍ବାର କୋଣାର୍କ ଦେଖୁଥିଲେ ସୁଦ୍ଧା ତାହା ପ୍ରତ୍ୟେକ ବାର ନୂତନ ଦେଖାଯାଏ ଏବଂ ଦର୍ଶକ ସେ ସୌନ୍ଦର୍ଯ୍ୟରେ ଏତେ ମୁଗ୍ଧ ହୋଇଯାଏ ଯେ, ତନ୍ନ ତନ୍ନ ଭାବରେ ତାହା ଅନୁଶୀଳନ କରିବା ପାଇଁ ଅବସର ପର୍ଯ୍ୟନ୍ତ ପାଏ ନାହିଁ । ବାସ୍ତବିକ ଆଚାର୍ଯ୍ୟ ହୋବର ଯାହା କରିଅଛନ୍ତି, "ଭାରତୀୟମାନେ ଟାଇଟାନମାନଙ୍କ ପରି ଆକାଶସ୍ପର୍ଶୀ ମନ୍ଦିରମାନ ନିର୍ମାଣ କରି ସ୍ୱର୍ଣ୍ଣକାର ସଦୃଶ ତାହା ସବୁ ନାନା ଅଳଙ୍କାରରେ ଅତି ସୂକ୍ଷ୍ମ ଭାବରେ ବିଭୂଷିତ କରୁଥିଲେ", ତାହା ଏହି କୋଣାର୍କ-ଶିଳ୍ପୀଙ୍କ ପକ୍ଷରେ ଅକ୍ଷରେ ଅକ୍ଷରେ ସତ୍ୟ । ଶ୍ରୀ ବିଷବ୍ ସ୍ୱରୂପ ଯଥାର୍ଥରେ କହିଅଛନ୍ତି ଯେ, କୋଣାର୍କର କାରୁକାର୍ଯ୍ୟ ପଥରରେ ନ ହୋଇ ସୁନା ରୂପାରେ ଯଦି ହୋଇଥାନ୍ତା, ତାହାହେଲେ ମଧ୍ୟ ସ୍ଥୂଳ ବୋଲି ତାହା କଦାପି ହେୟ ହୁଅନ୍ତା ନାହିଁ । ମନ୍ଦିର ଏଡ଼େ ବିରାଟ, ତହିଁରେ ପୁଣି ଏତେ ସୂକ୍ଷ୍ମ ସୂକ୍ଷ୍ମ କାମ ଆମୂଳଚୂଳ ଖୋଦିତ ଅଛି । କେବଳ ମନ୍ଦିରଟି ନିର୍ମାଣ କରିବା ପାଇଁ ଯଦି ୧୨୦୦ କାରିଗରଙ୍କୁ ଏକ ବର୍ଷ ଲାଗେ, ତାହାହେଲେ ଏ ସମସ୍ତ କାରୁକାର୍ଯ୍ୟ ନିମନ୍ତେ ସେମାନଙ୍କୁ ୧୬ ବର୍ଷରୁ କମ୍ ଲାଗିବ ନାହିଁ । ଏ ସମସ୍ତ ଏକତ୍ର ବିଚାର କଲେ, କୋଣାର୍କର ଚିତ୍ର କରିବା ନିମନ୍ତେ କଳ୍ପନା ମଧ୍ୟ ନିରସ୍ତ ହୁଏ ଏବଂ ପୂର୍ବେ ଯେପରି କୁହାଯାଇଅଛି, ଦର୍ଶକମାନେ କୋଣାର୍କ ଦର୍ଶନରେ ଯେତେ ବିସ୍ମିତ ଓ ସ୍ତମ୍ଭୀଭୂତ ହୁଅନ୍ତି, ତାହାର ସୌନ୍ଦର୍ଯ୍ୟ ଉପଲବ୍ଧି ନିମନ୍ତେ ସେତେ ସୁବିଧା ପାଇ ପାରନ୍ତି ନାହିଁ । ସୁତରାଂ କୋଣାର୍କ ବର୍ତ୍ତମାନ ଆପଣାର ପୂର୍ବ ଗୌରବ ପ୍ରାୟ ହରାଇଥିଲେ ସୁଦ୍ଧା ସେ ବିରାଟ ମନ୍ଦିର ବର୍ତ୍ତମାନ ଭୂମିସାତ୍ ହୋଇ ଶୋଚନୀୟ ପଥର ସ୍ତୁପରେ ପରିଣତ ହୋଇଥିଲେହେଁ ଦର୍ଶକ ବିସ୍ମୟରେ ଏତେ ଜଡ଼ୀଭୂତ ହୋଇଯାଏ ଯେ, ସେ ତାହାର ଏହି ଦୁରବସ୍ଥାରେ କ୍ଷୁଭିତ

ହେବାର ଅବକାଶ ପର୍ଯ୍ୟନ୍ତ ଆଦୌ ପାଏ ନାହିଁ । ଏହି ଜୀର୍ଣ୍ଣ ଭଗ୍ନ କଳେବରରେ ମଧ୍ୟ କୋଣାର୍କ ଭାରତୀୟ ଶିଳ୍ପ ଓ ସ୍ଥାପତ୍ୟର ଚୂଡ଼ାନ୍ତ ନିଦର୍ଶନ ସ୍ୱରୂପ ଅଦ୍ୟାପି ଦର୍ଶକମାନଙ୍କ ହୃଦୟରେ ବିସ୍ମୟ ଉତ୍ପାଦନ କରୁଅଛି ।

କୋଣାର୍କର ସ୍ଥାପତ୍ୟ ମଧ୍ୟରେ ନାନା ଲତା, ଫୁଲ ଓ ଜାଲିକାମ, ନାନା ଜୀବଜନ୍ତୁଙ୍କର କାମ ଏବଂ ମନୁଷ୍ୟ, ଦେବ ଓ ନାଗମୂର୍ତ୍ତିମାନ ପ୍ରସିଦ୍ଧ । ଲତା ଓ ଜାଲି ପ୍ରଭୃତିର କାମ ଅତି ସୂକ୍ଷ୍ମ ଓ ମନୋହର ଏବଂ ଏହାଦ୍ୱାରା ମନ୍ଦିରର ପ୍ରାୟ ସର୍ବାଂଶ ଅଳଙ୍କୃତ । ଫୁଲ ମଧ୍ୟରେ ପଦ୍ମର ବ୍ୟବହାର ଅତି ପ୍ରଚୁର ଦେଖାଯାଏ । କଢ଼ିଠାରୁ ଆରମ୍ଭ କରି ଫୁଟିବା ପର୍ଯ୍ୟନ୍ତ ସବୁ ଅବସ୍ଥାରେ ପଦ୍ମ କୋଣାର୍କ ସ୍ଥାପତ୍ୟର ସୌନ୍ଦର୍ଯ୍ୟ ବଢ଼ାଇଅଛି । କେଉଁଠାରେ ପ୍ରସ୍ଫୁଟିତ ପଦ୍ମ ଉପରେ ଦେବତା ଦଣ୍ଡାୟମାନ, କେଉଁଠାରେ ଦେବତା ଆଗ୍ରହରେ ପଦ୍ମ କଢ଼ିଟିଏ ହସ୍ତରେ ଧରିଅଛନ୍ତି କେଉଁଠାରେ ଅବା ଦେବତା ପଦ୍ମ ସିଂହାସନ ଉପରେ ବସି ହସ୍ତରେ ପ୍ରସ୍ଫୁଟିତ ପଦ୍ମ ନାଳ ସହିତ ଧରି ପାଦଦ୍ୱୟ ପଦ୍ମାସନ ଉପରେ ଲମ୍ବାଇ ରଖିଅଛନ୍ତି । ପୀଠର ପାଦରୁ ମନ୍ଦିରର କୁମ୍ଭ ପର୍ଯ୍ୟନ୍ତ ଦ୍ୱାରବନ୍ଧର ତଳ ଏରୁଣ୍ଡିରୁ ମନ୍ଦିରର ଉପରିସ୍ଥ ଗର୍ଭମୁଦ୍ରା ପର୍ଯ୍ୟନ୍ତ ସର୍ବତ୍ର ପଦ୍ମ କାମରେ ମଣ୍ଡିତ । ବିଶେଷତଃ ନାଟମନ୍ଦିରର ଯେଉଁ 'ଗର୍ଭମୁଦ୍ରା' ନାଟମନ୍ଦିର ପାଖରେ ତଳେ ପଡ଼ି ରହିଛି; ତାହାପରି ଏଡ଼େ ବୃହତ୍ ଓ ସୁନ୍ଦର ପଦ୍ମ ଓଡ଼ିଶାରେ ଅନ୍ୟତ୍ର ଆଦୌ ଦେଖାଯାଏ ନାହିଁ । ବାସ୍ତବିକ ପୂର୍ବେ ଯେପରି କୁହାଯାଇଅଛି, ଖ୍ରୀଷ୍ଟିୟାନମାନେ କଇଁ, ମିଶରବାସୀ ପଦ୍ମ * ଓ ଗ୍ରୀସବାସୀ ଗୋଲାପକୁ ଯେ ପରିମାଣରେ ଆଦର କରୁଥିଲେ; ଭାରତବାସୀ ଆର୍ଯ୍ୟମାନେ ପଦ୍ମକୁ ତାହା ଅପେକ୍ଷା ଅଧିକ ପବିତ୍ରତାର ସହିତ ଦେବତାମାନଙ୍କ ସମ୍ପର୍କରେ ବ୍ୟବହାର କରୁଥିଲେ । ପଦ୍ମ ସଙ୍ଗେ ଆରାଧ୍ୟ ଦେବତାଙ୍କ ମୁଖର ତୁଳନା, ଚକ୍ଷୁର ତୁଳନା, ପାଦର ତୁଳନା, ଆସନର ତୁଳନା, ମାନବ ହୃଦୟର ତୁଳନା । ସ୍ଥଳରେ ଯାହା ସୁନ୍ଦର, ଯାହା ନିର୍ମଳ ଏବଂ ଯାହା ପବିତ୍ର, ସେ ସମସ୍ତଙ୍କର ଉପମା ସ୍ଥଳ ପଦ୍ମ । ହିନ୍ଦୁ ହୃଦୟ ଏବଂ ସ୍ୱଭାବରେ ପଦ୍ମର ଯେପରି ଅଧିକାର, ଅନ୍ୟ କୌଣସି ଫୁଲର ସେପରି ନୁହେଁ । ପୁଣି କୋଣାର୍କ ସୂର୍ଯ୍ୟମନ୍ଦିର, ସୂର୍ଯ୍ୟ ଓ ପଦ୍ମର ସମ୍ବନ୍ଧ କେବଳ

---

* ମିଶର ଦେଶର ପୁରାଣ, ସାହିତ୍ୟ ଓ ଶିଳ୍ପରେ ପଦ୍ମର ପ୍ରଚୁର ବ୍ୟବହାର ହେଉଥିବାର ବର୍ଣ୍ଣିତ ଅଛି । ଭାରତ ପରି ମିଶରରେ 'ରା ବା ସୂର୍ଯ୍ୟଦେବତାଙ୍କ ସହିତ ନିତ୍ୟ ସମ୍ବନ୍ଧ' ଥିବାରୁ ତାହାଙ୍କ ଅର୍ଚ୍ଚନରେ ପଦ୍ମ ବ୍ୟବହାର କରା ଯାଉଥିଲା । ମୃତ ବ୍ୟକ୍ତିର ଅନ୍ତ୍ୟେଷ୍ଟିକ୍ରିୟାରେ ପଦ୍ମ ବିଶେଷ ପରିମାଣରେ ଲାଗୁଥିଲା ଏବଂ ମିଶରବାସୀଙ୍କର ବିଶ୍ୱାସ, କବରରୁ ଉଠିଲାବେଳେ ମୃତ ବ୍ୟକ୍ତି ପଦ୍ମ ମଣ୍ଡିତ ହୋଇ ଉଠିବ । କ୍ରମେ ଦେବକାର୍ଯ୍ୟରୁ ଯାଇ ବସନ ଭୂଷଣ ମଣ୍ଡନରେ ପଦ୍ମଫୁଲର ଚିତ୍ର ହେଉଥିଲା । ପଦ୍ମର ପୁଷ୍କର ଗୋଟିଏ ସାଧାରଣ ଖାଦ୍ୟ ରୂପେ ଚଳୁଥିଲା । ପୁଷ୍କରର ରୁଟି ରାଜାଠାରୁ ପ୍ରଜା ପର୍ଯ୍ୟନ୍ତ ସମସ୍ତଙ୍କର ଗୋଟିଏ ବଡ଼ ଲୋଭନୀୟ ଖାଦ୍ୟ ହୋଇଥିଲା ଏବଂ କୌଣସି କୌଣସି ଦେବତାଙ୍କୁ ସୁଖସେବ୍ୟ ଭୋଗ ସ୍ୱରୂପ ଅର୍ପିତ ହେଉଥିଲା ।

କବି-ସମୟ-ପ୍ରସିଦ୍ଧି ନୁହେଁ, ବିଜ୍ଞାନାନୁମୋଦିତ ଏବଂ ମିଶର ଦେଶୀୟ ପୁରାଣରେ ଯେପରି, ଭାରତୀୟ ଶାସ୍ତ୍ର ପୁରାଣମାନଙ୍କରେ ମଧ୍ୟ ସେହିପରି ନିତ୍ୟ ଓ ଅବିଚ୍ଛେଦ୍ୟ ବୋଲି ବହୁଳ ବର୍ଣ୍ଣିତ ହୋଇଅଛି । ଏହା ବ୍ୟତୀତ ପୂର୍ବେ ଯେପରି କୁହାଯାଇଅଛି, କୋଣାର୍କ ନିଜେ 'ପଦ୍ମ କ୍ଷେତ୍ର', କୋଣାର୍କ ମନ୍ଦିର ମଧ୍ୟ ପଦ୍ମ ଗଣ୍ଡ ଉପରେ ନିର୍ମିତ ହୋଇଥିଲା ଏବଂ କୋଣାର୍କ କ୍ଷେତ୍ରର ସମୁଦାୟ ମନ୍ଦିରମାନଙ୍କ ମସ୍ତକ ଉପରେ ପଦ୍ମ ଶଙ୍କୁ ସ୍ୱରୂପ ଥିଲା । ଏ ସବୁ ବ୍ୟତୀତ କୋଣାର୍କ ବାହିନୀ ନଦୀର ନାମ ମଧ୍ୟ ଥିଲା ଚିତ୍ରୋତ୍ପଳା ଏବଂ ସେହି ନଦୀ କୂଳବର୍ତ୍ତୀ ଓଡ଼ିଶାର ରାଜଧାନୀ 'ଚିତ୍ରୋତ୍ପଳା' ନାମରେ ଖ୍ୟାତ ଥିଲା । ପୁଣି ସର୍ବ ଶୋଭା ଓ ପବିତ୍ରତାର ଉପମା ସ୍ଥଳ ପଦ୍ମ ଏବଂ କଳା ସୌନ୍ଦର୍ଯ୍ୟର ପରାକାଷ୍ଠା କୋଣାର୍କ ମନ୍ଦିର; ସୁତରାଂ କୋଣାର୍କ ମନ୍ଦିରରେ ପଦ୍ମର ପ୍ରାଚୁର୍ଯ୍ୟ ସଙ୍ଗତ ଏବଂ ସ୍ୱାଭାବିକ । କୋଣାର୍କ 'ପଦ୍ମାଳୟ' ବୋଇଲେ ଅତ୍ୟୁକ୍ତି ହେବନାହିଁ ।

ଲତାପୁଷ୍ପର କାମ ଅପେକ୍ଷା କୋଣାର୍କର ଜୀବଜନ୍ତୁର କାମ ଆହୁରି କମନୀୟ ଓ ମନୋମୁଗ୍ଧକର । ଜୀବଜନ୍ତୁଙ୍କ ମଧ୍ୟରୁ କେତେକ କାଳ୍ପନିକ ଏବଂ କେତେକ ପ୍ରାକୃତିକ । ଓଡ଼ିଶାର ଅନ୍ୟ ମନ୍ଦିରମାନଙ୍କରେ ଯେପରି ସିଂହ ଦେଖାଯାଏ, କୋଣାର୍କର ସିଂହ ପ୍ରାୟ ସେହିପରି ମନଗଢ଼ା । ତେବେ ପ୍ରଭେଦ ଏତିକି, କୋଣାର୍କ ସିଂହର ମସ୍ତକ ଉପରେ ଗୋଟିଏ ଶିଙ୍ଘ ନାହିଁ ଏବଂ ଗଜସିଂହ ଓ ନାଟମନ୍ଦିରର ପୂର୍ବ ଦ୍ୱାର ସିଂହ ପ୍ରଭୃତି କୋଣାର୍କର କେତେକ ସିଂହ ମୂର୍ତ୍ତିର ବିରାଟ ଓ ରୁଦ୍ର ଆକାର ଏବଂ ସୁନ୍ଦର ସ୍ଥାପତ୍ୟ ଦେଖିଲେ ତାହା ଅପେକ୍ଷାକୃତ ପ୍ରାକୃତିକ ହେଲା ପରି ବୋଧହୁଏ । ତଥାପି ଏହି ସିଂହମୂର୍ତ୍ତିମାନଙ୍କ ସମ୍ବନ୍ଧେ ଏହା ନିଶ୍ଚୟ ସ୍ୱୀକାର କରିବାକୁ ହେବ ଯେ, କୋଣାର୍କ-ଶିଳ୍ପୀ ଓଡ଼ିଶାର ଅନ୍ୟାନ୍ୟ ମନ୍ଦିରର ଶିଳ୍ପୀମାନଙ୍କ ଅପେକ୍ଷା ଅଧିକ ପରିମାଣରେ ପ୍ରକୃତିର ଅନୁସରଣ କରିଅଛନ୍ତି ଏବଂ ସ୍ଥାପତ୍ୟର କଳ୍ପନାତୀତ ପରିପାଟୀ ବଶତଃ କୋଣାର୍କର ଜୀବଜନ୍ତୁ ବାସ୍ତବରେ ପ୍ରକୃତିର ରହସ୍ୟମୟ କ୍ରୋଡ଼ରେ ପୂର୍ଣ୍ଣପ୍ରାଣରେ ବିହାର କରୁଥିବାର ବୋଧ ହୁଅନ୍ତି ।

ଏହି ପ୍ରାକୃତିକ ଜୀବଜନ୍ତୁର କାମ ସମାଲୋଚକମାନଙ୍କୁ ଅତି ଆଶ୍ଚର୍ଯ୍ୟ ଭାବରେ ଚମତ୍କୃତ କରିଅଛି । ଜୀବମାନଙ୍କ ମଧ୍ୟରେ ହାତୀର ଦୃଶ୍ୟ କୋଣାର୍କର ନାନାସ୍ଥାନରେ ସବିଶେଷ ଦେଖାଯାଏ । ମନ୍ଦିରର ତଳପଭନରୁ ସୂର୍ଯ୍ୟଦେବଙ୍କ ସିଂହାସନ ପର୍ଯ୍ୟନ୍ତ ସର୍ବତ୍ର ହାତୀର ଜୀବନ୍ତ ପ୍ରତିକୃତି ଖୋଦିତ ଅଛି । ବିଶେଷତଃ ଜଗମୋହନର ଉତ୍ତରରେ ଯେଉଁ ଦୁଇଟି ପ୍ରକାଣ୍ଡ ହାତୀ ମୂର୍ତ୍ତି ଅଛି (ଅଷ୍ଟମ ଅଧ୍ୟାୟ), ତାହା ଯେପରି ଜୀବନ୍ତ ଓ ପ୍ରାକୃତିକ, ସେହିପରି ମଧ୍ୟ ସମାଲୋଚକମାନଙ୍କ ମୁଖରେ ଅତୀବ ପ୍ରଶଂସିତ । ଏହି ହାତୀ ଅପେକ୍ଷା ମୁଖଶାଳାର ଦକ୍ଷିଣ ପାର୍ଶ୍ୱସ୍ଥିତ ଘୋଡ଼ା ମୂର୍ତ୍ତି ଦୁଇଟି ଆହୁରି ଆଶ୍ଚର୍ଯ୍ୟଜନକ । ଏଥିରେ ପ୍ରକୃତିର ଅନୁକରଣ ଥିଲା ପରି ବୋଧହୁଏ ନାହିଁ; ବରଂ ଦୁଇଟି ଜୀବନ୍ତ ଘୋଡ଼ା ପ୍ରବଳ ବେଗରେ ରଣକ୍ଷେତ୍ରରେ ଧାବମାନ ହେଉଥିବାର ଜଣାପଡ଼େ ଏବଂ ହଠାତ୍ ଦେଖିଲେ

ହୃଦୟରେ ବାସ୍ତବିକ ଭୟ ଜାତ ହୁଏ । ମୁଁ ପ୍ରଥମରେ ଚନ୍ଦ୍ର ପକ୍ଷ ରାତ୍ରରେ ଏହି ଭୀମରୂପୀ ଉନ୍ମତ୍ତ ଘୋଡ଼ା ଦୁଇଟି ଦେଖି ପାଖକୁ ଯିବା ପାଇଁ ଭୟ କରିଥିଲି । ଏହି ଘୋଡ଼ା ଦୁଇଟି ସମ୍ବନ୍ଧରେ ସ୍ୱନାମଧନ୍ୟ ଶିଳ୍ପ-ସମାଲୋଚକ ଅଧ୍ୟାପକ ହାଭେଲ ମହାଶୟ ଲେଖିଅଛନ୍ତି *, ''ଦୈବାତ୍ ଯଦି ଏହି ଘୋଡ଼ା ଦୁଇଟି ଗ୍ରୀସୀୟ ବା ରୋମୀୟ ସ୍ଥାପତ୍ୟ ବୋଲି ପରିଚିତ ହୋଇଯାନ୍ତା, ତାହାହେଲେ ଏହି ଚମତ୍କାର କଳାକୌଶଳ ଇଉରୋପ ବା ଆମେରିକାର ରାଜଧାନୀମାନଙ୍କରେ ଥିବା ପ୍ରଧାନ ପ୍ରଧାନ ଯାଦୁଘରମାନଙ୍କର ସର୍ବଶ୍ରେଷ୍ଠ ଗୌରାବାବହ ବସ୍ତୁ ହୋଇଥାନ୍ତା । ଏହି ଘୋଡ଼ା ଦୁଇଟିରେ ଓଡ଼ିଆମାନେ ଜଗତକୁ ଦେଖାଇ ଦେଇଅଛନ୍ତି, କିପର ସେମାନେ ଇଉରୋପର ସର୍ବଶ୍ରେଷ୍ଠ ଶିଳ୍ପୀମାନଙ୍କ ସଙ୍ଗେ ସମାନ କୌଶଳ ଓ ଦକ୍ଷତା ସହକାରେ ଯୁଦ୍ଧଜୟର ଗର୍ବ ଓ ଉନ୍ମତ୍ତ ଯୁଦ୍ଧର ମହତ୍ତ୍ୱ ଯଥେଷ୍ଟ ଉନ୍ନତା ଓ ଉତ୍ସାହର ସହିତ ପ୍ରସ୍ତର ଦେହରେ ଦେଖାଇ ପାରନ୍ତି । ଇଉରୋପର ସର୍ବଶ୍ରେଷ୍ଠ କଳା ସହିତ ଏହା ସୁନ୍ଦର ରୂପେ ତୁଳନୀୟ ।'' କେବଳ ହାଭେଲ କାହିଁକି, ହଣ୍ଟର ପ୍ରଭୃତି ଅନ୍ୟାନ୍ୟ ଇଉରୋପୀୟ ଓ ଭାରତୀୟ ସମାଲୋଚକମାନେ ଅଳ୍ପାଧିକ ପରିମାଣରେ ଉକ୍ତ ଘୋଡ଼ା ଦୁଇଟିର ଏହିରୂପ ଭୂୟସୀ ପ୍ରଶଂସା କରିଅଛନ୍ତି ** । ସ୍ଥୂଳତଃ ଏହି ଜୀବନ୍ତ ଓ ଭୀଷଣାକୃତି ଘୋଡ଼ା ଦୁଇଟି ଦର୍ଶକର ଯେପରି ସମାଲୋଚକର ମଧ୍ୟ ସେହିପରି ନେତ୍ରପିତୁଳା ସ୍ୱରୂପ ହୋଇଥାଏ ।

କୋଣାର୍କର ଦେବ ଦାନବ ଓ ମାନବ ମୂର୍ତ୍ତିଗୁଡ଼ିକ ସ୍ଥାପତ୍ୟର ଚୂଡ଼ାନ୍ତ ନିଦର୍ଶନ । ମୂର୍ତ୍ତିଗୁଡ଼ିକର ଶରୀର ଯେପରି ଚିକ୍କଣ, ସେହିପରି ଜୀବନମୟ ଦେଖାଯାଏ ଏବଂ ଏତେ କାଳ ପୂର୍ବେ ନିର୍ମିତ ହୋଇଥିଲେହେଁ, ବୋଧହୁଏ ଯେପରି କାରିଗର ବର୍ତ୍ତମାନ ମୂର୍ତ୍ତିଗୁଡ଼ିକର କାମ ଶେଷ କରି ବିଶ୍ରାମାର୍ଥ ଅନ୍ୟତ୍ର ଯାଇଅଛି । ଯୁଗ ଯୁଗ ବ୍ୟାପୀ ଖରା ବର୍ଷା ଖାଇ ମଧ୍ୟ ମୂର୍ତ୍ତିଗୁଡ଼ିକ ଏପର୍ଯ୍ୟନ୍ତ ଅବିକଳ ନୂତନ ଓ ସଜୀବ ପରି ବୋଧହୁଏ । କୋଣାର୍କ ଶିଳ୍ପୀଙ୍କର ସର୍ବଶେଷ କ୍ଷମତା ଏହି କଳା ମୁଗୁନିପଥରର ମୂର୍ତ୍ତିଗୁଡ଼ିକରେ ପ୍ରଦର୍ଶିତ । ଭକ୍ତ, ଗାୟକ, ଶିକାରୀ, ଯୋଦ୍ଧା, ଗୁରୁ, ଶିଷ୍ୟ, ରସିକ ପ୍ରଭୃତି ମନୁଷ୍ୟର ନାନା ଭାବଭଙ୍ଗି ମୂର୍ତ୍ତିଗୁଡ଼ିକ ମୁଖରେ ସୁନ୍ଦର ଫୁଟି ବାହାରେ । ସ୍ଥାନେ ସ୍ଥାନେ ଦେବ ଓ ମାନବ ମୂର୍ତ୍ତିଗୁଡ଼ିକରେ ଯେଉଁ ଅଳଙ୍କାର ଦିଆଯାଇଛି, ସୂକ୍ଷ୍ମତାରେ ତାହା ସୁନାର ଅଳଙ୍କାର ସହିତ ସୁନ୍ଦର ତୁଳନୀୟ । ସ୍ଥଳରେ ମୂର୍ତ୍ତିଗୁଡ଼ିକରେ ସ୍ଥାପତ୍ୟର ପରାକାଷ୍ଠା ଯେପରି ଦେଖାଯାଇଛି, ଶିଳ୍ପୀ ହୃଦୟର ଆବେଗ, ଭାବର ମହତ୍ତ୍ୱ ଓ ଅନୁଭବର ଗଭୀରତା ସେହିପରି ପ୍ରକଟିତ ହୋଇଅଛି । ଶ୍ରୀଯୁକ୍ତ ମନମୋହନ ଗାଙ୍ଗୁଲୀ କୋଣାର୍କ ମୂର୍ତ୍ତିଗୁଡ଼ିକର ଅଙ୍ଗ ପ୍ରତ୍ୟଙ୍ଗର ଅନୁପାତ ସ୍ଥିର କରି ଶୁକ୍ରନୀତି ଅନୁସାରେ ସମସ୍ତ ଅବିକଳ ଥିବାର ପ୍ରମାଣ କରିଅଛନ୍ତି *** । ଏ ସ୍ଥଳରେ ସେ ସବୁର ଉଦ୍ଧାର ବରଂ ଅନାବଶ୍ୟକ ।

* Prof. Havell - "Indian Sculpture and Painting".

** Hunter - Orissa. Vol. I. P. 294. — (ଘୋଡ଼ାର ପ୍ରଶଂସା ଦ୍ରଷ୍ଟବ୍ୟ)

*** Orissa and Her Remains, P. P. 222-223.

କୋଣାର୍କ ମୂର୍ତ୍ତିଗୁଡ଼ିକରେ ମାଂସପେଶୀ ଦେଖାଯାଏ ନାହିଁ । ଗ୍ରୀସ ଓ ରୋମ ଦେଶର ମୂର୍ତ୍ତିମାନ ମାଂସପେଶୀ ହେତୁରୁ ଯଥେଷ୍ଟ ପ୍ରାକୃତିକ ଦେଖାଯାଏ । କେବଳ କୋଣାର୍କରେ ନୁହେଁ, ଭାରତରେ ପ୍ରାୟ ସର୍ବତ୍ର ମୂର୍ତ୍ତିଗୁଡ଼ିକର ମାଂସପେଶୀ ନ ଥାଏ । ଇଉରୋପୀୟ ସମାଲୋଚକମାନେ ଭାରତୀୟ ସ୍ଥାପତ୍ୟରେ ଏହା ଗୋଟିଏ ଗୁରୁତର ଦୋଷ ବୋଲି ଧରନ୍ତି ଏବଂ ମୂର୍ତ୍ତିଗୁଡ଼ିକ ପ୍ରକୃତିର ଅବିକଳ ଅନୁକରଣ ନୁହେଁ ବୋଲି କହନ୍ତି । ଏହି ଦୋଷର ନିରାକରଣ ନିମନ୍ତେ ରାଜେନ୍ଦ୍ର ଲାଲ ଓ ଶ୍ରୀ ବିଷଦ୍ ସ୍ୱରୂପ ପ୍ରଭୃତି ଭାରତବାସୀଙ୍କ ଶରୀର ଗଠନର ଉଲ୍ଲେଖ କରନ୍ତି । ଭାରତୀୟମାନଙ୍କ ଶରୀରରେ ମାଂସପେଶୀ ଯଥେଷ୍ଟ ବଢ଼େ ନାହିଁ । ରାଜା, ମହାରାଜା, ମହନ୍ତ, ଜମିଦାରମାନଙ୍କର ଶରୀର ଯେତେ ବର୍ତ୍ତୁଳ, ସେତେ ମାଂଶପେଶୀଦ୍ୱାରା ଉଚ୍ଚ ନୀଚ ନୁହେଁ । ତେଣୁ ମନୁଷ୍ୟ ମୂର୍ତ୍ତିଗୁଡ଼ିକରେ ମାଂସପେଶୀ ଦେଖା ଯାଏନାହିଁ; ସୁତରାଂ ଭାରତୀୟ ଦୃଷ୍ଟିରେ ସେଗୁଡ଼ିକ ପ୍ରାକୃତିକ । ଏହି ପ୍ରମାଣ କିନ୍ତୁ ବଡ଼ ସମୀଚୀନ ବୋଧ ହୁଏନାହିଁ । ବର୍ତ୍ତମାନ ଅବଶ୍ୟ କୌଣସି କୌଣସି ରାଜା ବା ଜମିଦାରଙ୍କର ମାଂସପେଶୀ ନ ଥାଇପାରେ; ମାତ୍ର ଯେ ଯୁଗରେ କୋଣାର୍କ ନିର୍ମାଣ ହୋଇଥିଲା, ସେ ଯୁଗର ରାଜା ମହାରାଜାମାନେ ତୁଳିତଳ୍ପ ଶଯ୍ୟାରେ ସୁଖନିଦ୍ରା ଯାଇ କେବଳ ବିଳାସରେ ବୟସ କଟାଉ ନ ଥିଲେ; ସେମାନେ ବୀର-ପୁରୁଷ ଓ ଯୁଦ୍ଧପ୍ରିୟ ଥିଲେ । ଅସ୍ତ୍ରଶସ୍ତ୍ର ଶିକ୍ଷା, ଅଶ୍ୱ ସଞ୍ଚାଳନ ପ୍ରଭୃତି ସେ ଯୁଗରେ ରାଜା ମହାରାଜାମାନଙ୍କର ନିତ୍ୟ ବିଳାସକ୍ରୀଡ଼ା ଥିଲା; ସୁତରାଂ ସେମାନଙ୍କର ମାଂସପେଶୀ ପୁଷ୍ଟ, ପ୍ରକଟ ହୋଇ ନ ଥିଲା ବୋଲି କୁହାଯାଇ ନ ପାରେ ।

କେବଳ ମାସଂପେଶୀ ନୁହେଁ, ସ୍ତ୍ରୀମାନଙ୍କର ସ୍ତନ ଚିତ୍ରଣରେ ମଧ୍ୟ ଏହି ଅଭାବ ଦେଖାଯାଏ । ସ୍ତନ ଈଷତ୍ ଅବନତ ନ ହୋଇ ବରଂ ପରିଷ୍କାର ସିଧା । ଏହାର କାରଣ ସ୍ଥାପତ୍ୟର ଦୋଷ ନୁହେଁ କି ଶିଳ୍ପର ଅନୁଭବର ଅଭାବ ନୁହେଁ । କୋଣାର୍କ ସୂର୍ଯ୍ୟ ମୂର୍ତ୍ତିମାନଙ୍କର ଆଣ୍ଠୁ ଓ ନାଭିମଣ୍ଡଳ ପ୍ରଭୃତି ଯେପରି ମନୋମୁଗ୍ଧକର ହୋଇଅଛି, ତାହା ଦେଖିଲେ ମାଂସପେଶୀର ଅଭାବ ଯୋଗୁଁ ସ୍ଥାପତ୍ୟର ଦୋଷ ଧରାଯାଇ ନ ପାରେ । ଓଡ଼ିଆ ତଥା ଭାରତୀୟମାନଙ୍କର ମାନସିକ ଭାବ ଓ ଚିନ୍ତାରେ ଏହାର ପ୍ରକୃତ ତତ୍ତ୍ୱ ଅନୁସନ୍ଧାନ କରିବାକୁ ହେବ ।

ଭାରତୀୟ ଚିନ୍ତା ଆଧ୍ୟାତ୍ମିକତାଆଡ଼କୁ ଯେତେ ଉନ୍ମୁଖ, ଭୌତିକତା ପ୍ରତି ସେତେ ନୁହେଁ । କେବଳ ପ୍ରକୃତିର ଅନୁସରଣ କରିବାକୁ ପ୍ରାଚୀନ ଭାରତୀୟ ଆର୍ଯ୍ୟମାନେ ହେୟ ମଣୁଥିଲେ । ମନୁଷ୍ୟର ସ୍ଥୂଳ ଶରୀର କ୍ଷଣସ୍ଥାୟୀ ଏବଂ ପ୍ରକୃତିର ସନ୍ତୋଷ ସାଧନ ବିଳାସର ନାମାନ୍ତର ମାତ୍ର । ସୁତରାଂ ଆର୍ଯ୍ୟ ଋଷିମାନେ 'ତୃଷ୍ଣାଲୟେ ପୁଣି ସୀମାତୀତ ସୁଖରାଜ୍ୟେ ବିହରନ୍ତି ମୁଦେ ।' ପ୍ରକୃତିର ଉପରକୁ ଉଠି ଆଧ୍ୟାତ୍ମିକତାରେ ତନ୍ମୟ ହେବା ଭାରତୀୟ ଜୀବନର ଚରମ ଲକ୍ଷ୍ୟ । ଯେଉଁମାନେ କଳାବିଦ୍ୟାରେ ଏତେ ପାରଙ୍ଗମ ଥିଲେ, ଇଚ୍ଛା

କରିଥିଲେ ସେମାନେ ମନୁଷ୍ୟ ମୂର୍ତ୍ତିଗୁଡ଼ିକରେ ପ୍ରକୃତିର ଅବିକଳ ଅନୁକରଣ କରି ପାରିଥାନ୍ତେ, ବୋଲିବା ବାହୁଲ୍ୟ ମାତ୍ର । ଭୁବନେଶ୍ୱରର ଜୀବନ୍ତ ବୃଷଭ ମୂର୍ତ୍ତି ଏବଂ କୋଣାର୍କର ହସ୍ତୀ ଓ ଅଶ୍ୱ ମୂର୍ତ୍ତି ପ୍ରକୃତି ଅନୁକରଣର ଚୂଡ଼ାନ୍ତ ନିଦର୍ଶନ । ବାସ୍ତବରେ ଓଡ଼ିଆ ତଥା ଭାରତୀୟମାନେ ପ୍ରକୃତିର ଅନୁସରଣ କରି ଶିଳ୍ପକୁ ବର୍ତ୍ତମାନତାରେ କେବଳ ଆବଦ୍ଧ ରଖିବା ନିମନ୍ତେ କଦାପି ଇଚ୍ଛା କରି ନ ଥିଲେ । ଗ୍ରୀସୀୟ ଓ ରୋମକମାନଙ୍କର ଶିଳ୍ପ କେବଳ ଅନୁକରଣରେ ପର୍ଯ୍ୟବସିତ; କିନ୍ତୁ ଆମ୍ଭମାନଙ୍କର ଶିଳ୍ପ ଆଧ୍ୟାତ୍ମିକ idealistic । ସେମାନଙ୍କ କଳାରେ ଆମ୍ଭମାନଙ୍କ ପରି ବ୍ୟଞ୍ଜନା ଶକ୍ତି ନାହିଁ । ଭୌତିକତା ବା ବର୍ତ୍ତମାନତା ଆଡୁ ଦେଖିଲେ ଆମ୍ଭମାନଙ୍କର କଳା ଅପୂର୍ଣ୍ଣ; କିନ୍ତୁ ପରମାର୍ଥତା ବା ଭବିଷ୍ୟତଆଡୁ ପରୀକ୍ଷା କଲେ ଗ୍ରୀସୀୟ ଏବଂ ରୋମକ କଳା ନିତାନ୍ତ ନିରର୍ଥକ । କଳା କେବଳ ବର୍ତ୍ତମାନତାରେ ସମ୍ପୂର୍ଣ୍ଣ ଆବଦ୍ଧ ନ ରହି ଭବିଷ୍ୟତ ପ୍ରତି ଉନ୍ମୁଖ ରହିବା ଆବଶ୍ୟକ । କଳା ଏକ ଦେଶ ବା କାଳର ବସ୍ତୁ ନୁହେଁ । ଏହା ବିଶ୍ୱମୟ ଏବଂ ଅନନ୍ତ କାଳ ପର୍ଯ୍ୟନ୍ତ ଭଗବାନଙ୍କର ଅଭିବ୍ୟକ୍ତିର ଅନ୍ୟତମ ସୋପାନ । ସୁତରାଂ ବର୍ତ୍ତମାନ କାଳ ଯେପରି ତାହାର ପୂର୍ବବର୍ତ୍ତୀ ଅବସ୍ଥା ଉପରେ ନିର୍ଭର କରେ, ସେହିପରି ମଧ୍ୟ ତାହା ଭବିଷ୍ୟତ ଅବସ୍ଥା ନିମନ୍ତେ ପଥ ଉନ୍ମୁକ୍ତ ରଖିବା ଉଚିତ । ଆଚାର୍ଯ୍ୟ ହେଗେଲ ଯଥାର୍ଥତଃ କହନ୍ତି, ''କଳାର ବିଭିନ୍ନ ଅଭିବ୍ୟକ୍ତିମାନଙ୍କ ମଧ୍ୟରେ ସ୍ୱୟଂ ଭଗବାନ କେନ୍ଦ୍ର ସ୍ୱରୂପ ବିଦ୍ୟମାନ ।'' କଳାକୁ କେବଳ ବର୍ତ୍ତମାନ ଅବସ୍ଥାର ଜଡ଼ ଭୌତିକତାରେ ଆବଦ୍ଧ ରଖିଲେ ତାହା ସ୍ଥବିର, ନୀରସ ଓ ଲକ୍ଷ୍ୟଭ୍ରଷ୍ଟ ହୋଇଯାଏ ।

ଅତଏବ ଭାରତୀୟମାନେ କେବଳ ବାହ୍ୟ ଦୃଶ୍ୟମାନ ଜଡ଼ ଜଗତରେ କଳାକୁ ଏକାବେଳକେ ଆବଦ୍ଧ ନ ରଖି ଏହି ଜଗତର ଅନ୍ତରାଳରେ ଯେଉଁ ପ୍ରକୃତ, ଶାଶ୍ୱତ, ଜୀବନ୍ତ ସତ୍ ବିଦ୍ୟମାନ ଅଛି, ତାହାକୁ ପ୍ରକାଶ କରିବାରେ କଳାର ବ୍ୟବହାର କରୁଥିଲେ । ଏମନ୍ତ କି ଯେତେବେଳେ ଶିଳ୍ପୀ ବାସ୍ତବ ମନୁଷ୍ୟର ଆକାର ପ୍ରକାର, ଭାବଭଙ୍ଗୀ ବ୍ୟକ୍ତ କରିବାକୁ ଯାଇଅଛି, ସେତେବେଳେ ଏହି ପରମାର୍ଥ ଭାବ ଅଜ୍ଞାତସାରରେ ଶିଳ୍ପୀ ମନରେ କାର୍ଯ୍ୟ କରିଅଛି ଏବଂ ଶିଳ୍ପୀ ମନୁଷ୍ୟ ପରିବର୍ତ୍ତରେ ବ୍ରହ୍ମା, ବିଷ୍ଣୁ, ସୂର୍ଯ୍ୟ, ଇନ୍ଦ୍ର, କାଳୀ, ଦୁର୍ଗା ପ୍ରଭୃତି ଦେବତାମାନଙ୍କୁ ମନୁଷ୍ୟ ଆକାରରେ କଳ୍ପନା କରିଅଛି । ମନୁଷ୍ୟର ଭାବ, ବିକାର ଓ କାର୍ଯ୍ୟ ଏବଂ ସାମାଜିକ ଓ ନୈତିକ ଚିନ୍ତା ସମସ୍ତ ନାନା ଦେବଦେବୀଙ୍କ ମୂର୍ତ୍ତିରେ ପରିସ୍ଫୁଟ ହୋଇଅଛି । ଦେବତାମାନଙ୍କୁ ଏହିରୂପେ ମନୁଷ୍ୟ ରୂପରେ କଳ୍ପନା କରିବାରେ ସେମାନଙ୍କ ଦେବତ୍ୱର ଗ୍ଲାନି ହୋଇନାହିଁ; ବରଂ ଏହାଦ୍ୱାରା ମାନବତ୍ୱର ମହତ୍ତ୍ୱ ଯଥେଷ୍ଟ ବଢ଼ିଯାଇ ଦେବତାମାନଙ୍କର ଅପରିବର୍ତ୍ତନୀୟ ଚିରାନନ୍ଦମୟ ଅବସ୍ଥା ଆଡ଼କୁ ଅଗ୍ରସର ହୋଇଅଛି ।

ଶ୍ରୀଯୁକ୍ତ ମନମୋହନ ଗାଙ୍ଗୁଲୀ ଯଥାର୍ଥରେ କହନ୍ତି ଯେ, ମନୁଷ୍ୟ ରୂପ ଗଠନ କଲାବେଳେ ଶିଳ୍ପୀ ରାଜସଭାବାପନ୍ନ ବୀରପୁରୁଷକୁ ଆଦର୍ଶ କରି ନ ଧରି ବରଂ ସାତ୍ତ୍ୱିକ ଦେବଭାବାପନ୍ନ ସନ୍ନ୍ୟାସୀମାନଙ୍କର ଶରୀର ଅନୁକରଣରେ ମୂର୍ତ୍ତି ଗଠନ କରିଅଛନ୍ତି ଏବଂ

ସେ ରାମକୃଷ୍ଣ ପରମହଂସଙ୍କ ଶରୀର ଦୃଷ୍ଟାନ୍ତ ସ୍ୱରୂପ ଦେଖାଇଅଛନ୍ତି । ଯେଉଁମାନେ ଭୌତିକତା ପ୍ରତି ଏତେ ବିମୁଖ, ସେମାନେ କଦାପି ରାଜସ-ପ୍ରକୃତିକ ବୀରପୁରୁଷମାନଙ୍କୁ କଳାର ଆଦର୍ଶ କରି ରଖି ନ ପାରନ୍ତି । ଦେବଭାବାପନ୍ନ ସାତ୍ତ୍ୱିକ ସ୍ୱଭାବ ସନ୍ନ୍ୟାସୀ ଜୀବନ ଭାରତର ଚିରନ୍ତନ ଆଦର୍ଶ, ସୁତରାଂ କଳାରେ ମନୁଷ୍ୟ ମୂର୍ତ୍ତି କଳ୍ପନା କଲାବେଳେ ଶଙ୍କର, ଚୈତନ୍ୟ ଓ ରାମକୃଷ୍ଣ ପ୍ରଭୃତି ଆଦର୍ଶ ପୁରୁଷ ସ୍ୱରୂପ ଶିଳ୍ପୀ ମନରେ ଉଦିତ ହେବା ସ୍ୱାଭାବିକ । ଏପରି ଦୃଷ୍ଟିରେ ଦେଖିଲେ ମନୁଷ୍ୟ ମୂର୍ତ୍ତିମାନଙ୍କରେ ମାଂସପେଶୀର ଅଭାବ ଅସ୍ୱାଭାବିକ ବା ଆଶ୍ଚର୍ଯ୍ୟଜନକ ସ୍ଥାପତ୍ୟ ଦୋଷ ବୋଲି ବୋଧହେବ ନାହିଁ ।

ପୁଣି ମାଂସପେଶୀ ପ୍ରାକୃତିକ ମନୁଷ୍ୟ ଶରୀରର ଲକ୍ଷଣ ନୁହେଁ । ଶିଶୁ ଦେହରେ ମାଂସପେଶୀ ଦେଖାଯାଏ ନାହିଁ । କେବଳ ଅପ୍ରାକୃତିକ ମନୁଷ୍ୟ ଶରୀରରେ ତାହା ଦେଖାଯାଏ । ଅତଏବ କେବଳ ମାଂସପେଶୀର ଅଭାବ ଯୋଗେ କୋଣାର୍କର ମନୁଷ୍ୟ ଓ ଦେବମୂର୍ତ୍ତି ଗୁଡ଼ିକ ଅପ୍ରାକୃତିକ ବୋଲି ଉପେକ୍ଷିତ ହୋଇ ନ ପାରେ । ପରନ୍ତୁ ସେଗୁଡ଼ିକ ଶିଳ୍ପୀର ସର୍ବୋତ୍କୃଷ୍ଟ କଳ୍ପନା, ସ୍ଥାପତ୍ୟର ଚୂଡ଼ାନ୍ତ ନିଦର୍ଶନ ସ୍ୱରୂପ ଯୁଗେ ଯୁଗେ କୋଣାର୍କ ଦର୍ଶକଙ୍କର ନେତ୍ର ପିତୁଳା ସରୂପ ହୋଇଥିବ ।

ମନୁଷ୍ୟ ରୂପ ମଧ୍ୟରେ ମୁଖଶାଳାର ଉପର ବରାଣ୍ଡିର ସ୍ତ୍ରୀ ପୁରୁଷ ଯୁଗଳ ମୂର୍ତ୍ତିଗୁଡ଼ିକ ଅତ୍ୟନ୍ତ ମନୋହର । ବର୍ତ୍ତମାନ ସେଗୁଡ଼ିକ ଅଶ୍ଳୀଳ ମୂର୍ତ୍ତି ଆଖ୍ୟାରେ ଲେଖକମାନଙ୍କ ଦ୍ୱାରା ସମାଲୋଚିତ ହେଉଅଛି । ଶ୍ରୀ ବିଷନ୍ ସ୍ୱରୂପ କହନ୍ତି ଯେ, ଅଶ୍ଳୀଳତା ବାଦ ଦେଲେ ସେହି ମୂର୍ତ୍ତିଗୁଡ଼ିକ ସୁନ୍ଦର ଗଠନ ଓ ଆକାର ନିମନ୍ତେ ଶିଳ୍ପୀର ପ୍ରଧାନ ଗୌରବର ବସ୍ତୁ । ବାସ୍ତବିକ ସେହି ମୂର୍ତ୍ତି ଗୁଡ଼ିକ କନ୍ଦାପଥରରେ ନ ହୋଇ କଳା ମୁଗୁନି ପଥରରେ ହୋଇଥିଲେ ସେମାନଙ୍କର ଅଭାବନୀୟ ସୌନ୍ଦର୍ଯ୍ୟବଶତଃ ଅଶ୍ଳୀଳତା ଆଉ ଦର୍ଶକର ଦୃଷ୍ଟିରେ ପଡୁ ନ ଥାନ୍ତା ।

କେବଳ କୋଣାର୍କ ନୁହେଁ, ଓଡ଼ିଶାର ପ୍ରାୟ ସମସ୍ତ ମନ୍ଦିରରେ ଏହିପରି ଅଶ୍ଳୀଳ ପ୍ରତିକୃତି ଦେଖାଯାଏ; କିନ୍ତୁ କୌଣସିଠାରେ ଏହା ବିମାନ ବା ବଡ଼ଦେଉଳରେ ନ ଥାଏ । କେବଳ ମୁଖଶାଳାରେ ଏହା ସାଧାରଣତଃ ଥାଏ । ତଥାପି ଦେବ ମନ୍ଦିରରେ ଏହି ଅଶ୍ଳୀଳ ମୂର୍ତ୍ତିଗୁଡ଼ିକର ଅବସ୍ଥାନ ସମାଲୋଚକମାନଙ୍କୁ ବଡ଼ ଦୁର୍ବୋଧ୍ୟ ବୋଧ ହୋଇଅଛି ଏକେ ଦେବ ମନ୍ଦିର ତହିଁରେ ପୁଣି କୋଣାର୍କ ପରି ମନ୍ଦିରରେ କାରୁକାର୍ଯ୍ୟ ଏତେ ସୁନ୍ଦର ଏବଂ ଭାବ ଓ ରୁଚିର ବିକାଶ ଏତେ ମହୀୟାନ୍ ହୋଇଥିବା ସ୍ଥଳେ, ଏହିପରି ଅଶ୍ଳୀଳ ପ୍ରତିକୃତିଦ୍ୱାରା ମନ୍ଦିରକୁ ହୀନ କରିଥିବା ଅବଶ୍ୟ ପ୍ରଧାନ ସମସ୍ୟାର ବିଷୟ । ସମାଲୋଚକମାନେ ଏହାର ଅନୁକୂଳ ଓ ପ୍ରତିକୂଳରେ ବହୁ ମତ ସ୍ଥାପନ କରି ନାନା ସମାଧାନରେ ଉପନୀତ ହୋଇଅଛନ୍ତି । କେହି କେହି ଏହାକୁ ଦେବ ଦର୍ଶନ ପୂର୍ବରୁ ଇନ୍ଦ୍ରିୟ ନିବୃତ୍ତିର ପରିଚାୟକ ସ୍ୱରୂପ ଧରନ୍ତି ।

କେହି କେହି ପୁଣି କହନ୍ତି, ଇନ୍ଦ୍ରିୟ ନିବୃତ୍ତିର ପରୀକ୍ଷା ନିମନ୍ତେ ଦେବମନ୍ଦିରରେ ଏହାର ସମାବେଶ ହୋଇଅଛି । ଅବଶ୍ୟ ଏହା କେବଳ ଅନୁମାନ; ମାତ୍ର ମନ୍ଦିର ନିର୍ମାତାଙ୍କର ହୃଦୟର ଭାବ ଏହା ଥିଲା କି ନାହିଁ ନିଶ୍ଚିତରୂପେ ଜାଣିବା ସୁକଠିନ ।

କୋଣାର୍କ ମନ୍ଦିରର ପୀଠ ବରାଣ୍ଡିରେ ମଧ୍ୟ ଏହିପରି ଅଶ୍ଳୀଳ ମୂର୍ତ୍ତିଯୁଗଳ ବୃକ୍ଷ ତଳରେ ଖୋଦିତ ଅଛି । କେହି କେହି ଅନୁମାନ କରନ୍ତି ଯେ, ଯେଉଁ ବୃକ୍ଷ ତଳେ ବୁଦ୍ଧଦେବ ନିର୍ବାଣ ପାଇଥିଲେ, ଏହା ସେହି ବୃକ୍ଷ ଏବଂ ସ୍ତ୍ରୀ ପୁରୁଷ ଯୁଗଳ-ମୂର୍ତ୍ତି ମଧ୍ୟରୁ ପୁରୁଷ ନିଜେ ବୁଦ୍ଧଦେବ ଏବଂ ସ୍ତ୍ରୀ ମୂର୍ତ୍ତି ମୁକ୍ତି ବା ନିର୍ବାଣ । ଏହି ଅନୁମାନ ଯେପରି ହାସ୍ୟାସ୍ପଦ, ସେହିପରି ମଧ୍ୟ ଅସମ୍ଭବ । ବୁଦ୍ଧଦେବ ଏଡ଼େ ରସିକ ବେଶରେ ନିର୍ବାଣ ପାଇଥିବା କଳ୍ପନା ସୁଦ୍ଧା କରାଯାଇ ନ ପାରେ । ପୁଣି ନିର୍ବାଣ ଏହିପରି ସ୍ତ୍ରୀ ବେଶରେ ବୁଦ୍ଧଦେବଙ୍କ ନିକଟରେ ଉପସ୍ଥିତ ହୋଇଥିବାର ବୌଦ୍ଧ ଶାସ୍ତ୍ରମାନଙ୍କରେ କୌଣସି ପ୍ରମାଣ ନାହିଁ । ଏହିପରି ପ୍ରତ୍ୟେକ ଦୃଶ୍ୟରେ ବୁଦ୍ଧଦେବଙ୍କୁ ଲଗାଇବା କେବଳ ବାତୁଳତା ଭିନ୍ନ ଅନ୍ୟ କଅଣ ହୋଇପାରେ ?

ଫର୍‌ଗୁସନ୍ କହନ୍ତି – ଏହି ମୂର୍ତ୍ତିଗୁଡ଼ିକ ଏତେ ଅଶ୍ଳୀଳ ଯେ, ନିତାନ୍ତ କଦର୍ଯ୍ୟ ଭାବାପନ୍ନ କୌଣସି ଇଉରୋପୀୟ ଶିଳ୍ପୀ କୋଣାର୍କର ଅଶ୍ଳୀଳ ପ୍ରତିକୃତିରୁ ଗୋଟିଏ ମାତ୍ର କଳ୍ପନା ସୁଦ୍ଧା କରିପାରିବ ନାହିଁ । ମନ୍ଦିରମାନଙ୍କରେ ଏହାର ସମାବେଶର କାରଣ ସ୍ଥିର କରିବାକୁ ଯାଇ ସେ କହନ୍ତି ଯେ, ଏହା କେବଳ ବୈଷ୍ଣବ ଧର୍ମର ପ୍ରଭାବ, ଶୈବ ଧର୍ମରେ ଏହା ସମ୍ଭବ ହୋଇ ନ ପାରେ । ସୁତରାଂ କେବଳ ବିଷ୍ଣୁ ମନ୍ଦିରମାନଙ୍କରେ ଏଗୁଡ଼ିକ ଦେଖାଯାଏ ଏବଂ ଏହି ହେତୁରୁ କୋଣାର୍କକୁ ସେ ଗୋଟିଏ ବିଷ୍ଣୁ ମନ୍ଦିର ବୋଲି ପ୍ରମାଣ କରନ୍ତି । ଫର୍‌ଗୁସନ୍‌ଙ୍କର ଏହି ମତ କେବଳ ସଂକୀର୍ଣ୍ଣ ଅଭିଜ୍ଞତାର ପରିଚୟ ମାତ୍ର । କେବଳ ବିଷ୍ଣୁ ମନ୍ଦିରରେ ଅଶ୍ଳୀଳ ମୂର୍ତ୍ତି ନ ଥାଏ । ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ଓ ବୁନ୍ଦେଲଖଣ୍ଡର ମହାଦେବଙ୍କ ମନ୍ଦିରରେ ମଧ୍ୟ ଏହି ମୂର୍ତ୍ତି ବିସ୍ତର ଦେଖାଯାଏ । ପରନ୍ତୁ ଭୁବନେଶ୍ୱରର ବୈଷ୍ଣବ ପ୍ରଧାନ ଅନନ୍ତ ବାସୁଦେବଙ୍କ ମନ୍ଦିରରେ ଏହାର ଆଦୌ ଆଭାସ ମିଳେନାହିଁ । ଅତଏବ ଏହା ବୈଷ୍ଣବ ଧର୍ମର ଫଳ ନ ହୋଇ ବରଂ ଶୈବ ଧର୍ମ ସହିତ ଏହାର ସମ୍ବନ୍ଧ ଥାଇପାରେ । ଶୈବଧର୍ମର 'ଲିଙ୍ଗ' ଉପାସନା ଓ ତାନ୍ତ୍ରିକ ଧର୍ମର କାଳୀ ପୂଜାରେ ଏହି ଅଶ୍ଳୀଳ ମୂର୍ତ୍ତିମାନଙ୍କର କାରଣ ଅନ୍ୱେଷଣ କରିବା ବରଂ ଅପେକ୍ଷାକୃତ ଯୁକ୍ତିଯୁକ୍ତ ବୋଧହୁଏ ।

ଏହି ଅଶ୍ଳୀଳ ମୂର୍ତ୍ତିମାନଙ୍କରୁ ତତ୍କାଳୀନ ଜାତୀୟ ରୁଚି ନିତାନ୍ତ ଘୃଣ୍ୟ ଓ କଦର୍ଯ୍ୟ ଥିବାର ଅନେକେ ଅନୁମାନ କରନ୍ତି । ଷ୍ଟର୍ଲିଙ୍ଗ ତାହାଙ୍କ ସମୟର ଓଡ଼ିଆ ଚରିତ୍ର ଅତି ଜଘନ୍ୟ ଭାବରେ ବର୍ଣ୍ଣନା କରି ତାହାର ସମର୍ଥନ ନିମନ୍ତେ ମନ୍ଦିରମାନଙ୍କର ଅଶ୍ଳୀଳ ମୂର୍ତ୍ତିଗୁଡ଼ିକର ଉଦାହରଣ ଦେଇଅଛନ୍ତି । ଏହା ବ୍ୟତୀତ ଦୁର୍ଗାପୂଜା, ଲିଙ୍ଗପୂଜା ପ୍ରଭୃତି ଓଡ଼ିଆଙ୍କର ନୈତିକ ଅଧୋଗତିର ଚରମ ସୀମା ଦେଖାଉଥିବାର ସେ ବୋଧ କରିଅଛନ୍ତି * । ଏହି ସମସ୍ତର

* Orissa. P. 48. and foot note. (Baptist Mission Edition)

ପ୍ରତିବାଦ କରିବା ବର୍ତ୍ତମାନ ସ୍ଥାନ ନୁହେଁ କି କେହି ବିବେକୀ ବ୍ୟକ୍ତି ପକ୍ଷରେ ଉଚିତ ମଧ୍ୟ ନୁହେଁ । ତେବେ ଏତିକି ମାତ୍ର କୁହା ଯାଇପାରେ ଯେ, ଏହି ରୂପ ଅଯଥା ପ୍ରତିକୂଳ ମତ ବ୍ୟକ୍ତ କରିବା ବଡ଼ ସହଜ । ଏହା ଯେ କେବଳ ଷ୍ଟର୍ଲିଙ୍ଗ ଓଡ଼ିଶାର କମିଶନର ସ୍ୱରୂପ ଓଡ଼ିଆମାନଙ୍କ ପ୍ରତି କହିଲେ ତାହା ନୁହେଁ, ତାହାଙ୍କର ଓଡ଼ିଆ ଚପରାଶି ମଧ୍ୟ ସମୟ ସମୟରେ ତାହାଙ୍କ ଉପରେ ଅସନ୍ତୁଷ୍ଟ ହୋଇ ସମୁଦାୟ ଇଂରେଜ ଜାତିଟା ପ୍ରତି ଏହିପରି ନାନା ଦୁର୍ବାକ୍ୟ ପ୍ରୟୋଗ କରୁଥିବ । ଅନେକ ଅଜ୍ଞ ହୃଦୟହୀନ ବୈଦେଶିକ ଅନ୍ୟ ଜାତି ସମ୍ବନ୍ଧେ ଏହିପରି କୁମତ ବ୍ୟକ୍ତ କରିଥାନ୍ତି । ଏହି ଅଶ୍ଳୀଳ ମୂର୍ତ୍ତିମାନଙ୍କରୁ ଜାତୀୟ କୁରୁଚି ପ୍ରମାଣ କରିବା ସହଜସାଧ୍ୟ ନୁହେଁ । ଯେଉଁ ରୁଚି କୋଣାର୍କ ମନ୍ଦିରର ସୌଷ୍ଠବ ଓ ଶିଳ୍ପ କୌଶଳ ଏତେ ଉନ୍ନତ ଭାବରେ ଦେଖାଇ ପାରିଥିଲା, ତାହା ଏତେ ଅବନତ ଥିବା ବଡ଼ ବିଶ୍ୱାସ୍ୟ ନୁହେଁ । କେବଳ ଓଡ଼ିଶା ନୁହେଁ; ଦୁର୍ଗାପୂଜା, ଲିଙ୍ଗପୂଜା ସମୁଦାୟ ଭାରତବର୍ଷ ବ୍ୟାପୀ ରହିଛି ଏବଂ ଅଶ୍ଳୀଳ ମୂର୍ତ୍ତି ମଧ୍ୟ ବୁନ୍ଦେଲଖଣ୍ଡ ପ୍ରଭୃତି ଭାରତର ଅନ୍ୟତ୍ର ଦେବ ମନ୍ଦିରମାନଙ୍କରେ ଦେଖାଯାଏ । ଏହା ବୋଲି ସମୁଦାୟ ଭାରତୀୟ ଜାତିଟାକୁ କୌଣସି ଯୁଗରେ ଏକ ଜଘନ୍ୟ କୁରୁଚି ଦୋଷରେ ଅଭିଯୁକ୍ତ କରିବା ନିମନ୍ତେ କୌଣସି ଇତିହାସପାଠକ କଦାପି ପ୍ରସ୍ତୁତ ହେବେନାହିଁ । ଏହାର ମୀମାଂସା ନିମନ୍ତେ ଜାତୀୟ ରୁଚିରେ ଦୋଷ ନ ଦେଇ ଅନ୍ୟତ୍ର ଅନୁସନ୍ଧାନ କରିବାକୁ ହେବ ।

ଆମ୍ଭମାନଙ୍କର ରୁଚି ଓ ଭାବଦ୍ୱାରା ଆମ୍ଭେମାନେ ଯାହାକୁ ଅଶ୍ଳୀଳ ବୋଲି ଘୃଣା କରିଥାଉଁ, ପୂର୍ବେ ଲୋକେ ତାହାଠାରେ କୌଣସି ଅଶ୍ଳୀଳତା ଆରୋପ କରୁ ନ ଥିଲେ । କେବଳ ଭାରତ ନୁହେଁ, ପୃଥିବୀରେ ପ୍ରାୟ ସର୍ବତ୍ର ଲୋକଙ୍କର ବର୍ତ୍ତମାନର ଅଶ୍ଳୀଳତା ଜ୍ଞାନ ନ ଥିଲା । ପରନ୍ତୁ ଯାହାକୁ ଅଶ୍ଳୀଳ ବୋଲି ଆମ୍ଭେମାନେ ଆଜି ଘୃଣା କରୁଥାଇଁ, ସେହି ଜନନେନ୍ଦ୍ରିୟକୁ ପୂର୍ବେ ଅତ୍ୟନ୍ତ ଭକ୍ତି ସହକାରେ ପୂଜା କରୁଥିଲେ ଏବଂ ନାନା ଧର୍ମାନୁଷ୍ଠାନ ତାହା ସହିତ ଯୋଗ କରିଥିଲେ । ଖ୍ରୀଷ୍ଟାନଧର୍ମ ପ୍ରଚାର ପୂର୍ବେ ନରୱେବାସୀମାନେ ଘୋଡ଼ାର ଜନନେନ୍ଦ୍ରିୟ ଅତ୍ୟନ୍ତ ଭକ୍ତି ସହକାରେ ପୂଜା କରୁଥିଲେ । ଆମ୍ଭମାନଙ୍କ ଦେଶରେ ସେହିପରି ଶିବଲିଙ୍ଗ ପୂଜା ଓ ଉଲଗ୍ନା କାଳୀ ପୂଜା ଅଦ୍ୟାପି ପ୍ରଚଳିତ ଅଛି । ରାଜେନ୍ଦ୍ର ଲାଲ ଯେପରି କହନ୍ତି, * ପ୍ରାଚୀନ ମିଶର, ଆସିରିଆ, ବାବିଲୋନିଆ ଏବଂ ଇଉରୋପର ଆଦିମ ଆର୍ଯ୍ୟମାନଙ୍କ ମଧ୍ୟରେ ଏହି ଭାବ ଅଳ୍ପାଧିକ ପରିମାଣରେ ଥିଲା । ଏସିଆମାଇନରର ଫ୍ରିଜିଆନିବାସୀଙ୍କ ମଧ୍ୟରେ ଗୋଟିଏ ପ୍ରଥା ଥିଲା, ଅଧିଷ୍ଠାତ୍ରୀ ଦେବୀ ଅମ୍ମାଙ୍କ ବାର୍ଷିକ ଉତ୍ସବମାନଙ୍କରେ ଯୁବକମାନେ ଗୋଟିଏ ତୀକ୍ଷ୍ଣ ଶାମୁକାରେ ଆପଣାକୁ ନପୁଂସକ କରୁଥିଲେ ଏବଂ 'ଅମ୍ମା ଏହା ଗ୍ରହଣ କର' କହି ସେହି ଛିନ୍ନ ଜନନେନ୍ଦ୍ରିୟକୁ ଦେବୀଙ୍କୁ ସଭକ୍ତିରେ ଅର୍ପଣ କରୁଥିଲେ । ଏହିପରି ପ୍ରଥା ମଧ୍ୟ ଫୋନିସିଆ ଓ ମେକ୍ସିକୋ ଦେଶର

* 'Antiquities of Orissa'. Vol. I. P. 145.

ପୁରୋହିତମାନଙ୍କ ମଧ୍ୟରେ ପ୍ରଚଳିତ ଥିଲା * । ମିଶର ଦେଶରେ ଓସିରିସ୍ ଦେବ ଓ ତାହାଙ୍କ ପତ୍ନୀ ଇସିସ୍ (ଆମ୍ଭ ଦେଶର ହରପାର୍ବତୀଙ୍କ ସଙ୍ଗେ ସମାନ) ସକଳ ନୈତିକତାର ମୂଳାଧାର । କୌଣସି ଯାତ୍ରା ଉପଲକ୍ଷରେ ତାହାଙ୍କର ଯେଉଁ ବିଗ୍ରହ ସାଡ଼ମ୍ବରରେ ବାହାରକୁ ବିଜେ କରନ୍ତି, ତାହା ବୃଷଭ ଜନନେନ୍ଦ୍ରିୟର ଗୋଟିଏ ପ୍ରତିକୃତି ମାତ୍ର ।

ଏତଦ୍‌ବ୍ୟତୀତ 'ବାଇବଲ'ରେ ମଧ୍ୟ ଜନନେନ୍ଦ୍ରିୟର ପବିତ୍ରତା ଓ ଧର୍ମ ସମ୍ବନ୍ଧର ଉଦାହରଣ ପ୍ରଚୁର ମିଳେ । ଇହୁଦୀ ସ୍ତ୍ରୀ ଲୋକମାନେ ସୁନା ଓ ରୁପାରେ ଲିଙ୍ଗ ନିର୍ମାଣ କରି ଜୀବିକା ଉପାର୍ଜନ କରୁଥିଲେ । ଆବ୍ରାହାମ ଆପଣାର କର୍ମଚାରୀକୁ ଶପଥ କରାଇଲାବେଳେ ନିଜର ଦୁଇ ଜଙ୍ଘ ମଧ୍ୟରେ ତାହାର ହାତ ରଖି ଶପଥ କରିବାକୁ କହିଥିଲେ ** । ମୃତ୍ୟୁ ସମୟରେ ଜାକବ ମଧ୍ୟ ଏହିପରି ଜୋସେଫଙ୍କୁ କରାଇଥିଲେ । ଆରବମାନଙ୍କ ମଧ୍ୟରେ ବର୍ତ୍ତମାନ ମଧ୍ୟ ଏହିପରି ପ୍ରଥା ଚଳେ । ଶପଥ କଲାବେଳେ ଆରବମାନେ ଆପଣାର ଜନନେନ୍ଦିୟ ଉପରେ ହାତ ରଖି ପ୍ରତିଜ୍ଞା କରନ୍ତି *** । ଆମ୍ଭେମାନେ ଶିବଲିଙ୍ଗ ସ୍ପର୍ଶ କରି ଶପଥ କରିବା ଏହିପରି କୌଣସି ପ୍ରାଚୀନ ଆଦିମ ପ୍ରଥାର ଅବଶେଷ ମାତ୍ର । ପୃଥିବୀର ନାନା ଜାତିଙ୍କ ମଧ୍ୟରେ ଏହି ରୂପ ବହୁତ ଦୃଷ୍ଟାନ୍ତ ମିଳେ । ଏ ସମସ୍ତର ଅର୍ଥ ଜନନେନ୍ଦିୟ ଅତ୍ୟନ୍ତ ପବିତ୍ର । ତାହା ସ୍ପର୍ଶ କରି ଶପଥ କଲେ, ସେ ଶପଥ ଆଉ ବ୍ୟତିକ୍ରମ ହେବା ଅସମ୍ଭବ । ଏହି ରୂପେ ଜନନେନ୍ଦ୍ରିୟ ଘୃଣ୍ୟ ବା ଅପବିତ୍ର ବୋଲି ବିବେଚିତ ନ ହୋଇ ପୂର୍ବେ ଅତୀବ ପବିତ୍ର ଓ ଆଦରଣୀୟ ବସ୍ତୁ ଥିଲା । ବାସ୍ତବିକ ମାନବର ଜନନେନ୍ଦ୍ରିୟ ସୃଷ୍ଟିର ଜନନ ଶକ୍ତିର ବ୍ୟକ୍ତିଗତ ବିକାର ମାତ୍ର । ଏଥିରେ ଲଜ୍ଜା ବା ଘୃଣାର କୌଣସି ଭାବ ନ ଥିଲା ।

ସୁତରାଂ 'ନିତାନ୍ତ କଦର୍ଯ୍ୟ କୁରୁଚିସମ୍ପନ୍ନ କୌଣସି ଇଉରୋପୀୟ ଶିଳ୍ପୀ କୋଣାର୍କର ଅଶ୍ଳୀଳ ପ୍ରତିକୃତି ମଧ୍ୟରୁ ଗୋଟିଏ ମାତ୍ର କଳ୍ପନା ସୁଦ୍ଧା କରିପାରିବ ନାହିଁ' ଇତ୍ୟାଦି ଉକ୍ତି ନିତାନ୍ତ ଅଯଥା ଓ ଅମୂଳକ । ଇଉରୋପର ଧର୍ମଗ୍ରନ୍ଥ ବାଇବଲରୁ ଏହି ତଥାକଥିତ ଅଶ୍ଳୀଳ ବସ୍ତୁର ପବିତ୍ରତା ସମ୍ବନ୍ଧରେ ବିଶେଷ ପ୍ରମାଣ ଉଦ୍ଧାର କରାଯାଇଅଛି । ଏହା ବ୍ୟତୀତ ପ୍ରସିଦ୍ଧ ଶିଳ୍ପୀ ଫିଡ଼ିଆସ ଗ୍ରୀସରେ ମଧ୍ୟ ଯେଉଁ ଅଶ୍ଳୀଳ ମୂର୍ତ୍ତି ତିଆର କରୁଥିଲେ, ତାହା କୋଣାର୍କ ମୂର୍ତ୍ତିମାନଙ୍କଠାରୁ କୌଣସି ମତେ ଉତ୍କୃଷ୍ଟ ନୁହେଁ । ପ୍ରଧାନ ଦେବତା ଜୁପିଟରଙ୍କ ସିଂହାସନ ଉପରେ ଜଣେ ପୁରୁଷ ଚିତ୍ ହୋଇ ଏବଂ ତାହା ଉପରେ ଜଣେ ଉଲଗ୍ନା ସ୍ତ୍ରୀ ମୁହଁ ମାଡ଼ି ଶୋଇ ରହିଥିଲେ । ଷ୍ଟୋଇକ୍ ଦାର୍ଶନିକମାନେ ସାଧାରଣତଃ ଏହିପରି ଅଶ୍ଳୀଳତା ବିଷୟରେ ଅତ୍ୟନ୍ତ ଅସହିଷ୍ଣୁ । ତଥାପି ଷ୍ଟୋଇକ୍ ଦାର୍ଶନିକ ଏପିକ୍‌ଟିଟସ୍ (Epictetus) ଏତେ

---

* Herbert Spencer - 'The Principles of Sociology'. Vol. II. Pt. IV. Chapter. III. P. 66.

** Book of Genesis.

*** 'Antiquities of Orissa'. Vol. I. P. 66.

ଅଶ୍ଳୀଳତା ସତ୍ତ୍ୱେ ଏହି ଯୁଗଳ ମୂର୍ତ୍ତିର ସୌନ୍ଦର୍ଯ୍ୟରେ ଏତେ ବିମୁଗ୍ଧ ହୋଇଥିଲେ ଯେ, ସେ ଏହା ବାରମ୍ବାର ଦେଖୁଥିଲେ ଏବଂ କହୁଥିଲେ, "ଏ ମୂର୍ତ୍ତି ଯେ, ଥରେ ହେଲେ ଜୀବନ ମଧ୍ୟରେ ଦେଖି ନାହିଁ, ସେ ନିତାନ୍ତ ହତଭାଗ୍ୟ ।" ଆଚାର୍ଯ୍ୟ ପ୍ଲେଟୋ ତଦାନୀନ୍ତନ ରାଜ୍ୟ, ସମାଜ ବ୍ୟବସ୍ଥା ଓ ଶାସନରେ ନିତାନ୍ତ ଅସନ୍ତୁଷ୍ଟ ହୋଇ ଦେଶବାସୀଙ୍କୁ ଯେଉଁ ଆଦର୍ଶ ସମାଜ ଓ ଶାସନର ବ୍ୟବସ୍ଥା ଦେଇଅଛନ୍ତି, ତହିଁରେ ସେ ସ୍ତ୍ରୀ ଓ ପୁରୁଷ ସମ୍ପର୍କରେ ଶ୍ଳୀଳ ଓ ଅଶ୍ଳୀଳର କୌଣସି ପ୍ରଭେଦ ରଖି ନାହାନ୍ତି । ଯେ କୌଣସି ସାଧାରଣ ସ୍ଥଳରେ ସର୍ବ ସମକ୍ଷରେ ଏବଂ ରାଜକର୍ମଚାରୀଙ୍କ ସାକ୍ଷାତରେ ପୁରୁଷ ସ୍ତ୍ରୀ ସଂସର୍ଗ କରିବା ଉଚିତ ବୋଲି ସେ ତାଙ୍କର ସର୍ବପ୍ରସିଦ୍ଧ ଗ୍ରନ୍ଥରେ ମତ ବ୍ୟକ୍ତ କରିଅଛନ୍ତି * । ଏ ସବୁ ପ୍ରାଚୀନ ଯୁଗର ବିଷୟ । ବର୍ତ୍ତମାନ ଯୁଗରେ ମଧ୍ୟ ଯେତେ ଅଶ୍ଳୀଳ ପ୍ରତିକୃତି ଇଉରୋପୀୟ ଶିଳ୍ପୀମାନଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିଲା, ତାହାର ସୀମା ନ ଥିଲା । ଏମାନଙ୍କ ଅଶ୍ଳୀଳତା ଏତେ ଘୃଣ୍ୟ ବୋଧ ହୋଇଥିଲା ଯେ, ଗଭର୍ଣ୍ଣମେଣ୍ଟ ଗୋଟିଏ ବିଶିଷ୍ଟ ଆଇନଦ୍ୱାରା ସେ ଛବିର ବ୍ୟବସାୟ ବନ୍ଦ କରାଇ ଦେଇଥିଲେ । ସେ ପର୍ଯ୍ୟନ୍ତ ଭାରତର ନାନା ସ୍ଥାନରେ ଛବି ଦୋକାନଗୁଡ଼ିକ ଇଉରୋପୀୟ ଜଘନ୍ୟ ଅଶ୍ଳୀଳ ଛବିରେ ପୂର୍ଣ୍ଣ ଥିବାର ରାଜେନ୍ଦ୍ର ଲାଲଙ୍କ ସାକ୍ଷ୍ୟରୁ ଜଣାଯାଏ । ବାସ୍ତବିକ ଅଶ୍ଳୀଳତା ସମ୍ବନ୍ଧରେ ଭାରତବର୍ଷ କଦାପି ଇଉରୋପର ସମକକ୍ଷ ହୋଇପାରିବ ନାହିଁ । ଅତଏବ ଭିନ୍ନ ଭିନ୍ନ ଦେଶରେ ମାନବସମାଜ ଓ ରୁଚିର କ୍ରମବିକାଶ ଦେଖିଲେ ଓଡ଼ିଶାର ଦେବାଳୟମାନଙ୍କରେ ଏହି ସବୁ ପ୍ରତିକୃତି ଥିବା କଦାପି ଓଡ଼ିଆଙ୍କ ଜଘନ୍ୟ ଜାତୀୟ କୁରୁଚିର ପରିଚାୟକ ବୋଲି କୁହାଯାଇ ନ ପାରେ । ଇତିହାସର କୌଣସି ଯୁଗରେ ଓଡ଼ିଶା କିମ୍ବା ଭାରତବର୍ଷ କଦାପି କୁରୁଚି ଦୋଷରେ କଳୁଷିତ ହୋଇନାହିଁ । ଡାକ୍ତର ବ୍ଲକ କୋଣାର୍କର ଏହି ମୂର୍ତ୍ତିମାନଙ୍କ ସମ୍ବନ୍ଧରେ ଯଥାର୍ଥରେ କହିଅଛନ୍ତି, ** "ଆଧୁନିକ ରୁଚି ବା ଭାବ ପ୍ରତି ଏହି ମୂର୍ତ୍ତିଗୁଡ଼ିକ ଅଶ୍ଳୀଳ ବୋଧ ହେଲେ ସୁଦ୍ଧା ଯେଉଁମାନେ ଏଗୁଡ଼ିକ ତିଆର କରିଥିଲେ, ସେମାନଙ୍କୁ ନିନ୍ଦା କରିବା ବାସ୍ତବିକ ନିତାନ୍ତ ଅନ୍ୟାୟ ।"

ଇତିପୂର୍ବେ କୁହାଯାଇଅଛି, ଓଡ଼ିଶାର କଳା ପ୍ରଧାନତଃ ଆଧ୍ୟାତ୍ମିକତା ଉପରେ ପ୍ରତିଷ୍ଠିତ । ସେହି ଆଧ୍ୟାତ୍ମିକତା ଦିଗରୁ ଦେଖିଲେ, ଏହି ମୂର୍ତ୍ତିଗୁଡ଼ିକରେ କୌଣସି ଅଶ୍ଳୀଳତା ଦେଖା ଯାଏନାହିଁ । ବର୍ତ୍ତମାନ କୌଣସି କୌଣସି ସମାଲୋଚକମାନଙ୍କ ମନରେ ଏହି ମୂର୍ତ୍ତିମାନଙ୍କଦ୍ୱାରା ଯେଉଁ ବିକାର ଜନ୍ମେ, ବିଶ୍ୱାସୀ ଭକ୍ତ ଯାତ୍ରୀମାନେ କଦାପି ସେପରି କିଛି ଅନୁଭବ କରନ୍ତି ନାହିଁ । ଦେବ ମନ୍ଦିର ସର୍ବାଙ୍ଗ ସୁନ୍ଦର ଏବଂ ପବିତ୍ର । ଲକ୍ଷ ଲକ୍ଷ ନରନାରୀ,

* Plato – Republic, Chapter. V.

** "Nothing indeed could be more unjust than to decry the people who made them (the obscene figures in the Konarka) as indulging in immorality, gross as the figures may seem to modern ideas."

– Dr. Block in Bengal District Gazetteer. Puri. P. 283.

ଯୁବକ ଯୁବତୀମାନଙ୍କର ଦୃଷ୍ଟି ମନ୍ଦିରମାନଙ୍କର ଏହି ଯୁଗଳ ପ୍ରତିକୃତିମାନଙ୍କ ଉପରେ ପଡ଼ୁଛି ସତ୍ୟ; ମାତ୍ର ଦେବଦର୍ଶନବେଳେ କିମ୍ବା ତହିଁପରେ ମନ୍ଦିରରୁ ଫେରିଲାବେଳେ କାହାରି ମନରେ କେବେ ଏହି ଅଶ୍ଳୀଳଭାବ ସ୍ଥାୟୀ ରହେ ନାହିଁ । ଅଟଳ ବିଶ୍ୱାସ ଯେପରି ସେମାନଙ୍କ ମନରେ ଅଦମ୍ୟ ସାହସ ଜନ୍ମାଇ ସମସ୍ତ ପଥଶ୍ରାନ୍ତି ଦୂର କରିନିଏ, ସେହିପରି ମଧ୍ୟ ଏହି ତଥାକଥିତ ଅଶ୍ଳୀଳତା ପରିବର୍ତ୍ତରେ ମନରେ କେବଳ ପବିତ୍ର ଦେବଭାବ ବଢ଼ାଇ ଦିଏ । ହିନ୍ଦୁର ନିତ୍ୟ ନୈମିତ୍ତିକ, ସାମାଜିକ ଓ ପାରିବାରିକ ସମସ୍ତ ପ୍ରକାର କ୍ରିୟାକଳାପ ଯେପରି ଏକ ଧର୍ମଭାବରେ ଅନୁପ୍ରାଣିତ, ଶିଳ୍ପ ମଧ୍ୟ ସେହିପରି । କୋଣାର୍କର ଏହି ପ୍ରତିକୃତିଗୁଡ଼ିକ ସେହି ଏକ ଧର୍ମର ଭାବାନ୍ତର ମାତ୍ର । ରାଜେନ୍ଦ୍ର ଲାଲ ଯଥାର୍ଥରେ କହିଅଛନ୍ତି, * "ମୁଁ ବିଶ୍ୱାସ କରିବାକୁ ବାଧ୍ୟ ହେଉଅଛି ଯେ, କୌଣସି ଧର୍ମଭାବ ପ୍ରକାଶ କରିବା ନିମନ୍ତେ ଏହି ଅଶ୍ଳୀଳ ମୂର୍ତ୍ତିଗୁଡ଼ିକ ନିର୍ମିତ ହୋଇଥିଲା । ସାଧାରଣଙ୍କ ଇତର ପ୍ରବୃତ୍ତି ଜନ୍ମାଇବା ବା ଚରିତାର୍ଥ କରିବା କିମ୍ବା ଶିଳ୍ପକୁ ଦୂଷଣୀୟ ବା ଲକ୍ଷ୍ୟଭ୍ରଷ୍ଟ କରିବା ନିମନ୍ତେ ଏହି ମୂର୍ତ୍ତିଗୁଡ଼ିକୁ କଦାପି କଳ୍ପନା କରା ଯାଇ ନ ଥିଲା । କେବଳ ଧର୍ମଭାବ ଦେଖାଇବା ଉଦ୍ଦେଶ୍ୟରେ ମୂର୍ତ୍ତିଗୁଡ଼ିକ ମନ୍ଦିରରେ ସମାବିଷ୍ଟ ଥିଲା ଏବଂ ଏହାସବୁ ନିର୍ମାଣ କଲାବେଳେ ଶିଳ୍ପୀ ମନରେ ଉଦ୍ଦିଷ୍ଟ ଧର୍ମବିଶ୍ୱାସ ଏତେ ପ୍ରବଳ ଥିଲା ଯେ, ଅଶ୍ଳୀଳତା ପ୍ରତି ତାହାଙ୍କର ଦୃଷ୍ଟି ଆଦୌ ପଡ଼ି ନ ଥିଲା । ବର୍ତ୍ତମାନ ବିଶ୍ୱାସୀ ଭକ୍ତ ଶିବଲିଙ୍ଗ ଉପରେ ନିତ୍ୟ ଅଭିଷେକ କରୁଅଛି; କିନ୍ତୁ କୌଣସି ଭକ୍ତ ହୃଦୟରେ କଦାପି ପବିତ୍ର ଦେବଭାବ ପରିବର୍ତ୍ତରେ ଲିଙ୍ଗ ସହିତ ସଂଯୁକ୍ତ ବର୍ତ୍ତମାନ ଅଶ୍ଳୀଳତା ଲେଶମାତ୍ର ସ୍ଥାନ ପାଏ ନାହିଁ ।"

କୋଣାର୍କ ସ୍ଥାପତ୍ୟରେ ଶିଳ୍ପୀ ମାନବ ଜୀବନର ଦୃଶ୍ୟ ନାନା ବିଭାବରେ ଦେଖାଇ ଅଛନ୍ତି । ରାଜାର ଦରବାର, ଆମୋଦ ପ୍ରମୋଦ ଓ ଆଡ଼ମ୍ବରମୟ ସମରସଜ୍ଜା, ଗୁରୁର ଗଭୀର ଶାସ୍ତ୍ରାନୁଶୀଳନ, ଶିଷ୍ୟର ଗୁରୁ-ପରିଚର୍ଯ୍ୟା, ଜ୍ଞାନ-ପିପାସା ଓ ପ୍ରଗାଢ଼ ଅଧ୍ୟୟନାଭିନିବେଶ, ସନ୍ନ୍ୟାସୀର କଠୋର ତପ, ସାଧନା, ଭକ୍ତର କରୁଣ ଭାବରାଶି, ଗାୟକର ସୁମଧୁର ସଙ୍ଗୀତ ତାନରେ ବିକୃତ ମୁଖଭଙ୍ଗୀ, ବୀରର ଅଦ୍ଭୁତ ବୀରତ୍ୱ ପ୍ରଦର୍ଶନ, ମୁମୂର୍ଷୁର ବ୍ୟାକୁଳ ବଦନମଣ୍ଡଳ, ନାୟକ ନାୟିକାର ପ୍ରଣୟ ଚେଷ୍ଟା ଏବଂ ଗୃହସ୍ଥର ନାନା ସାଂସାରିକ କ୍ରିୟାକଳାପ ପ୍ରଭୃତି ମାନବ ଜୀବନର ବିଭିନ୍ନ ଦୃଶ୍ୟାବଳୀ କୋଣାର୍କ ମନ୍ଦିରର ସର୍ବତ୍ର ଅତି ସୁନ୍ଦର ଭାବରେ ଖୋଦିତ ହୋଇଅଛି । ସ୍ଥୂଳତଃ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ମନୁଷ୍ୟ ନାନା କ୍ଷେତ୍ରରେ ଯାହା ଯାହା କରିପାରେ ବା ଯେଉଁ ଯେଉଁ ଅବସ୍ଥାରେ ରହିପାରେ, ସେ ସମୁଦାୟର ଦୃଶ୍ୟ ମନ୍ଦିର ଦେହରେ ପ୍ରକଟିତ କରିବାରେ କୋଣାର୍କ-ଶିଳ୍ପୀ ପ୍ରୟାସ କରିଅଛନ୍ତି । ଏହି ତଥାକଥିତ ଅଶ୍ଳୀଳତା ମଧ୍ୟ ମାନବ ଜୀବନର ସେହି କ୍ରିୟାମାନଙ୍କ ମଧ୍ୟରୁ ଅନ୍ୟତମ । ଗାୟକର ଗୀତ, ବୀରର ବୀରତ୍ୱ, ରାଜାର ରାଜତ୍ୱ, ଭକ୍ତର ପ୍ରେମିକତା ଏବଂ

---

* Antiquities of Orissa - Vol. I. P. P. 66-67.

ତପସ୍ୱୀର ତପସ୍ୱିତା ପ୍ରଭୃତିରେ ଶିଳ୍ପୀ ଯେପରି ସମସ୍ତ ମନପ୍ରାଣ ଢାଳି ଦିଅନ୍ତ, ପ୍ରେମିକ ପ୍ରେମିକାର ମିଳନ ବା ସ୍ତ୍ରୀ ପୁରୁଷର ସହବାସରେ ମଧ୍ୟ ସେହିପରି ତନ୍ମୟତା ନ ଦେଖାଇଲେ ଶିଳ୍ପ ନିକଟରେ ସେ ଆପଣାକୁ ଅପରାଧୀ ବୋଲି ଜ୍ଞାନ କରନ୍ତି । ଉତ୍କୃଷ୍ଟ ଶିଳ୍ପ ନିମନ୍ତେ ଶିଳ୍ପୀର ଭାବାବେଶ ହେବା ସ୍ୱାଭାବିକ । ଭଗବଦ୍ ଭାବରେ ଅନୁପ୍ରାଣିତ ହୋଇ ଶିଳ୍ପୀ ଆପଣାକୁ ବର୍ତ୍ତମାନତାର ବହୁ ଦୂରରେ ସ୍ଥାପନ କରେ । ସୁତରାଂ ମାନବ ଜୀବନର କୌଣସି ବିଶିଷ୍ଟ କାର୍ଯ୍ୟ ସାଧାରଣଙ୍କୁ ଅଶ୍ଳୀଳ ବୋଧହେଲେ ସୁଦ୍ଧା ଦେବଭାବାପନ୍ନ ଶିଳ୍ପୀ ପକ୍ଷରେ ତାହାର ପ୍ରକଟନ ଅନ୍ୟାନ୍ୟ କାର୍ଯ୍ୟ ସାଧାରଣ ପରି ସମାନ ପବିତ୍ର ଓ ପ୍ରୀତିପ୍ରଦ ବୋଧହୁଏ । ଏହି ଭାବ ଶିଳ୍ପୀ ପକ୍ଷରେ କଳା ପ୍ରବଣତାର ଚରମ ଅବସ୍ଥା ଏବଂ ଏହାକୁ ଉପେକ୍ଷା କଲେ ଶିଳ୍ପ ପୂର୍ଣ୍ଣତା ପାଇଥିବାର କଦାପି କୁହାଯାଇ ନ ପାରେ । ଅତଏବ କୋଣାର୍କ-ଶିଳ୍ପୀ ଯେଉଁ ଆଧ୍ୟାତ୍ମିକ ଭାବରେ ପ୍ରଣୋଦିତ ହୋଇ ଏହି ଅଶ୍ଳୀଳ ମୂର୍ତ୍ତି ଗୁଡ଼ିକର କଳ୍ପନା କରିଥିଲେ, ଶିଳ୍ପର ପୂର୍ଣ୍ଣତା ସାଧନ ନିମନ୍ତେ ସେହି ଭାବରେ ତଦ୍‌ଗତ ହୋଇ ସେ ସମୁଦାୟ 'ବନ୍ଧ' ମାନଙ୍କରେ ମାନବ କ୍ରିୟାର ଅସଂଖ୍ୟ ଦୃଶ୍ୟ ଦେଖାଇ ନିଜ କଳ୍ପନା ଏବଂ ଅନୁଭବର ଅସାମାନ୍ୟତ୍ୱର ପରିଚୟ ଦେଇଅଛନ୍ତି । ଭକ୍ତ ଦର୍ଶକମାନେ ଅଦ୍ୟାପି ସୁଦ୍ଧା ଏହି ମୂର୍ତ୍ତିମାନଙ୍କର ଆଧ୍ୟାତ୍ମିକତାରେ ଏପରି ତଦ୍‌ଗତ ହୁଅନ୍ତି ଯେ, ଅଶ୍ଳୀଳତାର ଭାବ ଲେଶମାତ୍ର ସେମାନଙ୍କ ହୃଦୟରେ ସ୍ଥାନ ପାଏନାହିଁ । ସୁତରାଂ ଏହ ଅଶ୍ଳୀଳ ମୂର୍ତ୍ତିମାନଙ୍କ ଦ୍ୱାରା ଶିଳ୍ପୀର ସେହି ଭାବ ବହୁଳତା ଓ ଆଧ୍ୟାତ୍ମିକତା ବର୍ତ୍ତମାନ ପର୍ଯ୍ୟନ୍ତ ମଧ୍ୟ ପୂର୍ଣ୍ଣମାତ୍ରାରେ ଚରିତାର୍ଥ ହୋଇ ଆସୁଅଛି କହିବା ବାହୁଲ୍ୟ ମାତ୍ର ।

ଶ୍ରୀ ମନମୋହନ ଗାଙ୍ଗୁଲୀ କେତେକ ଆଧୁନିକ ଓଡ଼ିଆ ଶିଳ୍ପୀଙ୍କ ବିଶ୍ୱାସ ଅନୁସାରେ ଲେଖିଅଛନ୍ତି, * "ଏହି ଅଶ୍ଳୀଳ ପ୍ରତିକୃତିମାନଙ୍କ ଦ୍ୱାରା ଭୂତ ପ୍ରେତ ଆକ୍ରମଣ, ବିଦ୍ୟୁତ ଓ ଅନ୍ୟାନ୍ୟ ପ୍ରାକୃତିକ ବିପଦମାନଙ୍କରୁ ମନ୍ଦିର ରକ୍ଷାପାଏ ।" ଏହା ଅବଶ୍ୟ କେତେଦୂର ବିଜ୍ଞାନାନୁମୋଦିତ ଓ କେତେଦୂର କୁସଂସ୍କାର ଜଡ଼ିତ କୁହାଯାଇ ନ ପାରେ । ସେ ଯାହାହେଉ, ବର୍ତ୍ତମାନର ଅନେକ ସମାଲୋଚକ ପୂର୍ବର ସଂସ୍କାର, ଲୋକବିଶ୍ୱାସ ବା ନିର୍ମାତା ଶିଳ୍ପୀମାନଙ୍କ ପବିତ୍ର ଉଦ୍ଦେଶ୍ୟ ପ୍ରତି ତେତେ ଆସ୍ଥାବାନ ନୁହଁନ୍ତି । ଏହି ମୂର୍ତ୍ତିମାନଙ୍କ ଦ୍ୱାରା ସମାଜର ରୁଚି ବିକୃତ ହେଉଅଛି ଏବଂ ନୈତିକ ଜୀବନ ମ୍ଳାନ ହେଉଅଛି ବୋଲି କହି ସେମାନେ ଏହି ମୂର୍ତ୍ତିଗୁଡ଼ିକ ପବିତ୍ର ଦେବ ମନ୍ଦିରମାନଙ୍କଠାରୁ ଉଠାଇ ଦେବାର ପ୍ରସ୍ତାବ କରନ୍ତି । ଯଦି ବାସ୍ତବିକ ଏହାଦ୍ୱାରା ସମାଜର ଅଧୋଗତି ହେଉଥାଏ, ତାହାହେଲେ ଏହି ପ୍ରସ୍ତାବ ଅବଶ୍ୟ ବିଚାର୍ଯ୍ୟ ଏବଂ ଓଡ଼ିଆ ଶିଳ୍ପୀମାନେ ଏହି ଆଶଙ୍କା କରିଥିଲେ, ସେମାନେ କଦାପି ପବିତ୍ର ଓ ଚିରସ୍ଥାୟୀ ଦେବମନ୍ଦିରମାନଙ୍କରେ ଏଗୁଡ଼ିକର ସମାବେଶ କରି ନ ଥାନ୍ତେ । ଏହି ମୂର୍ତ୍ତିମାନଙ୍କ ଦ୍ୱାରା ସମାଜରେ ପାପ ପ୍ରବେଶ କରିବା ଆଶଙ୍କା କେବଳ

* Orissa and Her Remains. P. 229.

କପୋଳକଳ୍ପନା ମାତ୍ର । ନିର୍ମାତା ଶିଳ୍ପୀମାନେ ଏହି ଆଶଙ୍କା ଲେଶ କରି ନ ଥିଲେ କିମ୍ବା ଏ ଆଶଙ୍କା ନିମନ୍ତେ ବର୍ତ୍ତମାନ ଆଦୌ ଅବକାଶ ଅଛି ବୋଲି କୁହାଯାଇ ନ ପାରେ । ଏତେ ଯୁଗ ହେଲା ହିନ୍ଦୁ ନରନାରୀ ମନ୍ଦିରମାନଙ୍କରେ ଏହି ମୂର୍ତ୍ତିମାନ ଦେଖି ଆସୁଅଛନ୍ତି । ପ୍ରକୃତରେ ଏମାନଙ୍କ ଦ୍ୱାରା ସମାଜରେ ପାପ ପଶିବାର କାରଣ ଥିଲେ, ହିନ୍ଦୁ ସମାଜ ଆଜି ସମାଜ ହୋଇ ପୃଥିବୀ ପୃଷ୍ଠରେ ରହି ନ ଥାନ୍ତା । ମନ୍ଦିର ସଙ୍ଗେ ପବିତ୍ର ଦେବଭାବର ସଂସ୍କାର ଛଡ଼ା ଅନ୍ୟ କୌଣସି ପ୍ରକାର ଭାବ କେବେ ହିନ୍ଦୁ ହୃଦୟରେ ଅଧିକାର ଲାଭ କରିନାହିଁ ବା କରି ନ ପାରେ । ଯେଉଁ ଦେଶରେ ପୁଣି ଏହିପରି ପ୍ରତିକୃତି ନାହିଁ, ସେ ଦେଶର ସମାଜ କ'ଣ ଏକାବେଳକେ ଶ୍ଳୀଳ ଓ ପାପମୁକ୍ତ ? ଷ୍ଟୋଇକମାନଙ୍କ ପରି ଧର୍ମପରାୟଣ ଦାର୍ଶନିକ ଇଉରୋପରେ ପ୍ରାୟ ଦେଖାଯାନ୍ତି ନାହିଁ । ସେମାନେ ମଧ୍ୟ ଜୁପିଟରଙ୍କ ସିଂହାସନ ଉପରେ ନିର୍ମିତ ପୂର୍ବୋକ୍ତ ଯୁଗଳ ମୂର୍ତ୍ତିକୁ ସୌନ୍ଦର୍ଯ୍ୟ ନିମନ୍ତେ ବାରମ୍ବାର ଦେଖି ଅପାର ଆନନ୍ଦ ଅନୁଭବ କରୁଥିଲେ । ଅଶ୍ଳୀଳତା ସେ ସୌନ୍ଦର୍ଯ୍ୟ ଲୁଚାଇ ପାରି ନ ଥିଲା । କୋଣାର୍କର ପ୍ରତିକୃତିଗୁଡ଼ିକର ସୌନ୍ଦର୍ଯ୍ୟ ଅତୁଳନୀୟ, ସେ ସୌନ୍ଦର୍ଯ୍ୟବଶତଃ ଅଶ୍ଳୀଳତା ଚକ୍ଷୁରେ ପ୍ରାୟ ପଡ଼େ ନାହିଁ; ପୁଣି ଯେଉଁମାନଙ୍କ ନିମନ୍ତେ ମନ୍ଦିର ନିର୍ମିତ ହୋଇଥିଲା, ସେହି ବିଶ୍ୱାସୀ ଭକ୍ତମାନଙ୍କ ହୃଦୟରେ ଅଶ୍ଳୀଳତା ପ୍ରବେଶ କରିପାରେ ନାହିଁ । ଏ ସମସ୍ତ ବିଚାର ଉପରେ ଉକ୍ତ ପ୍ରତିକୃତିଗୁଡ଼ିକର ଐତିହାସିକ ମୂଲ୍ୟ ଅତ୍ୟନ୍ତ ଅଧିକ । ଏହିମାନଙ୍କଦ୍ୱାରା ଆମ୍ଭେମାନେ ବୁଝୁ, କିପରି ମଧ୍ୟଯୁଗରେ ଓଡ଼ିଆମାନଙ୍କର ସୁଦୃଢ଼ ଓ ଅସ୍ଥିମଜ୍ଜାଗତ ଧର୍ମବିଶ୍ୱାସ ଏହି ସମସ୍ତ ତଥାକଥିତ ଅଶ୍ଳୀଳତାକୁ ମଧ୍ୟ ଅଙ୍ଗୀଭୂତ କରି ତାହା ମଧ୍ୟରେ କେବଳ ପବିତ୍ରତା ଦେଖୁଥିଲା । ମନ୍ଦିରର ସୌନ୍ଦର୍ଯ୍ୟ ବଢ଼ାଇବା ସଙ୍ଗେ ସଙ୍ଗେ ଏଗୁଡ଼ିକ ମଧ୍ୟ ସେମାନଙ୍କର ଧର୍ମଚିନ୍ତାର ଅନ୍ୟତମ ଫଳ ଥିଲା । ଶ୍ରୀକୃଷ୍ଣ ଯେପରି ସମସ୍ତ ଗୋପନାରୀମାନଙ୍କ ମଧ୍ୟରେ ଥାଇ ଆପଣାର ଐଶ୍ୱରିକ ଭାବରେ ପ୍ରେମକୁ ପବିତ୍ର ଓ ସ୍ୱର୍ଗୀୟ କରି ଦେଇଥିଲେ ଓଡ଼ିଆ ଶିଳ୍ପୀମାନେ ସେହିପରି ବର୍ତ୍ତମାନ ଘୃଣ୍ୟ ଓ ଜଘନ୍ୟ କ୍ରିୟାରେ ଈଶ୍ୱରଙ୍କ ଲୀଳାର ଅବତାରଣା ଦେଖୁଥିଲେ । ଏଥିରେ ପାପ ବା ମୋହ ନ ଥିଲା; ଥିଲା କେବଳ ପ୍ରକୃତିର ପ୍ରକ୍ରିୟା, ପବିତ୍ର ଧର୍ମ ଓ ଅଟଳ ବିଶ୍ୱାସ । ଅତଏବ ଯାହାଦ୍ୱାରା କୌଣସି କ୍ଷତିର ଆଶଙ୍କା ବା ପ୍ରମାଣ ନାହିଁ, ଯାହା ସ୍ଥାପତ୍ୟର ଉତ୍କୃଷ୍ଟ ନିଦର୍ଶନ ଏବଂ ଇତିହାସରେ ଯାହାର ମୂଲ୍ୟ ଗରୀୟାନ୍, ସେହି କମନୀୟ ପ୍ରତିକୃତିଗୁଡ଼ିକର ଧ୍ୱଂସ ପ୍ରସ୍ତାବ କରିବା କେବଳ ନୈତିକ ଦୁର୍ବଳତା ଓ ଅସାର କଳ୍ପନାର ପରିଚୟ ମାତ୍ର ।

*******

# ତ୍ରୟୋଦଶ ଅଧ୍ୟାୟ

## ନିର୍ମାଣ-କୌଶଳ

କୋଣାର୍କର ବର୍ତ୍ତମାନ ମନ୍ଦିର-ନିର୍ମାଣ ସମ୍ବନ୍ଧରେ ଅନେକଗୁଡ଼ିଏ ରହସ୍ୟମୟ କିମ୍ବଦନ୍ତୀ ପ୍ରଚଳିତ ଅଛି । ସେଥିମଧ୍ୟରୁ ନିମ୍ନଲିଖିତ ଦୁଇଗୋଟି ବିଶେଷରେ ପ୍ରଚଳିତ ଅଛି । ପ୍ରଥମଟି ମାଦଳାପାଞ୍ଜିରେ ମଧ୍ୟ ଉଲ୍ଲେଖଥିବାର ଜଣାଯାଏ ଏବଂ ଦ୍ୱିତୀୟଟି କେବଳ ଲୋଖମୁଖରୁ ଶୁଣାଯାଏ ।

ପ୍ରଥମ :– ରାଜା ଲାଙ୍ଗୁଳା ନରସିଂହଦେବ ତାହାଙ୍କ ମନ୍ତ୍ରୀ 'ଶିବାଇ ସାନ୍ତରା' (ସଦାଶିବ ସାମନ୍ତରାୟ ମହାପାତ୍ର)ଙ୍କୁ କୋଣାର୍କରେ ସୂର୍ଯ୍ୟଦେବଙ୍କ ନିମନ୍ତେ ଗୋଟିଏ ମନ୍ଦିର ନିର୍ମାଣ କରିବାକୁ ଆଦେଶ ଦେଲେ । 'ଶିବାଇ ସାନ୍ତରା' ମନ୍ଦିର ନିର୍ମାଣ ନିମନ୍ତେ ଗୋଟିଏ ଗଣ୍ଡ ପଥରଦ୍ୱାରା ପୋତାଇବା ଆରମ୍ଭ କଲେ । ଗଣ୍ଡର କୂଳରୁ ସେ ପଥର ପକାଇ ନ ଯାଇ ମଝିରୁ ପକାଉଥିଲେ । ଗଣ୍ଡରେ ସେ ଯେତେ ପଥର ପକାଉଥାନ୍ତି, ତାହା ସମସ୍ତ ରାଘବ ଗିଳି ଦେଉଥାଏ । ଏହି ବିପଦରେ ସେ ମର୍ମାହତ ହୋଇ ରାମଚଣ୍ଡୀଙ୍କ ନିକଟରେ ଧାରଣା ପଡ଼ିଲେ । ଏଥି ମଧ୍ୟରେ ଦିନେ ସେ ଏହି ବିପଦ କଥା ନରସିଂହଦେବଙ୍କୁ ଜଣାଇବା ନିମନ୍ତେ ଯାଉଥିଲେ । ପଥ ମଧ୍ୟରେ ସନ୍ଧ୍ୟାକୁ ସେ ଗୋଟିଏ ଗ୍ରାମରେ ପହଞ୍ଚିଲା ବେଳକୁ ଭୟଙ୍କର ଝଡ଼ ତୋଫାନ ଉପସ୍ଥିତ ହେଲା । ସେ ବାଧ୍ୟ ହୋଇ ଜଣଙ୍କ ଘରେ ଆଶ୍ରୟ ନେଲେ । ସେ ଘରେ ଗୋଟିଏ ବୁଢ଼ୀ ଛଡ଼ା ଆଉ କେହି ନ ଥିଲେ । ରାତିରେ ଶିବାଇ ସାନ୍ତରା ସେଠାରେ ରହିବାକୁ ବାଧ୍ୟ ହେବାରୁ ବୁଢ଼ୀ ଗୋଟିଏ ଥାଳୀରେ କିଛି ଗରମ ଜାଉ ତାଙ୍କୁ ଖାଇବାକୁ ଦେଲେ । କେହି କେହି ମଧ୍ୟ କହନ୍ତି, ରାମଚଣ୍ଡୀଙ୍କ ପାଖରେ ଧାରଣା ପଡ଼ିବାରୁ ରାମଚଣ୍ଡୀ ଗୋଟିଏ ବୁଢ଼ୀ ବେଶରେ ପାତ୍ରରେ ତାଙ୍କୁ କିଛି ଭୋଗ-କ୍ଷୀରି ଖାଇବାକୁ ଦେଲେ । ସେ ଯାହାହେଉ ଶିବାଇ ସାନ୍ତରା କ୍ଷୀରି ଗୋଟିଏ ପାଖରୁ ନ ଖାଇ ମଝିରୁ ଖାଇବାର ଆରମ୍ଭ କଲେ । ବୁଢ଼ୀ ତହୁଁ ହସି ହସି କହିଲେ, ''କିରେ, ତୁ ତ କ'ଣ ଶିବାଇ ସାନ୍ତରା ଦେଉଳ ତୋଳାଇଲା ପରି କ୍ଷୀରି ମଝିରୁ ଖାଉଛୁ !'' ସାନ୍ତରା ଆଶ୍ଚର୍ଯ୍ୟ ହୋଇ କଥାଟା କ'ଣ ବୁଝିବାକୁ ପଚାରିବାରୁ ବୁଢ଼ୀ କହିଲେ, ''ଶିବାଇ ସାନ୍ତରା କୋଣାର୍କ ଦେଉଳ ତୋଳିବା ପାଇଁ ଗଣ୍ଡ ମଝିରେ ପଥର ପକାଉଅଛି ଏବଂ ରାଘବ ସେଗୁଡ଼ିକ ଗିଳି ଦେଉଅଛି । ସେ ଯଦି କୂଳରୁ ପଥର ପକାଇ ଯାଆନ୍ତା, ତାହାହେଲେ ଅକ୍ଳେଶରେ ଗଣ୍ଡ ପୋତା ହୋଇଯାନ୍ତା । ସେହିପରି ତୁ ମଝିରୁ ଗରମ କ୍ଷୀରି ଖାଉଛୁ; ହାତ ଗରମ ସହୁନାହିଁ ଏବଂ କ୍ଷୀରି ମଧ୍ୟ ଅଳ୍ପକେ ପାଣି

ଫାଟିଯିବ । ତୁ ଯେବେ ଗୋଟିଏ ପାଖରୁ ଖାଆନ୍ତୁ, ତାହାହେଲେ ହାତ ସହନ୍ତା ଓ କ୍ଷୀରିର କିଛି କ୍ଷତି ହୁଅନ୍ତା ନାହିଁ ।'' ସାନ୍ତରା ଏ କଥା ଶୁଣି ବଡ଼ ଲଜ୍ଜିତ ହେଲେ ଏବଂ ପରେ ବୁଝି ପାରିଲେ ଯେ, ନିଜେ ରାମଚଣ୍ଡୀ ବୁଢ଼ୀ ବେଶରେ ତାହାଙ୍କୁ ଏହି ଶିକ୍ଷା ଦେଲେ । ସେ ଫେରିଆସି ସେହିପରି ଗଣ୍ଡ ପୋତାଇ ମନ୍ଦିରର ମୂଳପତ୍ତନ ଗଢ଼ିଲେ ।

ଦ୍ୱିତୀୟ :— ଏହି କିମ୍ବଦନ୍ତୀରୁ ଜଣାଯାଏ ଯେ, ୧୨୦୦ ବଢ଼େଇ ୧୬ ବର୍ଷ କାଳ କୋଣାର୍କ ଦେଉଳ ତିଆରିରେ ଲାଗିଥିଲେ । ସେମାନଙ୍କ ମଧ୍ୟରୁ ଜଣେ ବଢ଼େଇ ଘର ଛାଡ଼ିଯିବା ସମୟରେ ତାହାର ସ୍ତ୍ରୀ ଗର୍ଭବତୀ ହୋଇଥିଲା । ତାହାର ଘର ଅଗଣାରେ ଗୋଟିଏ ନୂତନ ପ୍ରକାର ବରକୋଳି ଗଛ ଥିଲା । ଘରେ ସ୍ତ୍ରୀ ବ୍ୟତୀତ ଅନ୍ୟ କେହି ନ ଥିଲେ; ସୁତରାଂ ଆବଶ୍ୟକସ୍ଥଳେ ତାକୁ ଡକାଇ ପଠାଇବା ସକାଶେ ଭାବୀପୁଅକୁ ପଠାଇବା ପାଇଁ ସେ ସ୍ତ୍ରୀକୁ କହିଯାଇଥିଲା ଏବଂ ସେ ନିଜେ ପୁଅକୁ ଚିହ୍ନି ପାରିବା ପାଇଁ ସେହି ନୂତନ ପ୍ରକାର ବରକୋଳି କିଛି ପୁଅ ହାତରେ ଦେବା ପାଇଁ ସ୍ତ୍ରୀକୁ ମଧ୍ୟ କହିଥିଲା । ବଢ଼େଇ କୋଣାର୍କରେ ଦେଉଳ ତୋଳାଇବାରେ ଲାଗିଲା; ଏଣେ ସ୍ତ୍ରୀଠାରୁ ଗୋଟିଏ ସୁନ୍ଦର ପୁଅ ଜନ୍ମ ହେଲା । କେତେକାଳ ଗଲା ପରେ ପୁଅର ବୃଦ୍ଧି ହୋଇଯିବାରୁ ଦିନେ ଖେଳୁ ଖେଳୁ ତାହାର ସଙ୍ଗୀମାନେ 'ଅଣବାବୁଆ' ପିଲା ବୋଲି ତାକୁ ଚଳାଇଲେ । ପୁଅ ସେଥିରେ ବଡ଼ କ୍ଷୁବ୍ଧିତ ହୋଇ ମାଆକୁ ବାପ କଥା ପଚାରିଲା । ବାପକୁ ଦେଖିବା ପାଇଁ ପୁଅ ବିଶେଷ ଜିଦ୍ କରିବାରୁ ମାଆ କହିଲା, ''ତୋର ବାପ କୋଣାର୍କରେ ଦେଉଳ ତୋଳୁଅଛି; ସେହିଠାକୁ ଗଲେ ବାପକୁ ଦେଖିପାରିବୁ ।'' ଆଉ ମଧ୍ୟ ଉକ୍ତ ବରକୋଳିରୁ କିଛି ତାହା ହାତରେ ବିକିବାକୁ ଦେଇ ସେ କହିଲା, ''ଏହି ବରକୋଳି ତୁ ବିକୁ ବିକୁ ଯେ ଏହାକୁ ଆମ ବରକୋଳି ବୋଲି ଚିହ୍ନିବ, ସେହି ତୋର ବାପ ।'' ପୁଅ ବରକୋଳି ଟୋକେଇଏ ଧରି ବହୁ ଦିନ ବୁଲି ବୁଲି କୋଣାର୍କରେ ଯାଇ ପହଞ୍ଚିଲା । ସମସ୍ତ ବଢ଼େଇଙ୍କ ମଧ୍ୟରୁ ତାହାର ବାପ କେବଳ ସେହି ବରକୋଳିରୁ ପୁଅକୁ ଜାଣି ପାରିଲା । ବଢ଼େଇମାନେ ବହୁ ଦିନ ହେଲା ଦେଉଳ ତୋଳୁଥାନ୍ତି; କିନ୍ତୁ ଶେଷ କରିପାରୁ ନ ଥାନ୍ତି । ସେ ଦିନ କାମ ଶେଷରେ ସନ୍ଧ୍ୟା ହେବାରୁ ବଢ଼େଇମାନେ ସମସ୍ତେ ବସାକୁ ଗଲେ । ଏଣେ ବଢ଼େଇପୁଅ ଏକା ସାରାରାତି କାମ କରି କଳସ ପର୍ଯ୍ୟନ୍ତ ମନ୍ଦିରଟି ଶେଷ କରିଦେଲା । ପରଦିନ ସକାଳେ ବଢ଼େଇମାନେ ଆଶ୍ଚର୍ଯ୍ୟ ହୋଇ ଦେଖିଲେ ଯେ, ବଢ଼େଇପୁଅ ଏକା ମନ୍ଦିରଟି ଶେଷ କରି ଦେଇଥିଲା । ସେମାନେ ଏଥିରେ ବଡ଼ ରାଗ କରି ବଢ଼େଇକୁ କହିଲେ, ''ଯଦି ତୋର ପୁଅ ଏହିଭଳି କାମ କରିବ, ଅଚିରେ ମନ୍ଦିର କାମ ଶେଷ କରିଦେବ ଏବଂ ଆମ୍ଭେମାନେ ଏତେକାଳ କାମ କରି ଶେଷ କରି ନ ପାରିଥିବାରୁ ଆମ୍ଭର ଯେ କେବଳ ଦାନା ଯିବ ତାହା ନୁହେଁ; କାମରେ ହେଳା କରୁଥିବାର ଭାବି ରାଜା ଆମ୍ଭମାନଙ୍କ ମୁଣ୍ଡକାଟର ଆଦେଶ ଦେବେ । ଏପରି ଅବସ୍ଥାରେ ଆମ୍ଭେ ତୋତେ ପଚାରୁ, ତୋର ବାର ଶହ ବଢ଼େଇରେ ଦାୟୀ କି ଏକା ପୁଅରେ ଦାୟୀ ?'' ବଢ଼େଇ ବଡ଼ ବିଷମ ସମସ୍ୟାରେ ପଡ଼ିଲା

ଏବଂ ଆପଣାର ସଙ୍ଗୀ ବଢ଼େଇମାନଙ୍କ କଥା ଏଡ଼ି ନ ପାରି ମନ୍ଦିର ଉପରେ ପୁଅ ଯେଉଁଠାରେ କାମ କରୁଥିଲା, ସେଠାକୁ ଉଠିଲା । ପୁଅକୁ ସେଠାରୁ ସେ ତଳକୁ ଫିଙ୍ଗି ଦେଇ ମାରି ପକାଇଲା । ଫଳରେ କାମ ଶେଷ ହେଲା ନାହିଁ ଏବଂ ସ୍ଥାନଟି ଅପବିତ୍ର ହୋଇ ସେହି ଦିନଠାରୁ ପରିତ୍ୟକ୍ତ ହେଲା । ଆଜି ପର୍ଯ୍ୟନ୍ତ ମଧ ଲୋକେ କଥାରେ କହନ୍ତି, ''ବାରଶହ ବଢ଼େଇରେ ଦାୟୀ କି ଏକା ପୁଅରେ ଦାୟୀ ?''

ଉପରୋକ୍ତ କିମ୍ବଦନ୍ତୀ ଦୁଇଟିରେ ଅବଶ୍ୟ ଅଳୀକ କଥା ଅନେକ ଅଛି । ପ୍ରଥମଟିରେ ଶିବାଇ ସାନ୍ତରା କେବଳ ଗଣ୍ଡ ପୋତାଇବାରେ ସମସ୍ତ ବୁଦ୍ଧି ଓ କୌଶଳ ହରାଇଥିବା ଏବଂ ଦ୍ୱିତୀୟଟିରେ ବଢ଼େଇ ପୁଅ ଏକା ରାତିରେ ସମୁଦାୟ ମନ୍ଦିର କାମ ଶେଷ କରିଥିବା ଓ ତିଆର ସଙ୍ଗେ ସଙ୍ଗେ ମନ୍ଦିର ଅପବିତ୍ର ହୋଇ ପରିତ୍ୟକ୍ତ ହୋଇଥିବା ଇତ୍ୟାଦି କଥାଗୁଡ଼ିକ କେବଳ କିମ୍ବଦନ୍ତୀର ଅସାର ପ୍ରଳାପ ଛଡ଼ା ଅନ୍ୟ କିଛି ନୁହେଁ । ତଥାପି ସମସ୍ତ ଅସାରତା ସତ୍ତ୍ୱେ ଏହି ଦୁଇଟିରେ କିଛି ନା କିଛି ସତ୍ୟ ଅଛି । ସତ୍ୟ ମଧରେ ତଳଲିଖିତ ବିଷୟଗୁଡ଼ିକ ସ୍ପଷ୍ଟ ବୁଝାଯାଏ । ପ୍ରଥମଟିରେ ଲାଙ୍ଗୁଳା ନରସିଂହଦେବ ଶିବାଇ ସାନ୍ତରାଙ୍କ ଦ୍ୱାରା କୋଣାର୍କର ବର୍ତ୍ତମାନ ମନ୍ଦିର ନିର୍ମାଣ କରାଇଥିବା, ଶିବାଇ ସାନ୍ତରା ପଦ୍ମତୋଳା ନାମରେ ଗୋଟିଏ ଗଣ୍ଡ ପୋତାଇ ମନ୍ଦିରର ମୂଳପତ୍ତନ ତିଆର କରିଥିବା ଏବଂ କ୍ଷେତ୍ରର ଅଧିଷ୍ଠାତ୍ରୀ ଦେବୀ ରାମଚଣ୍ଡୀଙ୍କୁ ହୃଦୟରେ ଧ୍ୟାଇ ମନ୍ଦିର କାର୍ଯ୍ୟ ଆରମ୍ଭ କରିଥିବା ଇତ୍ୟାଦି ସତ୍ୟ ଘଟଣା ହୋଇଥିବାର ଏହି ପୁସ୍ତକର ନାନା ସ୍ଥାନରେ ଉଲ୍ଲେଖ କରାଯାଇଅଛି । ଦ୍ୱିତୀୟଟିରେ ପ୍ରଧାନ କଥା, ୧୨୦୦ ବଢ଼େଇ ଏକାବେଳକେ ଘରଦ୍ୱାର ଛାଡ଼ି ୧୬ ବର୍ଷ କାଳ କୋଣାର୍କ ନିର୍ମାଣରେ ଲାଗିଥିଲେ ଏବଂ ଗେଜେଟିଅର୍ ଲେଖକ ମଧ ଏହାକୁ ଅସମ୍ଭବ ମନେ କରନ୍ତି ନାହିଁ ।

ଏହି ସମସ୍ତ ପ୍ରମାଣିତ ସତ୍ୟ ବ୍ୟତୀତ କିମ୍ବଦନ୍ତୀ ଦୁଇଟିର ପ୍ରଧାନ ସତ୍ୟ କୋଣାର୍କ ନିର୍ମାଣ ବିଷୟରେ ଜନସାଧାରଣଙ୍କର ଧାରଣା । କୋଣାର୍କର ବିରାଟ ଆକୃତି, ସ୍ଥାପତ୍ୟର ନିରତିଶୟ ଆଡ଼ମ୍ବର ଏବଂ ପର୍ବତରୂପୀ ଶିଳାର କାମ ଦେଖିଲେ ତାହା ଅତିମାନୁଷ କାର୍ଯ୍ୟ ପରି ପ୍ରତୀତ ହୁଏ । ଶିଳ୍ପ ଓ ସ୍ଥାପତ୍ୟ ନିମନ୍ତେ କୋଣାର୍କ ଯେପରି ମହନୀୟ, ତାହାର ନିର୍ମାଣ କୌଶଳ ବା ଇଞ୍ଜିନିୟରିଂ ତଦପେକ୍ଷା ଆହୁରି ଆଶ୍ଚର୍ଯ୍ୟଜନକ । କୋଣାର୍କ ଯଦି ତାହାର ସମସ୍ତ ଶିଳ୍ପ ଓ ସ୍ଥାପତ୍ୟ ସତ୍ତ୍ୱେ କେବଳ କ୍ଷୁଦ୍ର କ୍ଷୁଦ୍ର ପଥର ଖଣ୍ଡରେ ସାଧାରଣ ଭାବରେ ନିର୍ମିତ ହୋଇଥାନ୍ତା, ତାହାହେଲେ ତାହାଦ୍ୱାରା ଦର୍ଶକ ଏତେ ସ୍ତମ୍ଭୀଭୂତ ହେଉ ନ ଥାନ୍ତା । କେତେ ଦେଶୀ ଓ ବିଦେଶୀ ପ୍ରଧାନ ପ୍ରଧାନ ଇଞ୍ଜିନିୟରମାନେ କୋଣାର୍କ ଦେଖିଅଛନ୍ତି । ସମସ୍ତେ କିନ୍ତୁ କୋଣାର୍କର କାର୍ଯ୍ୟରେ ମନ୍ତମୁଗ୍ଧ ହେଲା ପରି ହତବୁଦ୍ଧି ହୋଇଅଛନ୍ତି । ବର୍ତ୍ତମାନ ଯୁଗରେ ବିଜ୍ଞାନର ଏତେ ଆଧିପତ୍ୟ ଏବଂ କଳକୌଶଳର ଏତେ ନବ ନବ ଆବିଷ୍କାର ହୋଇଅଛି; କିନ୍ତୁ ତାହା ସମସ୍ତ କୋଣାର୍କର ଖଣ୍ଡିଏ ଖଣ୍ଡିଏ ପଥର ସ୍ଥାନାନ୍ତର କରିବାକୁ ଅସମର୍ଥ । ଓଡ଼ିଆମାନେ କେଉଁ ଉପାୟରେ ସେ ଯୁଗରେ ଏତେ ବଡ଼ ବଡ଼

ପଥରମାନ ଶତ ଶତ ମାଇଲ ଦୂରରୁ ବୋହି ଆଣି ଏତେ ଉଚ୍ଚ ମନ୍ଦିର ଉପରକୁ ଅବଲୀଳାକ୍ରମେ ନେଇ କାମ କରି ପାରିଥିଲେ, ପ୍ରଧାନ ପ୍ରଧାନ ଇଉରୋପୀୟ ଇଞ୍ଜିନିୟରମାନେ ତାହାର କଳ୍ପନା ସୁଦ୍ଧା କରିପାରୁ ନାହାନ୍ତି । ଏପରି ସ୍ଥଳେ କୋଣାର୍କର ସାଧାରଣ ଦର୍ଶକମାନଙ୍କର ବୁଦ୍ଧି ବା ଚିନ୍ତା ଆଉ ଅଧିକ ବା କ'ଣ ହୋଇପାରେ ? ସେମାନେ ଭାବି ଭାବି ସ୍ଥିର କରିଅଛନ୍ତି, ଏକା ଦୈବୀ ସାହାଯ୍ୟ ବ୍ୟତିରେକେ କୋଣାର୍କ ମନ୍ଦିର ନିର୍ମାଣ ଅସମ୍ଭବ । ସେମାନଙ୍କ ବିଚାର ଅନୁସାରେ ଲକ୍ଷ ଲକ୍ଷ ଶିବାଇ ସାନ୍ତରା କୋଣାର୍କ ତିଆର କରିପାରି ନ ଥାନ୍ତେ; ଏକା ଅଧିଷ୍ଠାତ୍ରୀ ଦେବୀ ରାମଚଣ୍ଡୀଙ୍କ ମାୟା ବଳରେ ଏହା ସମ୍ଭବ ହୋଇଥିଲା । ଈଶ୍ୱର ହଠାତ୍ ବିଚାରିଲେ, କୋଣାର୍କ ମନ୍ଦିର ଶେଷ ହେଉ; ସୁତରାଂ ତାହା ଗୋଟିଏ ମାତ୍ର ଅଳ୍ପବୟସ୍କ ବଢ଼େଇ ପୁତ୍ର ଦ୍ୱାରା ଏକା ରାତ୍ରରେ ଶେଷ ହେଲା । ବାର ଶହ ବଢ଼େଇଙ୍କର ଷୋଳ ବର୍ଷ ପରିଶ୍ରମ କୋଣାର୍କର ବିରାଟ କାର୍ଯ୍ୟ ନିକଟରେ ଅକିଞ୍ଚିତ୍କର ମାତ୍ର ।

କୋଣାର୍କ ସମୁଦ୍ର ତୀରବର୍ତ୍ତୀ ବାଲୁକାମୟ ସ୍ଥାନ । ସେଠାରେ କୌଣସି ସମୟରେ ପର୍ବତାଦି ଥିବା ଅସମ୍ଭବ । ସେଠାରୁ ପ୍ରାୟ ୨୫ ମାଇଲ ମଧ୍ୟରେ ପର୍ବତର ଚିହ୍ନ ନାହିଁ । କୋଣାର୍କକାର ପଥର ନିମନ୍ତେ ଅତି କମ୍‌ରେ ଖୋରଧା ପର୍ଯ୍ୟନ୍ତ ନିଶ୍ଚୟ ଯାଇଥିଲେ । ଏହି ଦୂରତା ସହିତ ଖଣ୍ଡିଏ ଖଣ୍ଡିଏ ପଥରର ଆକାର ବିଚାର କଲେ, ମନୁଷ୍ୟ ଏକାବେଳକେ ହତବୁଦ୍ଧି ହୋଇଯାଏ । ବଡ଼ଦେଉଳ ଉପରେ ଯେଉଁ ଗଜସିଂହ ଥିଲା, ପୂର୍ବେ (ଅଷ୍ଟମ ଅଧ୍ୟାୟ) ତାହାର ପରିମାଣ ଦିଆ ଯାଇଅଛି । ସ୍ଥୂଳରେ ଗଜସିଂହର ଯେଉଁ ଅଂଶ ବଡ଼ଦେଉଳର ବାହାରକୁ ବାହାରିଥିଲା, ତାହା ପ୍ରାୟ ୬୦୦ ଘନଫୁଟ । ପ୍ରତ୍ୟେକ ଘନଫୁଟ ପଥର ଓଜନରେ ୧୬୧ ପାଉଣ୍ଡ; ସୁତରାଂ କେବଳ ବାହାର ଅଂଶର ଓଜନ ପ୍ରାୟ ୪୫ ଟନ ବା ୧୨୬୦ ମହଣ । ଏହି ପଥରଖଣ୍ଡ ପୁଣି ଭୂମିରୁ ପ୍ରାୟ ୧୭୦ ଫୁଟ ଉଚ୍ଚରେ ସ୍ଥାପିତ ହୋଇଥିଲା ।

କୋଣାର୍କର ନବଗ୍ରହ ପଥରର ଆକାର ଓ ସବିଶେଷ ବର୍ଣ୍ଣନା ପୂର୍ବେ (ଷଷ୍ଠ ଅଧ୍ୟାୟ) ଦିଆଯାଇଅଛି । ମୋଟରେ ପାଟର ଓଜନ ୨୬.୫ ଟନ୍ ବା ୭୪୨ ମହଣ ଥିଲା । ଏହା ପୁଣି କଳାମୁଗୁନି ପଥର । କୋଣାର୍କର କନ୍ଦାପଥର ହୁଏତ ଖୋରଧା ଅଞ୍ଚଳରୁ ଯାଇଥିଲା; କିନ୍ତୁ ଖୋରଧା ନିକଟରେ କଳାମୁଗୁନି ପଥର ଦେଖାଯାଏ ନାହିଁ । କୋଣାର୍କକାର ନିଶ୍ଚୟ ମୁଗୁନି ପଥର ନିମନ୍ତେ ନୀଳଗିରି ପ୍ରଭୃତି ଗଡ଼ଜାତମାନଙ୍କୁ ଯାଇଥିଲେ । କଳା ମୁଗୁନି ନିମନ୍ତେ ନୀଳଗିରି ଚିରପ୍ରସିଦ୍ଧ । ବର୍ତ୍ତମାନ ଯୁଗରେ ପ୍ରାୟ ୮୦ ବର୍ଷ ପୂର୍ବେ ସତ୍ୟବାଦୀ ଦେବଙ୍କ ମନ୍ଦିରର ରତ୍ନ ସିଂହାସନ ନିମନ୍ତେ ସ୍ୱର୍ଗୀୟ ବାବା ହରିନାରାୟଣ ବ୍ରହ୍ମଚାରୀ କଳାମୁଗୁନି ପଥର ପାଇଁ ନୀଳଗିରି ପର୍ଯ୍ୟନ୍ତ ଯାଇଥିଲେ । ସେ ଯେଉଁ ପଥର ଆଣିଥିଲେ, ତହିଁରେ ସତ୍ୟବାଦୀଙ୍କର ବଡ଼ଦେଉଳ ଭିତର ଚଟାଣ ଓ ରତ୍ନ ସିଂହାସନ ନିର୍ମିତ ହେଲା ପରେ ଅବଶିଷ୍ଟ ପଥର ଜଗନ୍ନାଥଙ୍କ ମନ୍ଦିରରେ ଗରୁଡ଼ଖମ୍ବଠାରୁ ମୁଖଶାଳା ପର୍ଯ୍ୟନ୍ତ ଛାଉଣୀ ହୋଇଥିଲା ।

ଅତଏବ କୋଣାର୍କର ନବଗ୍ରହ-ପାଟ ଓ ଅନ୍ୟାନ୍ୟ କଳାମୂର୍ତ୍ତି ପଥର ନୀଳଗିରି ପ୍ରଭୃତି ଅଞ୍ଚଳରୁ ଆସିଥିବା ପୂର୍ବେ କୁହାଯାଇଅଛି । ଏହି ନବଗ୍ରହପାଟକୁ କଲିକତା ନେବା ଲାଗି ଗଭର୍ଣ୍ଣମେଣ୍ଟ ବହୁ ଅର୍ଥ ବ୍ୟୟରେ ଆଧୁନିକ ବିଜ୍ଞାନର କେତେ କଳକୌଶଳ ଲଗାଇ ୨୦୦ ହାତ ପର୍ଯ୍ୟନ୍ତ ନେଇ ପାରିଥିଲେ । ପ୍ରଥମ ଚେଷ୍ଟା ବିଫଳ ହେଲା, ପୁଣି କେତେକ ବର୍ଷ ପରେ ଶେଷ ଚେଷ୍ଟାରେ ପାଟକୁ ଦ୍ୱିଖଣ୍ଡ କରି ତାହାର ତୃତୀୟାଂଶ ମାତ୍ର ଏକ ମାଇଲ ପର୍ଯ୍ୟନ୍ତ ନେଇ ଯାଇଥିଲେ । ଶେଷରେ ସମସ୍ତ ଚେଷ୍ଟା ବିଫଳ ହେଲା; ନବଗ୍ରହପାଟର ତୃତୀୟାଂଶ ମାତ୍ର ସମୁଦ୍ର ପର୍ଯ୍ୟନ୍ତ ଦୁଇ ମାଇଲ ଦୂର ବୋହି ନେବା ପାଇଁ ଆଧୁନିକ ବିଜ୍ଞାନର ସମସ୍ତ କଳକୌଶଳ ବ୍ୟର୍ଥ ହେଲା । ବର୍ତ୍ତମାନ ଯୁଗରେ କଳକାରଖାନାର ଏତେ ଉନ୍ନତି – ରେଲ, ଜାହାଜ ଓ ଟ୍ରାମର ଏତେ ପ୍ରସାର ସତ୍ତ୍ୱେ ଯେଉଁ ଶିଳାଖଣ୍ଡ ସମୁଦ୍ର ପର୍ଯ୍ୟନ୍ତ ଦୁଇ ମାଇଲ ମାତ୍ର ନେଇ ହେଲା ନାହିଁ, ତାହାର ତିନି ଗୁଣ ବୃହତ୍ ଶିଳାଖଣ୍ଡମାନ ତ୍ରୟୋଦଶ ଶତାବ୍ଦୀର ଓଡ଼ିଆମାନେ ପ୍ରାୟ ୧୫୦ ମାଇଲ ଦୂରରୁ ଅବଲୀଳାକ୍ରମେ ବୋହି ଆଣୁଥିଲେ ! ! !

ଏହି ସମସ୍ତ ଶିଳାଖଣ୍ଡମାନ ଅପେକ୍ଷା ବଡ଼ଦେଉଳର ଉପର କଳସ ଭାବୁକକୁ ଆହୁରି ଅଧିକ ସ୍ତମ୍ଭୀଭୂତ କରିଦିଏ । ବର୍ତ୍ତମାନ ଉକ୍ତ କଳସର କୌଣସି ପରିଚୟ ମିଳେ ନାହିଁ କି ୧୬୨୭ ଖ୍ରୀଷ୍ଟାବ୍ଦରେ ରାଜା ନରସିଂହଦେବଙ୍କ ମାପ ସମୟରେ ମଧ୍ୟ ଉକ୍ତ କଳସ ନ ଥିଲା । ମାଦଳାପାଞ୍ଜିରେ ଏହି କଳସର ଯେଉଁ ମାପ ଲେଖା ହୋଇଅଛି, ତାହା ଅନୁମାନରେ ସ୍ଥିର କରାଯାଇଥିଲା ମାତ୍ର । ମାଦଳା ପାଞ୍ଜିର ମାପ ଅନୁସାରେ ଏହା ମୋଟରେ ୧୪ କାଠି ୨୨ ଆଙ୍ଗୁଳି ଅର୍ଥାତ୍ ୨୫ ଫୁଟ ୧୦୨ ଇଞ୍ଚ ଉଚ୍ଚ । ଗଭର୍ଣ୍ଣମେଣ୍ଟଙ୍କର ପ୍ରତ୍ନତତ୍ତ୍ୱ ଅନୁଶୀଳନ ବିଭାଗର ରିପୋର୍ଟ ଅନୁସାରେ ଏହି କଳସ ୨୫ ଫୁଟ ଉଚ୍ଚ ଥିଲା । ଏହା ଗୋଟିଏ ପଥରରେ ନିର୍ମିତ ଏବଂ ପଥରଟିର ଓଜନ ୨୦୦୦ ଟନ ବା ପ୍ରାୟ ୫୬୦୦୦ ମହଣ ଥିଲା ।* ଏହି ପର୍ବତରୂପୀ ଶିଳାଖଣ୍ଡ ବଡ଼ଦେଉଳ ଉପରେ ଭୂମିର ପ୍ରାୟ ୨୦୦୦ ଫୁଟ ଉଚ୍ଚରେ ସ୍ଥାପିତ ହୋଇଥିଲା । ଏହିପରି ବା ଏହାଠାରୁ ସାମାନ୍ୟ କ୍ଷୁଦ୍ର ଗୋଟିଏ ଶିଳା ମୁଖଶାଳା ଉପରେ କଳସ ସ୍ୱରୂପ ମଧ୍ୟ ଥିଲା । ଏହା ବ୍ୟତୀତ କୋଣାର୍କର ଅରୁଣସ୍ତମ୍ଭ ଏବଂ ମୁଖଶାଳା ଭିତରର ଚାରିଟି ଖମ୍ବ ଏକ ଏକ ପଥରରେ ନିର୍ମିତ ହୋଇଥିଲା । ଅରୁଣସ୍ତମ୍ଭର ଉଚ୍ଚତା ୩୪ ଫୁଟ ଏବଂ ଉକ୍ତ ଖମ୍ବ ଚାରିଟିରୁ ପ୍ରତ୍ୟେକର ଉଚ୍ଚତା ୪୦ ଫୁଟ । ଏମାନଙ୍କର ପରିସର ଉଚ୍ଚତାରୁ ସହଜରେ ଅନୁମାନ କରାଯାଇ ପାରେ । କୋଣାର୍କରେ ଏହି ରୂପ ବିଶାଳ ଶିଳାମାନଙ୍କ ବ୍ୟବହାର ବର୍ତ୍ତମାନ ଯୁଗର ଇଞ୍ଜିନିୟରମାନେ କଳ୍ପନା ସୁଦ୍ଧା କରିପାରୁ ନାହାନ୍ତି । ୨୬.୫ ଟନ୍‌ର ତୃତୀୟାଂଶ ମାତ୍ର ଓଜନର ନବଗ୍ରହପାଟ ବୋହି ନେବା ନିମନ୍ତେ ଗଭର୍ଣ୍ଣମେଣ୍ଟଙ୍କର ଏତେ ଅର୍ଥ ଓ କଳକୌଶଳ ବ୍ୟର୍ଥ ହୋଇଥିଲା; କିନ୍ତୁ କୋଣାର୍କର ୨୦୦୦ ଟନ୍ ଓଜନର

---

* Report of the Archaeological Survey of India. 1903–4, P. 9. (taken from the Gazetteer P. 274.)

କଳସ ପରି ଶିଳାମାନ ଓଡ଼ିଆମାନେ କି ଉପାୟରେ ସେ ଯୁଗରେ ଏତେ ଦୂରରୁ ବୋହି ନେଇଥିଲେ; ବର୍ତ୍ତମାନ ପର୍ଯ୍ୟନ୍ତ ତାହାର କୌଣସି ସମାଧାନ କେହି କରିପାରି ନାହିଁ । ମନ୍ଦିର ଉଦ୍ଧାର ସମୟରେ ଗୋଟା ଗୋଟା ପଥର ସ୍ଥାନାନ୍ତରିତ କରିବା ଅସାଧ ମଣି ବାରକମିସ୍ତ୍ରୀ ପଥରଗୁଡ଼ିକ କାଟି ଖଣ୍ଡ ଖଣ୍ଡ କରି ଦେଇଥିଲେ । ଏପରି ସ୍ଥଳେ ଯେଉଁ ବିଷୟରେ ବର୍ତ୍ତମାନ ବିଜ୍ଞାନ ଜଗତର ପ୍ରଧାନ ପ୍ରଧାନ ବିଜ୍ଞାନବେତ୍ତା ଇଞ୍ଜିନିୟରମାନେ ହତବୁଦ୍ଧି ହେଉଅଛନ୍ତି, ଜନସାଧାରଣ ତାହାକୁ ଦୈବୀଶକ୍ତିର ଫଳ ବୋଲି ଅନୁମାନ କରିବା ବିଚିତ୍ର ବା କ'ଣ ?

କୋଣାର୍କ ମନ୍ଦିରର ନିର୍ମାଣ-ପ୍ରଣାଳୀ ଓଡ଼ିଶାର ଅନ୍ୟାନ୍ୟ ମନ୍ଦିରମାନଙ୍କ ସଙ୍ଗେ ସମାନ । ବଡ଼ଦେଉଳର ବାଡ଼ଅଂଶ ପୀଠ ଉପରେ ଲମ୍ବ ଭାବରେ ନିର୍ମିତ । ବାଡ଼ ଉପରେ ରେଖଅଂଶ ମନ୍ଦିର ମଧ୍ୟକୁ କ୍ରମବକ୍ର ହୋଇ ତିଆର ହୋଇଥିଲା । ଏହି ରେଖଅଂଶର ଉଚ୍ଚତା ୧୧୭ ଫୁଟ ଥିଲା । * ମୁଖଶାଳାର ଛାତ ଯେପରି ବଡ଼ଦେଉଳ ସେହିପରି ପୀଢ଼ାକାରରେ ହୋଇଥିଲେ ତାହା ଏତେ ଉଚ୍ଚ ହୋଇପାରି ନ ଥାନ୍ତା । ପୀଢ଼ାକାର ଛାତ ନିର୍ମାଣ ଅପେକ୍ଷାକୃତ ସହଜ । ପୁଣି କାନ୍ଥଗୁଡ଼ିକ ସମ୍ପୂର୍ଣ୍ଣ ଲମ୍ବାକାର ହେଲେ ଗଠନ ଆହୁରି ସହଜସାଧ ହୁଏ । ରେଖାକାର ମନ୍ଦିର ନିର୍ମାଣରେ ସମୁଦାୟ ମନ୍ଦିରର ଭାରକେନ୍ଦ୍ର ସଙ୍ଗେ ସଙ୍ଗେ ପ୍ରତ୍ୟେକ ପଥରଖଣ୍ଡ ଏବଂ ପ୍ରତ୍ୟେକ କାନ୍ଥର ଭାରକେନ୍ଦ୍ର ପ୍ରତି ଦୃଷ୍ଟି ଦେବା ଆବଶ୍ୟକ । ପ୍ରତ୍ୟେକ କାନ୍ଥ ଭିତରକୁ କ୍ରମବକ୍ର ଥିବାରୁ ପାର୍ଶ୍ୱବର୍ତ୍ତୀ ଦୁଇ କାନ୍ଥର ସଂଘର୍ଷଦ୍ୱାରା ତାହା ସ୍ଥିର ରହେ । ସୁତରାଂ ପ୍ରତ୍ୟେକ କାନ୍ଥ ଉପରେ ଏକ ସମୟରେ ଦୁଇଟି ଶକ୍ତି ସାଧାରଣତଃ କାର୍ଯ୍ୟ କରେ । ପ୍ରଥମଟି ପୃଥିବୀର ମାଧାକର୍ଷଣ ପ୍ରଭାବ । ତାହାଦ୍ୱାରା କାନ୍ଥଗୁଡ଼ିକ ସର୍ବଦା ତଳକୁ ପଡ଼ିଯିବା ପାଇଁ ଉନ୍ମୁଖ । ଦ୍ୱିତୀୟଟି ମାଧାକର୍ଷଣ ବଳକୁ ପ୍ରତିହତ କରିବା ପାଇଁ ପ୍ରତ୍ୟେକ କାନ୍ଥ ଉପରେ ପାର୍ଶ୍ୱବର୍ତ୍ତୀ ଦୁଇ କାନ୍ଥର ସଂଘର୍ଷ । ମନ୍ଦିରର ପ୍ରଥମ ଅବସ୍ଥାରେ ଏହି ଦୁଇଟି ପ୍ରତିଦ୍ୱନ୍ଦ୍ୱୀ ଶକ୍ତିର ପ୍ରଭାବ ପ୍ରାୟ ସମାନ ଥାଏ; ସୁତରାଂ କାନ୍ଥଗୁଡ଼ିକ ଭାଙ୍ଗି ପଡ଼େ ନାହିଁ; କିନ୍ତୁ ମାଧକର୍ଷଣକୁ ସାହାଯ୍ୟ କରିବା ନିମନ୍ତେ ଯଦି ପ୍ରବଳ ପବନସ୍ରୋତ ବା ଅନ୍ୟ କୌଣସି ବାହ୍ୟଶକ୍ତି କାନ୍ଥ ଉପରେ କାର୍ଯ୍ୟ କରେ, ତାହାହେଲେ କାନ୍ଥଗୁଡ଼ିକ ଭାଙ୍ଗି ପଡ଼ିବା ଅବଶ୍ୟମ୍ଭାବୀ । ଏହି ଉଭୟ ଶକ୍ତିକୁ ପ୍ରତିହତ କରିବା ନିମନ୍ତେ ତଳଆଡୁ ସୁଦୃଢ଼ ଖମ୍ବ ଗଢ଼ି କାନ୍ଥଗୁଡ଼ିକୁ ଆଶ୍ରୟ ଦେବା କିମ୍ବା ଉପରୁ ଅତିଶୟ ଗୁରୁଭାର ଦ୍ୱାରା ସେଗୁଡ଼ିକୁ ଚିପି ରଖିବା ଆବଶ୍ୟକ । ରେଖ ଦେଉଳର ଭିତରେ ପରିସର ସେତେ ଅଧିକ ନୁହେଁ, ଅଥଚ ଦେଉଳ ବିଶେଷ ଉଚ୍ଚ । ସୁତରାଂ ଦେଉଳ ଭିତରେ ଖମ୍ବ ଗଢ଼ି କାନ୍ଥକୁ ଆଶ୍ରୟ ଦେବା ସୁବିଧାଜନକ ନୁହେଁ । ଏହା ବରଂ ମୁଖଶାଳା ପରି ବିସ୍ତୃତ ଓ ଅଳ୍ପ ଉଚ୍ଚ ମନ୍ଦିରମାନଙ୍କରେ ସମ୍ଭବ ହୋଇପାରେ । ସୁତରାଂ ରେଖ ଦେଉଳମାନଙ୍କ ଉପରେ ଆମଳକଶିଳା, କଳସ ପ୍ରଭୃତି ଗୁରୁଭାର ସ୍ୱରୂପ ନିର୍ମିତ ହୋଇଥାଏ । ଏମାନଙ୍କ ଦ୍ୱାରା ମନ୍ଦିର ଯେପରି ସୁନ୍ଦର ଦେଖାଯାଏ, ସେହିପରି ସୁଦୃଢ଼ ଓ ସ୍ଥାୟୀ ହୋଇ

* ରେଖଅଂଶ ବାଡ଼ର ଦୁଇ ଗୁଣ ଉଚ୍ଚ – ଗାଙ୍ଗୁଲୀ

ବହୁକାଳ ରହିପାରେ । ଯଦି ରେଖ ଦେଉଳକୁ ଉକ୍ତ ଉପରିସ୍ଥିତ ଭାର ବାହାର କରି ନିଆଯାଏ, ତାହାହେଲେ ସମୁଦାୟ ଦେଉଳର ପତନ ଅନିବାର୍ଯ୍ୟ । ସ୍ଥିତି ଓ ଗତି ବିଜ୍ଞାନରେ ଓଡ଼ିଆମାନଙ୍କର ଏହି ରୂପ ଅଦ୍ଭୁତ ଅଭିଜ୍ଞତା ଓଡ଼ିଶାର ସମସ୍ତ ରେଖ ଦେଉଳମାନଙ୍କରେ ସବିଶେଷ ଦେଖାଯାଏ; କିନ୍ତୁ କୋଣାର୍କର ଆଧିକ୍ୟ ଏହି ଯେ, କୋଣାର୍କ ଦେଉଳ ଓଡ଼ିଶାର ଅନ୍ୟାନ୍ୟ ମନ୍ଦିରମାନଙ୍କ ଅପେକ୍ଷା ଯଥେଷ୍ଟ ବୃହତ୍ ଥିଲା ଏବଂ ରେଖାଂଶ ମଧ ତଦନୁସାରେ ଅଧିକ ଉଚ୍ଚ ଥିଲା । ପରିଶେଷରେ ଯେଉଁ ପଥରଖଣ୍ଡମାନଙ୍କ ଦ୍ୱାରା ରେଖାଂଶ ଗଠିତ ହୋଇଥିଲା, ତାହା ମଧ ଅନ୍ୟାନ୍ୟ ଦେଉଳ ତୁଳନାରେ ଅତିଶୟ ବୃହତ୍ ଓ ଅସାଧ ଥିଲା । ସୁତରାଂ କୋଣାର୍କର ବଡ଼ଦେଉଳ ଉପରେ ଏଡ଼େ ପ୍ରକାଣ୍ଡ କଳସର ପ୍ରୟୋଜନ ହୋଇଥିଲା ।

ମୁଖଶାଳାର ଗଠନ କିନ୍ତୁ ସ୍ୱତନ୍ତ୍ର । ଅନ୍ୟାନ୍ୟ ସ୍ଥଳରେ ଯେପରି, କୋଣାର୍କର ମୁଖଶାଳାରେ ମଧ ସେହିପରି ରେଖ ପରିବର୍ତ୍ତରେ ପୀଢ଼ର ବ୍ୟବହାର କରାଯାଇଅଛି । ପୀଢ଼ ଚାଳରେ ପ୍ରତ୍ୟେକ ପ୍ରସ୍ତ ପଥର ଦେଉଳର ଭିତର ଆଡ଼କୁ ବାହାରିଥାଏ । ଏହିରୂପେ ଗଢ଼ା ହେଉ ହେଉ ଚାଳ ପୂର୍ଣ୍ଣ ହୋଇଯାଏ । ଏହିରୂପ ପୀଢ଼ଚାଳ ରେଖ ଅପେକ୍ଷା ଯେତେ ସହଜସାଧ, ସେତେ ମଧ ଅସୁବିଧାଜନକ । ପୀଢ଼ଚାଳର ଗଠନ ସହଜ; କାରଣ ଏହା ଅଳ୍ପ ଉଚ୍ଚ ଗଢ଼ିବାକୁ ହୁଏ । ସୁତରାଂ ଶିଳ୍ପୀ ଅପେକ୍ଷାକୃତ ଅଳ୍ପ ପରିଶ୍ରମରେ ଏହା ଶେଷ କରିପାରେ । କିନ୍ତୁ ଏ ସୁବିଧା ସତ୍ତ୍ୱେ ପୀଢ଼ଚାଳ ଗଠନରେ ମଧ ଯଥେଷ୍ଟ ଅସୁବିଧା ଅଛି । ରେଖ ଦେଉଳରେ ପ୍ରତ୍ୟେକ ପ୍ରସ୍ତ ପଥର ତାହାର ନିମ୍ନସ୍ତର ସହିତ ପ୍ରାୟ ଏକ ଲମ୍ବ ରେଖାକ୍ରମେ ଗଢ଼ାଯାଏ, ଦୁଇ ସ୍ତର ପଥର ଦେହରେ ବକ୍ରଭାବ ସହଜରେ ଦେଖାଯାଏ ନାହିଁ । ସୁତରାଂ ପ୍ରତ୍ୟେକ ପ୍ରସ୍ତ ପଥର ସ୍ଥିର ରଖିବା ନିମନ୍ତେ ତାହାର ତଳ ଓ ଉପର ପଥରର ଚାପ ଅପେକ୍ଷାକୃତ ଅଳ୍ପ ପ୍ରୟୋଜନ; କିନ୍ତୁ ପୀଢ଼ଚାଳରେ ମନ୍ଦିରର ଭିତରଆଡୁ ଦେଖିଲେ ପ୍ରତ୍ୟେକ ପ୍ରସ୍ତ ପଥର ତାହାର ନିମ୍ନ ପ୍ରସ୍ତ ଅପେକ୍ଷା ବାହାରକୁ କିଛି ବାହାରିଥାଏ । ଅର୍ଥାତ୍ ପୀଢ଼ଚାଳ ମନ୍ଦିର ଭିତରୁ ଗୋଟିଏ ଓଲଟା ପାହାଚ ଶ୍ରେଣୀ ପରି ଦେଖାଯାଏ । ପ୍ରତ୍ୟେକ ପ୍ରସ୍ତ ପଥର ନିମ୍ନ ପ୍ରସ୍ତ ଅପେକ୍ଷା ଯେତେ ବାହାରକୁ ବାହାରେ, ମାଧ୍ୟାକର୍ଷଣ ପ୍ରଭାବରେ ତାହା ତଳକୁ ପଡ଼ିଯିବାର ସେତେ ଆଶଙ୍କା । ସୁତରାଂ ପ୍ରତ୍ୟେକ ସ୍ତର ପଥରକୁ ସ୍ଥିର ରଖିବା ନିମନ୍ତେ ତାହାର ଉପର ସ୍ତର ପଥର ଅପେକ୍ଷାକୃତ ଲଘୁ ଏବଂ ନିମ୍ନ ସ୍ତର ପ୍ରସାରିତ ହେବା ପ୍ରୟୋଜନ । ସେହି ହେତୁରୁ ପୀଢ଼ଚାଳର ବେଧ ରେଖ ଅପେକ୍ଷା ଯଥେଷ୍ଟ ଅଧିକ ହୁଏ । ପୀଢ଼ଚାଳ ଅଳ୍ପ ଉଚ୍ଚ ନ ଉଠୁଣୁ ପୂର୍ଣ୍ଣ ହୋଇଯିବାରୁ ବଡ଼ଦେଉଳ ସଙ୍ଗେ ସମାନ ଅନୁପାତ ରଖିବା ନିମନ୍ତେ ମୁଖଶାଳାର ପ୍ରସାର ବଡ଼ଦେଉଳ ଅପେକ୍ଷା ଅଧିକ କରାଯାଏ । ପୁଣି ରେଖ ଦେଉଳରେ ରେଖ ଓ ତାହାର ଉପର ଅଂଶର ନିମ୍ନ ଚାପ ବାଡ଼ ଉପରେ ଲମ୍ବ ଭାବରେ ପଡ଼େ । ସୁତରାଂ ବାଡ଼ର ବେଧ ଅତ୍ୟନ୍ତ ଅଧିକ ନ ହେଲେ ମଧ ମନ୍ଦିର ସ୍ଥାୟୀ ହୋଇପାରେ । ପରନ୍ତୁ ପୀଢ଼ ଦେଉଳରେ ଏକେ ପୀଢ଼ ଚାଳର ବେଧ ଯଥେଷ୍ଟ ଅଧିକ; ସେଥିରେ ପୁଣି

ତାଳର ନିମ୍ନଚାପ ବାଡ଼ ଉପରେ ଲମ୍ବ ଭାବରେ ନ ପଡ଼ି ବରଂ ତିର୍ଯ୍ୟକ୍ ଭାବରେ ପଡ଼େ । ସୁତରାଂ ମୁଖଶାଳାର କାନ୍ଥ ବାହାରକୁ ଭାଙ୍ଗି ପଡ଼ିବାର ବିଶେଷ ଆଶଙ୍କା ଥିବାରୁ କାନ୍ଥର ବେଧ ଅତ୍ୟନ୍ତ ଅଧିକ ହୋଇଥାଏ । କୋଣାର୍କ ମୁଖଶାଳା କାନ୍ଥର ପ୍ରସାର ଏବଂ ପୀଢ଼ ଓ ଆମଳକଶିଳା ପ୍ରଭୃତିର ଗୁରୁଭାର ଦେଖିଲା ମାତ୍ରକେ ଦର୍ଶକ ହୃଦୟ ସ୍ତମ୍ଭୀଭୂତ ହୁଏ ।

ମୁଖଶାଳାର ପୀଢ଼ତାଳର ଗୁରୁତ୍ୱ ସମ୍ବନ୍ଧରେ ଫର୍‌ଗୁସନ୍ ଯଥାର୍ଥତଃ ଲେଖିଅଛନ୍ତି – ସର୍ବତ୍ର ଯେପରି ଥାଏ, କୋଣାର୍କ ମୁଖଶାଳାର ପୀଢ଼ତାଳ ଉପରେ ସେହିପରି ପଦ୍ମାକାର ବର୍ତ୍ତୁଳ ଅଳଙ୍କାର (ଆମଳକଶିଳା ଓ କଳସ ପ୍ରଭୃତି) ଅଛି; କିନ୍ତୁ ଏହା ବିଶିଷ୍ଟରୂପେ ମନୋହର । ଏହି ସମସ୍ତ ତାଳ ଯଦି କେବଳ ଖମ୍ବଶ୍ରେଣୀ ଉପରେ କିମ୍ବା ବହୁ ଦ୍ୱାରବିଶିଷ୍ଟ କାନ୍ଥ ଉପରେ ନିର୍ମିତ ହୋଇଥାନ୍ତା, ତାହାହେଲେ ଏହାର ଗୁରୁଭାରରେ ସେ ଖମ୍ବ ବା କାନ୍ଥ ନିଶ୍ଚୟ ଭାଙ୍ଗି ଯାଆନ୍ତା; କିନ୍ତୁ ଏକ ଦ୍ୱାରବିଶିଷ୍ଟ ସୁଦୃଢ଼ କାନ୍ଥ ଉପରେ ସ୍ଥାପିତ ଥିବାରୁ ଏହା ଏତେ ଉପଯୁକ୍ତ ଓ ମନୋହର ହୋଇଅଛି ଯେ, ମୋ ଜାଣିବାରେ ଆଉ ଏପରି ଅନ୍ୟତ୍ର ଦେଖାଯାଏ ନାହିଁ । ପୀଢ଼ମାନଙ୍କର ଉନ୍ନତି ଓ ବିଭିନ୍ନ ମୁଖରେ ଆଲୋକ ଓ ଛାୟାର କ୍ରୀଡ଼ା ଏବଂ ଦୁଇ ପୀଢ଼ର ମଧ୍ୟବର୍ତ୍ତୀ ଛାୟା ଏହାକୁ ଏପରି ଚମତ୍କାର ଓ ସୁନ୍ଦର କରିଅଛି ଯେ, ମୁଁ ସ୍ୱୀକାର କରୁଅଛି କି, ଏହା ସହିତ ତୁଳନୀୟ ମନ୍ଦିର ମୁଁ ପ୍ରାୟ କଦାପି ଦେଖିନାହିଁ । *

ପୂର୍ବେ କୁହାଯାଇଅଛି (ପଞ୍ଚମ ଅଧ୍ୟାୟ), କୋଣାର୍କର ବଡ଼ଦେଉଳ ଓ ମୁଖଶାଳା ଉଭୟ ପଞ୍ଚରଥ; ଅର୍ଥାତ୍ ପ୍ରତ୍ୟେକ ପାଖରେ ଦେଉଳର କାନ୍ଥରେ ପାଞ୍ଚ ଭାଗ ଥାଏ । ଦୁଇ ପ୍ରାନ୍ତରେ କୋଣକ ପାଗ, ତାହା ପରେ ଅନର୍ଥ ପାଗ ଏବଂ ଅନର୍ଥ ପାଗଠାରୁ କିଛି ବାହାରକୁ ବାହାରିଥାଏ । ମଧ୍ୟରେ ରାହା ପାଗ ଅନର୍ଥ ପାଗ ଅପେକ୍ଷା ଆହୁରି ବାହାରକୁ ବାହାରି ଗଠିତ ହୋଇଥାଏ । ଏହିରୂପେ ଦେଉଳର ପ୍ରତ୍ୟେକ ପାଖର କାନ୍ଥ ଓ ତାଳ ପାଞ୍ଚ ଭାବରେ ବିଭକ୍ତ । ଏହାଦ୍ୱାରା ମନ୍ଦିରର ଚୌରସ କାନ୍ଥ ଦନ୍ତୁରିତ ହୋଇ ଆଲୋକ ଓ ଛାୟାର କ୍ରୀଡ଼ା ଯୋଗୁଁ ଯେପରି ସୁନ୍ଦର ଦେଖାଯାଏ । ସେହିପରି ମଧ୍ୟ ମନ୍ଦିରର ସ୍ଥାୟିତ୍ୱ ବିଷୟରେ ବହୁତ ସାହାଯ୍ୟ କରେ । ଏହି ପଞ୍ଚରଥ ପ୍ରଣାଳୀ ବାଡ଼ ଦେହରେ ଯେପରି, ରେଖ ଦେହରେ ମଧ୍ୟ ସେହିପରି ଦେଖାଯାଏ । ବାହାରକୁ ବାଡ଼ ଓ ରେଖ ଏତେ ଉଚ୍ଚ ନୀଚ ହୋଇଥିଲେ ସୁଦ୍ଧା ଭିତର ପାଖରେ କାନ୍ଥ ଦେହରେ ସେପରି ନ ଥାଏ । ସୁତରାଂ ରାହା ପାଗ ସ୍ଥାନରେ ଅନ୍ୟାନ୍ୟ ପାଗମାନଙ୍କ

* "The whole (of the roof) is crowned by the lotus-shaped dominical ornament, as is universally the case, but which is here of a singularly elegent form. Were such roof as this placed over a colonnade or on a wall much cut up with openings, it would, no doubt be overpoweringly heavy, but placed as it is on a solid wall with only one opening on each face, and that so deeply recessed, I scarcely know one so singularly appropriate and elegant; and the play of light and shade from its bold and varied projections and intervening shadows give it a brilliant and sparkling effect that, I confess, I have almost never seen equalled" – Picturesque Illustrations of Ancient Architecture in Hindustan. P. 28.

ଅପେକ୍ଷା କାନ୍ଥ ଅଧିକ ମୋଟା । ଅର୍ଥାତ୍ ରେଖ ଭାଗରେ କାନ୍ଥର ଯେଉଁ ଅଂଶ ଉପରେ ମାଧ୍ୟାକର୍ଷଣର ପ୍ରଭାବ ଯେତେ ଅଧିକ, ସେହି ଅଂଶ ସେତେ ପରିମାଣରେ ମୋଟା । ରେଖର ପ୍ରତ୍ୟେକ ପାଖ କାନ୍ଥ ଦୁଇ ପ୍ରାନ୍ତରେ ପାର୍ଶ୍ୱବର୍ତ୍ତୀ କାନ୍ଥ ଦୁଇଟିର ଆଶ୍ରୟରେ ମାଧ୍ୟାକର୍ଷଣ ପ୍ରଭାବରୁ ଅପେକ୍ଷାକୃତ ନିରାପଦ; କିନ୍ତୁ ମଧ୍ୟସ୍ଥଳରେ ଅର୍ଥାତ୍ ରାହା ପାଗରେ କାନ୍ଥର ପତନ ଆଶଙ୍କା ସର୍ବାପେକ୍ଷା ଅଧିକ । ସୁତରାଂ ମଧ୍ୟସ୍ଥଳରେ କାନ୍ଥ ଦୁଇପାର୍ଶ୍ୱ ଅପେକ୍ଷା ଅଧିକ ମୋଟା । ଅବଶ୍ୟ ଗୋଟିଏ ବୃତ୍ତଖଣ୍ଡ ସଦୃଶ କାନ୍ଥଗୁଡ଼ିକ ତିଆର କରାଯାଇଥିଲେ ଏହି ଉଦ୍ଦେଶ୍ୟ ମଧ୍ୟ ସାଧିତ ହୋଇ ପାରିଥାନ୍ତା; କିନ୍ତୁ ତାହାଦ୍ୱାରା ମନ୍ଦିର ଆକାର ଦୋଷରୁ ସୌନ୍ଦର୍ଯ୍ୟହୀନ ହୋଇ ପଡ଼ନ୍ତା । ଏହିରୂପେ ବୃତ୍ତଖଣ୍ଡ ସଦୃଶ ନ କରି ମଧ୍ୟ ପୁରୀ ଓ ଭୁବନେଶ୍ୱର ଶିଳ୍ପୀମାନେ ମନ୍ଦିରମାନଙ୍କର ଆକାର ଯଥାର୍ଥ ରଖିପାରି ନାହାନ୍ତି । କିନ୍ତୁ କୋଣାର୍କ ଶିଳ୍ପୀଙ୍କର ବିଶେଷତ୍ୱ ଏହି ଯେ, ପୁରୀ ଓ ଭୁବନେଶ୍ୱର ମନ୍ଦିରମାନଙ୍କଠାରୁ କୋଣାର୍କ ମନ୍ଦିରର ପାଗବିଭାଗ ଅପେକ୍ଷାକୃତ ଅଧିକ ଉନ୍ନତ ହୋଇଥିଲେ ସୁଦ୍ଧା ମନ୍ଦିରର ଚୌରସ ଆକାର ସମ୍ପୂର୍ଣ୍ଣ ସୁରକ୍ଷିତ ହୋଇଅଛି । ଏହିରୂପେ ବିଚିତ୍ର କୌଶଳଦ୍ୱାରା ପାଗବିଭାଗ କରି ଶିଳ୍ପୀ ପ୍ରଧାନ ଉଦ୍ଦେଶ୍ୟ ଅତି ସୁଚାରୁରୂପେ ସାଧନ କରିଅଛି ।

କୋଣାର୍କର ସମୁଦାୟ ମନ୍ଦିର ଏହିରୂପେ ପୀଢ଼ ଓ ରେଖ ଆକାରରେ ନିର୍ମିତ । କୌଣସି ମନ୍ଦିରରେ କିନ୍ତୁ ରେଖ ବା ପୀଢ଼ କାମଦ୍ୱାରା ଛାତ ପୂରା ମୁଦ ହୋଇ ନ ଥିଲା । ଛାତ ମୁଦ ହେବା ନିମନ୍ତେ ଲୁହା କଡ଼ି ପଡ଼ି ତାହା ଉପରେ ବେକୀ ଚଟ୍ଟଡ଼ା ପଡ଼ିଥିଲା । ଏହା ବ୍ୟତୀତ ରେଖ ଦେଉଳ ପୁଣି ସାଧାରଣତଃ ଦଶ ଭୂମିରେ ବିଭକ୍ତ । କୋଣାର୍କରେ ବଡ଼ଦେଉଳ ସେହିପରି ଦଶ ବା ତତୋଽଧିକ ଭୂମିରେ ବିଭକ୍ତ ଥିଲା । ପ୍ରତ୍ୟେକ ଭୂମିରେ ଲୁହା କଡ଼ି ପଡ଼ି ଛାତ ତିଆର ହୋଇଥିଲା । ଅବଶ୍ୟ ଏହି ପ୍ରତ୍ୟେକ ଛାତ ଦେହରେ ଉପରକୁ ପଥ ଥାଏ । ଏହି ଛାତଦ୍ୱାରା ରେଖ ଅଂଶର ଭିତର ଆଡ଼କୁ ପଡ଼ିବାର ଶକ୍ତି ବହୁ ପରିମାଣରେ ପ୍ରତିହତ ହେଉଥିଲା । ମୁଖଶାଳାରେ (ଷଷ୍ଠ ଅଧ୍ୟାୟ) ଏକ ଏକ ଶିଳାରେ ଚାରିଗୋଟି ବିରାଟ ଖମ୍ବ ଥିଲା । ସେହି ଖମ୍ବମାନଙ୍କ ଉପରେ ଲୁହା କଡ଼ି ପଡ଼ି ଆଉ ଗୋଟିଏ ଚାଳ ନିର୍ମିତ ହୋଇଥିବାର ରାଜେନ୍ଦ୍ର ଲାଲ କହନ୍ତି । ସୁତରାଂ କି ମୁଖଶାଳା, କି ବଡ଼ଦେଉଳ, କୌଣସି ମନ୍ଦିରରେ ବର୍ତ୍ତମାନ ପରି ତୋରଣ ବା ଖିଲାଣ ବା ଆର୍ଚ୍ଚର କାମ ହୋଇ ନ ଥିଲା । କେବଳ କୋଣାର୍କ ନୁହେଁ, ଓଡ଼ିଶାର କୌଣସି ମନ୍ଦିରରେ ଖିଲାଣ କାମ ଦେଖାଯାଏ ନାହିଁ ।

ସେହି ହେତୁରୁ କେହି କେହି ସମାଲୋଚକ ଅନୁମାନ କରନ୍ତି ଯେ ପ୍ରାଚୀନ ଓଡ଼ିଆମାନଙ୍କୁ ଆର୍ଚ୍ଚ ବା ଖିଲାଣ ତିଆର କୌଶଳ ଆଦୌ ଜଣା ନ ଥିଲା । ଶ୍ରୀ ବିଷନ୍ ସ୍ୱରୂପ କହନ୍ତି, * ସେ ଯୁଗରେ ଖିଲାଣନୀତି ଜଣା ନ ଥିବାରୁ ପଥରକୁ ପିରାମୀଡ଼ ପରି କ୍ରମେ ଭିତରକୁ ମଡ଼େଇ ପକାଇ କଡ଼ିଦ୍ୱାରା ଛାତ ତିଆରି କରୁଥିଲେ । ସେ ଅନ୍ୟତ୍ର ମଧ୍ୟ

* Konarka. P. 49.

କହନ୍ତି, * 'ଓଡ଼ିଆମାନେ ଖିଲାଣନୀତି ଜାଣିଥିବାର କୌଣସି ପରିଚୟ ମିଳେ ନାହିଁ ।' ସେହିପରି ହଣ୍ଟର ମଧ୍ୟ କହନ୍ତି, ** 'ହିନ୍ଦୁ ଶିଳ୍ପୀମାନେ ସେ ସମୟରେ ଖିଲାଣ ଗଠନ କୌଶଳ ଜାଣି ନ ଥିଲେ ।' ଏହିରୂପେ ନାନା ସମାଲୋଚକମାନଙ୍କ ମତରେ ହିନ୍ଦୁ ତଥା ଓଡ଼ିଆମାନେ ଖିଲାଣନୀତିରେ ଅନଭିଜ୍ଞ ଥିବାରୁ ମନ୍ଦିରମାନଙ୍କରେ ତାହାର କାମ କରି ନ ଥିଲେ ।

ଅବଶ୍ୟ ଓଡ଼ିଶାରେ କୌଣସି ମନ୍ଦିରରେ ଖିଲାଣ କାମ ପ୍ରାୟ ଦେଖାଯାଏ ନାହିଁ । ଓଡ଼ିଆମାନଙ୍କର ଅନଭିଜ୍ଞତା ହେତୁରୁ ଖିଲାଣ ବ୍ୟବହାର ହୋଇନାହିଁ କି ଖିଲାଣରେ କିଛି ଦୋଷ ଦେଖିଥିବାରୁ ଶିଳ୍ପୀମାନେ ତାହାର କାମ କରୁ ନ ଥିଲେ ? ଯେଉଁମାନେ ଏତେ ଆଶ୍ଚର୍ଯ୍ୟ ଭାବରେ କୋଣାର୍କ ପରି ବିରାଟ ଓ ଅଦ୍ଭୁତ ମନ୍ଦିରରେ ନିର୍ମାଣ କୌଶଳର ପରାକାଷ୍ଠା ଦେଖାଇ ପାରିଥିଲେ, ସେମାନଙ୍କ ପ୍ରତି ଖିଲାଣ ଗଠନ ଅତି ସାମାନ୍ୟ ମାତ୍ର । ପରନ୍ତୁ ଖିଲାଣ କୌଶଳ ଆଲୋଚନା କଲେ ବୁଝାଯାଏ ଯେ, ସ୍ଥାୟିତ୍ୱ ବିଷୟରେ ତାହା ନିତାନ୍ତ ନିରାପଦ ନୁହେଁ । ଖିଲାଣ ଦେହରେ ପ୍ରତ୍ୟେକ ପଥର ବା ଇଟା ମାଧ୍ୟାକର୍ଷଣ ପ୍ରଭାବରେ ତାହାର ପାଖ ପଥର ବା ଇଟା ଉପରେ ଚାପ ଦେଉଥାଏ । ମୋଟରେ ସମୁଦାୟ ଖିଲାଣ ଦୁଇ ପାଖର କାନ୍ଥ ବା ଖମ୍ବ ଉପରେ ଚାପ ଦେଇ ସ୍ଥିର ରହେ । ସୁତରାଂ ଗୋଟିଏ ବୃହତ୍ ଖିଲାଣର ନିମ୍ନ ଚାପ ପ୍ରତିରୋଧ କରିବା ନିମନ୍ତେ ଉକ୍ତ ଖମ୍ବ ବା କାନ୍ଥ ସୁଦୃଢ଼ ହେବା ଆବଶ୍ୟକ । ପୁଣି ଯେଉଁଠାରେ ଖମ୍ବ ବା କାନ୍ଥ ଲମ୍ବଭାବରେ ତିଆର ହୋଇଥାଏ, ସେଠାରେ ତାହା ଖିଲାଣର ଭାର ସମ୍ଭାଳିପାରେ; କିନ୍ତୁ ଓଡ଼ିଶାର ରେଖ ଦେଉଳମାନଙ୍କରେ କାନ୍ଥ ଯେପରି ବକ୍ର ହୋଇଥାଏ, ସେପରି କାନ୍ଥ ଭିତରଆଡ଼କୁ ବକ୍ର ରହିଲେ ଉପର ଖିଲାଣର ନିମ୍ନ ଚାପ ପ୍ରତିରୋଧ କରିବା ନିମନ୍ତେ ସେହି କାନ୍ଥ ଅତ୍ୟନ୍ତ ସ୍ଥୂଳ ଓ ଦୃଢ଼ ହେବା ଆବଶ୍ୟକ । ତାହା ନ ହେଲେ କାନ୍ଥ ସଙ୍ଗେ ସଙ୍ଗେ ସମୁଦାୟ ଖିଲାଣ ଓ ମନ୍ଦିରର ପତନ ଅନିବାର୍ଯ୍ୟ । ଅତଏବ ଓଡ଼ିଶାର ମନ୍ଦିରମାନଙ୍କରେ କାନ୍ଥ ଯେତେ ସ୍ଥୂଳ ଅଛି, ଖିଲାଣ ଗଢ଼ିଲେ ତାହାକୁ ଆହୁରି ସ୍ଥୂଳ କରିବାକୁ ହୋଇଥାନ୍ତା । ତାହା ହୋଇଥିଲେ ମନ୍ଦିରମାନଙ୍କର ବିରାଟ ଆକାର ଦୃଷ୍ଟିରେ ପଦାର୍ଥ ଓ ଶ୍ରମବ୍ୟୟର ଆଉ ସୀମା ରହନ୍ତା ନାହିଁ । ଅତଏବ ଯେଉଁ ପ୍ରଣାଳୀଦ୍ୱାରା ସର୍ବପ୍ରକାର ବ୍ୟୟରେ ଲାଘବ ଦେଖାଗଲା, ତାହା ଅବଲମ୍ବନ କରିଥିବା ଓଡ଼ିଆ ଶିଳ୍ପୀମାନଙ୍କର ବରଂ ବିଶେଷ ବୁଦ୍ଧିମତ୍ତାର ପରିଚୟ ଦେଉଅଛି ।

ଏ ସମସ୍ତ ବ୍ୟୟ ସ୍ୱୀକାର କରିବାକୁ ପ୍ରସ୍ତୁତ ଥିଲେ ମଧ୍ୟ ଖିଲାଣର ସ୍ଥାୟିତ୍ୱରେ ଓଡ଼ିଆମାନଙ୍କର ବିଶ୍ୱାସ ନ ଥିବାର ଯଥେଷ୍ଟ କାରଣ ଅଛି । ଉପରେ ବିଶେଷ ଭାର ନ ଥିଲେ କେବଳ ଖିଲାଣଟି ବହୁକାଳସ୍ଥାୟୀ ହୋଇପାରେ ନାହିଁ । ଉପର ଭାର ଯେତେ ଅଧିକ ହୁଏ,

* Ibd. P. 58.

** Orissa. Vol. I. P. 276.

ଖିଲାଣ ସେ ପରିମାଣରେ ସ୍ଥାୟୀ ରହେ ଏବଂ ଉପର ଭାର ଯେତେ ଅଧିକ ହେବ ତଳ କାନ୍ଥ ବା ଖମ୍ବ ସେତେ ଦୃଢ଼ ଓ ସ୍ଥୂଳ ହେବା ପ୍ରୟୋଜନ । ସୁତରାଂ ଓଡ଼ିଶାର ମନ୍ଦିର, ବିଶେଷତଃ କୋଣାର୍କ ମନ୍ଦିର ଉପରେ ଆମଳକଶିଳା, ଖପୁରୀ ଓ କଳସ ପ୍ରଭୃତି ଯେଉଁ ଗୁରୁଭାର ଥିଲା, ତାହାର ସମସ୍ତ ଭାର ସମ୍ଭାଳିବା ନିମନ୍ତେ କାନ୍ଥ କେତେ ଯେ ସ୍ଥୂଳ ହୋଇଥାନ୍ତା, ତାହା କଳ୍ପନା ସୁଦ୍ଧା କରିହୁଏ ନାହିଁ । ପୁଣି ସେପରି ଅବସ୍ଥାରେ ମନ୍ଦିରର ସୌନ୍ଦର୍ଯ୍ୟ ଯେ କେତେଦୂର ରହନ୍ତା, ତହିଁରେ ମଧ୍ୟ ଘୋର ସନ୍ଦେହ ।

ଏ ସମସ୍ତ ସତ୍ତ୍ୱେ ଖିଲାଣ ନିଜେ ବହୁକାଳ ସ୍ଥାୟୀ ରହି ନ ପାରେ । ଇଂରେଜୀରେ ଗୋଟିଏ ପ୍ରବାଦ ଅଛି, 'An arch never sleeps' 'ଖିଲାଣର ନିଦ୍ରା ନାହିଁ' ଅର୍ଥାତ୍ ଖିଲାଣ ଭାଙ୍ଗି ପଡ଼ିବା ନିମନ୍ତେ ସର୍ବଦା ଉନ୍ମୁଖ । ଏଥିରୁ ବୁଝାଯାଏ, ଆଧୁନିକ ଯୁଗର ଶିଳ୍ପୀମାନେ ମଧ୍ୟ କୌଣସି ସ୍ଥାୟୀ କାର୍ଯ୍ୟରେ ଖିଲାଣ ବ୍ୟବହାର କରିବା ବିଷୟରେ ନିତାନ୍ତ ସନ୍ଦେହଶୂନ୍ୟ ନୁହନ୍ତି । ଅତଏବ ଯେଉଁମାନେ ସହସ୍ର ସହସ୍ର ବର୍ଷ ନିମନ୍ତେ ଅକ୍ଷୟ କୀର୍ତ୍ତି ରଖିଯିବା ଉଦ୍ଦେଶ୍ୟରେ ମନ୍ଦିର ନିର୍ମାଣ କରୁଥିଲେ, ସେମାନେ ଖିଲାଣର ସ୍ଥାୟିତ୍ୱ ବିଷୟରେ କେତେ ସନ୍ଦିଗ୍ଧ ହୋଇଥିବେ, ଏଥିରୁ ସହଜରେ ଅନୁମେୟ । ଆଗ୍ରାର ନିକଟବର୍ତ୍ତୀ ଗୋବର୍ଦ୍ଧନରେ 'ହର ଦେବଜୀ'ଙ୍କ ମନ୍ଦିର ଦେଖି କୋଲ୍ ମହାଶୟ କହିଅଛନ୍ତି * :— 'ହିନ୍ଦୁମାନେ ଖିଲାଣ ବିଷୟରେ ଅତ୍ୟନ୍ତ ସଶଙ୍କ ଥିଲେ ।' ପ୍ରସିଦ୍ଧ ଇଞ୍ଜିନିୟର ଶ୍ରୀ ମନମୋହନ ଗାଙ୍ଗୁଲୀ ସ୍ପଷ୍ଟ ଲେଖିଅଛନ୍ତି ** :— I do not think that the Uriya architects were ignorant of the principles of a radiating arch.' ଅର୍ଥାତ୍ 'ମୁଁ କଦାପି ମନେକରେ ନାହିଁ ଯେ ଓଡ଼ିଆ ଶିଳ୍ପୀମାନେ ଖିଲାଣ ନୀତିରେ ଅନଭିଜ୍ଞ ଥିଲେ ।' ସେ ଯୁଗର କଥା ଯାହାହେଉ, ବର୍ତ୍ତମାନ ଯୁଗରେ ଓଡ଼ିଆମାନଙ୍କର ଖିଲାଣ-ନିର୍ମାଣର ଅଭିଜ୍ଞତା ବିଷୟରେ କୌଣସି ସନ୍ଦେହ କରିବାର ନାହିଁ । ତଥାପି କ୍ଷୁଦ୍ର ହେଉ ବା ବୃହତ୍ ହେଉ, କୌଣସି ମନ୍ଦିର ନିର୍ମାଣରେ ଖିଲାଣ କାମ କରିବାର ଓଡ଼ିଆମାନେ ଦେଖାଯାନ୍ତି ନାହିଁ । ସୁତରାଂ ଭୁବନେଶ୍ୱର, ପୁରୀ ଓ କୋଣାର୍କର ଶିଳ୍ପୀମାନେ ମନ୍ଦିରମାନଙ୍କର ସ୍ଥାୟୀତ୍ୱ ବିଷୟରେ ଏତେ ତନ୍ମୟ ହୋଇଥିବାରୁ ଖିଲାଣକାମ ଏକାବେଳକେ ପରିତ୍ୟାଗ କରିଥିଲେ । ମିଶରବାସୀ ମଧ୍ୟ ଏହିପରି ଉପରେ ଭୟଙ୍କର ଅବିଶ୍ୱାସ କରୁଥିବାର ଜଣାଯାଏ । ବାସ୍ତବିକ ପୁରୀର 'ଅଠରନଳା'ରେ ବର୍ତ୍ତମାନ ପରି ଖିଲାଣ କାମ ହୋଇଥିଲେ ତାହା ଅଦ୍ୟାପି ସହସ୍ର ବର୍ଷ ପର୍ଯ୍ୟନ୍ତ ସ୍ଥାୟୀ ହୋଇଥାନ୍ତା କି ନାହିଁ ସନ୍ଦେହ ।

ଶ୍ରୀ ମନମୋହନ ଗାଙ୍ଗୁଲୀ ଜଣେ ପ୍ରଧାନ ଇଞ୍ଜିନିୟର । ସେ କହନ୍ତି, 'ଉପାଦାନ (ପଥର ବା ଇଟା) ବୃହତ୍ ନ ଥିଲେ ଖିଲାଣ ତିଆର କରିବାର ଆବଶ୍ୟକ ହୁଏ ।' କିନ୍ତୁ

* Archeological Survey of India, Buildings in the neighbourhood of Agra - Cole. P. 34.

** Orissa and Her Remains – P. 108.

ଓଡ଼ିଶାର ମନ୍ଦିରମାନଙ୍କରେ ବିଶେଷତଃ କୋଣାର୍କରେ ଯେପରି ବୃହତ୍ ଶିଳାମାନଙ୍କରେ କାମ ହୋଇଅଛି, ତହିଁରେ ଖିଲାଣ ନିତାନ୍ତ ଅନାବଶ୍ୟକ ଏବଂ ଅସୁବିଧାଜନକ । ''ଓଡ଼ିଆମାନେ ଖିଲାଣ ନୀତି ଜାଣିଥିବାର କୌଣସି ପରିଚୟ ମିଳେ ନାହିଁ '' ଇତ୍ୟାଦି ଉକ୍ତି ଶ୍ରୀ ବିଷନ୍ ସ୍ୱରୂପଙ୍କର ଅଦୂରଦର୍ଶିତାର ପରିଚୟ ଦେଉଅଛି ମାତ୍ର । ଭୁବନେଶ୍ୱରରେ ମୁକ୍ତେଶ୍ୱର ମନ୍ଦିର ସମ୍ମୁଖର ସୁନ୍ଦର ତୋରଣ ଅଦ୍ୟାପି ଅକ୍ଷୁର୍ଣ୍ଣ ଭାବରେ ଅଛି । ଏହା ବ୍ୟତୀତ ପୁରୀ ଓ ଅନ୍ୟାନ୍ୟ ସ୍ଥାନରେ ପ୍ରାଚୀନ ଦୋଳମଣ୍ଡପମାନଙ୍କର ତୋରଣ ଓଡ଼ିଶାରେ ବହୁତ ଦେଖିବାକୁ ମିଳେ । ଉକ୍ତ ତୋରଣମାନ ଗୋଟିଏ ଗୋଟିଏ ପଥରରେ ଗଠିତ ନୁହେଁ ବରଂ ବର୍ତ୍ତମାନ ଖିଲାଣନୀତିରେ କେତେକ ଖଣ୍ଡ ପଥରରେ ନିର୍ମିତ ହୋଇଅଛି । ଏହି ମୁକ୍ତ ତୋରଣ କଥା ବାଦ ଦେଲେ ମନ୍ଦିରମାନଙ୍କରେ ସ୍ଥାନେ ସ୍ଥାନେ ମଧ୍ୟ ବର୍ତ୍ତମାନ ପରି ଖିଲାଣ କାମ ଦେଖାଯାଏ । ପୁରୀ ଗୁଣ୍ଡିଚା ମନ୍ଦିରର ସିଂହଦ୍ୱାର ଉପରେ ଗୋଟିଏ ଖିଲାଣ କାମ, ତାହା ଉପରେ ନବଗ୍ରହ ମୂର୍ତ୍ତି ନିର୍ମିତ ହୋଇଅଛି । ଏହି ଖିଲାଣ କଦାପି ବର୍ତ୍ତମାନ ଶିକ୍ଷା ଅନୁସାରେ ତିଆରି କରାଯାଇ ନାହିଁ । ପରିଶେଷରେ ଆବୁଲଫଜଲଙ୍କ କୋଣାର୍କ ବର୍ଣ୍ଣନାରୁ ଜଣାଯାଏ ଯେ, ମୁଖଶାଳାର ପୂର୍ବ ଦ୍ୱାର ସମ୍ମୁଖରେ ଗୋଟିଏ ବୃହତ୍ ତୋରଣ ଥିଲା ଏବଂ ସେହି ତୋରଣ ଉପରେ ନବଗ୍ରହ ପାଟ ସ୍ଥାପିତ ହୋଇଥିଲା । ସୁତରାଂ ଏ ସମସ୍ତ ଦୃଷ୍ଟିରେ 'ଓଡ଼ିଆମାନଙ୍କୁ ଖିଲାଣ ନୀତି ଜଣା ନ ଥିଲା', କହିବା କେବଳ ଅନଭିଜ୍ଞତାର ଆସ୍ଫାଳନ ମାତ୍ର ।

ପରିଶେଷରେ ଓଡ଼ିଶାର ମନ୍ଦିରମାନଙ୍କରେ ଯେ ଖିଲାଣ କାମ ହୋଇ ନ ଥିଲା, ତାହାର କାରଣ କଦାପି ଓଡ଼ିଆ ଶିଳ୍ପୀମାନଙ୍କର ଅଜ୍ଞାନତା ନୁହେଁ । ପକ୍ଷାନ୍ତରେ ଓଡ଼ିଆମାନେ ଖିଲାଣନୀତି ଜାଣିଥିଲେ ଏବଂ ନାନା ସ୍ଥାନରେ ଖିଲାଣ କାମ କରିଥିଲେ । କୋଣାର୍କ ପ୍ରଭୃତି ମନ୍ଦିରମାନଙ୍କରେ କିନ୍ତୁ ଖିଲାଣ କାମ କରି ନ ଥିଲେ; କାରଣ ତାହାଦ୍ୱାରା ମନ୍ଦିର ନିରତିଶୟ ସ୍ଥୂଳ ଓ ଅପର୍ଯ୍ୟାପ୍ତ ପଥର ବ୍ୟୟ ହୋଇଥାନ୍ତା ଏବଂ ମନ୍ଦିରମାନଙ୍କର ସୌନ୍ଦର୍ଯ୍ୟରେ ବହୁତ ତ୍ରୁଟି ଘଟିଥାନ୍ତା । ପୁଣି ଏ ସମସ୍ତ ତ୍ୟାଗ ସ୍ୱୀକାର କରିଥିଲେ ସୁଦ୍ଧା ମନ୍ଦିରଗୁଡ଼ିକ ବର୍ତ୍ତମାନ ପର୍ଯ୍ୟନ୍ତ ସ୍ଥାୟୀ ହୋଇ ନ ଥାନ୍ତା । ଅତଏବ ଯାହାଦ୍ୱାରା ଶ୍ରମ, ପଦାର୍ଥ ଓ ଅର୍ଥବ୍ୟୟର ଲାଘବ ଦେଖାଗଲା, ସୌନ୍ଦର୍ଯ୍ୟ ଓ ସ୍ଥାୟିତ୍ୱ ରକ୍ଷା କରିବା ନିମନ୍ତେ ଓଡ଼ିଆ ଶିଳ୍ପୀମାନେ ସେହି ପିରାମୀଡ଼ାକୃତି ଗଠନର ପସନ୍ଦ କରିଥିବାରୁ ଆପଣାର କୌଶଳ ଓ ବୁଦ୍ଧିମତ୍ତାର ଯଥେଷ୍ଟ ପରିଚୟ ଦେଇଅଛନ୍ତି । ହଣ୍ଟର ଯଥାର୍ଥରେ ଲେଖିଅଛନ୍ତି, ''ସୁଚାରୁରୂପେ ନିର୍ମିତ ହେଲେ ହିନ୍ଦୁମାନଙ୍କର ଓଲଟା ପାହାଚଶ୍ରେଣୀ ସଦୃଶ ଗଠିତ ତୋରଣର ଭାଙ୍ଗିଯିବା ଆଶଙ୍କା ପ୍ରାୟ ନାହିଁ । ଏମନ୍ତ କି ତୋରଣର ସର୍ବଶେଷ ପଥର ଏବଂ ଏକ ପାଖର ସମସ୍ତ ଖମ୍ବ ଓ ତୋରଣାଂଶ ଭାଙ୍ଗିଦେଲେ ମଧ୍ୟ ଅପର ପାର୍ଶ୍ୱର ତୋରଣାଂଶ ଆପଣାର ସ୍ଥାୟୀତ୍ୱ ବଳରେ ଅକ୍ଷୁର୍ଣ୍ଣ ରହିପାରେ । ଥରେ ଗଡ଼ଜାତ ଅଞ୍ଚଳରେ ଜଣେ ଶିଳ୍ପୀ ଏହି ତୋରଣର ସ୍ଥାୟିତ୍ୱ ବିଷୟରେ ଯେଉଁ ପ୍ରମାଣ ଦେଇଥିଲେ, ମୁଁ ତାହାଦ୍ୱାରା ଏକାବେଳକେ ଚମତ୍କୃତ ହୋଇଥିଲି ।

ଅବଶ୍ୟ ଏହି ତୋରଣରେ ପଦାର୍ଥ ବ୍ୟୟ ବିଶେଷ ହୁଏ ସତ, ତଥାପି ସୌନ୍ଦର୍ଯ୍ୟପ୍ରିୟ ହିନ୍ଦୁ ଅତି ଆଶ୍ଚର୍ଯ୍ୟ ଭାବରେ ଏହାକୁ ଆପଣାର ସହଜ ସୁନ୍ଦର ଭାବରେ ଯଥାସାଧ କମନୀୟ କରି ପାରିଅଛି * ।'' ଅତଏବ ଓଡ଼ିଆମାନେ ଯେଉଁ ତୋରଣର ପକ୍ଷପାତୀ ଥିଲେ, ତାହା ସୌନ୍ଦର୍ଯ୍ୟ ବିଷୟରେ ଯେପରି ବର୍ତ୍ତମାନ ଖିଲାଣ ଅପେକ୍ଷା ନ୍ୟୁନ ନ ଥିଲା, ସ୍ଥାୟିତ୍ୱ ବିଷୟରେ ମଧ ସେହିପରି ବହୁ ଗୁଣରେ ଶ୍ରେୟ ଥିଲା ।

ଏହିରୂପେ ଖିଲାଣ କାମ ପରିତ୍ୟାଗ କରିଥିବାରୁ ଶିଳ୍ପୀମାନଙ୍କୁ ଅଗତ୍ୟା ଲୁହା କଡ଼ିର ବ୍ୟବହାର କରିବା ପଡ଼ିଥିଲା । ଓଡ଼ିଶା ଚିରକାଳ ଲୁହା ନିମନ୍ତେ ପ୍ରସିଦ୍ଧ । ତାଳଚେରର ଲୁହାଖଣିରୁ ପ୍ରଚୁର ଲୁହାର ଆମଦାନୀ ହେଉଥିଲା । ବର୍ତ୍ତମାନ ମଧ ମୟୁରଭଞ୍ଜର ଲୁହାଖଣିରୁ ପ୍ରଚୁର ଲୁହା ବାହାରୁଅଛି । ଏହିପରି କୋଣାର୍କ ଯୁଗରେ କେତେ କେତେ ଗଡ଼ଜାତମାନଙ୍କରୁ ଲୁହାର ଆମଦାନୀ ଥିଲା, ବର୍ତ୍ତମାନ ତାହା ଜାଣିବାର କୌଣସି ପ୍ରମାଣ ନାହିଁ । ତେବେ ଓଡ଼ିଶାର ମନ୍ଦିରମାନଙ୍କରେ ବିଶେଷତଃ କୋଣାର୍କରେ ଯେଉଁ ବୃହତ୍ ଲୁହା କଡ଼ିମାନ ଦେଖିବାକୁ ମିଳେ, ତହିଁରୁ ସୁନ୍ଦର ଅନୁମାନ କରାଯାଇପାରେ ଯେ, ଓଡ଼ିଶାର ଲୁହାଖଣିରୁ ପ୍ରଚୁର ଲୁହା ବାହାରୁଥିଲା ଏବଂ ପ୍ରତ୍ୟେକ ମନ୍ଦିର ନିକଟରେ ଲୁହା କାରଖାନାମାନ ସ୍ଥାପିତ ହୋଇଥିଲା । କୋଣାର୍କର ବେଢ଼ା ମଧରେ ଯେ କେତେକ ଲୁହା କଡ଼ି ପଡ଼ିଅଛି, ତାହାର ଆକାର ଓ ଗଠନ ଦେଖି ପ୍ରଧାନ ପ୍ରଧାନ ଇଞ୍ଜିନିୟରମାନେ ଚମତ୍କୃତ ହୁଅନ୍ତି । ଉକ୍ତ କଡ଼ିଗୁଡ଼ିକ ମଧରୁ ବୃହତ୍ତମ କଡ଼ିର ଲମ୍ବା ୩୫ ଫୁଟ ୯ ଇଞ୍ଚ ଏବଂ ଉଚ୍ଚତା ଓ ବେଧ ଯଥାକ୍ରମେ ୧୦ ଇଞ୍ଚ ଓ ୮ ଇଞ୍ଚ । କୋଣାର୍କ କଡ଼ିର ଗଠନରେ ବିଶେଷତ୍ୱ ଏହି ଯେ, ଦୁଇ ପ୍ରାନ୍ତ ଅପେକ୍ଷା କଡ଼ିର ମଧସ୍ଥଳ ଉଚ୍ଚତା ଓ ବେଧରେ ଏକରୁ ଦୁଇ ଇଞ୍ଚ ପର୍ଯ୍ୟନ୍ତ ଅଧିକ ।

କୋଣାର୍କ ଲୁହାକଡ଼ିର ଗଠନ ବର୍ତ୍ତମାନ କଡ଼ି ପରି ନୁହେଁ । ପ୍ରଥମରେ ଏକ ବା ଦେଢ଼ ଫୁଟ ଲମ୍ବା ଓ ଦୁଇ ବା ତିନି ଇଞ୍ଚ ଚଉଡ଼ାରେ ଲୁହା ଗଜମାନ ତିଆର କରା ଯାଉଥିଲା । ତତ୍ପରେ କେତେଗୁଡ଼ିଏ ଗଜ ପରସ୍ପର ସହିତ ଏକତ୍ର କରାଇ କଡ଼ି ଯେତେ ଲମ୍ବ ଓ ମୋଟା ହେବା ଦରକାର, ସେ ପର୍ଯ୍ୟନ୍ତ ଖଞ୍ଜାଇ ରଖା ହେଉଥିଲା । ସେ ସମସ୍ତ ଉପରେ ତରଳ ଲୁହା ଢଳା ହେଉଥିଲା । ତାହାଦ୍ୱାରା ଗଜଗୁଡ଼ିକ ମଧରେ ଥିବା ଖଞ୍ଜାଇ ଫାଙ୍କମାନ ପୂର୍ଣ୍ଣ ହୋଇ ଯାଉଥିଲା ଏବଂ ଗଜଗୁଡ଼ିକ ପରସ୍ପର ସହିତ ଘନିଷ୍ଠ ଭାବରେ ଜଡ଼ିତ ହୋଇଯିବାରୁ କଡ଼ି ସୁଦୃଢ଼ ହେଉଥିଲା ** । ଶ୍ରୀ ବିଷକ୍ ସ୍ୱରୂପ ଉପରୋକ୍ତ ଗଠନ ପ୍ରଣାଳୀ ଅସ୍ୱୀକାର କରି

* "When well built, such arches are almost indestructible. Even after the keystone with the whole of one side has fallen, the other half stands self-supporting and I was particularly struck with the proofs which a native builder in one of the Tributary Hill States adduced at their stability. It is necessarily a heavy style of architecture, but the artistic Hindu has succeeded in imparting to it a surprising degree of his own like and supple grace."

– Orissa Vol. I, P. 227

** Mr. Arnott in the District Gazetteer, Puri, P. 273

କହନ୍ତି ଯେ, କ୍ଷୁଦ୍ର କ୍ଷୁଦ୍ର ଲୁହା ଗଜଗୁଡ଼ିକ ଯଥେଷ୍ଟ ତପ୍ତ କରାଇ କଡ଼ି ଆକାରରେ ପରସ୍ପର ସହିତ ଯୋଡ଼ା ଯାଉଥିଲା । ପରେ କଡ଼ି ଉପରୁ ପିଟି ସମତଳ କରା ହେଉଥିଲା । ବର୍ତ୍ତମାନ ଦେଖାଯାଏ ଯେ, ଲୁହାଗଜ ମଧ୍ୟରେ ସ୍ଥାନେ ସ୍ଥାନେ ଫାଙ୍କ ଅଛି ଏବଂ ତରଳ ଲୁହା ଭିତରକୁ ପଶିପାରି ନ ଥିଲା । ପୁଣି ବର୍ତ୍ତମାନ ମଧ୍ୟ କଡ଼ିଗୁଡ଼ିକର ଉପର ଯେପରି ଚିକ୍କଣ ଓ ସମତଳ ଅଛି, ତହିଁରୁ ଏହା ଶ୍ରୀ ବିଷନ୍ ସ୍ୱରୂପଙ୍କ କହିବାନୁସାରେ ପିଟାପିଟି ହେଲା ପରି ବୋଧହୁଏ ନାହିଁ ଏବଂ ଆର୍ଣ୍ଣଟ୍‌ଙ୍କ ଅନୁମିତ ପ୍ରଣାଳୀ ଅପେକ୍ଷାକୃତ ସମ୍ଭବ ଜଣାପଡ଼େ ।

ଗଠନ ପ୍ରଣାଳୀ ଯାହାହେଉ, କଡ଼ିର ଆକାର ଓ ସହନଶୀଳତା ଦେଖିଲେ, ଏହି ବିଜ୍ଞାନ-ଯୁଗରେ ମଧ୍ୟ ଆଶ୍ଚର୍ଯ୍ୟ ହେବାକୁ ହଏ । କ୍ରମେ କ୍ରମେ ବିଜ୍ଞାନର ଉନ୍ନତି ସଙ୍ଗେ ସଙ୍ଗେ ବର୍ତ୍ତମାନ ଯୁଗରେ ଲୌହଗଠନର ଯେଉଁ ନୂତନ ପ୍ରଣାଳୀମାନ ଆବିଷ୍କୃତ ହେଉଅଛି, ପ୍ରାଚୀନ ଓଡ଼ିଆମାନଙ୍କୁ ତାହା ଜଣା ନ ଥିବାର କଥା । ବର୍ତ୍ତମାନ କଳକାରଖାନାର ଯେପରି ବିସ୍ତାର ଓ ସମୁନ୍ନତି ହୋଇଅଛି, କୋଣାର୍କ ଯୁଗରେ ସେପରି ଥିବାର କଦାପି ଅନୁମାନ କରାଯାଇ ନ ପାରେ । ଏହି ସମୁଦାୟ ଅଭାବ ଦୃଷ୍ଟିରେ ଓଡ଼ିଆମାନଙ୍କର ବିରାଟ ଲୌହ କାରବାର ଦେଖିଲେ, ମନୁଷ୍ୟ ସ୍ତମ୍ଭୀଭୂତ ହୋଇଯାଏ । ପୁଣି ବିଶେଷ ଆଶ୍ଚର୍ଯ୍ୟର କଥା, ପୂର୍ବେ ଯେପରି କୁହାଯାଇଅଛି, କୋଣାର୍କର ଲୁହା କଡ଼ି ଦୁଇ ପ୍ରାନ୍ତ ଅପେକ୍ଷା ମଧ୍ୟସ୍ଥଳଆଡ଼କୁ କ୍ରମେ କ୍ରମେ ଅଧିକ ମୋଟା ଅର୍ଥାତ୍ କଡ଼ି ଉପରେ ପତିତ ଚାପର ନ୍ୟୂନାଧିକ୍ୟ ଅନୁସାରେ କଡ଼ି କ୍ରମଶଃ ସ୍ଥୂଳ ମଧ୍ୟ ହୋଇଅଛି । ଫର୍ଗୁସନ୍ ଓ ରାଜେନ୍ଦ୍ର ଲାଲ କହିଅଛନ୍ତି – କଡ଼ିର ଏହି ରୂପ ଗଠନ ଓଡ଼ିଆମାନଙ୍କର ବୈଜ୍ଞାନିକ ସୂକ୍ଷ୍ମ ଦୃଷ୍ଟିର ଯଥେଷ୍ଟ ପରିଚୟ ଦେଉଅଛି ।

ଶ୍ରୀଯୁକ୍ତ ମନମୋହନ ଗାଙ୍ଗୁଲୀ * ଭୁବନେଶ୍ୱରର ଲୁହା କଡ଼ି ଦେହରୁ ଖଣ୍ଡେ ଲୁହା ଶିବପୁର ଇଞ୍ଜିନିୟରିଂ କଲେଜରେ ପରୀକ୍ଷା କରାଇ ସ୍ଥିର କରିଅଛନ୍ତି ଯେ, ଉକ୍ତ ଲୁହା କଡ଼ି ପ୍ରତି ବର୍ଗଇଞ୍ଚରେ ୨୦ ଟନ ବା ୫୬୦ ମହଣ ଭାର ସହିପାରେ । ତାହାଙ୍କ କହିବାନୁସାରେ ଇଂଲଣ୍ଡରେ ପ୍ରାୟ ୪୦ ବର୍ଷ ପୂର୍ବେ ପ୍ରତି ବର୍ଗଇଞ୍ଚରେ ୨୩ ଟନ ମାତ୍ର ସହିପାରିବା ଭଳି ଲୁହାକଡ଼ି ପ୍ରସ୍ତୁତ ହୋଇଥିଲା । ଶ୍ରୀ ମନମୋହାନ ଗାଙ୍ଗୁଲୀ ବିଶ୍ୱାସ କରନ୍ତି ଯେ, ଆବଶ୍ୟକ ବୋଧ କରିଥିଲେ ଓଡ଼ିଆ କାରିଗରମାନେ ଲୌହର ଶକ୍ତି ଆହୁରି ବଢ଼ାଇ ପାରିଥାନ୍ତେ । ଉପରୋକ୍ତ ପରୀକ୍ଷିତ ଲୁହା ଅପେକ୍ଷା ଅଧିକ ଶକ୍ତିଶାଳୀ କଡ଼ି ଦେଖିଥିବାର ସେ ମଧ୍ୟ କହନ୍ତି । ଭୁବନେଶ୍ୱରର କଡ଼ି ଅପେକ୍ଷା କୋଣାର୍କ କଡ଼ି ଯେ ଅଧିକ ଶକ୍ତ ଓ ସହନଶୀଳ ହୋଇଥିଲା ସନ୍ଦେହ ନାହିଁ । ବାସ୍ତବିକ ଜଣେ ବିଖ୍ୟାତ ଇଂରେଜ ଇଞ୍ଜିନିୟର ଲେଖିଅଛନ୍ତି – ଧାତୁ ନିର୍ମାଣର ଇତିହାସରେ ଯେତେ ଯେତେ ଅଭିନବ ବ୍ୟାପାର ଏପର୍ଯ୍ୟନ୍ତ ଜଣାଯାଇଅଛି, ସେମାନଙ୍କ ମଧ୍ୟରେ ବୁଦ୍ଧି ଓ କଳ୍ପନାକୁ ସ୍ତମ୍ଭୀଭୂତ କରିବାର ପ୍ରଧାନ ଘଟଣା ଏହି ଯେ, ଇଂଲଣ୍ଡରେ ଇଂରେଜମାନଙ୍କର ପ୍ରଥମ ଅଧିବାସ ଦିନଠାରୁ ତୃତୀୟ ହେନରୀଙ୍କ ରାଜତ୍ୱ କାଳ

* Orissa and Her Remains. P. 263.

ପର୍ଯ୍ୟନ୍ତ, ଯେତେବେଳେ ସମୁଦାୟ ଇଉରୋପ ମଧ୍ୟଯୁଗର ଘୋର ଅଜ୍ଞାନ-ଅନ୍ଧକାରରେ ଆଚ୍ଛନ୍ନ ଥିଲା, ଯେତେବେଳେ ସମୁଦାୟ ଖ୍ରୀଷ୍ଟିୟାନ୍ ରାଜ୍ୟର ଲୌହ କାରବାର ମଧ୍ୟରେ ବର୍ଚ୍ଛା ବା ଖଡ୍ଗ ମାତ୍ର ବୃହତ୍ତମ ଓ ସର୍ବୋତ୍କୃଷ୍ଟ ପଦାର୍ଥ ଥିଲା, ସେହି ସମୟରେ ଭାରତର ଏହି ପ୍ରାଚୀନ ଜାତି ବିରାଟ ଲୌହ କାରଖାନାମାନଙ୍କରୁ ଯେଉଁ ପଦାର୍ଥମାନ ତିଆରି କରି ପାରୁଥିଲେ, ଅର୍ଦ୍ଧ ଶତାବ୍ଦୀ ମାତ୍ର ପୂର୍ବେ ଇଉରୋପ ତାହାର ସମାନ ଜିନିଷ ପ୍ରସ୍ତୁତ କରିପାରୁ ନ ଥିଲା । * ୧୯୦୫ ଖ୍ରୀଷ୍ଟାବ୍ଦରେ ଅନ୍ୟ ଏକ ପ୍ରଧାନ ଇଉରୋପୀୟ ଇଞ୍ଜିନିୟର ସଭାପତି ସ୍ୱରୂପ କହିଥିଲେ – "ସେ ଯୁଗର ସମସ୍ତ ଅଭାବ ସତ୍ତ୍ୱେ ପ୍ରାଚୀନ ଭାରତବାସୀ ଯେଉଁ କୌଶଳରେ ଏପରି ବୃହତ୍ ଲୌହକାମମାନ (ଦିଲ୍ଲୀର ଲୌହସ୍ତମ୍ଭ ପରି) ପ୍ରସ୍ତୁତ କରି ପାରୁଥିଲେ, ତାହା ଭାବିଲେ ବର୍ତ୍ତମାନ ସମୟରେ ମଧ୍ୟ ଆମ୍ଭେମାନେ ଆଶ୍ଚର୍ଯ୍ୟାନ୍ୱିତ ହେଉ ଏବଂ ୧୮୫୧ ଖ୍ରୀଷ୍ଟାବ୍ଦର ପ୍ରଦର୍ଶନୀ ପୂର୍ବରୁ ଇଉରୋପ ଓ ଆମେରିକାର ସମୁଦାୟ ଲୌହ କାରଖାନା ଏକତ୍ରରେ ଦିଲ୍ଲୀର ଲୌହସ୍ତମ୍ଭ ପରି ଗୋଟିଏ କାମ କରି ପାରିଥାନ୍ତା କି ନାହିଁ ସନ୍ଦେହ ।" କହିବା ବାହୁଲ୍ୟ ଯେ, ଦିଲ୍ଲୀର ଲୌହସ୍ତମ୍ଭ ଅପେକ୍ଷା କୋଣାର୍କର କଡ଼ି ସର୍ବାଂଶରେ ବୃହତ୍ତର । ଉକ୍ତ ଲୌହସ୍ତମ୍ଭର ଉଚ୍ଚତା ଭୂମି ଉପରେ ୨୨ ଫୁଟ ଏବଂ ପରିଧି ୧୬ ଇଞ୍ଚ; କିନ୍ତୁ କୋଣାର୍କର କଡ଼ି ଲମ୍ବରେ ୩୫ ଫୁଟ ୯ ଇଞ୍ଚ ଏବଂ ମୋଟରେ ୩୬ ଇଞ୍ଚରୁ ଅଧିକ । ଦିଲ୍ଲୀ ସ୍ତମ୍ଭର ଓଜନ ୧୮ ଟନ । ସେହି ହିସାବରେ କୋଣାର୍କ କଡ଼ି ୯୦ ଟନରୁ ଅଧିକ ହେବ; ଅର୍ଥାତ୍ କୋଣାର୍କର ଗୋଟିଏ କଡ଼ି ସହିତ ଦିଲ୍ଲୀର ୫ଟି ସ୍ତମ୍ଭ ସମାନ । ସୁତରାଂ ଦିଲ୍ଲୀର ସ୍ତମ୍ଭ ଆଧୁନିକ ବିଜ୍ଞାନଜଗତକୁ ଏତେ ଚମତ୍କୃତ କରିଥିବା ସ୍ଥଳେ କୋଣାର୍କର କଡ଼ିରୁ ଲୌହ ବ୍ୟବସାୟରେ ଓଡ଼ିଆମାନଙ୍କର ଅତୁଳନୀୟ ପାରଦର୍ଶିତା ସହଜରେ ଅନୁମେୟ ।

ସର୍ବୋପରି ପ୍ରଧାନ ଆଶ୍ଚର୍ଯ୍ୟର କଥା, କିପରି ଓଡ଼ିଆ ଶିଳ୍ପୀମାନେ ସେ ଯୁଗରେ ପର୍ବତରୂପୀ ପ୍ରକାଣ୍ଡ ଶିଳା ଏବଂ ଲୁହାକଡ଼ିମାନ ମନ୍ଦିରର ଏତେ ଉଚ୍ଚରେ ନେଇ କାମ କରୁଥିଲେ ଏବଂ କିପରି ଅବା ଏତେ ଦୂର ଦେଶରୁ ସେହି ଶିଳାମାନ ବୋହି ଆଣି ପାରୁଥିଲେ । ଏ ପ୍ରଶ୍ନଗୁଡ଼ିକର ସନ୍ତୋଷଜନକ ସମସ୍ୟା କେହି ଏପର୍ଯ୍ୟନ୍ତ ଦେଇପାରି ନାହାନ୍ତି । କେତେ ଖ୍ୟାତନାମା ଇଞ୍ଜିନିୟର କୋଣାର୍କ ଦର୍ଶନ କରି ଏହି ସମସ୍ୟାର ସମାଧାନ କରିବାକୁ ଯାଇ ଅଛନ୍ତି ସତ; ତଥାପି କେହି କିନ୍ତୁ ସନ୍ତୋଷଜନକ କୌଣସି ମୀମାଂସାରେ ଉପସ୍ଥିତ

* "Nothing heretofore brought to light in the History of Metallurgy seems more striking to the reason as well as the imagination, than this fact that from the remote time when Hengist was ruling in Kent, and Cerdic landing to plunder our barbarous ancestors in Sussex down to that of our third Henry, while all Europe was in the worst darkness, and confusion of the Middle Ages – when the largest and the best forging producible in Christendom was an axe or a sowrd-blade, these ancient people of India, × × possessed a great iron manufacture,whose products Europe even half a century ago could not have equalled.

– Orissa and Her Remains. P. 265.

ହୋଇପାରି ନାହାନ୍ତି । ତେବେ ଏ କଥା ଅବଶ୍ୟ ନିଶ୍ଚୟ ଯେ, ଦୂର ଦେଶରୁ ପଥର ପ୍ରଭୃତି ବୋହିବା ପାଇଁ ଅନ୍ୟାନ୍ୟ ଉପାୟ ମଧ୍ୟରେ ନଦୀପଥର ଆଶ୍ରୟ ନିଆ ଯାଇଥିଲା । ବର୍ତ୍ତମାନ କୁଶଭଦ୍ରା ନଦୀ ବେଦପୁର ନିକଟରେ 'ପଥରଗଣ୍ଡ' ନାମରେ ଖ୍ୟାତ ଅଛି ଏବଂ ସେହି ନଦୀ ଦେଇ କୋଣାର୍କକୁ ପଥର ବୁହା ହେଉଥିବାର ଲୋକେ କହନ୍ତି । ପୂର୍ବେ (ତୃତୀୟ ଅଧ୍ୟାୟ) କୁହାଯାଇଅଛି ଯେ, ଚନ୍ଦ୍ରଭାଗା ନଦୀ ବାଟେ ମଧ କୋଣାର୍କକୁ ପଥର ବୁହା ହେଉଥିଲା । ତଥାପି ଏ ସମସ୍ତ ସତ୍ତ୍ୱେ ଏତେ ପ୍ରକାଣ୍ଡ ପଥର କେଉଁ ଯାନ ସାହାଯ୍ୟରେ ବୁହା ହେଉଥିଲା, ତାହାର କୌଣସି କଳ୍ପନା ସୁଦ୍ଧା ବର୍ତ୍ତମାନ କରିହୁଏ ନାହିଁ ।

ଏ ସମସ୍ତ ପଥର ଓ କଡ଼ି ମନ୍ଦିର ଉପରକୁ ନେଇ ଏତେ ଉଚ୍ଚରେ କାମ କରିବା ଆହୁରି ଆଶ୍ଚର୍ଯ୍ୟଜନକ । ବାସ୍ତବିକ ଏତେ ଉଚ୍ଚରେ ସେହି ପ୍ରକାଣ୍ଡ ଶିଳା ଓ ଲୁହା କଡ଼ିର କାମ ହୋଇଥିବାର ଦେଖିଲେ ବୋଧହୁଏ ଯେପରି ସ୍ୱଚ୍ଛନ୍ଦରେ ବର୍ତ୍ତମାନ ଯୁଗର ଶିଳ୍ପୀମାନେ କାଠବରଗାରେ କାମ କରି ପାରନ୍ତି,ଦ୍ୱାଦଶ ବା ତ୍ରୟୋଦଶ ଶତାବ୍ଦୀର ଓଡ଼ିଆମାନେ ସେହିପରି ଅବଲୀଳାକ୍ରମେ ଭୂମିରୁ ପ୍ରାୟ ୨୦୦ ଫୁଟ ଉଚ୍ଚରେ ସେହି ପ୍ରକାଣ୍ଡ ଶିଳା ଓ କଡ଼ିମାନ ନେଇ କାମ କରି ପାରୁଥିଲେ * । କେଉଁ ଉପାୟରେ ଏହି ଅସାଧ୍ୟ ସାଧନ କରାଯାଇଥିଲା, ତାହା ସ୍ଥିର କରିବାରେ ପ୍ରଧାନ ପ୍ରଧାନ ମନୀଷୀମାନଙ୍କର ବୁଦ୍ଧି ପ୍ରତିହତ ହୋଇଅଛି । ଏମ୍. ଏଇଚ୍. ଆର୍ଣ୍ଣଟ୍ ମହାଶୟ କୋଣାର୍କର ଉଦ୍ଧାର କାର୍ଯ୍ୟରେ କେତେକ ସମୟ ନିଯୁକ୍ତ ଥିଲେ । ମନ୍ଦିର ନିର୍ମାଣର ଯେଉଁ ପ୍ରଣାଳୀ ସେ ଉଦ୍ଭାବନ କରିଅଛନ୍ତି, ତାହାଦ୍ୱାରା ସେ ଉପରୋକ୍ତ ପ୍ରଶ୍ନର ଯଥାଶକ୍ତି ସମାଧାନ କରି କହନ୍ତି, ''ଓଡ଼ିଶାରେ ବଡ଼ ବଡ଼ ମନ୍ଦିର ନିର୍ମାଣରେ ମନ୍ଦିରର ବାଡ଼ କେତେକ ଉଚ୍ଚ ଉଠିବା ପରେ ବାହାରେ ଓ ଭିତରେ ବାଲିପୂର୍ଣ୍ଣ କରାଯାଉଥିଲା ଏବଂ ମନ୍ଦିର କାମ ଯେତେ ଉପରକୁ ଉଠୁଥାଏ, ବାଲି ସେତେ ପୂର୍ଣ୍ଣ ହେଉଥାଏ । ଏହିରୂପେ ମନ୍ଦିର ସମ୍ପୂର୍ଣ୍ଣ ହେବା ସଙ୍ଗେ ସଙ୍ଗେ ଗୋଟିଏ ପ୍ରକାଣ୍ଡ ବାଲିପର୍ବତ ତିଆର ହେଉଥିଲା । ସମସ୍ତ କାମ ଶେଷ ପରେ ବାହାର ଓ ଭିତର ପାଖରୁ ବାଲି ବାହାର କରାଯାଉଥିଲା । ଏହି ବାଲି ପର୍ବତ ସାହାଯ୍ୟରେ ବିରାଟ ଶିଳାମାନ ଉପରକୁ ଯାଇ ପାରୁଥିଲା ।'' ଆର୍ଣ୍ଣଟ କହନ୍ତି, 'ପୁରୀ ଓ କୋଣାର୍କ ମନ୍ଦିରରୁ ଏହିରୂପେ ବାଲି ବାହାର କରାଯାଉ ଥିବାରୁ ମନ୍ଦିର ନିକଟରେ ବହୁତ ବାଲିସ୍ତୂପ ଅଦ୍ୟାପି ଦେଖାଯାଏ ** ।'

ସମୁଦ୍ରକୂଳରେ ଅବଶ୍ୟ ବହୁତ ବାଲିସ୍ତୂପ ଦେଖିବାକୁ ମିଳେ; କିନ୍ତୁ ତାହା ଆର୍ଣ୍ଣଟଙ୍କ ଅନୁମାନ ସହଜରେ ପ୍ରମାଣ କରି ନ ପାରେ । ସମୁଦ୍ର ପବନଦ୍ୱାରା ବାଲି ସର୍ବଦା ଏକ ସ୍ଥାନରୁ ଉଡ଼ି ଅନ୍ୟ ସ୍ଥାନରେ ସ୍ତୂପ ଗଠନ କରୁଅଛି । ଏହି ବାଲିସ୍ତୂପ ବହୁକାଳ ଏକ ସ୍ଥାନରେ ରହିବାର

---

* "They handled their colossal beams of iron and stone with as much ease and plasticity as modern workmen put up pine rafters."

– Hunter's Orissa. Vol. I. P. 297.

** Bengal District Gezetteer, Puri. P. 277. and Report of Arch Survey of India. 1902-3. P. 49.

ଦେଖାଯାଏ ନାହିଁ । ପୂର୍ବେ (ତୃତୀୟ ଅଧ୍ୟାୟ) କୁହାଯାଇ ଅଛି, କିପରି ଚନ୍ଦ୍ରଭାଗାର ପ୍ରବଳ ସ୍ରୋତ ଓ କୁଶଭଦ୍ରା ମୁହାଣ କ୍ରମେ କ୍ରମେ ପୋତି ହୋଇ ଯାଇଅଛି । ଏପରି ସ୍ଥଳେ ମନ୍ଦିର ନିର୍ମାଣରେ ବ୍ୟବହୃତ ବାଲି ସ୍ତୂପାକାରରେ ଆର୍ଣ୍ଣଟଙ୍କ ଦୃଷ୍ଟିରେ ପଡ଼ିବା ପର୍ଯ୍ୟନ୍ତ ଜମା ରହିଥିବାର ଅନୁମାନ କରିବା ନିତାନ୍ତ ଅସ୍ୱାଭାବିକ । ବାଲିସ୍ତୂପର କାରଣ ଯଦି କେବଳ ମନ୍ଦିର ନିର୍ମାଣ ହୁଏ, ତାହାହେଲେ ମନ୍ଦିରର ବହୁ ଦୂରବର୍ତ୍ତୀ ସ୍ଥାନମାନଙ୍କରେ ଯେଉଁ ବାଲି ସ୍ତୂପମାନ ଅଛି, ତାହାର କାରଣ କ'ଣ ସ୍ଥିର କରିବାକୁ ହେବ ?

ପୁରୀ ଓ କୋଣାର୍କରେ ବାଲି ପ୍ରଚୁର; କିନ୍ତୁ ଭୁବନେଶ୍ୱରରେ ନିକଟରେ ତ ବାଲି ନାହିଁ । ସେ ସ୍ଥାନର ମନ୍ଦିରମାନ ନିର୍ମିତ ହୋଇଥିଲା କିପରି ? ପୁରୀରୁ କ'ଣ ବାଲି ଯାଇ ମନ୍ଦିର ନିର୍ମିତ ହେଲା ଏବଂ ପରେ ପୁରୀ ବାଲି ପୁରୀକୁ ବୁହା ହୋଇଥିଲା ? ଭୁବନେଶ୍ୱର ନିକଟରେ ଖଣ୍ଡଗିରି ପ୍ରଭୃତି ପର୍ବତ ଦେଖି ଆର୍ଣ୍ଣଟ ମହାଶୟ ମଧ୍ୟ କହିପାରନ୍ତି ଯେ, ପୁରୀ ଓ କୋଣାର୍କରେ ବାଲି ପରି ଭୁବନେଶ୍ୱରରେ ପଥର ବ୍ୟବହାର କରାଯାଇଥିଲା ଏବଂ ମନ୍ଦିର ନିର୍ମାଣ ଶେଷ ପରେ ସେହି ପଥର ସ୍ଥାନାନ୍ତରିତ ହେବାରୁ ଖଣ୍ଡଗିରି ପ୍ରଭୃତି ପର୍ବତ ହୋଇଗଲା ।

କୋଣାର୍କ ମନ୍ଦିର ହୁଏତ ଏହିପରି ବାଲିଗଦାଦ୍ୱାରା ନିର୍ମିତ ହୋଇଥିବ; ତଥାପି ଯେଉଁ ଶିଳ୍ପୀମାନେ ଏତେ ଦୂରରୁ ପର୍ବତରୂପୀ ଶିଳାଖଣ୍ଡମାନ ବୋହି ଆଣି ଆପଣାର ଅପାର ବୁଦ୍ଧି ଓ କୌଶଳରେ କୋଣାର୍କ ପରି ବିରାଟ ମନ୍ଦିର ନିର୍ମାଣ କରିଥିଲେ, ସେମାନେ କେବଳ ଏହିପରି ବାଲିଗଦା ଦ୍ୱାରା ଏଡ଼େ ପ୍ରକାଣ୍ଡ ବସ୍ତୁମାନ ଉଠାଇ ନେଇଥିବା କଦାପି ବିଶ୍ୱାସ କରାଯାଏ ନାହିଁ । କୋଣାର୍କ-ଶିଳ୍ପୀ ପ୍ରତି ସାମାନ୍ୟ ହେଲେ ସମ୍ମାନ ଦେଖାଇବା ପାଇଁ ବରଂ ଅନୁମାନ କରାଯାଇ ପାରେ ଯେ, କୌଣସି ଯନ୍ତ୍ର ଓ ଅସଂଖ୍ୟ ଶିଳ୍ପୀଙ୍କ ପରିଶ୍ରମ ଦ୍ୱାରା ସେହି ଶିଳା ଓ କଡ଼ିମାନ ଉପରକୁ ଉଠା ହୋଇଥିଲା । ସେ ଯନ୍ତ୍ରର ବ୍ୟବହାର ବର୍ତ୍ତମାନ ନାହିଁ କି ବର୍ତ୍ତମାନ ଯନ୍ତ୍ରମାନଙ୍କ କାର୍ଯ୍ୟକାରିତା ସେତେ ନୁହେଁ ସତ, ତଥାପି କୋଣାର୍କ ଦେଖିଲେ ଅନ୍ତତଃ ବୁଝାଯାଏ ଯେ, ସମସ୍ତ ବିଷୟରେ ବର୍ତ୍ତମାନକୁ ଅତୀତ ଅପେକ୍ଷା ଉନ୍ନତତର ମନେ କରାଯାଇ ନ ପାରେ ଏବଂ କେତେକ ଶତାବ୍ଦୀ ପୂର୍ବେ ଯାହା ସମ୍ଭବ ହୋଇ ଥିବାର ଦେଖାଯାଏ, ବର୍ତ୍ତମାନ ତାହାର କଳ୍ପନା ସୁଦ୍ଧା କରି ହୁଏନାହିଁ ।

କୋଣାର୍କରେ ପଥର ସନ୍ଧିରେ ସିମେଟ ବା ଚୂନ ଲାବ ଦିଆ ହୋଇ ନାହିଁ; ପଥରଗୁଡ଼ିକ ପରସ୍ପର ସହିତ ଏପରି ଭାବରେ ଜଡ଼ିତ ଅଛି ଯେ, ଅନେକ ସ୍ଥଳରେ ଦୁଇ ପଥର ମଧ୍ୟରେ ବ୍ୟବଧାନ ଦୃଷ୍ଟରେ ପ୍ରାୟ ପଡ଼େନାହିଁ । ଅନ୍ୟାନ୍ୟ ମନ୍ଦିରମାନଙ୍କରେ ଲୁହା ଚାପୁଆଣିଦ୍ୱାରା ପଥରଗୁଡ଼ିକୁ ପରସ୍ପର ସହିତ ଆବଦ୍ଧ ରଖାଯାଇ ଥାଏ । ଏହି ଲୁହାର କିନ୍ତୁ କିଛି ଦୋଷ ଅଛି । କାଳକ୍ରମେ ଅମ୍ଳଜାନ ସଂସ୍ପର୍ଶରେ ଲୁହା କଳଙ୍କ ଧରିଲେ ତାହାର ଆୟତନ ପୂର୍ବାପେକ୍ଷା ବଢ଼ିଯାଏ; ସୁତରାଂ ତାହାଦ୍ୱାରା ପଥର ଫାଟିଯିବାର ସମ୍ଭାବନା । ବୋଧହୁଏ

ଏହି ଆଶଙ୍କା ମନରେ ଥିବାରୁ କୋଣାର୍କ-ଶିଳ୍ପୀ ଉକ୍ତ ଲୁହା ଚାପୁଆଣୀ ଅତି ଅଳ୍ପ ଭାବରେ ବ୍ୟବହାର କରିଥିଲେ ।

ପରିଶେଷରେ ଯେଉଁ ସମାଲୋଚକମାନେ ସ୍ୱଚକ୍ଷୁରେ କୋଣାର୍କ ଦେଖି ତାହିଁ ସୁଦ୍ଧା କହନ୍ତି * ଯେ, ଓଡ଼ିଶା ମନ୍ଦିରମାନଙ୍କରେ ଇଞ୍ଜିନିୟରିଂ କୌଶଳ ସମ୍ବନ୍ଧରେ ବିଶେଷ କିଛି କହିବାର ନାହିଁ, ସେମାନେ ମଧ୍ୟ ସେହି ବିଷୟରେ ଗୋଟିଏ ଗୋଟିଏ ଅଧ୍ୟାୟ ଲେଖି ଯାଇଅଛନ୍ତି । କୋଣାର୍କର ସମସ୍ତ ପତନ ଓ ବର୍ତ୍ତମାନ ଛାରଖାର ଅବସ୍ଥା ସତ୍ତ୍ୱେ ଏହା ଯେଉଁ ଗଭୀର ଭାବ ବ୍ୟକ୍ତ କରୁଅଛି, ତାହା ନିକଟରେ ଅଦମ୍ୟ ହୃଦୟ ମଧ୍ୟ ବିହ୍ୱଳ ହେଉଅଛି । ଏଠାରେ ବୁଦ୍ଧି ନାହିଁ, ବିବେକ ନାହିଁ କି ଅହମିକା ନାହିଁ । ହଠାତ୍ ଦୃଷ୍ଟିରେ ଦର୍ଶକ ଏକାବେଳକେ ସ୍ତବ୍ଧ ହୋଇ ଆପଣାକୁ ଅକିଞ୍ଚିତ୍କର ଜ୍ଞାନ କରେ । କୋଣାର୍କର ସ୍ଥାପତ୍ୟ ଦେଖି ଦର୍ଶକ ଯେପରି ଉତ୍ଫୁଲ୍ଲିତ ହୁଏ, ନିର୍ମାଣ-କୌଶଳ ଭାବିଲେ ସେହିପରି ବିସ୍ମିତ ଓ ସ୍ତମ୍ଭୀଭୂତ ହୋଇଯାଏ । ସାର୍ ଜନ୍ ମାର୍ଶାଲ ମହୋଦୟ କୋଣାର୍କ ଦର୍ଶନରେ ଆଶ୍ଚର୍ଯ୍ୟ ହୋଇ ଲେଖିଅଛନ୍ତି, ** "ହିନ୍ଦୁଧର୍ମର ଯେତେ ମନ୍ଦିର ଅଛି, ସେମାନଙ୍କ ମଧ୍ୟରେ କେହି କୋଣାର୍କ ପରି ଏକାବେଳକେ ଏତେ ପ୍ରକାଣ୍ଡ ଓ ଏତେ ସୁନ୍ଦର ଅନୁପାତବିଶିଷ୍ଟ ନୁହେଁ କିମ୍ବା କୌଣସି ମନ୍ଦିର ଦର୍ଶକର ସ୍ମୃତିରାଜ୍ୟରେ ଏତେ କାଳ ରହି ନ ପାରେ ।" କେତେ ଜ୍ଞାନ ଓ ଅନୁଭବ, କେତେ ହସ୍ତପାଟବ କୋଣାର୍କର ସର୍ବାଙ୍ଗ ମଣ୍ଡନ କରିଅଛି । ଇତିହାସର କେତେ ମଧୁମୟ ଘଟଣା, ଓଡ଼ିଆ ଜାତୀୟ ଜୀବନୀର କେତେ ଆଶ୍ଚର୍ଯ୍ୟ କାହାଣୀ କୋଣାର୍କର ପ୍ରତ୍ୟେକ ଶିଳାଖଣ୍ଡରେ ଲିପିବଦ୍ଧ ହୋଇଅଛି । ପ୍ରତ୍ୟେକ ଲତାପତ୍ର ଯେପରି କାଳବିଦ୍ୟାର ତାବତୀୟ ଐତିହାସିକ ତତ୍ତ୍ୱଜିଜ୍ଞାସା ଦର୍ଶକ ମନରେ ଜନ୍ମାଏ, ପ୍ରତ୍ୟେକ ନରରୂପ ସେହିପରି ମାନବ ହୃଦୟର ଅପାର ଭାବତରଙ୍ଗ ସମ୍ମୁଖରେ ଖେଳାଇ ଦିଏ । ପୁଣି ସମୁଦାୟ ମନ୍ଦିର ଓ ପ୍ରକାଣ୍ଡ ଶିଳାରାଶି ପର୍ବତ ସମାନ ମାଡ଼ି ଆସି ଦର୍ଶକର ସମସ୍ତ ଜ୍ଞାନ ଓ ଚିନ୍ତା ଅପହରଣ କରିନିଏ । କୋଣାର୍କର ସେ ସମସ୍ତ ବିଭବ ଉଦ୍ଘାଟନ କରିବା ନିମନ୍ତେ ଏପର୍ଯ୍ୟନ୍ତ କୌଣସି ଗ୍ରନ୍ଥକାର ସମର୍ଥ ହୋଇପାରି ନାହାନ୍ତି କି ମାନବୀୟ ଚେଷ୍ଟା କେବେ କୃତକାର୍ଯ୍ୟ ହେବ, ତା' କଳ୍ପନା ସୁଦ୍ଧା କରିହୁଏ ନାହିଁ । ତେବେ ଏ ସମସ୍ତ ମଧ୍ୟରେ – ସମସ୍ତ ଜ୍ଞାନ ଓ ବିଭବ ଏବଂ ସମସ୍ତ ସୌନ୍ଦର୍ଯ୍ୟ ଓ ଗାମ୍ଭୀର୍ଯ୍ୟ ମଧ୍ୟରେ – ପୁଣ୍ୟାତ୍ମା 'ଲାଙ୍ଗୁଳା ନରସିଂହଦେବ' ଓ 'ଶିବାଇ ସାନ୍ତରା' କୋଣାର୍କର ପ୍ରତ୍ୟେକ ପବିତ୍ର ଶିଳାଖଣ୍ଡରେ ଅତି ଦିବ୍ୟ ବପୁରେ ଦର୍ଶକ ସମ୍ମୁଖରେ ବିରାଜିତ ରହିଅଛନ୍ତି ।

* * * * * * *

* Mr. Swarup - "There is not much to say about the engineering of Orissan temples". – Konarka P. 58.

** "There is no monument of Hinduism, I think, that is at once so stupendous and so perfectly-proportioned, as the Black Pagoda, and none which leaves so deep an impression on the memory" - Mr. Marshall (Gazetteer).

# ଚତୁର୍ଦ୍ଦଶ ଅଧ୍ୟାୟ

## ପତନ

କୋଣାର୍କର ମୁଖଶାଳା ବ୍ୟତୀତ ଅନ୍ୟାନ୍ୟ ସମସ୍ତ ମନ୍ଦିର ବର୍ତ୍ତମାନ ଭାଙ୍ଗି ଯାଇଅଛି । ମୁଖଶାଳା ବି ଯାହା ଅଛି, ତାହା ମଧ ନ ଥିଲା ପରି । କୋଣାର୍କ ମନ୍ଦିର ଏଡ଼େ ବିରାଟ, ସୁନ୍ଦର ଓ ସୁଦୃଢ଼ ଏବଂ ଏତେ ଅର୍ଥ ଓ ଶ୍ରମବ୍ୟୟରେ ନିର୍ମିତ ହୋଇଥିଲା, ତାହାର ପତନ ଦେଖିଲେ ମନରେ ସ୍ୱତଃ ଜିଜ୍ଞାସା ଜନ୍ମେ । କୋଣାର୍କର ନିର୍ମାଣ-କୌଶଳ ଏତେ ଆଶ୍ଚର୍ଯ୍ୟଜନକ ହୋଇଥିବାରୁ ତାହାର ପତନ ବିଷୟ ହଠାତ୍ ମନରେ ଉଦିତ ହେବା ସ୍ୱାଭାବିକ । ବାସ୍ତବିକ ଅନ୍ୟାନ୍ୟ ସମସ୍ତ ବିଷୟ ମଧ୍ୟରେ ମନ୍ଦିରର ପତନ ହିଁ ସର୍ବପ୍ରଥମେ ଦର୍ଶକର ଦୃଷ୍ଟି ଆକର୍ଷଣ କରୁଥିବାର ଦେଖାଯାଏ । ଯେ ଥରେ ହେଲେ କୋଣାର୍କ ଦେଖିଅଛନ୍ତି, ସେ ମଧ ମନ୍ଦିର ପତନ ବିଷୟରେ ନିଜର ଅଭିମତ ବ୍ୟକ୍ତ କରିଅଛନ୍ତି । ଓଡ଼ିଶାର ଅନ୍ୟାନ୍ୟ ବିଷୟରେ ଯେପରି, କୋଣାର୍କର ପତନ ସମ୍ବନ୍ଧରେ ମଧ ସେହିପରି ଲୋକପ୍ରବାଦଠାରୁ ଆରମ୍ଭ କରି ଚିନ୍ତାଶୀଳ ଲେଖକମାନଙ୍କ ପର୍ଯ୍ୟନ୍ତ ନାନା ମୁନିଙ୍କର ନାନା ମତ ଦେଖାଯାଏ । ସେ ପ୍ରତ୍ୟେକ ଲେଖକଙ୍କ ମତର ପୁଙ୍ଖାନୁପୁଙ୍ଖ ଆଲୋଚନା ଏ ସ୍ଥଳରେ ଅନାବଶ୍ୟକ । ତେବେ ଯେଉଁ ସୁନାମଧନ୍ୟ ଲେଖକମାନେ ଆପଣାର ଅଗାଧ ଗବେଷଣା ଓ ଶକ୍ତିଶାଳୀ ଲେଖନୀଦ୍ୱାରା କୋଣାର୍କକୁ ଦେଶ ବିଦେଶରେ ସୁପରିଚିତ କରାଇଅଛନ୍ତି, ସେମାନଙ୍କ ମତ ପରୀକ୍ଷା ନ କଲେ, ଏହି ଗୁରୁତର ବିଷୟ ଓ ସେହି ଲେଖକମାନଙ୍କ ପ୍ରତି ଅନାସ୍ଥା ଦେଖାଇବା ହେବ; ସୁତରାଂ ଉପସ୍ଥିତ ଅଧ୍ୟାୟରେ ସେହି କେତେକ ମତର ଆଲୋଚନା କରାଯିବ ।

କୋଣାର୍କ ପତନର କାରଣ ସମ୍ବନ୍ଧରେ ଯେଉଁ ଜନଶ୍ରୁତି ପ୍ରଚଳିତ ଅଛି, କୌଣସି ଲେଖକ ତାହା ପ୍ରତି ଆଦୌ ଆସ୍ଥା ଦେଖାଇ ନାହାନ୍ତି । କିମ୍ବଦନ୍ତୀ କେବଳ କୋଣାର୍କ ନିକଟରେ ନୁହେଁ, ଓଡ଼ିଶାର ନାନା ସ୍ଥାନରେ ସବିଶେଷ ପ୍ରଚଳିତ ଅଛି । କିମ୍ବଦନ୍ତୀରୁ ଜଣାଯାଏ :—

କୋଣାର୍କ ବଡ଼ଦେଉଳ ମସ୍ତକରେ ଗୋଟିଏ ବୃହତ୍ କୁମ୍ବପଥର ବା ଚୁମ୍ବକ ଥିଲା । ନାବିକ ସିନ୍ଧବାଦର ପାହାଡ଼ ପରି ସେହି କୁମ୍ବପଥର କୋଣାର୍କ ନିକଟବର୍ତ୍ତୀ ସମୁଦ୍ରରେ ଯାଉଥିବା ଜାହାଜମାନ ଟାଣି ଆଣି କୂଳରେ ପକାଇ ଦେଉଥିଲା । ଏହିରୂପେ ବହୁ ନାବିକ ଆପଣାର ଜାହାଜମାନ ହରାଇ ନିତାନ୍ତ ବ୍ୟସ୍ତ ହେଉଥିଲେ । ପରିଶେଷରେ ମୋଗଲ

ରାଜତ୍ୱରେ ଗୋଟିଏ ଜାହାଜର ମୁସଲମାନ ନାବିକ ଓ ଯାତ୍ରୀଗଣ କୋଣାର୍କ ନିକଟରେ ଜାହାଜ ବନ୍ଦ ରହିବାରୁ ଲୁଚି ଲୁଚି ଆସି ମନ୍ଦିର ଆକ୍ରମଣ କଲେ । ସେମାନେ କୋଣାର୍କ ବଡ଼ଦେଉଳଟି ଭୂମିସାତ୍ କରି ତାହା ଉପରେ ଥିବା କୁମ୍ଭପଥରଟି ନେଇଗଲେ । ମନ୍ଦିର ଭାଙ୍ଗିଯିବା ଏବଂ ସ୍ଥାନଟି ଏହିରୂପେ ଅପବିତ୍ର ହେବାର ଦେଖି ପଣ୍ଡାମାନେ କୋଣାର୍କ ପରିତ୍ୟାଗ କଲେ ଏବଂ ସୂର୍ଯ୍ୟନାରାୟଣ ମୂର୍ତ୍ତିକୁ ପୁରୀ ଘେନିଗଲେ । କୋଣାର୍କ ଏହିପରି ପରିତ୍ୟକ୍ତ ହେଲା ଏବଂ ମନ୍ଦିରର ଅବଶେଷ ଯାହା କିଛି ଥିଲା, ତାହା କ୍ରମେ କାଳର ଖରସ୍ରୋତରେ ଭୂମିସାତ୍ ହେବାକୁ ଲାଗିଲା ।

ଉପରୋକ୍ତ କିମ୍ବଦନ୍ତୀର ଅସତ୍ୟ ଓ କପୋଳକଳ୍ପନା ଯେତେ ଥିଲେ ମଧ ତାହା ଏକାବେଳକେ ସତ୍ୟହୀନ ବୋଲି ଉପେକ୍ଷିତ ହୋଇ ନ ପାରେ । ଇତି ପୂର୍ବେ ନାନା ସ୍ଥାନରେ କୁହାଯାଇଅଛି ଯେ, କିମ୍ବଦନ୍ତୀକୁ କେବଳ କପୋଳକଳ୍ପନା ବୋଲି ହେୟ କଲେ ଓଡ଼ିଶା ପରି ଦେଶରେ କୌଣସି ପ୍ରାଚୀନ ତଥ୍ୟ ସହଜରେ ମିଳି ପାରିବ ନାହିଁ । ପୁଣି ଅନ୍ୟାନ୍ୟ କିମ୍ବଦନ୍ତୀମାନଙ୍କ ମଧରେ ଉପରୋକ୍ତ କିମ୍ବଦନ୍ତୀର କଥା ସ୍ୱତନ୍ତ୍ର । ତହିଁରେ ଯେତେ ସତ୍ୟ ଦେଖିବାକୁ ମିଳେ, ତାହା ତୁଳନାରେ ଅସତ୍ୟର ମାତ୍ରା ଅତି ଅଳ୍ପ । ସେହି କିମ୍ବଦନ୍ତୀର ଯେ କେତୋଟି ସତ୍ୟ ଲୋକେ ଯୁଗେ ଯୁଗେ ଧରି ପୁରଷାନୁକ୍ରମେ ସ୍ମରଣ ରଖିଅଛନ୍ତି, ତାହା ଦୃଷ୍ଟିରେ ସେହି ମିଥ୍ୟା ବା କପୋଳକଳ୍ପନା ନିମନ୍ତେ ସେମାନଙ୍କ ପ୍ରତି ଆକ୍ଷେପ ବା ଜନଶ୍ରୁତିଟି ପ୍ରତି ଅନାସ୍ଥା ଦେଖାଇବା ଉଚିତ ନୁହେଁ । ବିଶ୍ଳେଷଣ କରି ଦେଖିଲେ ଜନଶ୍ରୁତିଟିରୁ ନିମ୍ନଲିଖିତ ବିଷୟ ବାହାର କରାଯାଏ :-

୧ । କୋଣାର୍କର ବଡ଼ଦେଉଳରେ କୁମ୍ଭପଥର ଥିବା;

୨ । ସମୁଦ୍ରଗାମୀ ଜାହାଜ ସହିତ ସେହି ପଥରର ସମ୍ବନ୍ଧ;

୩ । ମୁସଲମାନମାନଙ୍କ ଦ୍ୱାରା ମନ୍ଦିର ଆକ୍ରମଣ;

୪ । ସେହି ଆକ୍ରମଣକାରୀ ମୁସଲମାନମାନଙ୍କ ଦ୍ୱାରା କୁମ୍ଭପଥର ଅପହରଣ;

୫ । ବଡ଼ଦେଉଳର ପତନ;

୬ । ସ୍ଥାନ ଅପବିତ୍ର ଜ୍ଞାନରେ ପଣ୍ଡାମାନଙ୍କ ଦ୍ୱାରା ପରିତ୍ୟକ୍ତ ହେବା;

୭ । ସୂର୍ଯ୍ୟନାରାୟଣ ବିଗ୍ରହଙ୍କୁ ପୁରୀ ମନ୍ଦିରରେ ସ୍ଥାପନ କରିବା ।

କହିବା ବାହୁଲ୍ୟ ଯେ, ଉପରୋକ୍ତ ସାତୋଟି ଘଟଣାରୁ ପ୍ରତ୍ୟେକଟି ଇତିହାସର ସତ୍ୟ ଘଟଣା ।

୧ । କୋଣାର୍କ ବଡ଼ଦେଉଳ ମସ୍ତକରେ ଗୋଟିଏ କୁମ୍ଭପଥର ଥିଲା । ପୂର୍ବବର୍ତ୍ତୀ ଅଧାୟରେ କୁହାଯାଇଅଛି, ୨୦୦ ଟନ ଓଜନର ଗୋଟିଏ ପ୍ରକାଣ୍ଡ ଶିଳା ବଡ଼ଦେଉଳର କଳସ ହୋଇଥିଲା । ଏହା ସାଧାରଣତଃ କଳସ ବା କୁମ୍ଭ ଆକାରରେ ଗଠିତ ହୋଇଥିବାରୁ

ଏହାକୁ 'କଳସ' ବା 'କୃଷ୍ଣପଥର' କହନ୍ତି; ସୁତରାଂ କଳସକୁ କୃଷ୍ଣପଥର କହିବାରେ କୌଣସି ମିଥ୍ୟା ବା କପୋଳକଳ୍ପନା ନାହିଁ । କାଳକ୍ରମେ ଭ୍ରମବଶତଃ ଲୋକେ କୃଷ୍ଣପଥରକୁ 'ଚୁମ୍ବକ' ବୋଲି ଅର୍ଥ କରିଅଛନ୍ତି ।

୨ । ସମୁଦ୍ରଗାମୀ ଜାହାଜ ସହିତ ସେହି ପଥରର ସମ୍ବନ୍ଧ । ସମୁଦ୍ର ତୀରବର୍ତ୍ତୀ ଥିବାରୁ କୋଣାର୍କ ମନ୍ଦିର ଯୁଗେ ଯୁଗେ ନାବିକମାନଙ୍କ ପ୍ରତି ଦିଗନିର୍ଣ୍ଣୟର ପ୍ରଧାନ ନିଦର୍ଶନ ଥିଲା । ଅବଶ୍ୟ ପ୍ରକୃତରେ ଜାହାଜ ଗୁଡ଼ିକ ଆକୃଷ୍ଟ ହୋଇ କୂଳରେ ପଡୁ ନ ଥିଲା ସତ; ତଥାପି ଜାହାଜମାନଙ୍କର ଏହା ଗୋଟିଏ ପ୍ରଧାନ ଶଙ୍କୁ ଥିଲା । ପୁରୀ ଉପକୂଳରେ ସମୁଦ୍ର ଅଳ୍ପ ଗଭୀର ଥିବାରୁ ନାବିକମାନେ କୋଣାର୍କ ଓ ପୁରୀ ମନ୍ଦିରଦ୍ୱାରା ସାବଧାନ ହେଉଥିଲେ । ସେହି ହେତୁରୁ ସମୁଦ୍ରଯାତ୍ରା ବର୍ଣ୍ଣିତ ପୁରାତନ ଗ୍ରନ୍ଥମାନଙ୍କରେ ଏହା 'ବ୍ଲାକ ପାଗୋଡ଼ା' (Black Pagoda) ବା କୃଷ୍ଣ ମନ୍ଦିର ଏବଂ ପୁରୀ ମନ୍ଦିର 'ହ୍ୱାଇଟ୍ ପାଗୋଡ଼ା' (White Pagoda) ବା ଶୁକ୍ଳ ମନ୍ଦିର ବୋଲି ବର୍ଣ୍ଣିତ ଅଛି । ଇଉରୋପୀୟ ନାବିକମାନଙ୍କ ମଧ୍ୟରେ ସର୍ବପ୍ରଥମେ ସେଣ୍ଟ ଜର୍ଜ ଦୁର୍ଗ (ମାନ୍ଦ୍ରାଜ)ର ଏଜେଣ୍ଟ ଏବଂ ଗଭର୍ଣ୍ଣର ସାର୍ ଷ୍ଟ୍ରିନ୍ସାମ୍ ମାଷ୍ଟର ୧୬୭୪ ଖ୍ରୀଷ୍ଟାବ୍ଦ ଡିସେମ୍ବର ୨୩ ତାରିଖରେ ବାଲେଶ୍ୱର ପରିଦର୍ଶନ କରି ଫେରିଗଲାବେଳେ କୋଣାର୍କ ଓ ପୁରୀ ମନ୍ଦିର ଦେଖିଥିବାର ତାହାଙ୍କ ଡାଏରୀରେ ଲେଖିଅଛନ୍ତି * । ୧୭୫୬ ଖ୍ରୀଷ୍ଟାବ୍ଦରେ 'ଭାରତ ଉପକୂଳରେ ଯାତ୍ରା' ନାମକ ସମୁଦ୍ର ବୃତାନ୍ତରେ ମଧ୍ୟ ଏହାର ଉଲ୍ଲେଖ ଅଛି । ୧୭୬୪ ଖ୍ରୀଷ୍ଟାବ୍ଦରେ କ୍ରୋଇସୀଙ୍କ ଦ୍ୱାରା ପ୍ରଣୀତ ଫରାସୀ ମାନଚିତ୍ରରେ କୋଣାର୍କ 'ପାଗୋଡ଼ା ନୟର' ନାମରେ ଚିହ୍ନିତ ଅଛି ** । ୧୭୮୦ ଖ୍ରୀଷ୍ଟାବ୍ଦରେ ଡନ୍ ତାହାଙ୍କର ଭ୍ରମଣ ବୃତ୍ତାନ୍ତରେ ଲେଖିଅଛନ୍ତି, "ଜଗ୍ରେନାଥ ମନ୍ଦିରର ଚାରି ଲିଗ୍ (୧୨ ମାଇଲ) ଉତ୍ତର-ପୂର୍ବରେ କୃଷ୍ଣ ମନ୍ଦିର (କୋଣାର୍କ) ଅବସ୍ଥିତ । ଦୂରରୁ ଏହା ପ୍ରଥମୋକ୍ତ ମନ୍ଦିର ପରି ଗୋଟିଏ ଚଳନ୍ତା ବଡ଼ ଜାହାଜ ପ୍ରାୟ ଦେଖାଯାଏ ।" *** ଇଉରୋପୀୟ ନାବିକମାନଙ୍କ ଲେଖାରେ କୋଣାର୍କର ଏତେ ଉଲ୍ଲେଖ ଥିବାରୁ ବୋଧ କରାଯାଏ, ମୁସଲମାନ ନାବିକମାନଙ୍କର ମଧ୍ୟ କୋଣାର୍କ ଦିଗନିର୍ଣ୍ଣୟର ଗୋଟିଏ ପ୍ରଧାନ ଶଙ୍କୁ ଥିଲା । ନାବିକ ମୁସଲମାନ ହେଉ ବା ଇଉରୋପୀୟ ହେଉ, ଲୁଣ୍ଠନ ବ୍ୟବସାୟୀ ହେଉ ବା ନ ହେଉ, ପୁରୀ ଉପକୂଳ ଦେଇ ଯାତ୍ରା କଲାବେଳେ କୋଣାର୍କ ଉପରେ ନିଶ୍ଚୟ ତାହାର

---

* "December 23rd. We sailed in sight of the Black Pagoda and the White Pagoda. The latter is that place called Jaggernat, to which Hindus from all parts of India come on piligrimage" – Diary of Sir Streyn Sham Master, Agent and Governor of Fort St. George.

** French Map of Croisey, 1764 A. D. – 'Pagoda Noir'.

*** "Four leagues E. and N. of Jagrenath Pagoda is the Black pagoda, which at a distance (like the former) resembles a large ship under sail but on a nearer view it loses somewhat of its magnitude" – Old Sailing Directory of Dunn (1780).

– Puri Gazetteer, P. 393.

ଦୃଷ୍ଟି ପଡୁଥିଲା ଏବଂ 'ଦୂରରୁ ପାହାଡ଼ ସୁନ୍ଦର', ଅତଏବ ଉପରୋକ୍ତ ତନ୍ତ୍ରଙ୍କ ବର୍ଣ୍ଣନାରୁ ଯେପରି ଜଣାଯାଏ, କୋଣାର୍କ ସମୁଦ୍ର ମଧ୍ୟକୁ ଅତ୍ୟନ୍ତ ଗମ୍ଭୀର ଦେଖାଯାଉଥିଲା । ଏହା ପୁଣି କେବଳ ମୁଖଶାଳା ସମ୍ବନ୍ଧରେ ଲିଖିତ ହୋଇଅଛି । କୋଣାର୍କର ବଡ଼ଦେଉଳ ଯେ ସମୁଦ୍ର ମଧ୍ୟକୁ କେତେ ଗମ୍ଭୀର ଦେଖା ଯାଉଥିବ ଏବଂ ନାବିକମାନଙ୍କର ଦୃଷ୍ଟି କେତେ ଆକୃଷ୍ଟ ହେଉଥିବ, ତାହା ସହଜରେ ଅନୁମାନ କରାଯାଇପାରେ । ସୁତରାଂ କୋଣାର୍କର ସୁଦୃଷ୍ଟି ପାଇବା ନିମନ୍ତେ ନାବିକମାନେ ଜାହାଜମାନ ସ୍ଥଗିତ ରଖୁଥିବା ଏବଂ ବେଳେ ବେଳେ ନିକଟ ଦୃଷ୍ଟି ନିମନ୍ତେ କୂଳ ପର୍ଯ୍ୟନ୍ତ ଆସୁଥିବା ବଡ଼ ଆଶ୍ଚର୍ଯ୍ୟ ବା ଅସମ୍ଭବ କଥା ନୁହେଁ । ଏପରି ଅବସ୍ଥାରେ କୁମ୍ଭପଥର ଦ୍ୱାରା ଜାହାଜ ଆକୃଷ୍ଟ ହେବା କଳ୍ପନା ଜନସାଧାରଣଙ୍କ ପ୍ରତି ବିଶେଷ କିଛି ଅସ୍ୱାଭାବିକ ବୋଲି କୁହାଯାଇ ନ ପାରେ ।

୩ । ମୁସଲମାନମାନଙ୍କ ଦ୍ୱାରା ମନ୍ଦିର ଆକ୍ରମଣ । ଏହା ଇତିହାସର ଗୋଟିଏ ବାସ୍ତବ ଘଟଣା । ପରେ ତାହାର ଉଲ୍ଲେଖ କରାଯିବ । ବର୍ତ୍ତମାନ ଏତିକି ମାତ୍ର ଲେଖିବାର କଥା ଯେ ସେହି ଆକ୍ରମଣକାରୀ ମୁସଲମାନ ନାବିକ ହୋଇପାରେ ବା ନ ପାରେ । ନାବିକଙ୍କର ଦୃଷ୍ଟି ଯେପରି ମନ୍ଦିର ଉପରେ ପଡୁଥିଲା, ପ୍ରକୃତ ଆକ୍ରମଣକାରୀ ମୁସଲମାନଙ୍କୁ ନାବିକ କରି ଧରିନେବା ଲୌକିକ କଳ୍ପନା ପକ୍ଷରେ ଯଥେଷ୍ଟ ସ୍ୱାଭାବିକ । କୋଣାର୍କ ନିକଟରେ ବର୍ତ୍ତମାନ ମଧ୍ୟ ଶୁଣିବାକୁ ମିଳେ ଯେ, ଦସ୍ୟୁ ବ୍ୟବସାୟୀ ପର୍ତ୍ତୁଗୀଜ୍ ନାବିକ କୋଣାର୍କ ନିକଟ ସମୁଦ୍ରରେ ଲୁଣ୍ଠନ କରି ମନ୍ଦିର ବେଢ଼ା ମଧ୍ୟରେ ଆଶ୍ରୟ ନେଉଥିଲେ । ଏପରି ଅବସ୍ଥାରେ ପ୍ରକୃତ ଆକ୍ରମଣକାରୀକୁ ଲୁଣ୍ଠନ ବ୍ୟବସାୟୀ ନାବିକ ମନେ କରିବାରେ ବହୁକାଳ ପ୍ରଚଳିତ କିମ୍ବଦନ୍ତୀ ପକ୍ଷରେ ବିଶେଷ କିଛି ବିଚିତ୍ର ନୁହେଁ । ଉକ୍ତ କିମ୍ବଦନ୍ତୀର ପରବର୍ତ୍ତୀ ବିଷୟଗୁଡ଼ିକର ସତ୍ୟାସତ୍ୟ ଏହି ତୃତୀୟ ବିଷୟ ଉପରେ ସମ୍ପୂର୍ଣ୍ଣ ନିର୍ଭର କରେ । ପରେ ଯଥାସ୍ଥାନରେ ସେ ସମସ୍ତର ଆଲୋଚନା କରାଯିବ । ପ୍ରଥମତଃ ଯେଉଁ ପ୍ରବୀଣ ସମାଲୋଚକମାନେ ଏହି ଲୋକପ୍ରବାଦକୁ କେବଳ ମିଥ୍ୟା କଳ୍ପନା ବା ପ୍ରଳାପ ଜ୍ଞାନରେ ଉପେକ୍ଷା କରି ଆପଣା ଆପଣାର ସ୍ୱତନ୍ତ୍ର ଅଭିମତ ବ୍ୟକ୍ତ କରିଅଛନ୍ତି; ସେମାନଙ୍କ ସିଦ୍ଧାନ୍ତର ସତ୍ୟାସତ୍ୟ ନିରୂପଣ କରିବା ପ୍ରୟୋଜନ ।

କୌଣସି କୌଣସି ଲେଖକ କହନ୍ତି, 'ମନ୍ଦିରର ପ୍ରତିଷ୍ଠା ଆଦୌ ହୋଇ ନ ଥିଲା ଏବଂ ନିର୍ମାଣ ଶେଷ ସଙ୍ଗେ ସଙ୍ଗେ ବଡ଼ଦେଉଳ ଭାଙ୍ଗି ପଡ଼ିଥିଲା ।' ଏହି ସମାଲୋଚକମାନଙ୍କ ମଧ୍ୟରେ ମିଷ୍ଟର ଆର୍ଣ୍ଣଟ ଅଗ୍ରଗଣ୍ୟ । ପୂର୍ବବର୍ତ୍ତୀ ଅଧ୍ୟାୟରେ କୁହାଯାଇଅଛି ଯେ, ଆର୍ଣ୍ଣଟ ମହୋଦୟ କୋଣାର୍କର ଉଦ୍ଧାର କାର୍ଯ୍ୟରେ କେତେକ ସମୟ ନିଯୁକ୍ତ ଥିଲେ; ସୁତରାଂ ମନ୍ଦିରକୁ ପୁଙ୍ଖାନୁପୁଙ୍ଖ ରୂପେ ଦେଖିବା ନିମନ୍ତେ ତାହାଙ୍କର ଯଥେଷ୍ଟ ସୁବିଧା ଥିଲା । କୋଣାର୍କ ମନ୍ଦିର ନିର୍ମାଣର ଯେଉଁ ପ୍ରଣାଳୀ ସେ ଉଦ୍ଭାବନ କରିଅଛନ୍ତି, ପୂର୍ବବର୍ତ୍ତୀ ଅଧ୍ୟାୟରେ ତାହା ଆଲୋଚନା ହୋଇଅଛି । ସେହି ତଥାକଥିତ ନିର୍ମାଣ-ପ୍ରଣାଳୀ ଉପରେ ସମ୍ପୂର୍ଣ୍ଣ ନିର୍ଭର କରି

ମନ୍ଦିର ପତନର କାରଣ ନିର୍ଣ୍ଣୟ କରିବାକୁ ଯାଇ ସେ କହିଅଛନ୍ତି; "ପ୍ରାୟ ସେହି କାରଣରୁ ଦେଉଳ ଭାଙ୍ଗିଗଲା; ଅର୍ଥାତ୍ ଦେଉଳ ଭିତରୁ ବାଲି ବାହାର କରିନେଲା କ୍ଷଣି ତାହାର କ୍ରମବକ୍ର କାଛ ଭିତରକୁ ପଡ଼ିଗଲା । ଦେଉଳ ଉପରର ବୋଝ ଯଦି ବିଶେଷ ଗୁରୁଭାର ହୋଇଥାନ୍ତା, ତାହାହେଲେ ବକ୍ର କାଛ ସ୍ଥିର ରହି ପାରିଥାନ୍ତା; କିନ୍ତୁ ଖପୁରୀ, କଳସ ପ୍ରଭୃତି ଯଥେଷ୍ଟ ଭାର ବିଶିଷ୍ଟ ନ ଥିଲା । ସୁତରାଂ ବାଲି ବାହାର କରିନେବା ଦ୍ୱାରା ଦେଉଳ ଭିତର ପାଖରେ ନିରାଶ୍ରୟ ହୋଇ ପଡ଼ିବାରୁ କାଛଗୁଡ଼ିକ ଅଳାଡ଼ି ହୋଇ ପଡ଼ିଲା । କାଛ ସବୁ ଭିତରଆଡ଼କୁ ଭାଙ୍ଗି ପଡ଼ିଥିଲା; କିନ୍ତୁ ବାହାରକୁ ଛିନ୍ନଭିନ୍ନ ହୋଇ ପଡ଼ି ନ ଥିଲା; ଏଥିରୁ ସହଜରେ ପ୍ରମାଣ କରାଯାଏ ଯେ, ଦେଉଳର ଉପରଭାର ଅପେକ୍ଷାକୃତ ଅଳ୍ପ ଥିବାରୁ ବକ୍ର କାଛ ଭିତର ଆଡ଼କୁ ଅଳାଡ଼ି ହୋଇ ପଡ଼ିଥିଲା ।" *

ଆର୍ଣ୍ଣଟଙ୍କ ଉପରୋକ୍ତ ମତ ଯେଉଁ ନିର୍ମାଣ-ପ୍ରଣାଳୀ ଉପରେ ପ୍ରତିଷ୍ଠିତ, ତାହାର ଆଲୋଚନା ପୂର୍ବବର୍ତ୍ତୀ ଅଧ୍ୟାୟ ଶେଷରେ କରାଯାଇଅଛି । ବାଲିଗଦା ସାହାଯ୍ୟରେ ମନ୍ଦିର ନିର୍ମିତ ହୋଇଥିବା ଯେପରି ଅସମ୍ଭବ ବୋଧହୁଏ, ସେହିପରି ମଧ୍ୟ କୋଣାର୍କ-ଶିଳ୍ପୀଙ୍କ ପକ୍ଷରେ ବଡ଼ ଶ୍ଲାଘାର ବିଷୟ ନୁହେଁ । ଏହି ଅମୂଳକ ଅନୁମାନ ଉପରେ ପ୍ରତିଷ୍ଠିତ ମତ କେତେଦୂର ବିଶ୍ୱାସ୍ୟ ସହଜରେ ବୋଧ କରାଯାଏ ।

ଆର୍ଣ୍ଣଟ ମହାଶୟ ଆପଣାର ମତ ସମର୍ଥନ ନିମନ୍ତେ କାଛଗୁଡ଼ିକ ଭିତରକୁ ଭାଙ୍ଗି ପଡ଼ିଥିବା କଥାର ଉଲ୍ଲେଖ କରନ୍ତି; କିନ୍ତୁ ଏହି ସମର୍ଥନ ମଧ୍ୟ ବଡ଼ ଯୁକ୍ତିଯୁକ୍ତ ନୁହେଁ । କାଛଗୁଡ଼ିକ ଭିତରଆଡ଼କୁ କ୍ରମବକ୍ର ଥିବାରୁ ଯେ କୌଣସି କାରଣରୁ ଭାଙ୍ଗି ପଡ଼ିଥିଲେ ମଧ୍ୟ ନିଶ୍ଚୟ ଭିତରଆଡ଼କୁ ଭାଙ୍ଗି ପଡ଼ିଥାନ୍ତା । କାଛ ଭିତରଆଡ଼କୁ ଭାଙ୍ଗି ପଡ଼ିଥିବା କୌଣସି ବିଶିଷ୍ଟ ମତ ସମର୍ଥନ କରି ନ ପାରେ ।

ପୂର୍ବେ (ଚତୁର୍ଥ ଅଧ୍ୟାୟ) ଆବୁଲଫଜଲଙ୍କର କୋଣାର୍କ ବର୍ଣ୍ଣନା ଉଦ୍ଧାର କରାଯାଇଅଛି । ସମସ୍ତ ବର୍ଣ୍ଣନା ମଧ୍ୟରେ କୌଣସିଠାରେ ସେ କୋଣାର୍କର ଭଗ୍ନ ଅବସ୍ଥା ଲେଖି ନାହାନ୍ତି । ବରଂ ତାହାଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ, ଦେଉଳ, ମୁଖଶାଳା ପ୍ରଭୃତି ନୂତନ ଅବସ୍ଥାରେ ଥିଲା । ଯାହା ବା ଭାଙ୍ଗି ଯାଇଥିଲା, ତାହାଦ୍ୱାରା ମନ୍ଦିରର ବିଶେଷ କିଛି କ୍ଷତି ହୋଇ ନ ଥିଲା । ଆବୁଲଫଜଲ ଅବଶ୍ୟ ସ୍ୱଚକ୍ଷୁରେ କୋଣାର୍କ ନ ଦେଖି ଯାହା ଶୁଣିଲେ ତାହା ଲେଖି ଯାଇଥିଲେ ସତ; ତଥାପି ଯେଉଁ ମନ୍ଦିର ବର୍ଣ୍ଣନାରେ ସେ ଅତ୍ୟନ୍ତ ମୁଗ୍ଧ ହୋଇଥିଲେ, ତାହାର ଭଗ୍ନ ଅବସ୍ଥା ପ୍ରତି ନିଶ୍ଚୟ ତାହାଙ୍କର ମନ ଯାଇଥାନ୍ତା । ଅତଏବ ଷୋଡ଼ଶ ଶତାବ୍ଦୀର ଶେଷଭାଗରେ ଦେଉଳ ପ୍ରାୟ ପୂର୍ଣ୍ଣ ଅବସ୍ଥାରେ ଥିଲା । ଯଦି ତ୍ରୟୋଦଶ ଶତାବ୍ଦୀରେ ତିଆର ହେଉ ହେଉ ଦେଉଳ ଭାଙ୍ଗି ଯାଇଥିଲା, ତାହାହେଲେ ତିନି ଶତ ବର୍ଷ

---

* Bengal District Gazetteer, Puri. P. 279.

ପରେ ଆବୁଲଫଜଲ କିପରି ତାହାର ବର୍ଣ୍ଣନା କଲେ ? ପୁଣି ଫରଗୁସନ୍‌ଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ, ୧୮୩୯ ଖ୍ରୀଷ୍ଟାବ୍ଦରେ ବଡ଼ଦେଉଳର ରେଖାଂଶର ଏକପାଖ କାନ୍ଥ ପ୍ରାୟ ୧୨୦ ଫୁଟ ଉଚ୍ଚରେ ଥିଲା । ନିର୍ମାଣ ଦୋଷରୁ ତ୍ରୟୋଦଶ ଶତାବ୍ଦୀରେ ମନ୍ଦିର ଭାଙ୍ଗିଯାଇଥିଲେ, ଗୋଟିଏ କାନ୍ଥ ଏତେ ଉଚ୍ଚରେ ଦଣ୍ଡାୟମାନ ଥାଇ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରାୟ ୬୦୦ ବର୍ଷ କଦାପି ରହି ନ ଥାନ୍ତା ।

ପରିଶେଷରେ କୋଣାର୍କ ଉଦ୍ଧାର ପରେ ବଡ଼ଦେଉଳ ମଧ୍ୟରେ ଗୋଟିଏ ଅତି ସୁନ୍ଦର ସିଂହାସନ (ପଞ୍ଚମ ଅଧ୍ୟାୟ) ଥିବାର ଦେଖାଗଲା । ତିଆର ସଙ୍ଗେ ସଙ୍ଗେ ବାଲି ବାହାର କରୁ କରୁ ଯଦି ବଡ଼ଦେଉଳ ଭାଙ୍ଗି ପଡ଼ିଥିଲା, ତାହାହେଲେ ସିଂହାସନଟି ଭିତରେ କିପରି ତିଆର ହୋଇଥିଲା ? ଦେଉଳ ତିଆର ପୂର୍ବରୁ ସିଂହାସନ ପ୍ରଥମରେ ଗଠନ କରାଯାଇଥିବା ଅସମ୍ଭବ । ପୁଣି ଏ ସିଂହାସନ ଦେଖିଲେ ବିଶ୍ୱାସ ହୁଏ ଯେ, ନିର୍ମାଣ ଶେଷରେ ମନ୍ଦିରର ପ୍ରତିଷ୍ଠା କରାଯାଇଥିଲା ଏବଂ ବହୁ ଦିନ ପର୍ଯ୍ୟନ୍ତ ଦେବପୂଜା ଅନୁଷ୍ଠିତ ହୋଇଥିଲା । ଶ୍ରୀ ବିଷନ୍ ସ୍ୱରୂପ ସିଂହାସନରେ କିଛି ଚିହ୍ନ ଦେଖି ମଧ୍ୟ ଅନୁମାନ କରିଅଛନ୍ତି * ଯେ, ବହୁକାଳ ପର୍ଯ୍ୟନ୍ତ କୋଣାର୍କର ବର୍ତ୍ତମାନ ମନ୍ଦିରରେ ଦେବପୂଜା ଚାଲିଥିଲା । ବର୍ତ୍ତମାନ ମଧ୍ୟ ସିଂହାସନରେ ସେହିପରି ଚିହ୍ନ ଦେଖା ଯାଉଥିବାର ପୂର୍ବେ ଲେଖାଯାଇଅଛି । ମାଦଳାପାଞ୍ଜି ଅନୁସାରେ ପୂର୍ବେ (ଦଶମ ଅଧ୍ୟାୟ) କୋଣାର୍କଦେବଙ୍କ ଭୋଗ ଓ ଯାତ୍ରା ବର୍ଣ୍ଣନା କରାଯାଇଅଛି ଏବଂ ସେହି ସମ୍ପର୍କରେ କୁହା ହୋଇଅଛି – 'ନରସିଂହଦେବ ମନ୍ଦିର ନିର୍ମାଣ ପରେ କୋଣାର୍କଦେବଙ୍କର ଭୋଗର ପରିମାଣ ଓ ଆଡ଼ମ୍ବର ବଢ଼ାଇ ଦେଇଥିଲେ ।' ଏ ସମସ୍ତ ବିଷୟ ଏକତ୍ର ବିଚାର କଲେ ତିଆର ହେଉ ହେଉ ଦେଉଳ ଭାଙ୍ଗି ଯାଇଥିବା ଅନୁମାନ କେବଳ ଅସାର ପ୍ରଳାପ ତୁଲ୍ୟ ବୋଧହୁଏ ।

ଯାହାହେଉ, ସମସ୍ତ ଅସାରତା ସତ୍ତ୍ୱେ ଆର୍ଣ୍ଣେଟ ମହାଶୟଙ୍କ ଅନୁମାନରେ କିଛି ପ୍ରକୃତ ସତ୍ୟ ନିହିତ ଅଛି ଏବଂ ସେହି ବିଷୟରେ ପୂର୍ବୋକ୍ତ କିମ୍ବଦନ୍ତୀ ସହିତ ତାହାଙ୍କ ଅନୁମାନର ସାମ୍ୟ ଦେଖାଯାଏ । ଉପର ଭାର ଅଧିକ ହେବାରୁ ମନ୍ଦିର ଭାଙ୍ଗି ଯାଇଥିବା କଥା କଦାପି ଅସ୍ୱୀକାର କରାଯାଇ ନ ପାରେ । ପରେ ଏହାର ସବିଶେଷ ଆଲୋଚନା କରାଯିବ ।

କୋଣାର୍କ ପତନର କାରଣ ନିର୍ଦ୍ଦେଶ କରିବାକୁ ଯାଇ ଷ୍ଟର୍ଲିଙ୍ଗ ଅନୁମାନ କରନ୍ତି ** କି ଭୂମିକମ୍ପ ବା ବିଦ୍ୟୁତ୍ ପ୍ରଭାବରେ ବଡ଼ଦେଉଳ ଭାଙ୍ଗିଗଲା ଏବଂ କ୍ରମେ କ୍ରମେ ବର୍ଷା, ପବନ ଓ ଅନ୍ୟାନ୍ୟ ନୈସର୍ଗିକ କାରଣମାନଙ୍କରୁ ମନ୍ଦିର ଏକାବେଳକେ ଧ୍ୱଂସ ପାଇଲା । ଏହା ବ୍ୟତୀତ ପାର୍ଶ୍ୱବର୍ତ୍ତୀ ସ୍ଥାନୀୟ ଲୋକେ ଲୁହା ଟାପୁଆଣିଗୁଡ଼ିକ ବାହାର କରିନେବାରୁ ପଥର ଇତସ୍ତତଃ ହୋଇ ବିଚ୍ଛିନ୍ନ ହେବାକୁ ଲାଗିଲା । ଶେଷରେ ମରହଟ୍ଟା ଗଭର୍ଣ୍ଣମେଣ୍ଟ ଦେଉଳ କାନ୍ଥ

* Konarka - P. 95.

** Orissa. P. 130. (The Baptist Mission, Edition – 1846.)

କେତେକ ଭାଙ୍ଗିନେଇ ସେହି ପଥର ଦ୍ୱାରା ପୁରୀରେ କେତେକ କ୍ଷୁଦ୍ର କ୍ଷୁଦ୍ର ମନ୍ଦିର ନିର୍ମାଣ କରାଇଥିଲେ ।

ପୂର୍ବୋକ୍ତ ମତ ଅପେକ୍ଷା ଷ୍ଟର୍ଲିଙ୍ଗଙ୍କର ଏହି ମତ ଆହୁରି ଅସଙ୍ଗତ ବୋଧହୁଏ । ମୁଖଶାଳା ବଡ଼ଦେଉଳ ସଙ୍ଗେ ଏକତ୍ର ହୋଇ ଏକ ପୀଠ ଉପରେ ଅବସ୍ଥିତ । ଭୂମିକମ୍ପଦ୍ୱାରା ବଡ଼ଦେଉଳ ଭାଙ୍ଗି ଯାଇଥିଲେ ମୁଖଶାଳା ନିଶ୍ଚୟ ବଡ଼ଦେଉଳ ସହିତ ସମଦଶା ପାଇଥାନ୍ତା । ପୁଣି ଭୂମିକମ୍ପ କେବଳ କୋଣାର୍କ ବେଢ଼ା ମଧ୍ୟରେ ଆବଦ୍ଧ ରହିଥିବା କଦାପି ବିଶ୍ୱାସ କରାଯାଇ ନ ପାରେ । ତାହାର ଆଘାତ ସମପରିମାଣରେ ପୁରୀ ଓ ଭୁବନେଶ୍ୱର ପ୍ରଭୃତି ନିକଟବର୍ତ୍ତୀ ଅଞ୍ଚଳମାନଙ୍କରେ ଅନ୍ତତଃ ନିଶ୍ଚୟ ଅନୁଭବ କରାଯାଇଥାନ୍ତା । କୋଣାର୍କ ମନ୍ଦିର ଯେପରି ପ୍ରକାଣ୍ଡ ଶିଳାରେ ସୁଦୃଢ଼ ଭାବରେ ନିର୍ମିତ ହୋଇଥିଲା, ପୁରୀ ବା ଭୁବନେଶ୍ୱର ମନ୍ଦିର କଦାପି ସେପରି ହୋଇ ନ ଥିଲା । ସୁତରାଂ ଯେଉଁ ଭୂମିକମ୍ପ କୋଣାର୍କ ମନ୍ଦିର ଭାଙ୍ଗିବାକୁ ସମର୍ଥ ହୋଇଥିଲା, ତାହା କୋଣାର୍କ ପୂର୍ବରୁ ପୁରୀ ଓ ଭୁବନେଶ୍ୱର ମନ୍ଦିରମାନଙ୍କୁ ଏକାବେଳକେ ଭୂମିସାତ୍ କରି ଦେଇଥାନ୍ତା ।

ପୁଣି ଭୂମିକମ୍ପ ବଡ଼ ପ୍ରବଳ ହୋଇ ନ ଥିଲେ କୋଣାର୍କ ପରି ସୁଦୃଢ଼ ମନ୍ଦିର ଭାଙ୍ଗିବା ନିମନ୍ତେ ତାହା କଦାପି ସମର୍ଥ ହୋଇ ନ ଥାନ୍ତା । ସେହିପରି ପ୍ରବଳ ଭୂମିକମ୍ପଦ୍ୱାରା କୋଣାର୍କ ମନ୍ଦିର ଭାଙ୍ଗିଯିବା ପୂର୍ବରୁ ଓଡ଼ିଶାର ପ୍ରାୟ ସର୍ବତ୍ର ସମସ୍ତ ଘରଦ୍ୱାର ଭୂମିସାତ୍ ହୋଇଥାନ୍ତା । ଅତଏବ ଏହିପରି ଗୋଟିଏ ସାରା ଦେଶବ୍ୟାପୀ ପ୍ରଳୟ ଘଟନା ଯେତେ ପୁରାତନ ହେଲେ ସୁଦ୍ଧା ଅବଶ୍ୟ ଲୋକମୁଖରେ ଅଦ୍ୟାପି ଶୁଣାଯାଉଥାନ୍ତା । ଯେଉଁ ଲୋକେ ଦୁର୍ଦ୍ଦାନ୍ତ କଳାପାହାଡ଼ର ଆକ୍ରମଣ ଏତେ ସୁନ୍ଦର ଭାବରେ ମନେ ରଖିଅଛନ୍ତି, ପୁରୁଷୋତ୍ତମ ଦେବଙ୍କ କାଞ୍ଚିବିଜୟ ଯେଉଁ ଦେଶରେ ଗୃହେ ଗୃହେ ସୁବିଦିତ, 'ଶିବାଇ ସାନ୍ତରା' ଅଦ୍ୟାପି ଯେଉଁ ଲୋକମୁଖରେ ଜୀବିତ ଅଛନ୍ତି, ସେହି ଲୋକେ ଏପରି ଭୟଙ୍କର ଓ ବ୍ୟାପକ ଭୂମିକମ୍ପ କଥା ଭୁଲି ଯାଇଥିବା ସହଜ ନୁହେଁ । ବିଶେଷତଃ ଯେତେବେଳେ କୋଣାର୍କ ଭାଙ୍ଗିଯିବାର କାରଣ ସ୍ୱରୂପ ଅନ୍ୟ ଗୋଟିଏ ବିଷୟ ସ୍ୱତନ୍ତ୍ର ଭାବରେ ସେମାନେ ନିଜ ମୁଖରେ ରଖିଅଛନ୍ତି ଭୂମିକମ୍ପଦ୍ୱାରା ମନ୍ଦିରର ପତନ ହୋଇଥିବା କଦାପି ସମ୍ଭବ ନୁହେଁ । ଫରଗୁସନ୍ ନିଜେ ୧୨୦ ଫୁଟ ଉଚ୍ଚରେ କାଛଟିଏ ଥିବାର ଦେଖିଥିଲେ; ସୁତରାଂ ଭୂମିକମ୍ପଦ୍ୱାରା ଦେଉଳ ଭାଙ୍ଗି ଯାଇଥିଲେ, କାଛଟି ଏତେ କାଳ ପର୍ଯ୍ୟନ୍ତ ରହି ନ ଥାନ୍ତା । ବିଶେଷତଃ ଏପରି ପ୍ରବଳ ଭୂମିକମ୍ପ ଓଡ଼ିଶା ଉପକୂଳରେ ଘଟିବାର କୌଣସି କାରଣ ନାହିଁ । ଭାରତ ଇତିହାସରେ କେତେ ଦୁର୍ଭିକ୍ଷର ବର୍ଣ୍ଣନା ଅଛି; କିନ୍ତୁ ଏକମାତ୍ର ଭୂମିକମ୍ପର ଉଲ୍ଲେଖ ଆଦୌ ଦେଖାଯାଏ ନାହିଁ । ଅତଏବ କେବଳ କୋଣାର୍କ ଭାଙ୍ଗିଦେବା ନିମନ୍ତେ ଏପରି ଗୋଟିଏ ପ୍ରଳୟକାରୀ ଭୂମିକମ୍ପ ହୋଇଥିବା କଦାପି ବିଶ୍ୱାସ କରାଯାଇ ନ ପାରେ ।

ଭୂମିକମ୍ପ ଅପେକ୍ଷା ବିଦ୍ୟୁତ୍ ପକ୍ଷରେ କୋଣାର୍କ ପତନର ସମ୍ଭାବନା ଅତି ଅଳ୍ପ । କୋଣାର୍କ ବଡ଼ଦେଉଳର କାନ୍ଥ ୨୦ ରୁ ୨୫ ଫୁଟ ପର୍ଯ୍ୟନ୍ତ ମୋଟା । ଏତେ ମୋଟା କାନ୍ଥର ଦେଉଳ ଭାଙ୍ଗିବା ବିଦ୍ୟୁତ୍ ପକ୍ଷରେ ସମ୍ଭବ ନୁହେଁ । ସୁତରାଂ ରାଜେନ୍ଦ୍ର ଲାଲ କହନ୍ତି, ''ବିଦ୍ୟୁତ୍ କୋଣାର୍କ ମନ୍ଦିର ଭାଙ୍ଗିବା ନିମନ୍ତେ ନିତାନ୍ତ ଅସମର୍ଥ । ବିଶେଷତଃ ଫର୍‌ଗୁସନ୍‌ଙ୍କ କହିବାନୁସାରେ ବିଦ୍ୟୁତ୍ ଲୌହଚୂଡ଼ ମୁଖଶାଳା ଉପରେ ନ ପଡ଼ି ବଡ଼ଦେଉଳ ଉପରେ ପଡ଼ିବା ଅସମ୍ଭବ ।'' ସେ ଯାହାହେଉ, ଏହା ଅବଶ୍ୟ ସ୍ୱୀକାର କରିବାକୁ ହେବ ଯେ, ବିଦ୍ୟୁତ୍‌ଦ୍ୱାରା ବଡ଼ଦେଉଳ ଭାଙ୍ଗି ଯାଇଥିଲେ ମୁଖଶାଳାଟି କଦାପି ଅକ୍ଷୁର୍ଣ୍ଣ ଭାବରେ ରହି ନ ଥାନ୍ତା । ପୁଣି ବିଦ୍ୟୁତ୍ ମୁଖଶାଳା ବ୍ୟତୀତ ବଡ଼ଦେଉଳ ଓ ରାମଚଣ୍ଡୀ ମନ୍ଦିର ଭାଙ୍ଗି ଦେଇଥିବା ଆହୁରି ଅସମ୍ଭବ । ବିଦ୍ୟୁତ୍‌ର ଆକ୍ରମଣରୁ ରକ୍ଷା କରିବା ନିମନ୍ତେ ଓଡ଼ିଶା ମନ୍ଦିରମାନଙ୍କ ଉପରେ ନୀଳଚକ୍ର ବା ତ୍ରିଶୂଳ ପ୍ରଭୃତିର ବ୍ୟବସ୍ଥା ଥିଲା । କେବେ କୌଣସି ସ୍ଥାନରେ ବିଦ୍ୟୁତ୍‌ଦ୍ୱାରା ମନ୍ଦିର ଭାଙ୍ଗିଯାଇ ନାହିଁ । କୋଣାର୍କର ଅନ୍ୟାନ୍ୟ ମନ୍ଦିରର ପତନ ପରେ କେବଳ ମୁଖଶାଳା ଦଣ୍ଡାୟମାନ ଥିଲା ଏବଂ ଉପରେ କଳସ ଓ ଚକ୍ର ପ୍ରଭୃତି ନ ଥିବାରୁ ବିଦ୍ୟୁତ୍ ବାରମ୍ବାର ତାହା ଉପରେ ପଡ଼ୁଥିଲା । ଶ୍ରୀ ବିଷନ୍ ସ୍ୱରୂପ କହନ୍ତି, * ''୧୯୦୦ ଖ୍ରୀଷ୍ଟାବ୍ଦଠାରୁ ୧୦ ବର୍ଷ ମଧ୍ୟରେ ଏହା ଉପରେ ଦୁଇ ଥର ବିଦ୍ୟୁତ୍ ପଡ଼ିଥିଲା ।'' ଏକେ ମୁଖଶାଳା ପତନୋନ୍ମୁଖ ହୋଇଥିଲା, ତଥାପି ଏତେ ବାର ବିଦ୍ୟୁତ୍ ଆଘାତରେ ତାହାର କୌଣସି କ୍ଷତି ହୋଇ ପାରି ନ ଥିଲା । ଏପରି ସ୍ଥଳରେ ନୂତନ ଓ ସୁଦୃଢ଼ କୋଣାର୍କ ମନ୍ଦିର ବିଦ୍ୟୁତ୍ ଆଘାତରେ ଏକାବେଳକେ ଭଗ୍ନ ହୋଇ ଯାଇଥିବା ନିତାନ୍ତ ଅସମ୍ଭବ । ଅତଏବ ବିଦ୍ୟୁତ୍ ବା ଭୂମିକମ୍ପ ଦ୍ୱାରା କୋଣାର୍କର ପତନ ହୋଇଥିବାର ଷ୍ଟର୍ଲିଙ୍ଗ ଯାହା ଅନୁମାନ କରନ୍ତି, ତାହା କେବଳ କପୋଳକଳ୍ପନା ମାତ୍ର; ସତ୍ୟ ନିମନ୍ତେ ଅନ୍ୟତ୍ର ଅନୁସନ୍ଧାନ କରିବାକୁ ହେବ ।

ଡାକ୍ତର ରାଜେନ୍ଦ୍ର ଲାଲ ଫର୍‌ଗୁସନ୍ ଓ ହଣ୍ଟର ପ୍ରଭୃତି କୋଣାର୍କ ପତନର କାରଣ ସ୍ୱରୂପ ମୂଳପତ୍ତନର ଗଠନରେ ଦୋଷ ଥିବାର ଅନୁମାନ କରନ୍ତି । କୋଣାର୍କ ବାଲୁକାମୟ ସ୍ଥାନ; ସୁତରାଂ ସେଠାରେ ମୂଳପତ୍ତନ ଦବି ଯିବାର ସମ୍ଭାବନା ସାଧାରଣଙ୍କ ମନରେ ଉଦିତ ହେବା ସ୍ୱାଭାବିକ । ରାଜେନ୍ଦ୍ର ଲାଲ କହନ୍ତି, ''ମୂଳପତ୍ତନ ଉପରିସ୍ଥ ବାଲିସ୍ତର ଭେଦି ଯଦି ନିମ୍ନଭାଗର ଅପେକ୍ଷାକୃତ ଶକ୍ତ ସ୍ତର ପର୍ଯ୍ୟନ୍ତ ଯାଇଥାନ୍ତା, ତାହାହେଲେ ଏହା ଦବିଯାଇ ନ ଥାନ୍ତା । କିନ୍ତୁ କୋଣାର୍କରେ ମୂଳପତ୍ତନ ସେତେ ଗଭୀର ପ୍ରଦେଶରୁ ଗଠିତ ହୋଇ ନ ଥିଲା ।'' ପୂର୍ବେ କୁହାଯାଇଅଛି, ୪୦ ଫୁଟ ଉଚ୍ଚ ଏକ ଏକ ପଥରରେ ନିର୍ମିତ ଚାରୋଟି ଖମ୍ବ ମୁଖଶାଳା ମଧ୍ୟରେ ଥିଲା । ହଣ୍ଟର କହନ୍ତି; ସେହି ଖମ୍ବଗୁଡ଼ିକ ଦବି ଯାଇ ଭାଙ୍ଗି ଯାଇଥିଲା ଏବଂ ଏଥିରୁ ଅନୁମାନ କରାଯାଏ ଯେ, ଏତେ ଭାର ସହି ନ ପାରି ମୂଳପତ୍ତନ ଦବି ଯାଇଥିଲା । ସୁତରାଂ ମୂଳପତ୍ତନର ଗଠନ ଦୋଷ କୋଣାର୍କ ପତନର ମୂଳ କାରଣ । ହଣ୍ଟର

* Konarka. P. 100.

ଆହୁରି ମଧ କହନ୍ତି ଯେ, କୋଣାର୍କ ନିର୍ମାଣ ଶେଷ ନ ହେଉଣୁ ଏବଂ ସୂର୍ଯ୍ୟଦେବଙ୍କର ପ୍ରତିଷ୍ଠା ପୂର୍ବରୁ କୋଣାର୍କର ଅବସାନ ହୋଇଅଛି ।

ଶ୍ରୀ ବିଷନ୍ ସ୍ୱରୂପ କହନ୍ତି, * ମୂଳପତ୍ତନ ଦବିଯିବା ଦ୍ୱାରା କୋଣାର୍କ ପରି ବିରାଟ ମନ୍ଦିର ଭାଙ୍ଗିଯିବା ସମ୍ଭବ ନୁହେଁ । କାରଣ ମୂଳପତ୍ତନ ଦବିଯିବା ସଙ୍ଗେ ସଙ୍ଗେ ମନ୍ଦିର ସମୁଦାୟ ମଧ ଦବିଯିବ; ସୁତରାଂ ମନ୍ଦିର ଭାଙ୍ଗିଯିବ କାହିଁକି ? କିନ୍ତୁ ମୂଳପତ୍ତନ ଯଦି କୌଣସି ଏକ ପାଖରେ କେବଳ ବିଶେଷ ଦବି ଯାଇଥିବ, ତାହାହେଲେ ଅବଶ୍ୟ ମନ୍ଦିର ଭାଙ୍ଗି ଯାଇଥିବାର ସମ୍ଭାବନା କରାଯାଇପାରେ । ତାହା ହୋଇଥିଲେ, ମନ୍ଦିର ଏକପାଖକୁ ଭାଙ୍ଗି ପଡ଼ିଥାନ୍ତା । ବାସ୍ତବରେ ମନ୍ଦିର କିନ୍ତୁ ଭିତର ପାଖକୁ ଅଜାଡ଼ି ହୋଇପଡ଼ି ଗୋଟିଏ ପର୍ବତରୂପୀ ହୋଇଥିବାର ମିଷ୍ଟର ଆର୍ଣ୍ଣଟ କହିଅଛନ୍ତି ।

କୋଣାର୍କ ଅବଶ୍ୟ ବାଲୁକାମୟ ସ୍ଥାନ ଏବଂ ସେହି ବାଲୁକା ଦେହରେ ମୂଳପତ୍ତନ ଦବିଯିବାର ଆଶଙ୍କା ବର୍ତ୍ତମାନ ସମାଲୋଚକ ଓ ଦର୍ଶକମାନଙ୍କ ମନରେ ଯେପରି ଜାତ ହୁଏ, କୋଣାର୍କ ନିର୍ମାତାଙ୍କ ମନରେ ତାହା ଅପେକ୍ଷା କଦାପି ଅଳ୍ପ ଭାବରେ ଥିବାର ଅନୁମାନ କରାଯାଇ ନ ପାରେ । ରାଜେନ୍ଦ୍ର ଲାଲ ପ୍ରଭୃତି ସମାଲୋଚକମାନେ କହନ୍ତି ଯେ, ଉପରିସ୍ଥ ବାଲୁକାସ୍ତର ନିମ୍ନରେ ଯେଉଁ ସ୍ତର ଅଛି, ତାହା ଯଥେଷ୍ଟ ଶକ୍ତ । ଶ୍ରୀ ବିଷନ୍ ସ୍ୱରୂପ ମଧ କହନ୍ତି, ''ଉପରିସ୍ଥ ବାଲୁକାସ୍ତର ନିମ୍ନରେ ଯେଉଁ ସରୁ ବାଲିସ୍ତର ଥାଏ, ତାହା ଅତ୍ୟନ୍ତ ଶକ୍ତ ଏବଂ ମୂଳପତ୍ତନ ସେହି ସ୍ତର ପର୍ଯ୍ୟନ୍ତ ନିଶ୍ଚୟ ଭେଦ କରିଥିଲା ।'' ସେହି ସ୍ତରରୁ ଗଠିତ ହୋଇ ଆସିଥିଲେ, ମୂଳପତ୍ତନ ଦବି ଯିବାର କୌଣସି ଆଶଙ୍କା କରାଯାଇ ନ ପାରେ । ବିଶେଷତଃ ଯେଉଁ ମନୀଷୀମାନେ କୋଣାର୍କରେ ଏତେ ବୁଦ୍ଧି ଓ କୌଶଳ ଦେଖାଇ ବର୍ତ୍ତମାନ ବିଜ୍ଞାନ ଯୁଗର ଇଞ୍ଜିନିୟରମାନଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିପାରି ଅଛନ୍ତି, ସେହି ଶିଳ୍ପୀମାନେ ଏତେ ଜ୍ଞାନ, ଧନ ଓ ଶ୍ରମ ବ୍ୟୟରେ ପର୍ବତରୂପୀ ଏଡ଼େ ପ୍ରକାଣ୍ଡ ମନ୍ଦିର ନିର୍ମାଣ କରି ତାହାକୁ କେବଳ ଉପରିସ୍ଥ ବାଲୁକା ଉପରେ ସ୍ଥାପନ ମାତ୍ର କରିଥିଲେ – ଏହା ଭାବିବା ନିତାନ୍ତ ଅସମ୍ଭବ ବୋଧହୁଏ । ଯଦି ନିତାନ୍ତ ସ୍ୱୀକାର କରାଯାଏ ଯେ, ସମସ୍ତ ଶିଳ୍ପ ଓ ନିର୍ମାଣ-କୌଶଳ ସତ୍ତ୍ୱେ କୋଣାର୍କକାରଙ୍କର ସେହିତକ ଜ୍ଞାନ ବା ବୁଦ୍ଧି ନ ଥିଲା ଏବଂ କେବଳ ଅସ୍ଥାୟୀ ଓ ବାୟୁସ୍ରୋତରେ ଇତସ୍ତତଃ ପ୍ରବାହିତ ବାଲୁକା ଉପରେ ମନ୍ଦିର ନିର୍ମାଣ କରିଥିଲେ, ତାହାହେଲେ ବରଂ ବିଶ୍ୱାସ କରାଯାଏ ଯେ, ମୂଳପତ୍ତନଟି ଗୋଟିଏ ପାଖରେ ନ ଦବି ସମୁଦାୟଟି ଏକ ସଙ୍ଗରେ ଦବି ଯାଇଅଛି । ବାସ୍ତବିକ ଗୋଟିଏ ପାଖରେ ଦବିଯିବାର କୌଣସି କାରଣ ନ ଥିଲା । ଏପରି ସ୍ଥଳେ ସମୁଦାୟ ମୂଳପତ୍ତନ ସଙ୍ଗେ ସଙ୍ଗେ ଦେଉଳ ଓ ମୁଖଶାଳା ମଧ ଦବିଯାଇ ଅକ୍ଷୁର୍ଣ୍ଣ ରହିଥାନ୍ତା । ଯଦି ମୂଳପତ୍ତନ ଏକ ପାଖରେ ଦବି ଯାଇଥିଲା, ତାହାହେଲେ ଦେଉଳ ସଙ୍ଗେ ସଙ୍ଗେ ମୁଖଶାଳା ମଧ ଭାଙ୍ଗି ଯାଇଥାନ୍ତା ।

* Konarka. P. 9.

ହଣ୍ଟର ଓ ରାଜେନ୍ଦ୍ରଲାଲ ପ୍ରଭୃତି ଦେଖିଲା ବେଳକୁ ଶିଳାରାଶିରେ ସମସ୍ତ ମୂଳପଉନ ପୋତି ହୋଇ ପଡ଼ିଥିଲା; ସୁତରାଂ ବର୍ତ୍ତମାନ ପରି ସେମାନେ ମୂଳପଉନ ଦେଖି ପାରି ନ ଥିଲେ । ବର୍ତ୍ତମାନ କୌଣସି ସ୍ଥାନରେ ମୂଳପଉନ ଦବି ଯିବାର ଦେଖାଯାଉ ନାହିଁ । ଦବି ଯାଇଥିଲେ ଏହା ଦେହରେ ଓ ଦେଉଳ କାନ୍ଥରେ ନାନା ଫାଟ ଥାନ୍ତା ଏବଂ ଦବି ଯିବା ସ୍ଥାନରେ ମୂଳପଉନ ଅପେକ୍ଷାକୃତ ଅଳ୍ପ ଉଚ ଦେଖା ଯାଉଥାନ୍ତା ଇତ୍ୟାଦି । କିନ୍ତୁ ସେ ସବୁ କିଛି ମୂଳପଉନ ବା ଦେଉଳ ଦେହରେ ଆଦୌ ଦେଖାଯାଏ ନାହିଁ । ଦେଖିଲେ ପୀଠଟି ବରଂ ନୂତନ ପରି ବୋଧହୁଏ । ହଣ୍ଟର ଓ ରାଜେନ୍ଦ୍ର ଲାଲ ପ୍ରଭୃତି ମୂଳପଉନକୁ ବର୍ତ୍ତମାନ ଅବସ୍ଥାରେ ସମ୍ପୂର୍ଣ୍ଣ ଭାବରେ ଦେଖି ପାରିଥିଲେ, ସେମାନେ କଦାପି ଏପରି ଅସାର ସିଦ୍ଧାନ୍ତରେ ଉପନୀତ ହୋଇ ନ ଥାନ୍ତେ ।

ମୁଖଶାଳା ମଧ୍ୟରେ ଯେଉଁ ଖମ୍ବ ଥିଲା, ତାହା ଭାଙ୍ଗି ଯାଇଥିବାର ଦେଖି ମୂଳପଉନ ଦବି ଯାଇଥିବା ତାହାର କାରଣ ବୋଲି ହଣ୍ଟର ଅନୁମାନ କରନ୍ତି । ହଣ୍ଟର କହନ୍ତି, ''ମୂଳପଉନ ଦବି ଯିବାରୁ ଖମ୍ବଗୁଡ଼ିକ ମୁଖଶାଳାର ଚାଳରୁ ଛାଡ଼ିଗଲା ଏବଂ ଭାଙ୍ଗି ପଡ଼ିଲା ।'' ଏହି ଅନୁମାନ ମଧ୍ୟ ପୂର୍ବପରି ନିତାନ୍ତ ଅସାର ବୋଧହୁଏ । ମୂଳପଉନ ଦବିଯିବା ଦ୍ୱାରା ଖମ୍ବ ଭାଙ୍ଗିଯିବାର କୌଣସି କାରଣ ନାହିଁ । ତାହା ଦବିଯିବା ସଙ୍ଗେ ସଙ୍ଗେ ସମୁଦାୟ ମୁଖଶାଳା ଚାଳ ସହିତ ଦବି ଯାଇଥାନ୍ତା ଏବଂ ଖମ୍ବ ଯେପରି ଥିଲା; ଦବିଯାଇ ସେହିପରି ରହିଥାନ୍ତା । ହଣ୍ଟରଙ୍କର ଗୋଟିଏ ବିଶେଷ ଭ୍ରମ ଯେ, ସେ ମନେ କରନ୍ତି କି ମୁଖଶାଳାର ବିରାଟ ଚାଳର ରକ୍ଷା ନିମନ୍ତେ ଖମ୍ବ ନିତାନ୍ତ ଆବଶ୍ୟକ ହୋଇଥିଲା । କିନ୍ତୁ ଏହାଦ୍ୱାରା ସେ ଓଡ଼ିଶା ମନ୍ଦିରମାନଙ୍କର ନିର୍ମାଣ ପ୍ରଣାଳୀ ବିଷୟରେ ଆପଣାର ଅନଭିଜ୍ଞତା ଦେଖାଇଅଛନ୍ତି ମାତ୍ର । ପରନ୍ତୁ ପୂର୍ବବର୍ତ୍ତୀ ଅଧ୍ୟାୟରେ ମନ୍ଦିର ନିର୍ମାଣ କୌଶଳର ଯେଉଁ ବିଶ୍ଳେଷଣ କରାଯାଉଅଛି, ତହିଁରୁ ଜଣାଯାଏ ଯେ, ମନ୍ଦିରମାନଙ୍କର ଚାଳ ଭିତରକୁ ଯେପରି କ୍ରମବକ୍ର ହୋଇଥାଏ, ତାହାର ରକ୍ଷା ନିମନ୍ତେ ଉପରିସ୍ଥ ଆମଳକଶିଳା ଓ କଳସ ପ୍ରଭୃତିର ଭାର ଯଥେଷ୍ଟ । ଚାଳର ଆଶ୍ରୟ ନିମନ୍ତେ ଖମ୍ବ ତିଆର କରିଥିଲେ ମନ୍ଦିର ଅଳ୍ପ ସମୟ ମଧ୍ୟରେ ଭାଙ୍ଗି ଯାଇଥାନ୍ତା । କୋଣାର୍କର ଉଦ୍ଧାର ସମୟରେ ମୁଖଶାଳାକୁ ଅକ୍ଷୁର୍ଣ୍ଣ ରଖିବା ନିମନ୍ତେ ନାନାପ୍ରକାର ଉପାୟ ଉଦ୍ଭାବନ କରା ଯାଇଥିଲା । ସେଥି ମଧ୍ୟରେ ଗୋଟିଏ ବୃହତ୍ ଖମ୍ବଦ୍ୱାରା ଚାଳର ରକ୍ଷା କରିବା ପାଇଁ ପ୍ରସ୍ତାବ ହୋଇଥିଲା; କିନ୍ତୁ କଟକ କାରଖାନାର ସହକାରୀ ଇଞ୍ଜିନିୟର ମିଷ୍ଟର ସି. ଏ. ମର୍ଚ୍ଚାଣ୍ଟ (C. A. Marchant) ଏବଂ ପ୍ରଧାନ ଇଞ୍ଜିନିୟର ମିଷ୍ଟର ଆର. ଜି. କେମେଡ଼ି (R. G. Kemedy)ଙ୍କର ପ୍ରମାଣ ଅନୁସାରେ ଏହି ପ୍ରସ୍ତାବ ବରଂ ଅଧିକ କ୍ଷତିଜନକ ବୋଲି ଉପେକ୍ଷିତ ହେଲା । କାରଣ ଗୋଟିଏ ନମୁନା (Model) ଦ୍ୱାରା ମର୍ଚ୍ଚାଣ୍ଟ ଦେଖାଇ ଦେଲେ ଏବଂ ସ୍ଥିତି ବିଜ୍ଞାନାନୁସାରେ କେମେଡ଼ି ପ୍ରମାଣ କରିଦେଲେ ଯେ, ଖମ୍ବଦ୍ୱାରା ଚାଳ ଉପରେ କଳସ ପ୍ରଭୃତିର ଯେଉଁ ନିମ୍ନଚାପ ପଡୁଅଛି, ତାହା ପ୍ରତିହତ

ଓ ନିରର୍ଥକ ହୋଇଯିବ ଏବଂ ତଦ୍ୱାରା ଚାଳ ଭାଙ୍ଗିପଡ଼ିବ * । ଏପରି ଅବସ୍ଥାରେ ମୁଖଶାଳାର ଚାଳର ଆଶ୍ରୟ ନିମନ୍ତେ ଖମ୍ବ ଗଠିତ ହୋଇଥିଲା ବୋଲି କଦାପି ସମ୍ଭବ କରାଯାଇ ନ ପାରେ । ସୁତରାଂ ରାଜେନ୍ଦ୍ର ଲାଲ କହିଅଛନ୍ତି ଯେ, ମୁଖଶାଳା ଚାଳ ତଳେ ଆଉ ଗୋଟିଏ ଚାଳ ଥିଲା । ଖମ୍ବ ସେହି ଚାଳର ଆଶ୍ରୟ ହୋଇଥିଲା ।

ପରିଶେଷରେ ହଣ୍ଟର ଅନୁମାନ କରନ୍ତି ଯେ, ମନ୍ଦିର-ନିର୍ମାଣ କଦାପି ସମ୍ପୂର୍ଣ୍ଣ ହୋଇ ନ ଥିଲା ଏବଂ ମନ୍ଦିର ମଧ୍ୟରେ ଦେବପ୍ରତିଷ୍ଠା ମଧ୍ୟ କରାଯାଇ ନ ଥିଲା । ଇତିପୂର୍ବେ ମିଷ୍ଟର ଆର୍ଣ୍ଣଟଙ୍କ ମତର ଖଣ୍ଡନ ସ୍ଥଳରେ କୁହାଯାଇଅଛି ଯେ, ଦେଉଳ ମଧ୍ୟରେ ସିଂହାସନ ଏବଂ ସେହି ସିଂହାସନରେ ଦେବ ବହୁକାଳ ପ୍ରତିଷ୍ଠିତ ହୋଇଥିବାର ଚିହ୍ନ ଥିବାରୁ ମନ୍ଦିର ନିର୍ମାଣ ଶେଷ ହୋଇ ନ ଥିବାର ଅନୁମାନ ଅତ୍ୟନ୍ତ ଅସାର ପ୍ରଳାପ ମାତ୍ର । ଶ୍ରୀ ବିଷଦ୍ ସ୍ୱରୂପ ମଧ୍ୟ ବିଶ୍ୱାସ କରନ୍ତି ** ଯେ, ମନ୍ଦିର ମଧ୍ୟରେ ବହୁକାଳ ପର୍ଯ୍ୟନ୍ତ ଦେବପୂଜା ଚଳିଥିଲା । ଷୋଡ଼ଶ ଶତାବ୍ଦୀର ଶେଷ ଭାଗରେ ଆବୁଲଫଜଲଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ, ମନ୍ଦିର ଭାଙ୍ଗି ଯାଇ ନ ଥିଲା ଏବଂ ସେଠାରେ ଦେବପୂଜା ଚଳୁଥିଲା । 'ମୁରାରେ ସ୍ତୃତୀୟଃ ପନ୍ଥା'; ଅତଏବ ଡାକ୍ତର ବ୍ଲକ୍ କହନ୍ତି ଯେ, ରାଜା ନରସିଂହଦେବଙ୍କ ଅକାଳ ମୃତ୍ୟୁବଶତଃ କୋଣାର୍କ ନିର୍ମାଣ ଶେଷ ହୋଇ ପାରି ନ ଥିଲା । ଇତି ପୂର୍ବେ (ନବମ ଅଧ୍ୟାୟ) ନରସିଂହଦେବଙ୍କ ତାମ୍ରଶାସନ ଏବଂ ମାଦଳାପାଞ୍ଜି ଉଭୟ ପରୀକ୍ଷା କରି ପ୍ରମାଣ କରାଯାଇଅଛି ଯେ, ୧୨୭୮ ଖ୍ରୀଷ୍ଟାବ୍ଦରେ ଅର୍ଥାତ୍ 'ଶକେ ଦ୍ୱାଦଶକେ ଶତେ' କୋଣାର୍କ କାର୍ଯ୍ୟ ଶେଷ ହୋଇଥିଲା ଏବଂ ଲାଙ୍ଗୁଳା ନରସିଂହଦେବ ୧୨୮୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ପୂର୍ବେ ମଧ୍ୟ ନାନା ସ୍ଥାନରେ କୁହାଯାଇଅଛି ଯେ, ପୁରୁଷୋତ୍ତମ ଦେବଙ୍କ ପୁତ୍ର ରାଜା ନରସିଂହଦେବ କୋଣାର୍କର ସମସ୍ତ ମନ୍ଦିରମାନ ମାପ କରାଇଥିଲେ ଏବଂ କେଉଁ ଦେବଙ୍କ ନିମନ୍ତେ କେତେ କେତେ ଭୋଗ ବ୍ୟବସ୍ଥା ଥିଲା, ତାହା ମଧ୍ୟ ପୂର୍ବେ କୁହାଯାଇଅଛି (ଦଶମ ଅଧ୍ୟାୟ) । ସୁତରାଂ ମନ୍ଦିର-ନିର୍ମାଣ ଶେଷ ହୋଇ ଦେବପ୍ରତିଷ୍ଠା ହୋଇ ନ ଥିବା ଏବଂ କୋଣାର୍କ ନିର୍ମାଣ ଶେଷ ପୂର୍ବରୁ ରାଜା ନରସିଂହଦେବଙ୍କର ଅକାଳ ମୃତ୍ୟୁ ହୋଇଥିବା ଇତ୍ୟାଦି କଥା କେବଳ ଅସାର କଳ୍ପନା ବ୍ୟତୀତ ଅନ୍ୟ କିଛି ନୁହେଁ ।

ପୂର୍ବେ (ଅଷ୍ଟମ ଅଧ୍ୟାୟରେ) କୁହାଯାଇଅଛି ଯେ, ରାମଚଣ୍ଡୀ ମନ୍ଦିରର ପଶ୍ଚିମ ପାର୍ଶ୍ୱର ସୂର୍ଯ୍ୟନାରାୟଣ ମୂର୍ତ୍ତି ନାଟମନ୍ଦିରରେ ରଖା ହୋଇଥିଲା । ଏହି ମୂର୍ତ୍ତି ଦେଖି କେହି କେହି ଅନୁମାନ କରନ୍ତି – ଏହି ମୂର୍ତ୍ତି କୋଣାର୍କ ବଡ଼ଦେଉଳରେ ସୂର୍ଯ୍ୟନାରାୟଣ ମୂର୍ତ୍ତି ସ୍ୱରୂପ ପୂଜା ପାଇବା ପାଇଁ ନିର୍ମିତ ହୋଇଥିଲା । କିନ୍ତୁ ମୂର୍ତ୍ତି ନିର୍ମାଣ ଶେଷ ହେବା ପୂର୍ବରୁ ଦେଉଳ ଭାଙ୍ଗିଯିବାରୁ ଏହା ନାଟମନ୍ଦିରରେ ରଖା ଯାଇଥିଲା । ପୂର୍ବେ (ଅଷ୍ଟମ ଅଧ୍ୟାୟ)

* Konarka. P. 97.

** "The Temple enjoyed worship for several centuries before it fell down." – Konarka, P - 97.

କୁହାଯାଇଅଛି ଯେ, ମୂର୍ତ୍ତିଟି ରାମଚଣ୍ଡୀଙ୍କ ପଶ୍ଚିମ ପାର୍ଶ୍ୱରେ ସ୍ଥାପିତ ହୋଇଥିଲା ଏବଂ ଉକ୍ତ ମନ୍ଦିରର ଉଦ୍ଧାର ସମୟରେ ୧୯୦୬-୭ ଖ୍ରୀଷ୍ଟାବ୍ଦରେ ମୂର୍ତ୍ତିଟି ସେଠାରୁ ଅଣା ହୋଇ ନାଟମନ୍ଦିରରେ ରଖାଯାଇଥିଲା । ପୁଣି ସିଂହାସନରେ ଦେବମୂର୍ତ୍ତି ରହିଥିବାର ଯେଉଁ ସ୍ଥାନ ଜଣା ପଡ଼ୁଅଛି, ତହିଁରେ ଉକ୍ତ ସୂର୍ଯ୍ୟ ମୂର୍ତ୍ତି ରହିବା ଅସମ୍ଭବ । ଉପରୋକ୍ତ ସମାଲୋଚକମାନଙ୍କର ବିଶ୍ୱାସ, ଯେପରି କୋଣାର୍କର ବର୍ତ୍ତମାନ ମନ୍ଦିର-ନିର୍ମାଣ ଦିବସଠାରୁ ସେଠାରେ ସୂର୍ଯ୍ୟପୂଜାର ଆରମ୍ଭ ହୋଇଥିଲା । ପରନ୍ତୁ କୋଣାର୍କରେ ସୂର୍ଯ୍ୟପୂଜା ବହୁକାଳରୁ ପ୍ରତିଷ୍ଠିତ ଥିଲା ଏବଂ ପୂର୍ବ ମନ୍ଦିର ଜୀର୍ଣ୍ଣ ହୋଇଯିବାରୁ ନରସିଂହଦେବ ବର୍ତ୍ତମାନ ମନ୍ଦିର ନିର୍ମାଣ କରାଇଥିଲେ । ଅତଏବ ବର୍ତ୍ତମାନ ମନ୍ଦିର ସଙ୍ଗେ ସୂର୍ଯ୍ୟ ନିର୍ମାଣର ଆଦୌ ଆବଶ୍ୟକ ନ ଥିଲା । ଚିରପୂଜିତ ସୂର୍ଯ୍ୟ ମୂର୍ତ୍ତିଙ୍କ ନିମନ୍ତେ ମନ୍ଦିର ନିର୍ମିତ ହୋଇଥିଲା; ସୁତରାଂ କୋଣାର୍କରେ ସୂର୍ଯ୍ୟ ମୂର୍ତ୍ତି ପ୍ରତିଷ୍ଠିତ ହୋଇ ନ ଥିବା କେବଳ ମିଥ୍ୟା ପ୍ରଳାପ । ରାଜେନ୍ଦ୍ର ଲାଲ କହନ୍ତି ଯେ, ଦେଉଳରେ ଦେବପ୍ରତିଷ୍ଠା ହୋଇ ନ ଥିବା ତାହାଙ୍କର ପ୍ରଥମେ ବିଶ୍ୱାସ ଥିଲା ଏବଂ ସେ ଏହି ବିଶ୍ୱାସ ବଳରେ ହଣ୍ଟରଙ୍କୁ ଏହା ବୁଝାଇ ଦେଇଥିଲେ । ତାହାଙ୍କ ଗ୍ରନ୍ଥର ପ୍ରଥମ ଭାଗ ଲେଖିବାବେଳେ ତାହାଙ୍କର ଏହି ବିଶ୍ୱାସ ଥିବାରୁ ସେ ଲେଖିଅଛନ୍ତି ଯେ, ପ୍ରତିଷ୍ଠା ପୂର୍ବରୁ ମନ୍ଦିର ଭାଙ୍ଗି ଯାଇଥିଲା * । କିନ୍ତୁ କାଳକ୍ରମେ ବିଶେଷ ଚିନ୍ତା ପରେ ତାହାଙ୍କର ଉପରୋକ୍ତ ବିଶ୍ୱାସ ଭ୍ରମାତ୍ମକ ମନେ କରି ସେ କହନ୍ତି, ''୫ମ, ୬ଷ୍ଠ ବା ୭ମ ଶତାବ୍ଦୀରେ ଏହି ସ୍ଥାନରେ ହିନ୍ଦୁ ଉପାସନା ଚଳିଲା ଦିନରୁ କୋଣାର୍କଦେବ ପ୍ରତିଷ୍ଠିତ ହୋଇଥିଲେ । ଗଙ୍ଗରାଜା ନରସିଂହଦେବ ତାହାଙ୍କୁ ଅଧିକ ଆଡ଼ମ୍ବରରେ ରଖାଇବା ନିମନ୍ତେ କୋଣାର୍କରେ ବର୍ତ୍ତମାନ ମନ୍ଦିର ନିର୍ମାଣ କରାଇଥିଲେ । ଏହି ମନ୍ଦିର ଶେଷ ହେବା ସଙ୍ଗେ ସଙ୍ଗେ ଦେବପ୍ରତିଷ୍ଠା ନିଶ୍ଚୟ ହୋଇଥିବ । ଆବୁଲଫଜଲଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ, ତିନି ଶତାବ୍ଦୀ ପର୍ଯ୍ୟନ୍ତ ଏ ସ୍ଥାନର ମହିମା ଅକ୍ଷୁର୍ଣ୍ଣ ଭାବରେ ଚଳୁଥିଲା ଏବଂ ସପ୍ତଦଶ ଶତାବ୍ଦୀର ପ୍ରାରମ୍ଭରେ ଏହା ପରିତ୍ୟକ୍ତ ହେଲା । ଏତେ କାଳ ଦେବ ପ୍ରତିଷ୍ଠା କରା ନ ଯାଇ ମନ୍ଦିର ରଖିଥିବା ଅସମ୍ଭବ ।'' ** ରାଜେନ୍ଦ୍ର ଲାଲଙ୍କର ଭ୍ରମପୂର୍ଣ୍ଣ ଏହି ପ୍ରଥମ ମତ ଉପରେ ବିଶ୍ୱାସ କରିଥିବାରୁ ହଣ୍ଟରଙ୍କ ଅନୁମାନ ନିତାନ୍ତ ଅମୂଳକ ହେବା କଥା *** ।

* "The new structure (the present temple), however, fell down before it was consecrated, and was never built." – Antiquities of Orissa, Vol. I. P. 158.

** "I was at first indeed to think that the fall took place before the consecration of the temple and communicated the opinion to Dr. Hunter, but after mature consideration, I am forced to a different conclusion. The age of the immages of the sun and the moon must date from the time, the place was appropriated to Hindu worship in the 5th, 6th or the 7th century, and the Gangetic king Languliya Narasinh built the great temple for their better accommodation. The consecration, therefore, must have taken place immediately after its completion, etc." – Antiquities of Orissa. Vol. II. P. 151.

*** ହଣ୍ଟର ସ୍ୱୀକାର କରନ୍ତି – "I am indebted for this explanation to Babu Rajendra Lal Mitra." – Orissa. Vol. I. P. 289. F. N.

ଏହିରୂପେ କୋଣାର୍କ ପତନର କାରଣ ଅନୁମାନ କରିବାକୁ ଯାଇ ଲେଖକମାନେ ପ୍ରମାଦ ଉପରେ ପ୍ରମାଦ ଘଟାଇ ଅଛନ୍ତି ମାତ୍ର । ଏହିସବୁ ଅନୁମାନ ଦ୍ୱାରା ସେମାନଙ୍କର ବ୍ୟକ୍ତିଗତ ଅନୁସନ୍ଧିତ୍ସା ପରିତୃପ୍ତ ହୋଇଅଛି ସତ; କିନ୍ତୁ ପ୍ରକୃତ ତଥ୍ୟ ଆବିଷ୍କାର କରିବା ବିଷୟରେ ସେ ସମୁଦାୟ କେବଳ ନିରର୍ଥକ । ପକ୍ଷାନ୍ତରେ ଦେଉଳର ଗଠନ ନୀତି ଅନୁସରଣ କଲେ ତାହାର ପତନର ପ୍ରକୃତ କାରଣ ଜଣା ପଡ଼ିବ । ଓଡ଼ିଶାର ପ୍ରଧାନ ପ୍ରଧାନ ମନ୍ଦିରମାନ ରେଖ ଦେଉଳ । ବାଡ଼ ଉପରେ ବାଡ଼ର ଦୁଇ ଗୁଣ ଉଚ୍ଚରେ ଦେଉଳର ରେଖାଂଶ ଭିତର ଆଡ଼କୁ କ୍ରମବକ୍ର ହୋଇ ଗଠିତ ହୋଇଥାଏ । କୋଣାର୍କ ବଡ଼ଦେଉଳର ଗଠନ ମଧ୍ୟ ଏହିରୂପ । ପୂର୍ବବର୍ତ୍ତୀ ଅଧ୍ୟାୟରେ କୁହାଯାଇଅଛି ଯେ, ଏହି ରେଖାଂଶର ସ୍ଥାୟିତ୍ୱ ନିମନ୍ତେ ପ୍ରତ୍ୟେକ ପଥର ଖଣ୍ଡର ଓ ତାହା ସଙ୍ଗେ ସଙ୍ଗେ ପ୍ରତ୍ୟେକ ବକ୍ର କାନ୍ଥର ଏବଂ ପରିଶେଷରେ ସମୁଦାୟ ମନ୍ଦିରର ଭାରକେନ୍ଦ୍ର ସ୍ଥିର ରଖିବା ଆବଶ୍ୟକ । ପୁଣି ପ୍ରତ୍ୟେକ କାନ୍ଥ ତାହାର ପାର୍ଶ୍ୱବର୍ତ୍ତୀ ଦୁଇ କାନ୍ଥଦ୍ୱାରା ସ୍ଥିର ରହେ । ଏହିରୂପେ ପ୍ରତ୍ୟେକ କାନ୍ଥ ଉପରେ ଦୁଇଟି ଶକ୍ତି କାର୍ଯ୍ୟ କରେ; ଗୋଟିଏ ମାଧ୍ୟାକର୍ଷଣର ପ୍ରଭାବ ଏବଂ ଅପରଟି ମାଧ୍ୟାକର୍ଷଣକୁ ପ୍ରତିହତ କରିବା ପାଇଁ ପାର୍ଶ୍ୱବର୍ତ୍ତୀ ଦୁଇ କାନ୍ଥର ସଂଘର୍ଷ; କିନ୍ତୁ ମାଧ୍ୟାକର୍ଷଣକୁ ପ୍ରତିହତ କରିବା ପାଇଁ ଉକ୍ତ ଦୁଇ କାନ୍ଥର ସଂଘର୍ଷ ଯଥେଷ୍ଟ ନୁହେଁ; କାରଣ ସେହି ଦୁଇ କାନ୍ଥ ଉପରେ ମଧ୍ୟ ମାଧ୍ୟାକର୍ଷଣ ସମପରିମାଣରେ କାର୍ଯ୍ୟ କରେ । ସୁତରାଂ ଚାରି କାନ୍ଥର ଭାରକେନ୍ଦ୍ର ଲକ୍ଷ୍ୟ କରି ସେମାନଙ୍କୁ ସ୍ଥିର ରଖିବା ନିମନ୍ତେ ଊର୍ଦ୍ଧ୍ୱଚାପ ଆବଶ୍ୟକ । ସେହି ହେତୁରୁ ଦେଉଳମାନଙ୍କ ଉପରେ ଗୁରୁଭାର ବିଶିଷ୍ଟ ଆମଳକଶିଳା, କଳସ ପ୍ରଭୃତିର ପ୍ରୟୋଜନ ହେଉଥିଲା । ଯଦି ଏହି ଭାର ଦେଉଳ ଉପରୁ କୌଣସି କ୍ରମେ ବାହାର କରି ନିଆଯାଏ, ତାହାହେଲେ କାନ୍ଥଗୁଡ଼ିକ ଭିତର ଆଡ଼କୁ ଭାଙ୍ଗିପଡ଼ିବା ସ୍ୱାଭାବିକ ଏବଂ କାନ୍ଥ ଭିତର ଆଡ଼କୁ ଯେ ପରିମାଣରେ ବକ୍ର, ତାହାର ଭାଙ୍ଗିପଡ଼ିବା ସେ ପରିମାଣରେ ନିଶ୍ଚିତ ଓ ଶୀଘ୍ର । ଆମଳକଶିଳା ଓ କଳସ ସଙ୍ଗେ ସଙ୍ଗେ କାନ୍ଥକୁ ସ୍ଥାୟୀ ରଖିବା ନିମନ୍ତେ ଦେଉଳ ଭିତରେ ଯଦି ଖମ୍ବ ତିଆର କରାଯାଏ, ତାହାହେଲେ ମିଷ୍ଟର ମର୍ଚ୍ଚାଣ୍ଡ ଓ କେମେଡ଼ିଙ୍କ ପ୍ରମାଣରୁ ଯେପରି ଜଣାଯାଏ, କାନ୍ଥଗୁଡ଼ିକ ମଧ୍ୟ ଭାଙ୍ଗିପଡ଼ିବ; କାରଣ ଖମ୍ବର ଆଶ୍ରୟ ଦ୍ୱାରା କଳସ ପ୍ରଭୃତିର ନିମ୍ନଚାପ ପ୍ରତିହତ ଓ ନିରର୍ଥକ ହୋଇଯାଇ ଦେଉଳ ଭାଙ୍ଗିପଡ଼ିବାର ନିଶ୍ଚୟ ।

ଓଡ଼ିଶାର ଶେଷ ହିନ୍ଦୁ ରାଜା ମୁକୁନ୍ଦଦେବଙ୍କ ରାଜତ୍ୱକାଳରେ ୧୫୬୮ ଖ୍ରୀଷ୍ଟାବ୍ଦରେ କଳାପାହାଡ଼ ଓଡ଼ିଶା ଆକ୍ରମଣ କରିଥିଲା । ଯୁଦ୍ଧରେ ମୁକୁନ୍ଦଦେବ ନିହତ ହୁଅନ୍ତେ, କଳାପାହାଡ଼ ଓଡ଼ିଶାର ନାନା ମନ୍ଦିର ଧ୍ୱଂସ କରିବାରେ ବ୍ୟାପୃତ ହେଲା । ଯାଜପୁର ଓ ଭୁବନେଶ୍ୱରରେ କେତେ ଭଗ୍ନମୂର୍ତ୍ତି ଓ ମନ୍ଦିରରେ କଳାପାହାଡ଼ର ଅତ୍ୟାଚାର ଦେଖିବାକୁ ମିଳେ । ତାହାର ଏହି ପାଶବ ପ୍ରବୃତ୍ତି କେବଳ ଯାଜପୁର ଓ ଭୁବନେଶ୍ୱରରେ ପରିତୃପ୍ତ ହୋଇ

ନ ଥିଲା । ମାଦଳାପାଞ୍ଜିର ପ୍ରମାଣ ଅନୁସାରେ * କଳାପାହାଡ଼ କୋଣାର୍କର ରମଣୀୟ ଓ ବିରାଟ ମନ୍ଦିର ମଧ୍ୟ ଆକ୍ରମଣ କରିଥିଲା । କୋଣାର୍କ ମନ୍ଦିର ସର୍ବଶ୍ରେଷ୍ଠ ଥିବାରୁ ସେ ତାହାକୁ ଭାଙ୍ଗି ଏକାବେଳକେ ଭୂମିସାତ୍ କରିଦେବା ନିମନ୍ତେ ବାରମ୍ବାର ଚେଷ୍ଟା କରିଥିଲା; କିନ୍ତୁ ପାରିଲା ନାହିଁ । ପାରି ନ ଥିବାର କଥା । ସେ ଯୁଗର ଅସ୍ତ୍ରଶସ୍ତ୍ର ବା ଗୁଳାଗୁଳି କୋଣାର୍କ ମନ୍ଦିର ପରି ୨୦।୨୫ ଫୁଟ ମୋଟା ଏବଂ ପ୍ରକାଣ୍ଡ ଶିଳାରେ ଗଠିତ କାନ୍ଥ ଭାଙ୍ଗିବା ନିମନ୍ତେ ଆଦୌ ସମର୍ଥ ନ ଥିଲା । କୋଣାର୍କ ତ ଦୂରର କଥା, ବୁଦ୍ଧଗୟାର ମନ୍ଦିର କେବଳ ଇଟାରେ ନିର୍ମିତ; ତାହା ମଧ୍ୟ ସେ ଯୁଗର ଅସ୍ତ୍ରଶସ୍ତ୍ର ଦ୍ୱାରା ଭଙ୍ଗା ହୋଇ ପାରି ନ ଥିଲା ** । ଭରତପୁରର ମାଟି ପ୍ରାଚୀର ଭାଙ୍ଗିବା ନିମନ୍ତେ ଲର୍ଡ୍ ଓୟେଲସଲୀଙ୍କ ସମୟରେ ୧୮୦୫ ଖ୍ରୀଷ୍ଟାବ୍ଦରେ ବର୍ତ୍ତମାନ ଯୁଗର ଅସ୍ତ୍ରଶସ୍ତ୍ରଦ୍ୱାରା ଚାରି ବାର ଚେଷ୍ଟା ହୋଇଥିଲା; କିନ୍ତୁ ତଥାପି ଉକ୍ତ ମାଟି ପ୍ରାଚୀର ଦୁର୍ଭେଦ୍ୟ ବୋଲି ପରିତ୍ୟକ୍ତ ହେଲା । ପୁନରାୟ ୧୮୨୭ ଖ୍ରୀଷ୍ଟାବ୍ଦରେ ଲର୍ଡ୍ ଆମହର୍ଷ୍ଟଙ୍କ ସମୟରେ ତାହା ଉପରେ ଆହୁରି ଏକ ଚେଷ୍ଟା ହୋଇଥିଲା । ଏହିବାର ୧୦୦୦୦ ପାଉଣ୍ଡ (୫୦୦୦ ସେର ବା ୧୨୫ ମହଣ) ବାରୁଦ ଉକ୍ତ ପ୍ରାଚୀର ତଳେ ପୋତି ନିଆଁ ଲଗାଇ ଦେବାରୁ ପ୍ରାଚୀର ଦେହରୁ ଖଣ୍ଡେ ମାତ୍ର ଫାଟି ଯାଇଥିଲା । କଟକର ବାରବାଟୀ ଦୁର୍ଗ ଇଂରେଜମାନେ ୪।୫ ଦିନ ପର୍ଯ୍ୟନ୍ତ ଅବରୋଧ କରି ଦୁର୍ଗର ସାମାନ୍ୟ ପଥର କାନ୍ଥ ଭାଙ୍ଗି ନ ପାରି ଶେଷରେ ଗୋଟିଏ ଛୋଟ ଦ୍ୱାର ମାତ୍ର ଭାଙ୍ଗି ଦେଇଥିଲେ *** । ଏହି ସମସ୍ତ ବର୍ତ୍ତମାନ ସଭ୍ୟଯୁଗର ବିଜ୍ଞାନୋନ୍ନତ ଗୋଳା ବାରୁଦର କାର୍ଯ୍ୟ । ସୁତରାଂ ସେ ଯୁଗର ଗୋଳା ବାରୁଦରେ କୋଣାର୍କ ମନ୍ଦିରର ୨୦।୨୫ ଫୁଟ ମୋଟା ପ୍ରକାଣ୍ଡ ଶିଳାନିର୍ମିତ କାନ୍ଥ ଭାଙ୍ଗିବା କିପରି ଅସାଧ, ତାହା ସହଜରେ ଅନୁମେୟ ।

ଅତଏବ କଳାପାହାଡ଼ ତାହାର ସମସ୍ତ ଦୂରନ୍ତ ସେନା ଓ ଅସ୍ତ୍ରଶସ୍ତ୍ର ସତ୍ତ୍ୱେ କୋଣାର୍କ ମନ୍ଦିର ଭାଙ୍ଗିବାକୁ ସମର୍ଥ ହୋଇ ନ ଥିଲା । ମାଦଳାପାଞ୍ଜି କହେ ଯେ, ମନ୍ଦିର ଭାଙ୍ଗି ନ ପାରି କଳାପାହାଡ଼ କେବଳ ତାହାର କଳସ ଓ ଧ୍ୱଜପଦ୍ମ ବାହାର କରିନେଲା । ମନ୍ଦିର ଭାଙ୍ଗିବାରେ କଳାପାହାଡ଼ର କେବଳ ଧ୍ୱଂସ ପ୍ରବୃତ୍ତିର ଚରିତାର୍ଥ ହେବାର କଥା ଏବଂ ତାହା ଏଡ଼େ ଅସାଧ ଥିବା ସ୍ଥଳେ କେବଳ ଆମଳକଶିଳା ଭାଙ୍ଗିଦେଲା । ମନ୍ଦିରର ସ୍ଥାୟୀତ୍ୱ ସମ୍ବନ୍ଧରେ ଆମଳକଶିଳାର ବୈଜ୍ଞାନିକ ସମ୍ବନ୍ଧ ବୁଝି ସେ ଭାଙ୍ଗୁ ବା ନ ଭାଙ୍ଗୁ ଆମଳକଶିଳାରେ ଗଚ୍ଛିତ ଅର୍ଥଲୋଭର ବଶବର୍ତ୍ତୀ ହୋଇ ତାହା ଭାଙ୍ଗିଥିବା ବିଶେଷ ସମ୍ଭବ । ସାଧାରଣତଃ ମନ୍ଦିରମାନଙ୍କର ଆମଳକଶିଳାରେ ପ୍ରଭୂତ ଧନ ଗଚ୍ଛିତ ରଖି ମନ୍ଦିର ମୁଦ କରାଯାଇଥାଏ । ସତ୍ୟବାଦୀର ବର୍ତ୍ତମାନ ମନ୍ଦିର ମୁଦା ଅଦ୍ୟାପି ଲୋକସ୍ମୃତିରେ ଅଛି । ଶୁଣାଯାଏ,

* Konarka. P. 97.

** Antiquities of Orissa. Vol. II. P. 151.

*** ମୋର 'ବାରବାଟୀ ଦୁର୍ଗ', ୭ମ ଅଧ୍ୟାୟ ।

ଶ୍ରୀ ଲକ୍ଷ୍ମୀନାରାୟଣ ବ୍ରହ୍ମଚାରୀ ସ୍ୱୟଂ ବହୁ ସ୍ୱର୍ଣ୍ଣ ଓ [illegible] ଧରି ନିଜେ ଉଠି ମନ୍ଦିର ଉପରେ ରଖିଦେଇ ଆସିଥିଲେ । ୧୯୧୭ ଖ୍ରୀଃ ଜୁଲାଇ ୩ ତାରିଖରେ ବ୍ରହ୍ମଦେଶର ପେଗୁରେ ଭୂମିକମ୍ପଦ୍ୱାରା ଶ ମ ଡ଼ (Shaw Hmaw Daw Pagoda) ମନ୍ଦିର ଭାଙ୍ଗିଗଲା; ତାହାର ଅଗ୍ରଭାଗରେ ଟ ୧୦୦୦୦ (ଦଶ ହଜାର)ର ଖଣ୍ଡିଏ ହୀରା ଏବଂ ଏକ ଲକ୍ଷ ଟଙ୍କାର ସ୍ୱର୍ଣ୍ଣରତ୍ନାଦି ଗଚ୍ଛିତ ଥିବାର ଦେଖାଯାଉଥିଲା * । ଆମଳକଶିଳା କଳାପାହାଡ଼ ନେଇ ଯାଇଥିଲା କି ନାହିଁ ସନ୍ଦେହ; ତେବେ ପ୍ରାୟ ୧୬୨୮ ଖ୍ରୀଷ୍ଟାବ୍ଦରେ ରାଜା ନରସିଂହଦେବଙ୍କ ଆଦେଶରେ ଦେଉଳ ମାପ ହେଲା ସମୟକୁ ଆମଳକଶିଳା ନ ଥିଲା; କାରଣ ନରସିଂହଦେବଙ୍କ ମାପ ତାଲିକାରେ ଆମଳକଶିଳା ପର୍ଯ୍ୟନ୍ତ ଦେଉଳର ମାପ ଦିଆଯାଇଅଛି । ଆମଳକଶିଳା ଉପରକୁ ଦେଉଳର ପ୍ରକୃତ ମାପ ଲେଖାଯାଇ ନାହିଁ । ଅନୁମାନ କରାଯାଏ, କଳାପାହାଡ଼ ଆମଳକଶିଳା ନେଇ ଯାଇ ପାରି ନ ଥିଲେ ମଧ୍ୟ ଆକ୍ରମଣଦ୍ୱାରା ତାହାକୁ ଏପରି ବିଧ୍ୱସ୍ତ ଓ ସ୍ଥାନଭ୍ରଷ୍ଟ କରି ଦେଇଥିଲା ଯେ, ତାହାର ପ୍ରତ୍ୟାଗମନ ପରେ ତାହା ଆପେ ଆପେ ଖସି ପଡ଼ିଲା ଏବଂ ୧୬୨୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଦେଉଳ ଉପରେ ତାହାର ଅବଶେଷ ନ ଥିଲା । ଏହିରୂପେ ଆମଳକଶିଳା ଓ କଳସ ପ୍ରଭୃତିର ଅଭାବରୁ ଊର୍ଦ୍ଧ୍ୱଚାପବିହୀନ ହୋଇ ଦେଉଳ ରେଖାଂଶ କ୍ରମେ କ୍ରମେ ଭାଙ୍ଗି ପଡ଼ିବାକୁ ଲାଗିଲା ** । ଏଥିରେ ପୁଣି ମୁସଲମାନ ଆକ୍ରମଣ ଦ୍ୱାରା ଦେଉଳ ଅପବିତ୍ର ହୋଇଯିବାରୁ ସୂର୍ଯ୍ୟନାରାୟଣ ସ୍ଥାନାନ୍ତରିତ ହେଲେ ଏବଂ କୋଣାର୍କରେ ଭୋଗ ଓ ଯାତ୍ରା ସବୁ ବନ୍ଦ ରହିଲା । କାଳେ କାଳେ ଏହିପରି ପରିତ୍ୟକ୍ତ ଅବସ୍ଥାରେ ରହିବାରୁ ଏବଂ ରାଜାଙ୍କର ଯତ୍ନ କମିଯିବାରୁ ଦେଉଳ ଆସ୍ତେ ଆସ୍ତେ ଭିତର ଆଡ଼କୁ ଭାଙ୍ଗି ପଡ଼ିଲା । ମୁଖଶାଳାର କିନ୍ତୁ ବିଶେଷ କ୍ଷତି ହୋଇ ନ ଥିଲା ।

କଳାପାହାଡ଼ର କୋଣାର୍କ ଆକ୍ରମଣ ସ୍ୱୀକାର କଲେ ବିଶ୍ୱାସ କରିବାକୁ ହେବ ଯେ, ଏହି ଅଧ୍ୟାୟର ପ୍ରାରମ୍ଭରେ ଯେଉଁ କିମ୍ବଦନ୍ତୀର ଉଲ୍ଲେଖ କରାଯାଇଅଛି, ତାହା ଦେଉଳ ପତନର କାରଣ ନିର୍ଦ୍ଦେଶ କରିବାରେ ନିତାନ୍ତ ପ୍ରମାଦଜନକ ନୁହେଁ । ବଡ଼ଦେଉଳ ଉପରେ କୁମ୍ଭପଥର ଥିଲା ଏବଂ ସମୁଦ୍ର ଯାତ୍ରୀମାନଙ୍କ ନିମନ୍ତେ ବର୍ତ୍ତମାନ କୋଣାର୍କର ମୁଖଶାଳା ଯେପରି, ବଡ଼ଦେଉଳ ପୂର୍ବେ ସେହିପରି ଗୋଟିଏ ଉତ୍କୃଷ୍ଟତର ନିଦର୍ଶନ ସ୍ତମ୍ଭରୂପେ କାର୍ଯ୍ୟ କରୁଥିଲା । କିମ୍ବଦନ୍ତୀର ତୃତୀୟ ବିଷୟ – ମୁସଲମାନମାନଙ୍କ ଦ୍ୱାରା ମନ୍ଦିର ଆକ୍ରମଣ । କଳାପାହାଡ଼ ଓ ତାହାର ସୈନ୍ୟଗଣ ମୁସଲମାନ; ସେମାନେ କିପରି କୋଣାର୍କ ଆକ୍ରମଣ କରିଥିଲେ, ଉପରେ ତାହା ପ୍ରମାଣ ହେଲା । ବଡ଼ଦେଉଳ ଭାଙ୍ଗି ନ ପାରି ତାହା ଉପରୁ

---

* The Statesman of 19-9-17.

** ଶ୍ରୀଯୁକ୍ତ ମନମୋହନ ଗାଙ୍ଗୁଲୀ ଓ ଶ୍ରୀ ବିଷନ୍ ସ୍ୱରୂପ ଉପରୋକ୍ତ ପ୍ରକାରରେ ମନ୍ଦିର ପତିତ ହୋଇଥିବାର ବିଶ୍ୱାସ କରିଅଛନ୍ତି । – Orissa and Her Remains. P. P. 456-57 and Konarka. P. P. 97-98.

କୁମ୍ଭପଥର ବା କଳସ କଳାପାହାଡ଼ ନେଇଗଲା; ସୁତରାଂ ଉପର ଭାର ଅଭାବରୁ ଦେଉଳର ରେଖାଂଶ ଆପେ ଆପେ କାଳକ୍ରମେ ଭାଙ୍ଗିଯିବାର ଆରମ୍ଭ ହେଲା । ଏହା ଉକ୍ତ କିମ୍ବଦନ୍ତୀର ଚତୁର୍ଥ ଓ ପଞ୍ଚମ ବିଷୟ । ମୁସଲମାନ ଦ୍ୱାରା ମନ୍ଦିର ଏହିରୂପେ ଅପବିତ୍ର ହେବାରୁ ପଣ୍ଡାମାନେ କୋଣାର୍କଦେବଙ୍କୁ କେତେକ ଦିନ ସ୍ଥାନାନ୍ତରରେ ଲୁଚାଇ ରଖିଲେ ଏବଂ କୋଣାର୍କର ପୂଜା ଓ ଯାତ୍ରା ସମସ୍ତ ବନ୍ଦ ହୋଇଗଲା । ପରେ ପ୍ରାୟ ୧୬୨୭-୨୮ ଖ୍ରୀଷ୍ଟାବ୍ଦରେ (ରାଜାଙ୍କର ୯ ଅଙ୍କ ମୀନ ୨୧ ଦିନ ସୋମବାର ଯେଉଁଦିନ ଦିଲ୍ଲୀ ସମ୍ରାଟ * ଓଡ଼ିଶା ସୁବା ବାକର ଖାଁଙ୍କୁ ଦେଲେ) ରାଜା ରାମଚନ୍ଦ୍ରଦେବଙ୍କର ପୌତ୍ର ଓ ରାଜା ପୁରୁଷୋତ୍ତମଦେବଙ୍କର ପୁତ୍ର ରାଜା ନରସିଂହଦେବ (୧୬୨୨-୧୬୪୬) କୋଣାର୍କ ଦର୍ଶନ ନିମନ୍ତେ ଯାତ୍ରା କଲେ (୧୬୨୬-୨୭) । ସେହି ସମୟରେ କୋଣାର୍କର ସମୁଦାୟ ମନ୍ଦିରଗୁଡ଼ିକର ମାପ କରା ଯାଇଥିଲା । ରାଜା କୋଣାର୍କର ସୂର୍ଯ୍ୟନାରାୟଣ ମୂର୍ତ୍ତି ଓ ତାହାଙ୍କ ଚଳନ୍ତି ପ୍ରତିମା ଚନ୍ଦ୍ର ଓ ସୂର୍ଯ୍ୟ ବିଗ୍ରହ ଘେନି ଆସି ଜଗନ୍ନାଥଙ୍କ ବେଢ଼ା ମଧ୍ୟସ୍ଥ ଇନ୍ଦ୍ରଙ୍କ ମନ୍ଦିରରେ ସ୍ଥାପନ କଲେ । ଏହା କିମ୍ବଦନ୍ତୀର ଷଷ୍ଠ ଓ ସପ୍ତମ ବିଷୟ । ଅତଏବ ଯେଉଁମାନେ ଉକ୍ତ କିମ୍ବଦନ୍ତୀକୁ କେବଳ ପ୍ରମାଦମୟ ବିଚାରି ଉପେକ୍ଷା କରିଅଛନ୍ତି, ସେମାନେ କୋଣାର୍କ ପତନର କାରଣ ସ୍ଥିର କରିବାକୁ ଯାଇ ଉପରୋକ୍ତ ପ୍ରକାରରେ ଅସାର ପ୍ରଳାପ କରିଅଛନ୍ତି ମାତ୍ର । କିମ୍ବଦନ୍ତୀରେ କୌଣସି ମିଥ୍ୟା ନାହିଁ; କେବଳ ମିଥ୍ୟା ଚୁମ୍ବକ-ହରଣ ଏବଂ କୋଣାର୍କ ଆକ୍ରମଣକାରୀ ମୁସଲମାନ ନାବିକ । କୁମ୍ଭପଥର ବା କଳସକୁ ଚୁମ୍ବକ ଅର୍ଥ କରିବା ଏବଂ କୋଣାର୍କ ନାବିକମାନଙ୍କ ପକ୍ଷରେ ନିଦର୍ଶନ ସ୍ତମ୍ଭ ରୂପେ ଥିବାର ଅଧ୍ୟାୟ ଆରମ୍ଭରେ କୁହାଯାଇଅଛି । ଏପରି ଅବସ୍ଥାରେ ଜାହାଜର ଗତିବିଧି ସହିତ କୋଣାର୍କର ସମ୍ବନ୍ଧ ଏତେ ଥିବା ସ୍ଥଳେ କୋଣାର୍କ ଆକ୍ରମଣକାରୀ ଓ କୁମ୍ଭପଥର ଅପହରଣକାରୀ ମୁସଲମାନମାନଙ୍କୁ କୌଣସି ଜାହାଜର ନାବିକ ଏବଂ କୁମ୍ଭପଥର ଦ୍ୱାରା ଜାହାଜ ସ୍ଥଗିତ ରହୁଥିବାର କାଳକ୍ରମେ ଅନୁମାନ କରିନେବା ଲୌକିକ କଳ୍ପନା ପକ୍ଷରେ ବିଶେଷ କିଛି ବିଚିତ୍ର ନୁହେଁ ।

ଏହିରୂପେ ବଡ଼ଦେଉଳର ପତନ ଅନିବାର୍ଯ୍ୟ ହେଲା । ଦେଉଳର ଉପରିଭାଗରୁ କ୍ରମେ କ୍ରମେ ପଥର ଖଣ୍ଡମାନ ଖସିବାକୁ ଲାଗିଲା । କୋଣାର୍କରେ କିପରି ବିଶାଳ

---

* ଶ୍ରୀ ବିଷନ୍ ସ୍ୱରୂପ ଉକ୍ତ ଦିଲ୍ଲୀ-ସମ୍ରାଟଙ୍କୁ ଶାହାଜାହାନ ଧରିଅଛନ୍ତି । ଶାହାଜାହାନ ଉକ୍ତ ସମୟରେ ବାକର ଖାଁଙ୍କୁ ଓଡ଼ିଶା ସୁବା ଦେଇଥିବାର କେହି କେହି ସ୍ୱୀକାର କରନ୍ତି ନାହିଁ । (Hunter's Orissa. Vol. II. Appendix VIII) । ନରସିଂହଦେବଙ୍କ ମାଦଳାପାଞ୍ଜି ଅନୁସାରେ ୧୬୨୨ ରୁ ୧୬୪୬ (Puri Gazetteer, P. 47.) ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଶ୍ରୀଯୁକ୍ତ ମନମୋହନ ଚକ୍ରବର୍ତ୍ତୀ ତାହାଙ୍କୁ ୧୬୨୨ ରୁ ୧୬୪୬ ଖ୍ରୀଷ୍ଟାବ୍ଦ ମଧ୍ୟରେ ରଖନ୍ତି । ୯ ଅଙ୍କକୁ ପାଞ୍ଚ ଛଅ ବର୍ଷ ଅତୀତ ହୋଇଥିଲା; ସୁତରାଂ ନରସିଂହଦେବଙ୍କର କୋଣାର୍କ ଦର୍ଶନର କାଳ ତଦନୁସାରେ ସ୍ଥିର କରିବାକୁ ହେବ ।

ଶିଳାରାଶିରେ କାମ ହୋଇଥିଲା, ପୂର୍ବବର୍ତ୍ତୀ ଅଧ୍ୟାୟରେ ତାହାର ବୃତ୍ତାନ୍ତ ଦିଆଯାଇଅଛି । ସେହିସବୁ ଶିଳାମାନଙ୍କର ପତନ ଆଘାତରେ ବଡ଼ଦେଉଳର କାନ୍ଥ ଦୁର୍ବଳରୁ ଦୁର୍ବଳତର ହେଲା । ପ୍ରକାଣ୍ଡ ଗଜସିଂହ ଶିଳା ଆମଳକଶିଳାର ୨୧ ଫୁଟ ମାତ୍ର ନିମ୍ନରେ ମୁଖଶାଳାର ଉପରକୁ ଥିଲା । ବଡ଼ଦେଉଳର କାନ୍ଥ ଉପରେ ତାହାର ଭାର (ପୂର୍ବେ ଯେପରି କୁହାଯାଇଅଛି) ପ୍ରାୟ ୪୫ ଟନ ପର୍ଯ୍ୟନ୍ତ ଥିଲା । ତାହା ଭୂମିରେ ପଡ଼ିଲାବେଳେ ନିକଟବର୍ତ୍ତୀ ସ୍ଥାନମାନଙ୍କରେ ଯେ ଭୂମିକମ୍ପ ହୋଇ ଯାଇଥିବ ସନ୍ଦେହ ନାହିଁ । ତାହା ପ୍ରଥମେ ମୁଖଶାଳାର ଚାଳ ଉପରେ ପଡ଼ି ଗଡ଼ି ଗଡ଼ି ଯାଇ ଦେଉଳର ଉତ୍ତର ପାର୍ଶ୍ୱରେ ପଡ଼ିଲା । ତାହାର ଆଘାତରେ ମୁଖଶାଳାର ଚାଳ ନାନା ସ୍ଥାନରେ ଭାଙ୍ଗି ଯାଇଥିଲା ଏବଂ ତାହାଦ୍ୱାରା ଚାଳର ଭାରକେନ୍ଦ୍ର ବିଚଳିତ ହୋଇଯିବାରୁ ଦକ୍ଷିଣ ଓ ଦକ୍ଷିଣ-ପଶ୍ଚିମ ପାଖର ଚାଳ ବିଶେଷ ନଷ୍ଟହୋଇ ଯାଇଥିଲା । ଏହିପରି ବିଶାଳ ଶିଳାମାନଙ୍କ ଆଘାତରେ ମୁଖଶାଳାର ଜୀର୍ଣ୍ଣ ଚାଳ ଏକାବେଳକେ ଭାଙ୍ଗି ନ ଯାଇ ଯେ ରହିଲା, ତହିଁରୁ ଉକ୍ତ ଚାଳର ଦୃଢ଼ତା ସୁନ୍ଦର ଅନୁମାନ କରାଯାଇପାରେ । ୧୮୨୨ ଖ୍ରୀଷ୍ଟାବ୍ଦରେ ଷ୍ଟର୍ଲିଙ୍ଗ ଦେଖିବା ସମୟକୁ ବଡ଼ଦେଉଳର ଗୋଟିଏ କାନ୍ଥ ପ୍ରାୟ ୧୨୦ ଫୁଟ ଉଚ୍ଚରେ ଥିଲା । ଫର୍‌ଗୁସନ୍ ୧୮୩୯ ଖ୍ରୀଷ୍ଟାବ୍ଦରେ ମଧ୍ୟ ସେହି କାନ୍ଥ ସେହିପରି ଭାବରେ ଦଣ୍ଡାୟମାନ ଥିବାର ଦେଖିଥିଲେ ଏବଂ ତାହାର ଫଟୋ ନେଇଥିଲେ । ୧୮୪୮ ଖ୍ରୀଷ୍ଟାବ୍ଦର ଅକ୍‌ଟୋବର ମାସରେ ସେ ଅଞ୍ଚଳରେ ଗୋଟିଏ ପ୍ରବଳ ତୋଫାନ ହୋଇଥିଲା ଏବଂ ତାହାଦ୍ୱାରା ଉକ୍ତ ଅବଶିଷ୍ଟ କାନ୍ଥଟି ମଧ୍ୟ ଭୂମିସାତ୍ ହେଲା । ଏହି କାନ୍ଥ ପଡ଼ିବାବେଳେ ଯେଉଁ ଭୂମିକମ୍ପ ସଦୃଶ ନିକଟବର୍ତ୍ତୀ ଗ୍ରାମମାନ କମ୍ପିଥିଲା, ଲୋକେ ଅଦ୍ୟାପି ତାହା ଭୁଲିଯାଇ ନାହାନ୍ତି । ଏହାଦ୍ୱାରା ମଧ୍ୟ ମୁଖଶାଳାର ଚାଳ ଓ ଭିତର ଖମ୍ବମାନ ବହୁତ ଦବିଗଲା; ସୁତରାଂ ରାଜେନ୍ଦ୍ରଲାଲ ଓ ହଣ୍ଟର ଦେଖିଲାବେଳକୁ (୧୮୬୦-୭୦) ବଡ଼ଦେଉଳ କେବଳ ଶିଳାରାଶିରେ ପରିଣତ ହୋଇଥିଲା । ମୁଖଶାଳା ଭିତରେ ସେହି ଖମ୍ବମାନ ନ ଥିଲା ଏବଂ ଭିତର ଚାଳ ଖସି ପଡ଼ିଥିଲା । ଖମ୍ବମାନଙ୍କ ଉପରେ ଯେଉଁ କଡ଼ି ସ୍ଥାପିତ ହୋଇଥିଲା, ତାହା ସବୁ ପଡ଼ିଯାଇଥିଲା । କେତେକ କଡ଼ି ପତନୋନ୍ମୁଖ ହୋଇଥିବାର ରାଜେନ୍ଦ୍ର ଲାଲଙ୍କ ଲେଖାରୁ ଜଣାଯାଏ । ମୁଖଶାଳାର ପୀଢ଼ଚାଳ ମଧ୍ୟ ପତନୋନ୍ମୁଖ ହୋଇଥିଲା ।

୧୮୪୮ ଖ୍ରୀଷ୍ଟାବ୍ଦର ଓଡ଼ିଶା ବାପ୍‌ଟିଷ୍ଟ ମିସନର ରିପୋର୍ଟରେ ଲେଖାଅଛି, ''ଯେଉଁ ଲମ୍ବା ଓ ସରୁ କାନ୍ଥଟି ଥିଲା, ତାହା ସମୂଳେ ଉତ୍ପାଟିତ ହୋଇଗଲାଣି । ବର୍ତ୍ତମାନକୁ ମୁଖଶାଳା ବ୍ୟତୀତ କୋଣାର୍କରେ ଆଉ କୌଣସି ମନ୍ଦିର ଦେଖାଯାଏ ନାହିଁ । ଅକ୍‌ଟୋବର ମାସ ଝଡ଼ରେ ସେହି କାନ୍ଥଟି ଭାଙ୍ଗିପଡ଼ିଲା । ମୁଖଶାଳାର ଚାଳ ଖସି ପଡ଼ିବା ପ୍ରାୟ ହେଲାଣି ଏବଂ ସେହି ଚମତ୍କାର ମୁଖଶାଳା ମଧ୍ୟ ଆଉ ଅଧିକ କାଳ ରହିବ ନାହିଁ । ଅଳ୍ପ କାଳ ମଧ୍ୟରେ ସମୁଦାୟ କୋଣାର୍କ କେବଳ ଗୋଟିଏ ପ୍ରକାଣ୍ଡ ଶିଳାସ୍ତୂପରେ ପରିଣତ ହୋଇଯିବ ।

ଷ୍ଟର୍ଲିଙ୍ଗଙ୍କ ଲେଖିବା ଅନୁସାରେ ମନ୍ଦିର ପରିତ୍ୟକ୍ତ ହେବାରୁ ପାଣିପବନର ଆଘାତ ଏବଂ କ୍ଷୁଦ୍ର କ୍ଷୁଦ୍ର ଗଛଲତା ପ୍ରଭୃତିର ଚେରଦ୍ୱାରା କ୍ରମେ କ୍ରମେ ପଥରମାନ ପରସ୍ପରଠାରୁ ବିଚ୍ଛିନ୍ନ ହେବାକୁ ଲାଗିଲା । ଏଥିରେ ପୁଣି ସ୍ଥାନୀୟ ଲୋକେ ମନ୍ଦିର ଦେହରୁ ଲୁହା ଚାପୁଆଣିଗୁଡ଼ିକ ନେଇଯିବାରେ ପଥର କ୍ରମେ କ୍ରମେ ଖସି ପଡ଼ିଲା । ପରିଶେଷରେ ମରହଟ୍ଟା ରାଜକର୍ମଚାରୀମାନେ ବଡ଼ଦେଉଳର କାନ୍ଥ କେତେକ ଭାଙ୍ଗି ସେହି ପଥରଦ୍ୱାରା ପୁରୀରେ କେତେକ କ୍ଷୁଦ୍ର କ୍ଷୁଦ୍ର ମନ୍ଦିର ନିର୍ମାଣ କରାଇଥିଲେ ।

ଏହିରୂପେ ବଡ଼ଦେଉଳର ପତନ ସମ୍ପୂର୍ଣ୍ଣ ହେଲା । ମୁଖଶାଳା ମଧ୍ୟ ପତନ ପ୍ରାୟ ହୋଇଥିଲା । ଦକ୍ଷିଣପାଖ ଦ୍ୱାର ସମ୍ପୂର୍ଣ୍ଣ ଭାଙ୍ଗି ଯାଇଥିଲା । ପୂର୍ବ ଓ ଉତ୍ତର ଦ୍ୱାରର ଦ୍ୱାରବନ୍ଧ କାମ ବର୍ତ୍ତମାନ ଦେଖାଯାଏ । ପୂର୍ବ ଦ୍ୱାରର ନବଗ୍ରହପାଟ ୧୮୬୦ ଖ୍ରୀଷ୍ଟାବ୍ଦରେ ତଳଖମ୍ବ ଭାଙ୍ଗିଯିବାରୁ ଏବଂ କଡ଼ି ଖସି ପଡ଼ିବାରୁ ପୀଠ ଉପରେ ପଡ଼ିଯାଇଥିଲା । ରାଜେନ୍ଦ୍ର ଲାଲଙ୍କ ସମୟକୁ ଅର୍ଥାତ୍ ୧୮୬୮ ଖ୍ରୀଷ୍ଟାବ୍ଦକୁ କଲିକତା ନେବା ଉଦ୍ଦେଶ୍ୟରେ ପାଟ ବୁହା ହୋଇ ବେଢ଼ା ବାହାରକୁ ଯାଇଥିଲା । ସମୁଦାୟ ମୁଖଶାଳା ଦେହରେ ନାନା ଗଛ ଓ ଲତା ଜନ୍ମ ହୋଇ ଏହାକୁ ଦୁର୍ବଳରୁ ଦୁର୍ବଳତର କରି ପକାଇଥିଲା । ବଡ଼ଦେଉଳ ଓ ମୁଖଶାଳାରୁ ପଥର ଓ ଲୁହା କଡ଼ିମାନ ପଡ଼ି ପୀଠକୁ ନାନା ଭାବରେ ଭାଙ୍ଗି ପୋତି ପକାଇଥିଲା ।

ନାଟମନ୍ଦିରଟି ପ୍ରାୟ ଅକ୍ଷୁର୍ଣ୍ଣ ଥିଲା । କଳାପାହାଡ଼ର କରାଳ ଦୃଷ୍ଟି ଏହା ଉପରେ ପଡ଼ି ନ ଥିଲା । ରାଜେନ୍ଦ୍ର ଲାଲ କହନ୍ତି, * ''ବିଗତ ଶତାବ୍ଦୀର (ଅଷ୍ଟାଦଶ ଶତାବ୍ଦୀର) ମଧ୍ୟଭାଗରେ କୋଣାର୍କ ନାଟମନ୍ଦିର ଅକ୍ଷୁର୍ଣ୍ଣ ଅବସ୍ଥାରେ ମରହଟ୍ଟା ମାନଙ୍କ ଦ୍ୱାରା ପୁରୀକୁ ଆନୀତ ହୋଇ ସେଠାରେ ଭୋଗମଣ୍ଡପ ସ୍ୱରୂପ ସ୍ଥାପିତ ହୋଇଥିଲା । ଏହା ଏପରି ଯତ୍ନ ଓ କୌଶଳରେ ବୁହା ହୋଇଥିଲା ଯେ, କୋଣାର୍କ ନାଟମନ୍ଦିର ଦେହରେ ଏହା ଯେପରି ଭାବରେ ଥିଲା, ପୁରୀ ଭୋଗମଣ୍ଡପ ଦେହରେ ଅବିକଳ ସେହିପରି ଭାବରେ ସ୍ଥାପିତ ହୋଇଥିଲା । ଏକ ସ୍ଥାନରେ ନିର୍ମିତ, ପରେ ପୁଣି ସ୍ଥାନାନ୍ତରିତ ହୋଇ ସ୍ଥାପିତ ହୋଇଥିଲେ ସୁଦ୍ଧା କୌଣସି ବିଲକ୍ଷଣ ଆଦୌ ଏଥିରେ ଦେଖାଯାଏ ନାହିଁ । ନାଟମନ୍ଦିରରେ ଯେଉଁ ବିସ୍ତର କାରୁକାର୍ଯ୍ୟ ହୋଇଥିଲା, ପୂର୍ବେ ତାହା ଜଣା ଯାଇଅଛି । ଏହା କେବେ ସ୍ଥାନାନ୍ତରିତ ହେବ ବୋଲି ନିର୍ମାଣକାର କଦାପି ଭାବି ନ ଥିଲେ । ଏତେ କାରୁକାର୍ଯ୍ୟ ଦୃଷ୍ଟିରେ ସମୁଦାୟ ମନ୍ଦିରଟିକୁ ଅକ୍ଷୁର୍ଣ୍ଣ ଅବସ୍ଥାରେ ସ୍ଥାନାନ୍ତରିତ କରିବା ସାତିଶୟ କଷ୍ଟସାଧ୍ୟ । ତଥାପି ଏହା ଏପରି କୌଶଳରେ ହୋଇଥିଲା ଯେ, ମନ୍ଦିରର କୌଣସି କ୍ଷତି ହୋଇଥିଲା ପରି ଆଦୌ ଦେଖାଯାଏ ନାହିଁ ।''

ଉପରୋକ୍ତ ଉକ୍ତି ନିମନ୍ତେ ରାଜେନ୍ଦ୍ର ଲାଲ କେଉଁ ପ୍ରମାଣର ଆଶ୍ରୟ ନେଇଥିଲେ, ତାହାର କୌଣସି ଉଲ୍ଲେଖ ସେ କରି ନାହାନ୍ତି । କେବଳ ଲୋକ ମୁଖରେ ଶୁଣାଯାଏ ଯେ,

* Antiquities of Orissa. Vol. II. P. 120 and P. 150.

କୋଣାର୍କର ନାଟମନ୍ଦିର ଏକାବେଳକେ ଉଠାଇଆଣି ମରହଟ୍ଟାମାନେ ପୁରୀରେ ଭୋଗମଣ୍ଡପ ସ୍ୱରୂପ ସ୍ଥାପନ କରିଥିଲେ । ଏହା ଯେପରି ଅସମ୍ଭବ ବୋଧହୁଏ, ରାଜେନ୍ଦ୍ର ଲାଲଙ୍କପରି ସମାଲୋଚକ ଏଥିରେ ଏକାନ୍ତ ବିଶ୍ୱାସ କରିବା ମଧ୍ୟ ସେହିପରି ଆଶ୍ଚର୍ଯ୍ୟ ଲାଗେ । ପରନ୍ତୁ ନାଟମନ୍ଦିରର ଉଦ୍ଧାର ବେଳେ ଦେଖାଗଲା ଯେ, କେବଳ ଚାଳ ବ୍ୟତୀତ ମନ୍ଦିରର ବାଡ଼ ପ୍ରଭୃତି ସେହିପରି ଥିଲା । ପୂର୍ବେ କୁହାଯାଇଅଛି ଯେ, ନାଟମନ୍ଦିରର ପଶ୍ଚିମ ପାଖରେ ଚାଳର ଗର୍ଭମୁଦ୍ରା ପଦ୍ମଟି ଅଦ୍ୟାପି ପଡ଼ି ରହିଅଛି ଏବଂ ଚାଳର ଗୋଟିଏ ପାଖ ମଧ୍ୟ ଥିଲା । ଏପରି ସ୍ଥଳେ ନାଟମନ୍ଦିରଟି ପୁରୀକୁ ବୁହାହୋଇ ଯାଇଥିବାର କଦାପି ସତ୍ୟ ବୋଲି ଗ୍ରହଣ କରାଯାଇ ନ ପାରେ । ବୋଧହୁଏ ନାଟମନ୍ଦିରର ପୀଢ଼ଚାଳ ପଥରରୁ କେତେକ ବୁହାହୋଇ ପୁରୀର ଭୋଗମଣ୍ଡପ କାମରେ ଲାଗିଥିଲା । ସୁତରାଂ ଅନୁମାନ କରାଯାଏ ଯେ, ନାଟମନ୍ଦିର ମରହଟ୍ଟାଙ୍କ ରାଜତ୍ୱ ପର୍ଯ୍ୟନ୍ତ ଅକ୍ଷୁର୍ଣ୍ଣ ଥିଲା ଏବଂ କୋଣାର୍କର ଅନ୍ୟାନ୍ୟ ସମସ୍ତ ମନ୍ଦିର ପ୍ରାୟ ଭାଙ୍ଗି ଯାଇଥିବାରୁ ନାଟମନ୍ଦିର ସେଠାରେ ଅନାବଶ୍ୟକୀୟ ମନେକରି ମରହଟ୍ଟାମାନେ ତାହାକୁ ଭାଙ୍ଗିଦେଇ ଚାଳପୀଢ଼ର ପଥର ଅଣାଇ ପୁରୀର ଭୋଗମଣ୍ଡପ ନିର୍ମାଣ କରାଇଥିଲେ । ରାଜେନ୍ଦ୍ର ଲାଲ ଦେଖିଲା ବେଳକୁ ନାଟମନ୍ଦିର କେବଳ ଜଙ୍ଗଲ ସମାବୃତ ପଥରରାଶିରେ ପରିଣତ ହୋଇଥିଲା ।

ରାମଚଣ୍ଡୀଙ୍କ ମନ୍ଦିର କୋଣାର୍କ ବଡ଼ଦେଉଳ ସଙ୍ଗେ ଭାଙ୍ଗି ଯାଇଥିଲା । ଦ୍ୱିତୀୟ ଓ ସପ୍ତମ ଅଧ୍ୟାୟରେ ଯେଉଁ ଲୋକପ୍ରଚଳିତ କିମ୍ବଦନ୍ତୀର ଉଲ୍ଲେଖ କରା ଯାଇଅଛି, ତହିଁରୁ ସ୍ପଷ୍ଟ ପ୍ରକାଶ ଯେ, କଳାପାହାଡ଼ ରାମଚଣ୍ଡୀଙ୍କ ମନ୍ଦିର ଆକ୍ରମଣ କରିଥିଲା । କଳାକୌଶଳ ଓ ସୌନ୍ଦର୍ଯ୍ୟ ବିଷୟରେ ରାମଚଣ୍ଡୀ ମନ୍ଦିର କୋଣାର୍କ ମନ୍ଦିର ସଙ୍ଗେ ପ୍ରାୟ ସମକକ୍ଷ । ସୁତରାଂ କୋଣାର୍କ ମନ୍ଦିର ଭାଙ୍ଗି ନ ପାରି ରାମଚଣ୍ଡୀ ମନ୍ଦିର ଉପରେ ଆପଣାର ପ୍ରତିହିଂସା ଓ ପାଶବ ପ୍ରବୃତ୍ତି ଚରିତାର୍ଥ କରିଥିବା କାଳାପାହାଡ଼ ପକ୍ଷରେ ସମ୍ଭବ । ମନ୍ଦିର ଭଙ୍ଗା ହୋଇଯିବାରୁ ରାମଚଣ୍ଡୀ ସ୍ଥାନାନ୍ତରିତ ହୋଇ ଲିଆଖିଆ ମୁହାଣରେ ସ୍ଥାପିତ ହେଲେ । ରାଜେନ୍ଦ୍ର ଲାଲ ବା ତତ୍‌ପୂର୍ବବର୍ତ୍ତୀ ଲେଖକମାନଙ୍କ ବର୍ଣ୍ଣନାରେ ଏହି ମନ୍ଦିରର ଉଲ୍ଲେଖ ଦେଖାଯାଏ ନାହିଁ । କାରଣ କୋଣାର୍କ ବଡ଼ଦେଉଳର ଏହା ଏତେ ନିକଟବର୍ତ୍ତୀ ଏବଂ ବଡ଼ଦେଉଳ ପଥରଗଦା ସହିତ ଏହି ମନ୍ଦିରର ପଥରଗଦା ମିଶି ଏତେ ପରିମାଣରେ ଏକ ଗଦା ପରି ଦେଖା ଯାଉଥିଲା ଯେ, କୌଣସି ଲେଖକଙ୍କ ମନରେ ଅନ୍ୟ ଏକ ସ୍ୱତନ୍ତ୍ର ମନ୍ଦିରର ସମ୍ଭାବନା ଆଦୌ ହେଉ ନ ଥିଲା । ଉଦ୍ଧାର ପରେ ଏହି ମନ୍ଦିରର ଅବଶେଷ ଦେଖାପଡ଼ିଲା ।

କୋଣାର୍କରେ ଯେଉଁ ଅରୁଣସ୍ତମ୍ଭ ଥିଲା, ମରହଟ୍ଟାମାନେ ତାହା ନେଇ ପୁରୀ ସିଂହଦ୍ୱାର ସମ୍ମୁଖରେ ସ୍ଥାପନ କରିଅଛନ୍ତି । କୋଣାର୍କର ବେଢ଼ା ପ୍ରାଚୀର ଉପରେ ଯେଉଁ ତ୍ରିକୋଣାକାର ପଥରମାନ ଥିଲା, ତହିଁରୁ କେତେକ ଆଣି ସେମାନେ ପୁରୀ ମନ୍ଦିରର ବେଢ଼ା ପ୍ରାଚୀର ଉପରେ ବସାଇଅଛନ୍ତି ।

କୋଣାର୍କ ମନ୍ଦିର ପତନ ସମ୍ପୂର୍ଣ୍ଣ ହେଲା । ହିନ୍ଦୁ ଦେବଦେବୀଙ୍କର ପ୍ରିୟ ନିକେତନ କୋଣାର୍କ କେତେକାଳ ଦୁରନ୍ତ ପର୍ତ୍ତୁଗୀଜ୍ ଜଳଦସ୍ୟୁମାନଙ୍କର ଆଶ୍ରୟ ସ୍ଥଳ ହୋଇଥିଲା । ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀରେ ପର୍ତ୍ତୁଗୀଜ ଜଳଦସ୍ୟୁମାନେ ସମସ୍ତ ବଙ୍ଗୋପସାଗରରେ ଲୁଣ୍ଠନ କରି ଉପକୂଳରେ ଆଶ୍ରୟ ନେଉଥିଲେ । ଲୋକମୁଖରେ ବର୍ତ୍ତମାନ ଶୁଣାଯାଏ ଯେ, ସେହି ଦସ୍ୟୁମାନେ ପୁରୀ ଉପକୂଳରେ ଲୁଣ୍ଠନ ବ୍ୟବସାୟ କରି କୋଣାର୍କ ମନ୍ଦିରକୁ ପ୍ରଧାନ ଆଶ୍ରୟ ସ୍ୱରୂପ ବ୍ୟବହାର କରୁଥିଲେ । କାଳକ୍ରମେ ପାଶବ ପ୍ରକୃତି ମନୁଷ୍ୟ ପରିବର୍ତ୍ତରେ ବନ୍ୟ ପଶୁପକ୍ଷୀମାନେ ଏହାକୁ ପ୍ରଧାନ ଲୀଳାକ୍ଷେତ୍ର କରିଥିଲେ । ହଣ୍ଟରଙ୍କ ସମୟରେ ଗଧିଆ, ଭାଲୁ, ମାଙ୍କଡ଼, ସାପ, ଶାଗୁଣା ପ୍ରଭୃତି ନାନା ବୃକ୍ଷ ଓ ପଥର ଅନ୍ତରାଳରେ ରହି ଦର୍ଶକ ମନରେ କେବଳ ଆତଙ୍କ ଜନ୍ମାଉଥିଲେ । କେହି କେବେ ସାହସ କରି କୋଣାର୍କ ନିକଟକୁ ଆସିପାରୁ ନ ଥିଲେ । କେଉଁଠାରେ ଶାଗୁଣାର ଚିତ୍କାର, କେଉଁଠାରେ ଅବା ମର୍କଟର ଦନ୍ତାସ୍ଫାଳନ ଏବଂ ଅନ୍ୟତ୍ର ବିକଟ ବନ୍ୟଜନ୍ତୁଙ୍କର ଘୋର ବିକଟାଳ ରୋଳ ମୁହୁର୍ମୁହୁଃ ଦର୍ଶକମାନଙ୍କର ଧୈର୍ଯ୍ୟ ପରୀକ୍ଷା କରୁଥିଲା । ଏହିରୂପେ ପୁରାଣପୂତ କୋଣାର୍କ ଜନାକୀର୍ଣ୍ଣ ପ୍ରଧାନ ଅଭୟ ସ୍ଥଳ ପରିବର୍ତ୍ତରେ ବନ୍ୟ ହିଂସ୍ରଜନ୍ତୁପୂର୍ଣ୍ଣ କେବଳ ଭୟାକୁଳ ନିବିଡ଼ ଜଙ୍ଗଲରେ ପରିଣତ ହୋଇଗଲା ।

କୋଣାର୍କ କ୍ଷେତ୍ରର ସାଙ୍ଗ ହୋଇଅଛି । କ୍ଷେତ୍ରର ସେ ସମସ୍ତ ପୁରାଣମହିମା ଆଉ ବର୍ତ୍ତମାନ ନାହିଁ । ସ୍ୱନାମଧନ୍ୟ ଚିତ୍ରୋତ୍ପଳାର ସେ ପୁଣ୍ୟବାରି ଅନନ୍ତ ସାଗରର ପ୍ରେମାଲିଙ୍ଗନ ନିମନ୍ତେ ଆଉ ପ୍ରବାହିତ ହେଉନାହିଁ । କେବଳ ନାମମାତ୍ର ବ୍ୟତୀତ ଚନ୍ଦ୍ରଭାଗାର ସେ ପୁଣ୍ୟସ୍ରୋତ ଆଉ ଦେଖାଯାଏ ନାହିଁ । ଯାହା ଅବା ଅଛି, କେତେ କାଳ ବା ଆଉ ତାହା ରହିପାରେ ? କୋଣାର୍କର ସୂର୍ଯ୍ୟଦେବଙ୍କ ସଙ୍ଗେ ସଙ୍ଗେ ସମସ୍ତ ପୌରାଣିକ ଓ ଐତିହାସିକ ବିଭବ ଚିରକାଳ ନିମନ୍ତେ ଅସ୍ତମିତ ହୋଇଅଛି । କେତେ ଦେବଦେବୀ-ସେବିତ ସେହି ପୁଣ୍ୟଭୂମି, ବିପୁଳ ସ୍ରୋତଧୌତ ସେହି ସୁଶ୍ୟାମଳ ଜନପଦ ବର୍ତ୍ତମାନ କେବଳ ନିର୍ଜନ ଶୁଷ୍କ ମରୁପ୍ରାନ୍ତରରେ ପରିଣତ ହୋଇଅଛି । ଓଡ଼ିଆ ଜାତିର କିର୍ତ୍ତୀସ୍ତମ୍ଭ କୋଣାର୍କ ଚିରକାଳ ନିମନ୍ତେ ଅସ୍ତମିତ । ଯୁଗଯୁଗ ବ୍ୟାପୀ କେତେ ନୀରବ ସାଧନା, କେତେ ନିର୍ମମ ଅଧ୍ୟବସାୟ, କେତେ ଗଭୀର ଚିନ୍ତା ଓ ଧ୍ୟାନ କୋଣାର୍କ ଦେବଙ୍କ ସହିତ ବର୍ତ୍ତମାନ ଅନ୍ତର୍ହିତ ହୋଇଅଛି । ଓଡ଼ିଆ ଶିଳ୍ପୀଙ୍କର ସେ ଅଦ୍ଭୁତ କଳ୍ପନାର ଖେଳ, ସେ କୋମଳ ପ୍ରାଣ, ସେ ମହାଭାବ ଆଉ ଦର୍ଶକ ମନରେ ବିମଳ ଆନନ୍ଦ ଦେଉନାହିଁ । ଯାହା ପୂର୍ବେ ବାସ୍ତବ-ରାଜ୍ୟରେ କ୍ରୀଡ଼ାମାତ୍ର ଥିଲା, କୋଣାର୍କ ଶିଳ୍ପୀ ଯାହା ସାମାନ୍ୟ ପ୍ରସ୍ତର ଖଣ୍ଡକରେ ଅବଲୀଳାକ୍ରମେ ଦେଖାଇ ପାରୁଥିଲେ, ପର୍ବତରୂପୀ ବିଶାଳ ଶିଳାମାନ ଯାହା କ୍ରୀଡ଼ନକ ସ୍ୱରୂପ ବ୍ୟବହାର କରୁଥିଲେ, ବର୍ତ୍ତମାନ ଓଡ଼ିଆଙ୍କ ପ୍ରତି ସେ ସମସ୍ତ କେବଳ ଅସତ୍ୟ ଓ କପୋଳକଳ୍ପନା ପରି ପ୍ରତୀତ ହେଉଅଛି । ଆଉ କେତେ କାଳ ପରେ ଓଡ଼ିଆମାନେ ଏହାକୁ ଆପଣା ପୂର୍ବ ଗୌରବ ସ୍ୱରୂପ

ବିଶ୍ୱାସ କରିବେ କି ନାହିଁ ସନ୍ଦେହ । ବର୍ତ୍ତମାନ ମଧ୍ୟ ତଥାକଥିତ ଲେଖକମାନେ କୋଣାର୍କକୁ ଓଡ଼ିଆ ଶିଳ୍ପ ବୋଲି କହିବାକୁ କୁଣ୍ଠିତ ହେଲେଣି * । ଓଡ଼ିଆଙ୍କର ସେ ସମସ୍ତ ବିଭବ ଲୁପ୍ତ ହୋଇଅଛି ଏବଂ ସମଗ୍ର ହିନ୍ଦୁ ଜାତିର ଅନ୍ୟତମ ପୁଣ୍ୟକ୍ଷେତ୍ରର ନାମ କ୍ରମେ କ୍ରମେ ତିରୋହିତ ହୋଇଅଛି । ହିନ୍ଦୁ ଦେବଦେବୀଙ୍କ ପ୍ରିୟସ୍ଥଳୀ ସେହି କୋଣାର୍କ ଖ୍ରୀଷ୍ଟୀୟାନ ମିଶନରିମାନଙ୍କର ଧର୍ମପ୍ରଚାରର ସୁଯୋଗ୍ୟ ସ୍ଥଳ ବିବେଚିତ ହେଲା ** ଏବଂ ମିଶନରିମାନେ କୋଣାର୍କ ଦଶାରୁ ହିନ୍ଦୁ ଧର୍ମର ଅସାରତା ପ୍ରମାଣ କରିବାର ସୁବିଧା ପାଇଲେ । ଶେଷରେ କୋଣାର୍କ ଭାଗ୍ୟରେ ଏହାହିଁ ଲେଖାଥିଲା । କୋଣାର୍କକାରମାନେ ସ୍ୱର୍ଗରେ ଥାଇ କି ଦୃଷ୍ଟିରେ କୋଣାର୍କର ଏହି ଦଶାବିପର୍ଯ୍ୟୟ ନିରୀକ୍ଷଣ କରୁଥିବେ ! ! !

*******

---

* ଶ୍ରୀ ନଗେନ୍ଦ୍ରନାଥ ବସୁ 'ବିଶ୍ୱକୋଷ'ରେ 'କୋଣାର୍କ' ବିଷୟରେ ଲେଖିବାକୁ ଯାଇ ଏହାକୁ 'ବଙ୍ଗୀୟ ଶିଳ୍ପର ପରାକାଷ୍ଠା' ବୋଲି ଲେଖିଅଛନ୍ତି ।

** "The temple however served me for a very different purpose to that for which it was originally intended; for, as there were many people inside looking about our conversation led me to discourse at some length on the universal destruction of Idolatry, and the spread of the glorious soul-restoring gosple of the Son of God × ×. I was afterwards struck at the idea of making a preaching house of an Idol's temple."

– Rev. A. Sutton in Sterling's 'Orissa' Baptist Mission Edition. P. 135.

# ପଞ୍ଚଦଶ ଅଧ୍ୟାୟ

## ଉଦ୍ଧାର

ପୂର୍ବବର୍ତ୍ତୀ ଅଧ୍ୟାୟରେ ଜଣାଯାଇଅଛି ଯେ, ଦେବଦେବୀଙ୍କ ପରିବର୍ତ୍ତରେ କୋଣାର୍କ କାଳକ୍ରମେ ବ୍ୟାଘ୍ରଭଲ୍ଲୁକର ଆବାସ ହୋଇଥିଲା । ଦୂରକୁ ସମୁଦାୟ ମନ୍ଦିର କେବଳ ଜଙ୍ଗଲସମାକୀର୍ଣ୍ଣ କ୍ଷୁଦ୍ର ପର୍ବତ ସଦୃଶ ଦେଖା ଯାଉଥିଲା । ସ୍ଥାନୀୟ ଅଧିବାସୀଙ୍କ ମୁଖରୁ ଶୁଣାଯାଏ ଯେ, ଦିବସରେ ମଧ ଲୋକେ କୋଣାର୍କ ପାଖକୁ ଯିବାକୁ ସାହସ କରୁ ନ ଥିଲେ । ବଡ଼ଦେଉଳ ଓ ଅନ୍ୟାନ୍ୟ ମନ୍ଦିର ପରି ମୁଖଶାଳା ଏକାବେଳକେ ପତିତ ହୋଇ ନ ଥିଲେ ମଧ ଏହା କ୍ରମେ ପତନୋନ୍ମୁଖ ହୋଇଥିଲା । ବଡ଼ଦେଉଳର ଶିଳାମାନ ପଡ଼ି ଏହାର ଯେଉଁ କ୍ଷତି ହୋଇଥିଲା, ତାହା ଉପରେ ପୁଣି ପ୍ରାକୃତିକ ପ୍ରକ୍ରିୟାଦ୍ୱାରା ଏହା ଦିନକୁ ଦିନ ଦୁର୍ବଳତର ହେଉଥିଲା । ଏହାର ଚାଳ ଓ ବାଡ଼ ଦେହରେ ନାନା ଲତା ଓ ଗୁଳ୍ମ ଜନ୍ମ ହୋଇ କ୍ରମେ କ୍ରମେ ପଥରମାନଙ୍କୁ ପରସ୍ପରଠାରୁ ବିଚ୍ଛିନ୍ନ କରି ଦେଉଥିଲା ଏବଂ ମଧେ ମଧେ ଉପରୁ ପଥରମାନ ଖସି ପଡୁଥିଲା । ଅତଏବ ୧୮୬୦ ଖ୍ରୀଷ୍ଟାବ୍ଦ ମଧରେ କୋଣାର୍କର ଅନ୍ୟାନ୍ୟ ମନ୍ଦିରମାନଙ୍କର ପତନ ସମ୍ପୂର୍ଣ୍ଣ ହେଲେ ମଧ ମୁଖଶାଳାର ପତନ ଶେଷ ହୋଇ ନ ଥିଲା । ଯେପରି ଭାବରେ ଏହା କ୍ରମେ କ୍ରମେ ଭାଙ୍ଗି ପଡ଼ିବାକୁ ବସିଥିଲା, ଅଦ୍ୟାବଧି ସେପରି ଚାଲିଥିଲେ, ଯେଉଁ ମୁଖଶାଳାଟି କୋଣାର୍କର ମୂକସାକ୍ଷୀରୂପେ ବର୍ତ୍ତମାନ ଦଣ୍ଡାୟମାନ ରହିଅଛି, ତାହା ମଧ ଆଉ ଦେଖିବାକୁ ମିଳୁ ନ ଥାନ୍ତା । ସଦାଶୟ ଗଭର୍ଣ୍ଣମେଣ୍ଟଙ୍କ ଅନୁକମ୍ପାବଶତଃ ମୁଖଶାଳାଟି ଅଦ୍ୟାବଧି ଅର୍ଦ୍ଧଭଗ୍ନ ଅବସ୍ଥାରେ ରହିଅଛି । ଶ୍ରୀ ବିଷଦ୍ ସ୍ୱରୂପ ତାହାଙ୍କ ଗ୍ରନ୍ଥରେ * କୋଣାର୍କ ଉଦ୍ଧାରର ସବିଶେଷ ବିବରଣ ଦେଇଅଛନ୍ତି । ତାହାଙ୍କ ଅବଲମ୍ବନରେ ଓଡ଼ିଶା ତଥା ଭାରତୀୟ କଳାର ସର୍ବଶ୍ରେଷ୍ଠ ସମ୍ପଦ କୋଣାର୍କ-ଉଦ୍ଧାର ପ୍ରକ୍ରିୟା ଉପସ୍ଥିତ ଅଧ୍ୟାୟରେ ବର୍ଣ୍ଣନା କରାଯାଉଅଛି ।

କୋଣାର୍କରେ ଯେଉଁ ବୃହଦ୍ ଶିଳାମାନଙ୍କ ଦ୍ୱାରା କାମ ହୋଇଥିଲା ଏବଂ ଭାଙ୍ଗିଯିବା ପରେ ଯେପରି ପର୍ବତାକାରରେ ସମସ୍ତ ମନ୍ଦିରମାନ ଜମା ହୋଇ ନାନା ସାପ ଶ୍ୱାପଦଙ୍କର ଆବାସସ୍ଥଳ ହୋଇଥିଲା, ତାହା ଦୃଷ୍ଟିରେ କୋଣାର୍କ-ଉଦ୍ଧାର ନିତାନ୍ତ ଅସାଧ ଓ ବହୁ ଅର୍ଥସାପେକ୍ଷ ବୋଧ ହୋଇ ଉପେକ୍ଷିତ ହୋଇଥିଲା । ସୁତରାଂ ନିକଟରେ ଏବଂ ସାଧାରଣଙ୍କ ଦୃଷ୍ଟି ସମ୍ମୁଖରେ କୋଣାର୍କର କିଛି ସ୍ମାରକ ରଖିବା ସକାଶେ ମୁଖଶାଳାର ପୂର୍ବଦ୍ୱାର

* Konarka. Chapter. XIV.

ନବଗ୍ରହପାଟକୁ ବୋହି ଆଣି କଲିକତା ଯାଦୁଘରେ (Museum) ରଖିବା ନିମନ୍ତେ ସର୍ବପ୍ରଥମେ ପ୍ରସ୍ତାବ କରାଯାଇଥିଲା; କିନ୍ତୁ ପୂର୍ବେ ଯେପରି ଲେଖା ଯାଇଅଛି, ଗଭର୍ଣ୍ଣମେଣ୍ଟ ସେଥି ନିମନ୍ତେ ଯେଉଁ ବ୍ୟୟ ମଞ୍ଜୁର କରିଥିଲେ, ତାହାଦ୍ୱାରା ପାଟଟି କେବଳ କେତେକ ହସ୍ତ ମାତ୍ର ବୁହା ହୋଇ ବେଢ଼ାର ବାହାରେ ଦକ୍ଷିଣ-ପୂର୍ବ କୋଣରେ ପରିତ୍ୟକ୍ତ ହେଲା ।

୧୮୮୧ ଖ୍ରୀଷ୍ଟାବ୍ଦରେ ଲେଫ୍‌ଟେନାଣ୍ଟ ଗଭର୍ଣ୍ଣର ସାର୍ ଏସ୍. ସି. ବେଲି ଅଳ୍ପ ବ୍ୟୟରେ କୋଣାର୍କ ଉଦ୍ଧାର କରିବାର ପ୍ରସ୍ତାବ କରିଥିଲେ । ଏହା କିନ୍ତୁ ପ୍ରଥମରୁ ନିତାନ୍ତ ଅସମ୍ଭବ ବୋଧ ହୋଇଥିଲା ଏବଂ କାର୍ଯ୍ୟରେ ସେହିପରି ମଧ ଦେଖାଗଲା । ପୂର୍ବେ କୁହାଯାଇଅଛି ଯେ, ମୁଖଶାଳାର ପୂର୍ବ ଦ୍ୱାର ପାହାଚରେ ଦୁଇଟି ବିରାଟ ଗଜସିଂହ ମୂର୍ତ୍ତି, ଦକ୍ଷିଣ ଦ୍ୱାର ପାହାଚରେ ଦୁଇଟି ଅଶ୍ୱ ମୂର୍ତ୍ତି ଏବଂ ଉତ୍ତର ଦ୍ୱାରରେ ଦୁଇଟି ହସ୍ତୀ ମୂର୍ତ୍ତି ଦ୍ୱାରରକ୍ଷକ ସ୍ୱରୂପ ସ୍ଥାପିତ ହୋଇଥିଲା । ବଡ଼ଦେଉଳ ଓ ମୁଖଶାଳାରୁ ପଥର ଖସୁଥିବାରୁ ସେହି ମୂର୍ତ୍ତିଗୁଡ଼ିକ ଭାଙ୍ଗିଯିବାର ବଡ଼ ଆଶଙ୍କା ହୋଇଥିଲା । ସୁତରାଂ ବେଲିଙ୍କ କାର୍ଯ୍ୟ ମଧ୍ୟରେ ଉକ୍ତ ମୂର୍ତ୍ତିଗୁଡ଼ିକୁ ସ୍ଥାନାନ୍ତର କରାଯାଇଥିଲା ମାତ୍ର । ମୁଖଶାଳାର ଉତ୍ତର ଓ ଦକ୍ଷିଣ ପାଖରେ ବେଦୀ ତିଆର କରାଯାଇ ହସ୍ତୀ ଓ ଅଶ୍ୱମୂର୍ତ୍ତିଗୁଡ଼ିକ ଯଥାକ୍ରମେ ସ୍ଥାପନ କରାଗଲା । ନାଟମନ୍ଦିରର ପଥର ଗଦାକୁ ଭ୍ରମରେ ଗୋଟିଏ ପ୍ରାକୃତିକ ଉଚ୍ଚ ସ୍ଥାନ ମନେକରି ଏବଂ ତାହା ନାଟମନ୍ଦିରର ଅବଶେଷ ଥିବା ଆଦୌ ସନ୍ଦେହ ନ କରି ତାହାରି ଉପରେ ପୂର୍ବଦ୍ୱାରର ଗଜସିଂହ ମୂର୍ତ୍ତି ସ୍ଥାପନ କରିଥିଲେ ।

୧୮୯୨ ଖ୍ରୀଷ୍ଟାବ୍ଦରେ ଭାରତୀୟ ଯାଦୁଘରର ନ୍ୟାସୀମାନଙ୍କର ଉତ୍ତେଜନାରେ କୋଣାର୍କ-ଉଦ୍ଧାର ବିଷୟ ପୁନର୍ବାର ଉତ୍‌ଥାପିତ ହେଲା; କିନ୍ତୁ ଏହା ନିତାନ୍ତ ବ୍ୟୟ-ସାପେକ୍ଷ ମନେ ହେବାରୁ ଶେଷରେ ପ୍ରସ୍ତାବଟି ପରିତ୍ୟକ୍ତ ହେଲା । ଫଳରେ ନବଗ୍ରହପାଟ ଅପେକ୍ଷାକୃତ ଅଳ୍ପ ଆୟାସରେ ବୋହି ନେବା ନିମନ୍ତେ ଲମ୍ବଭାବରେ ଦ୍ୱିଖଣ୍ଡ କରାଗଲା ଏବଂ ଅଳ୍ପ ଦୂର ନ ଯାଉଣୁ ପଥରର ଗୁରୁଭାର ଓ ଅର୍ଥର ଅନାଟନ ହେତୁରୁ ତାହା ସେହି ସ୍ଥାନରେ ପରିତ୍ୟକ୍ତ ହେଲା । ବୃହତ୍ତର ଶିଳାଖଣ୍ଡ ଅଦ୍ୟାପି ଉକ୍ତ ବେଢ଼ା କୋଣରେ ପଡ଼ି ରହି ବାଲୁକାରାଶିରେ କ୍ରମେ କ୍ରମେ ପୋତି ହୋଇ ପଡୁଅଛି ଏବଂ କାଳକ୍ରମେ କୋଣାର୍କର ଅସ୍ତମିତ ଗୌରବ ସହିତ ଏହା ମଧ ଅଦୃଶ୍ୟ ହୋଇ କେବଳ ଲୌକିକ ପ୍ରବାଦରେ ମାତ୍ର ରହିବ ।

ଏହିରୂପେ କେତେ ବର୍ଷ ଗଲାପରେ ଓଡ଼ିଶାର ସୁଭାଗ୍ୟ ବଶତଃ ୮ ସାର୍ ଜନ୍ ଉଡ୍‌ବର୍ଣ୍ଣ ଲେଫ୍‌ଟେନାଣ୍ଟ ଗଭର୍ଣ୍ଣର ହୋଇ ଆସିଲେ । ତାହାଙ୍କ ସଦୃଶ ହୃଦୟବାନ ଶାସନକର୍ତ୍ତା ଏ ଦେଶଭାଗ୍ୟରେ ବଡ଼ କ୍ୱଚିତ୍ ଦେଖା ଯାଇଅଛନ୍ତି । ଦେଶର ପ୍ରାଚୀନ ଗୌରବ ପ୍ରତି ତାହାଙ୍କର ଯେଉଁ ଆସ୍ଥା ଥିଲା, ସେଥି ନିମନ୍ତେ ଓଡ଼ିଆମାନେ ତାହାଙ୍କଠାରେ ବିଶେଷ କୃତଜ୍ଞ । ଭୁବନେଶ୍ୱରର ନାନା ମନ୍ଦିରମାନଙ୍କରେ ତାହାଙ୍କ ସୁଦୃଷ୍ଟିବଶତଃ ଯେଉଁ ଉଦ୍ଧାରକାର୍ଯ୍ୟ ହୋଇଅଛି, ତାହା ଅଦ୍ୟାପି ଉଡ୍‌ବର୍ଣ୍ଣଙ୍କୁ ଜୀବିତ ରଖିଅଛି । ତାହାଙ୍କ ସୁଦୃଷ୍ଟିବଶତଃ

କୋଣାର୍କ-ଉଦ୍ଧାର ପ୍ରସ୍ତାବ ପୁନର୍ବାର ଉତ୍‌ଥାପିତ ହେଲା ଏବଂ ତାହାଙ୍କ ସମୟରୁ ଉଦ୍ଧାର-କାର୍ଯ୍ୟ ପ୍ରକୃତରେ ଆରମ୍ଭ ହେଲା କହିବାକୁ ହେବ । ନବଗ୍ରହପାଟ ଏହିରୂପେ କଲିକତାକୁ ବୋହି ନେବା ପାଇଁ ତାହାଙ୍କ ପରି ସହୃଦୟ ଶାସନକର୍ତ୍ତାଙ୍କର କଦାପି ଅଭିମତ ହୋଇ ନ ପାରେ । ପରନ୍ତୁ ତାହାଙ୍କର ଆଦେଶ ହେଲା ଯେ, ପୂର୍ବେ ନୂତନ ଅବସ୍ଥାରେ ମୁଖଶାଳାର ପୂର୍ବ ଦ୍ୱାର ଉପରେ ନବଗ୍ରହପାଟ ଯେପରି ଥିଲା, ପୁନର୍ବାର ସେହିପରି ରଖିବାକୁ ହେବ । କୋଣାର୍କର ଅତୁଲ୍ୟ ସଂପଦ ନବଗ୍ରହପାଟକୁ ସେହିପରି ଖରା ବର୍ଷା ଖୁଆଇ ଅପନ୍ତରା ସ୍ଥଳରେ ପକାଇ ରଖିବା ତାହାଙ୍କର କଦାପି ସହ୍ୟ ହୋଇ ନ ଥିଲା । ମୁଖଶାଳା ଏତେ ଜୀର୍ଣ୍ଣ ଏବଂ ପୂର୍ବ ଦ୍ୱାର ଏତେ ଦୁର୍ବଳ ହୋଇ ପଡ଼ିଥିଲା ଯେ, ତାହା ମରାମତି ନ କରି ନବଗ୍ରହପାଟକୁ ତାହା ଉପରେ ରଖିବା ନିରାପଦ ବୋଧ ହେଲା ନାହିଁ । ସୁତରାଂ ଉଡ୍‌ବର୍ଣ୍ଣଙ୍କ ସମସ୍ତ ସହାନୁଭୂତି ସତ୍ତ୍ୱେ ପାଟ ପୂର୍ବ ପରି ସମୁଦ୍ରପନ୍ତାରେ ପଡ଼ି ରହିଲା ।

ଏଥି ମଧ୍ୟରେ ୧୯୦୧ ଖ୍ରୀଷ୍ଟାବ୍ଦରେ ମୁଖଶାଳାର ଚତୁର୍ଦ୍ଦିଗରୁ ବାଲି ପଥର ଖୋଳା ହେବାର ଆରମ୍ଭ କରାଗଲା ଏବଂ ପୂର୍ବେ ସତ୍ୟଯୁଗରେ ଦେବାସୁରମାନେ ସମୁଦ୍ର ମନ୍ଥନ କରି ନାନାବିଧ ଦିବ୍ୟରତ୍ନ ବାହାର କଲା ପରି କୋଣାର୍କର ପଥର ଓ ବାଲୁକାରାଶି ମଧ୍ୟରୁ ଗୋଟି ଗୋଟି ହୋଇ ବହୁତ ସୁରମ୍ୟ ପ୍ରତିକୃତି ବାହାର କରାଯାଇଥିଲା । କୋଣାର୍କ ରଥର ସପ୍ତାଶ୍ୱ ବାହାରକୁ ଦେଖାଗଲା ଏବଂ କ୍ରମେ କ୍ରମେ ପୀଠ ଦେହରେ ଚକ ଦେଖା ପଡ଼ିବାରୁ ଏହା ସୂର୍ଯ୍ୟଙ୍କର ରଥାକାରରେ ନିର୍ମିତ ହୋଇଥିବାର ଜଣାପଡ଼ିଲା । ପୀଠ ଓ ଚକ ପ୍ରଭୃତି ଅନ୍ତତଃ ତିନି ଶତାବ୍ଦୀ ପର୍ଯ୍ୟନ୍ତ ପୋତି ହୋଇ ରହିଥିଲା । ମୁଖଶାଳାର ଉତ୍ତର ଓ ଦକ୍ଷିଣ ଦିଗର ପାହାଚନ ପୂର୍ବ ଭାଗକୁ ସମସ୍ତ ପୀଠ ତଳପତ୍ତନ ପର୍ଯ୍ୟନ୍ତ ଉନ୍ମୁକ୍ତ କରାଗଲା । ନାଟମନ୍ଦିର ମଧ୍ୟ ଖୋଳା ହୋଇ ବାହାର କରାଗଲା; କିନ୍ତୁ ଏହାର ଚାଳ ନ ଥିଲା । ଏଥିରୁ ଜଣାଗଲା ଯେ, ରାଜେନ୍ଦ୍ର ଲାଲ ଜନଶ୍ରୁତି ଉପରେ ନିର୍ଭର କରି ଯାହା ବିଶ୍ୱାସ କରିଥିଲେ କି, ନାଟମନ୍ଦିର ଅକ୍ଷୁର୍ଣ୍ଣ ଅବସ୍ଥାରେ ମରହଟ୍ଟାମାନଙ୍କ ଦ୍ୱାରା ପୁରୀକୁ ଆନୀତ ହୋଇଥିଲା ତାହା ନିତାନ୍ତ ଭ୍ରମପୂର୍ଣ୍ଣ । ନାଟମନ୍ଦିରର ଉଦ୍ଧାର ମଧ୍ୟରେ ଦେଖାଗଲା ଯେ, ପୂର୍ବେ ୧୮୮୧ ଖ୍ରୀଷ୍ଟାବ୍ଦରେ ହସ୍ତୀ ଓ ଅଶ୍ୱ ମୂର୍ତ୍ତିମାନଙ୍କ ସହିତ ଯେଉଁ ଗଜସିଂହ ମୂର୍ତ୍ତି ସ୍ଥାନାନ୍ତରିତ ହୋଇ ଯେଉଁ ସ୍ଥାନରେ ସ୍ଥାପିତ ହୋଇଥିଲା; ତାହା ପ୍ରକୃତରେ ନାଟମନ୍ଦିର । ସୁତରାଂ ଉକ୍ତ ମୂର୍ତ୍ତି ଦୁଇଟି ପଡ଼ି ନଷ୍ଟ ହୋଇଯିବ, ଏହି ଭୟରେ ଅଗତ୍ୟା ନାଟମନ୍ଦିରର ଖନନ କାର୍ଯ୍ୟ ଆପାତତଃ ବନ୍ଦ ରହିଲା ।

ଏହିପରି ଅବସ୍ଥାରେ ମୁଖଶାଳାର ରକ୍ଷଣ ପ୍ରସ୍ତାବ ଉତ୍‌ଥାପିତ ହେଲା । ପୂର୍ବେ ଯେପରି କୁହାଯାଇଅଛି, ମୁଖଶାଳା ନାନା ଭାବରେ ପତନୋନ୍ମୁଖ ହୋଇଥିଲା । ବିଶେଷତଃ ତାହାର ଦକ୍ଷିଣ ପାଖ ଦ୍ୱାର ବାଡ଼ ଓ ପୀଢ଼ର କେତେକାଂଶ ପ୍ରାୟ ଭାଙ୍ଗି ଯାଇଥିଲା । ପୂର୍ବ ଓ ଉତ୍ତର ଦ୍ୱାର ସେତେ ନଷ୍ଟ ହୋଇ ନ ଥିଲେ ମଧ୍ୟ ଅଳ୍ପ କାଳ ମଧ୍ୟରେ ଦକ୍ଷିଣ ଦ୍ୱାର ଅପେକ୍ଷା

ଅଧିକ ପରିମାଣରେ ନଷ୍ଟ ହୋଇଯିବାର ଆଶଙ୍କା ହୋଇଥିଲା । ଚାଳର ନିମ୍ନଭାଗରୁ ପ୍ରତି ମୁହୂର୍ତ୍ତରେ ପଥରମାନ ଖସି ପଡୁଥିଲା । ଏଥିମଧ୍ୟରେ ବାଡ଼ ଯେପରି ନଷ୍ଟ ହୋଇଥିଲା, ତାହାଦ୍ୱାରା ଚାଳର ଭାର ସମୁଦାୟ ବାଡ଼ ଓ ବାଡ଼ର ପ୍ରତ୍ୟେକ ପଥର ଉପରେ ସମାନ ଭାବରେ ନ ପଡ଼ି ବରଂ ଖଣ୍ଡିଏ ଖଣ୍ଡିଏ ପଥର ଉପରେ ଅସମାନ ଭାବରେ ପଡୁଥିବାରୁ ଉକ୍ତ ବିଶିଷ୍ଟ ପଥରଖଣ୍ଡମାନ କ୍ରମେ ଚୂର୍ଣ୍ଣ ହୋଇ ଯାଉଥିଲା । ବାସ୍ତବିକ ମୁଖଶାଳାଟି ଏପରି ପତନୋନ୍ମୁଖ ହୋଇଥିଲା ଯେ, କୌଣସି ଉଦ୍ଧାର-କାର୍ଯ୍ୟ କରା ନ ଯାଇ ତାହା ସେହିପରି ଭାବରେ ଥିଲେ ଅଳ୍ପକାଳ ମଧ୍ୟରେ ଏକାବେଳକେ ପତିତ ହୋଇ କୋଣାର୍କର ମହାଯଜ୍ଞରେ ପୂର୍ଣ୍ଣାହୁତି ସ୍ୱରୂପ ହୋଇଥାନ୍ତା ।

ସୁତରାଂ ମୁଖଶାଳାର ଉଦ୍ଧାର ଓ ରକ୍ଷଣ ସର୍ବାଦୌ ଉଚିତ ବୋଲି ବିବେଚିତ ହେଲା । ଏହାର ରକ୍ଷଣ ନିମନ୍ତେ ପ୍ରଥମେ ପ୍ରସ୍ତାବ କରାଯାଇଥିଲା ଯେ, ଏହାର ଅଭ୍ୟନ୍ତରରେ ୪୦ ଫୁଟ ଉଚ୍ଚ ପର୍ଯ୍ୟନ୍ତ ପଥର ଗଢ଼ି ପୂର୍ଣ୍ଣ କରିଦେବେ ଏବଂ ତାହା ଉପରେ ମଧ୍ୟସ୍ଥଳରେ ଗୋଟିଏ ସୁଦୃଢ଼ ଖମ୍ବ ବେକୀ ଚକଡ଼ା ପର୍ଯ୍ୟନ୍ତ ଗଢ଼ି ଚାଳକୁ ଆଶ୍ରୟ ଦେବେ । ଏହାଦ୍ୱାରା ମନେ କରାଯାଇଥିଲା ଯେ, ଆମଳକଶିଳା ପ୍ରଭୃତିର ଯେଉଁ ଗୁରୁଭାର ଚାଳ ଉପରେ ପଡୁଅଛି, ତାହା ଖମ୍ବଦ୍ୱାରା କମିଯିବ ଏବଂ ଚାଳ ନିରାପଦରେ ସ୍ଥାୟୀ ରହିବ; କିନ୍ତୁ ପରେ ତାହାର ଫଳ ବିପରୀତ ହେବାର ଆଶଙ୍କା କରି ଉପେକ୍ଷା କରାଗଲା । ପୂର୍ବେ କୁହାଯାଇଅଛି ଯେ, କଟକ କାରଖାନାର ଇଞ୍ଜିନିୟରମାନେ ପରୀକ୍ଷାଦ୍ୱାରା ସ୍ଥିର କରିଥିଲେ ଯେ, ଚାଳ ଅଧିକ କାଳ ନ ରହି ବରଂ ଖମ୍ବଦ୍ୱାରା ଆମଳକଶିଳା ପ୍ରଭୃତିର ନିମ୍ନ ଚାପ ପ୍ରତିହତ ଓ ନିରର୍ଥକ ହୋଇଯିବ ଏବଂ ଚାଳ ଅଳ୍ପ କାଳ ମଧ୍ୟରେ ଖସି ପଡ଼ିବ; ସୁତରାଂ ଉକ୍ତ ପ୍ରଣାଳୀ କାର୍ଯ୍ୟରେ ପରିଣତ ନ ହୋଇ ଉପେକ୍ଷିତ ହେଲା । ପରିଶେଷରେ ଅନ୍ୟ କୌଣସି ସୁବିଧାଜନକ ଉପାୟ ସ୍ଥିର କରି ନ ପାରି ବାଲିଦ୍ୱାରା ମୁଖଶାଳାର ଅଭ୍ୟନ୍ତର ପୂର୍ଣ୍ଣ କରିଦେବା ସ୍ଥିର ହେଲା । ସମସ୍ତ ଦ୍ୱାର ବନ୍ଦ କରି ଭିତର ବାଲିପୂର୍ଣ୍ଣ କଲେ ମଧ୍ୟ ନାନା ସ୍ଥାନରେ ଭାଙ୍ଗି ଯାଇଥିବାରୁ ମୁଖଶାଳାର ବାଡ଼ ସ୍ଥାୟୀ ହୁଅନ୍ତା ନାହିଁ । କାରଣ ବର୍ତ୍ତମାନ ବାଡ଼ ଉପରେ କେବଳ ଚାଳର ଭାର ଏକମାତ୍ର ନୁହେଁ; ମନ୍ଦିର ଭିତରେ ଯେଉଁ ବାଲିପୂର୍ଣ୍ଣ ହେଲା, ତହିଁର ପାର୍ଶ୍ୱଚାପ ବାଡ଼ ଉପରେ ଅତ୍ୟନ୍ତ ପ୍ରବଳ ଭାବରେ ପଡ଼ିବାର କଥା । ସୁତରାଂ ବାଡ଼କୁ ସାହାଯ୍ୟ କରିବା ନିମନ୍ତେ ବାଡ଼ ପାଖେ ପାଖେ ମନ୍ଦିର ମଧ୍ୟରେ ୧୫ ଫୁଟ ପ୍ରସାରରେ ଆଉ ଗୋଟିଏ ପଥର କାନ୍ଥ ନିର୍ମାଣ କରାଗଲା । ଦକ୍ଷିଣ ଓ ପଶ୍ଚିମ ପାଖରେ ଚାଳ ବିଶେଷ ନଷ୍ଟ ହୋଇ ଯାଇଥିବାରୁ ତାହା ପ୍ରଥମରେ ଉଦ୍ଧାର କରାଗଲା ଏବଂ ଏହା ଅତ୍ୟନ୍ତ କଷ୍ଟକର ବୋଧ ହୋଇଥିଲେ ସୁଦ୍ଧା ନିରାପଦରେ ନିର୍ମିତ ହୋଇ ପାରିଥିଲା । ପ୍ରଥମରେ ଦକ୍ଷିଣ ଓ ପୂର୍ବ ଦ୍ୱାରଦ୍ୱୟ ବନ୍ଦ କରାଗଲା ଏବଂ ଉତ୍ତର ଦ୍ୱାର ଅପେକ୍ଷାକୃତ ଭଲ ଅବସ୍ଥାରେ ଥିବାରୁ ସେହି ବାଟେ ମନ୍ଦିର ମଧ୍ୟରେ ଉକ୍ତ ଭିତର କାନ୍ଥ ନିର୍ମାଣ ଓ ବାଲିପୂରଣ ହେଉଥିଲା । ଉତ୍ତର ଦ୍ୱାର

ପାଖରେ ଭିତରେ ନୂତନ ଗଠିତ କାନ୍ଥ ଦେହରେ ବାଟ ଥାଏ । ଉତ୍ତର ଦ୍ୱାର ବ୍ୟତୀତ ଅନ୍ୟାନ୍ୟ ସମସ୍ତ ଦ୍ୱାର ବନ୍ଦ ରହିବାରୁ ମନ୍ଦିରର ଅଭ୍ୟନ୍ତର ଘୋର ଅନ୍ଧକାରମୟ ହୋଇଥିଲା; ସୁତରାଂ ଦିବସରେ ସୁଦ୍ଧା ଆଲୋକ ସାହାଯ୍ୟରେ କାମ କରାଯାଉଥିଲା ।

ଏହିରୂପେ ଭିତର କାନ୍ଥ ଗଠନ ବାଡ଼ର ଉଚ୍ଚତା ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ହେବାରୁ ଉତ୍ତର ଦ୍ୱାରବାଟେ ବାଲିପୂର୍ଣ୍ଣ ହେବାର ଆରମ୍ଭ ହେଲା ଏବଂ ଉକ୍ତ ଦ୍ୱାରବାଟେ ଯେତେ ଉଚ୍ଚ ପର୍ଯ୍ୟନ୍ତ ସମ୍ଭବ ସେତେ ଉଚ୍ଚରେ ବାଲିପୂର୍ଣ୍ଣ ହୋଇଗଲା । ତତ୍‌ପରେ ଉତ୍ତର ଦ୍ୱାର ବନ୍ଦ କରାଗଲା । ପୁଣି ବାଲି ପୂରାଇବା ନିମନ୍ତେ ପୀଢ଼ଚାଳରେ ଗୋଟିଏ ଗର୍ତ୍ତ କରିବାର ପ୍ରୟୋଜନ ହେଲା । ଦୈବାତ୍ ପୂର୍ବେ ଯେପରି କୁହାଯାଇଅଛି, ବଡ଼ଦେଉଳରୁ ଗଜସିଂହ ପ୍ରଭୃତି ମୁଖଶାଳା ଚାଳ ଉପରେ ପଡ଼ି ପଶ୍ଚିମ ପାଖରେ ଖଣ୍ଡେ ଭାଙ୍ଗି ଦେଇଥିଲା । ସେହି ବାଟ ଦେଇ ବାଲିପୂର୍ଣ୍ଣ କରାଗଲା । ସେହି ବାଟ ଏକେ କ୍ଷୁଦ୍ର, ତହିଁରେ ପୁଣି ଚାଳ ଭାଙ୍ଗି ଯାଇ ସେହି ବାଟ ହୋଇଥିବାରୁ ବାରମ୍ବାର ପଥର ଖସୁଥାଏ । ବାଲି ବୋଝ ନେଇ ସେହି ବାଟରେ ମନ୍ଦିର ମଧ୍ୟକୁ ଯିବା ଆବଶ୍ୟକ । ଥରେ ନିଜେ ଶ୍ରୀ ବିଷନ୍ ସ୍ୱରୂପ ସେହି ବାଟ ଦେଇ ମନ୍ଦିର ମଧ୍ୟକୁ ଯାଇଥିଲେ; ବାହାରି ଆସିଲାବେଳେ ଗୋଟିଏ ପ୍ରକାଣ୍ଡ ଶିଳା ଖସି ପଡ଼ିଲା ଏବଂ ଦୈବାତ୍ ତାହାଙ୍କର ପ୍ରାଣରକ୍ଷା ହୋଇଗଲା; ସୁତରାଂ କାର୍ଯ୍ୟ ଆରମ୍ଭ ପୂର୍ବରୁ ତାହା ଦେହରେ ଖିଲାଣ କାମ କରିବାକୁ ହୋଇଥିଲା । ଏହି ପଥଦ୍ୱାରା ଯେତେ ବାଲିପୂର୍ଣ୍ଣ ହେବାର କଥା ସେତେ ଦୂର ପର୍ଯ୍ୟନ୍ତ ହୋଇଗଲା ଏବଂ ଏହି ବାଟ ମଧ୍ୟ ବନ୍ଦ କରାଗଲା । ତତ୍‌ପରେ ଚାଳର ମସ୍ତକରେ ୩ ଇଞ୍ଚ ବ୍ୟାସରେ ଗୋଟିଏ ଗର୍ତ୍ତ କରାଗଲା । ଗର୍ତ୍ତର ଲମ୍ବା ୨୫ ଫୁଟ ହୋଇଥିଲା । ଫନେଲ ବା ଗୋଟିଏ ବିସ୍ତୃତ ଦୀର୍ଘ କାହାଳୀ ସାହାଯ୍ୟରେ ଏହି ବାଟେ ବାଲିପୂର୍ଣ୍ଣ କରାଗଲା । ପୂର୍ବରୁ ପୀଢ଼ଚାଳ ଦେହରେ ୧ ଫୁଟ ଲମ୍ବ ଓ ଓସାରରେ ଦୁଇଟି ଗର୍ତ୍ତ ବାୟୁ ଗମନାଗମନ ନିମନ୍ତେ ବୋଧହୁଏ ଥିଲା । ମସ୍ତକ ଉପରୁ ବାଲିପୂର୍ଣ୍ଣ ହେଉଥିଲା ଏବଂ ଏହି ଦୁଇ ଗର୍ତ୍ତ ଦେଇ ଦୁଇଟି ବାଉଁଶଦ୍ୱାରା ଭିତରେ ବାଲି ଯଥାସମ୍ଭବ ଖେଳାଇ ଦେବାକୁ ହେଉଥାଏ ।

ଭିତରେ ବାଲି ଓ ପଥର କାମ ବ୍ୟତୀତ ମୁଖଶାଳାର ବାହାର ପାଖରେ ମଧ୍ୟ ବାଡ଼ ଓ ଚାଳକୁ ଦୃଢ଼ କରିବା ନିମନ୍ତେ କେତେକ କାମ କରିବାର ଥିଲା । ଦକ୍ଷିଣ ପାଖରେ ଶକ୍ତ କାନ୍ଥ ହୋଇ ଦ୍ୱାର ବନ୍ଦ କରାଗଲା । ଏହା ଅବଶ୍ୟ ବର୍ତ୍ତମାନ ଅତ୍ୟନ୍ତ ଅସୁନ୍ଦର ଦେଖା ଯାଉଅଛି; ତଥାପି ମନ୍ଦିର ଓ ତାହାର ଅନ୍ୟାନ୍ୟ ଅଂଶର ସୌନ୍ଦର୍ଯ୍ୟ ନିମନ୍ତେ ଏହାର ସୌନ୍ଦର୍ଯ୍ୟ ଉତ୍ସର୍ଗ କରିବାକୁ ହେଲା । ଏହିପରି ନାନା ସ୍ଥାନରେ ନାନା ପ୍ରକାର କାମ କରି ଶେଷରେ ୧୯୦୫ ଖ୍ରୀଷ୍ଟାବ୍ଦ ପ୍ରାରମ୍ଭରେ ମୁଖଶାଳାର କାମ ଶେଷ ହେଲା । ମୁଖଶାଳାକୁ ଦେଖିବା ମାତ୍ରେ ନୂତନ ଓ ପ୍ରାଥମିକ କାମ ପରିଷ୍କାର ରୂପେ ପୃଥକ ଜଣାପଡୁଅଛି । ଏହିରୂପେ ପତନୋନ୍ମୁଖ ମୁଖଶାଳା କେତେକ ଦିନ ନିମନ୍ତେ ସ୍ଥାୟୀ ହୋଇ ରହିଲା ।

ପୂର୍ବେ କୁହାଯାଇଅଛି ଯେ, ମୁଖଶାଳାର ପୂର୍ବ ଦ୍ୱାର ସମ୍ମୁଖ ପାହାଚରେ ଦୁଇଟି ଗଜସିଂହ ମୂର୍ତ୍ତି ଭ୍ରମରେ ନାଟମନ୍ଦିରର ପଥରଗଦା ଉପରେ ରକ୍ଷିତ ହୋଇଥିଲା ଏବଂ ସେହିମାନଙ୍କ ହେତୁରୁ ନାଟମନ୍ଦିର ଖନନ କାର୍ଯ୍ୟ ଆପାତତଃ ବନ୍ଦ ରହିଥିଲା । ବର୍ତ୍ତମାନ ନାଟମନ୍ଦିରର ଉଦ୍ଧାର କରିବାକୁ ପଡ଼ିବାରୁ ଉକ୍ତ ମୂର୍ତ୍ତି ଦୁଇଟିକୁ ୧୯୦୩ ଖ୍ରୀଷ୍ଟାବ୍ଦରେ ନାଟମନ୍ଦିରର ପୂର୍ବ ଦ୍ୱାର ପାହାଚର ଦୁଇ ପାଖରେ ସ୍ଥାପନ କରାଗଲା । ଅଦ୍ୟାପି ସେ ମୂର୍ତ୍ତି ଦୁଇଟି ଉକ୍ତ ସ୍ଥାନରେ ରହିଅଛି । ପରେ ନାଟମନ୍ଦିର ମଧ୍ୟରୁ ବାଲି ଓ ପଥର ସମସ୍ତ ବାହାର କରାଯିବାରୁ ତାହାର ସ୍ତମ୍ଭ, କାନ୍ଥ ଓ ସୁନ୍ଦର ପୀଠ ଦେଖାଗଲା । ନାଟମନ୍ଦିର ମଧ୍ୟରେ ଗୋଟିଏ ସ୍ତମ୍ଭମୂଳରେ ସୂର୍ଯ୍ୟଟିଏ (ଅଷ୍ଟମ ଅଧ୍ୟାୟ ମୂର୍ତ୍ତି) ରଖା ହୋଇଥିବାର ଦେଖାଗଲା । ଏହି ସମସ୍ତ ଉଦ୍ଧାର କାର୍ଯ୍ୟ ୧୯୦୪ ଖ୍ରୀଷ୍ଟାବ୍ଦ ମଧ୍ୟରେ ଶେଷ ହେଲା ।

ତଦନ୍ତର ୧୯୦୬ ଖ୍ରୀଷ୍ଟାବ୍ଦରେ ମୁଖଶାଳାର ପଶ୍ଚିମ ପାର୍ଶ୍ୱର ଅର୍ଥାତ୍ ବଡ଼ଦେଉଳର ବାଲି ପଥର ଗଦା ଖୋଳା ଆରମ୍ଭ କରାଗଲା । ବହୁ ଯତ୍ନ ସହକାରେ ବଡ଼ ବଡ଼ ପଥରମାନ ବାହାର କରିବାକୁ ହୋଇଥିଲା; କାରଣ ତାହାର ଆଘାତରେ ବଡ଼ଦେଉଳ କାନ୍ଥର ଭଗ୍ନାବଶେଷରେ ସୁନ୍ଦର ଲତାପତ୍ର କାମ ଓ ମୂର୍ତ୍ତିଗୁଡ଼ିକ ନଷ୍ଟ ହୋଇଯିବାର ପ୍ରଧାନ ଆଶଙ୍କା ଥିଲା । କ୍ରମେ କ୍ରମେ ବଡ଼ଦେଉଳର ପାର୍ଶ୍ୱଦେବତା ସୂର୍ଯ୍ୟ ମୂର୍ତ୍ତି ତ୍ରୟ ଦେଖାଗଲେ । ଏମାନଙ୍କର ଯାହା କିଛି କ୍ଷତି ହୋଇଥିଲା, ତାହା ପୂରଣ କରାଯାଇ ଉପର ଓ ଦୁଇ ପାଖରେ ପଥର ବାଡ଼ କରାଗଲା । ତାହାଦ୍ୱାରା ମୂର୍ତ୍ତିଗୁଡ଼ିକ ଏକପ୍ରକାର ନିରାପଦରେ ଅଛି ସତ: ତଥାପି ପାଣି ପବନର ଆଘାତରେ ଦିନକୁ ଦିନ ସେଗୁଡ଼ିକ କଳଙ୍କିତ ହୋଇ ଯାଉଅଛି । ଏହି ମୂର୍ତ୍ତିଗୁଡ଼ିକର ସମ୍ମୁଖରେ ଯେଉଁ ପାର୍ଶ୍ୱ ମନ୍ଦିରଗୁଡ଼ିକ ଥିଲା, ତାହା ସମ୍ପୂର୍ଣ୍ଣ ପ୍ରାୟ ଭାଙ୍ଗି ଯାଇଥିଲା (ପଞ୍ଚମ ଅଧ୍ୟାୟ) । ଏହିରୂପେ ବଡ଼ଦେଉଳର ବାଡ଼ ଏବଂ ପୀଠର କେତେକାଂଶ ପର୍ଯ୍ୟନ୍ତ ବାହାରକୁ ଦେଖାଗଲା । ତତ୍‌ପରେ ବଡ଼ଦେଉଳର ଭିତର ପରିଷ୍କାର ହେବାରେ ଗୋଟିଏ ଅତ୍ୟନ୍ତ ମନୋହର କଳା ମୁଗୁନି ସିଂହାସନ ଦେଖାପଡ଼ିଲା (ପଞ୍ଚମ ଅଧ୍ୟାୟ) । ବଡ଼ଦେଉଳ ମଧ୍ୟକୁ ମୁଖଶାଳାରୁ ଯେଉଁ ଦ୍ୱାର ଥିଲା, ତାହା ବନ୍ଦ କରାଯିବାରୁ ଏହା ମଧ୍ୟକୁ ଆସିବାର ଆଉ କୌଣସି ପନ୍ଥା ନ ଥିଲା । ସୁତରାଂ ଦେଉଳର ଭଗ୍ନ ବାଡ଼ ଉପରେ ଏହା ମଧ୍ୟକୁ ଗୋଟିଏ ପାହାଚ ଗଢ଼ିବାକୁ ହୋଇଥିଲା । ମୁଖଶାଳା ଆଡ଼କୁ ଦେଉଳରୁ ଯେ ରାସ୍ତା ଥିଲା, ତାହା ବନ୍ଦ କରାଯାଇ ଦେଉଳ କାନ୍ଥ ସହିତ ମିଶାଇ ଦିଆଗଲା ଏବଂ ଭିତର କାନ୍ଥର ବନ୍ଧନା ସଙ୍ଗେ ସମାନ କରି ଉକ୍ତ ନୂତନ ଗଠିତ କାନ୍ଥରେ ମଧ୍ୟ ବନ୍ଧନା କରାଗଲା । ସିଂହାସନରେ ଯେଉଁ ଚାପୁଆଣି ସବୁ ଥିଲା, ତାହା ବର୍ତ୍ତମାନ ନାହିଁ ଏବଂ ତାହା ବୋଧହୁଏ ଲୁହା ନ ଥାଇ ପିତ୍ତଳର ଥିଲା । ଶୁଣାଯାଏ, ସିଂହାସନଟି ଉଦ୍ଧାର ସମୟରେ ପଥର ଭଙ୍ଗା ହୋଇ ପୁଣି ଆଉଥରେ ଗଢ଼ା ହୋଇଅଛି ଏବଂ ଯେଉଁଠାରୁ ପଥର ଭାଙ୍ଗି ଯାଇଥିଲା, ସେ ସ୍ଥାନରେ ଖଣ୍ଡେ ପଥର ନୂତନ ଦିଆ ହୋଇଅଛି ।

ଏହି ସମୟରେ ମୁଖଶାଳାର ପୂର୍ବ ଦ୍ୱାର ଉପରୁ ଉପର ଜଙ୍ଘା ଖସି ପଡ଼ିବାର ଦେଖି ତାହା ପୁଣି ପଥରରେ ଗଢ଼ିବାକୁ ହେଲା ଏବଂ ମୁଖଶାଳାର ପଶ୍ଚିମ ପାଖରେ ମଧ କେତେକ ପଥର କାମ କରାଗଲା ।

ବଡ଼ଦେଉଳ ପୂର୍ଣ୍ଣ ଭାବରେ ଖୋଳା ହେବା ପରେ ବାଲି ପଥର ବାହାର କରି ପୀଠର ତଳପତନ ପର୍ଯ୍ୟନ୍ତ ଦେଖାଇବାକୁ ହେଲା । ଏଥିନିମନ୍ତେ ବାଲି ଓ ପଥର ବହୁ ଦୂରକୁ ବୋହି ନେଇ ପକାଇବାକୁ ହେଉଥିଲା । କ୍ରମେ କ୍ରମେ ତଳ ପତନ ପର୍ଯ୍ୟନ୍ତ ସୁନ୍ଦର ପୀଠଟି ସମ୍ପୂର୍ଣ୍ଣ ଦୃଷ୍ଟିଗୋଚର ହେଲା ।

ପୀଠର ଉଦ୍ଧାର ପରେ ଦେଖାଗଲା, ବଡ଼ଦେଉଳର ଦକ୍ଷିଣ-ପଶ୍ଚିମ କୋଣରେ ସାମାନ୍ୟ ଦୂରକୁ ଗୋଟିଏ କ୍ଷୁଦ୍ର ପଥର ଗଦା ଥିଲା । ତାହା ଯେ ଗୋଟିଏ ମନ୍ଦିରର ଭଗ୍ନାବଶେଷ, ଏପରି କଳ୍ପନା କାହାରି ମନରେ ସ୍ଥାନ ପାଇ ନ ଥିଲା । ସୁତରାଂ ହଣ୍ଟର, ରାଜେନ୍ଦ୍ର ଲାଲ ପ୍ରଭୃତି ସମସ୍ତ ପ୍ରାଚୀନ ଲେଖକଙ୍କର ଗ୍ରନ୍ଥମାନଙ୍କରେ ଉକ୍ତ ପଥର ଗଦାର ସ୍ୱତନ୍ତ୍ର ଉଲ୍ଲେଖ ନାହିଁ । ଉଦ୍ଧାର ସମୟରେ ସେହି ପଥର ଗଦା ସ୍ୱତନ୍ତ୍ର ଦେଖିବାରୁ କେବଳ କୌତୂହଳ ପରବଶ ହୋଇ ତାହା ଖୋଳିବାକୁ ହୋଇଥିଲା । ଖୋଳୁ ଖୋଳୁ ଶେଷରେ ଅନ୍ୟ ଗୋଟିଏ କ୍ଷୁଦ୍ର ଅଥଚ ସୁନ୍ଦର କାରୁଖଚିତ ମନ୍ଦିରର ଅବଶେଷ ଦେଖା ପଡ଼ିଲା । ଏହା ରାମଚଣ୍ଡୀଙ୍କ (ଏବଂ ଶ୍ରୀ ବିଷନ୍ ସ୍ୱରୂପ କହିବାନୁସାରେ ମାୟାଦେବୀଙ୍କ) ମନ୍ଦିର (ସପ୍ତମ ଅଧ୍ୟାୟ) । ଶ୍ରୀ ବିଷନ୍ ସ୍ୱରୂପଙ୍କ ଲେଖା ପର୍ଯ୍ୟନ୍ତ ମନ୍ଦିରଟି ସମ୍ପୂର୍ଣ୍ଣ ଦେଖା ପଡ଼ିଥିଲା; କିନ୍ତୁ ପୀଠର କେତେକାଂଶ ତଥାପି ପୋତା ପଡ଼ିଥିଲା । ବର୍ତ୍ତମାନ ପୀଠ ସହିତ ସମୁଦାୟ ମନ୍ଦିରଟି ସୁନ୍ଦର ଦେଖା ଯାଉଅଛି ଏବଂ ଶିଳ୍ପ ଓ ସ୍ଥାପତ୍ୟରେ ଏହା କୋଣାର୍କ ମନ୍ଦିରଠାରୁ କୌଣସି ଅଂଶରେ ନ୍ୟୂନ ନାହିଁ ।

ଏହିରୂପେ ଗୋଟି ଗୋଟି ହୋଇ କୋଣାର୍କର ସମସ୍ତ ମନ୍ଦିର ବାହାରକୁ ଦେଖା ପଡ଼ିଲା । ଯେଉଁ ବାଲି ଓ ପଥର ଖୋଳା ହୋଇ ବାହାରିଲା, ତାହା ଆଉ ବେଢ଼ା ମଧରେ ନ ରଖି ମନ୍ଦିରର ଚତୁର୍ଦ୍ଦିଗରେ ବେଢ଼ା ବାହାରକୁ ବୁହା ହୋଇଗଲା । ସେହି ପଥରଗୁଡ଼ିକ ବିଶେଷ ବୃହତ୍ ଥିଲା; ବେଢ଼ା ପାରକରାଇ ସେଗୁଡ଼ିକୁ ଏତେ ଦୂରକୁ ନେବା ମହାନ୍ କଷ୍ଟସାଧ ହୋଇଥିଲା । କୋଣାର୍କ ଯୁଗରେ ସେ ସବୁ ଏକ ପ୍ରକାର ହାଲୁକା ଥିବାରୁ ଏତେ ଦୂରରୁ ଅକ୍ଳେଶରେ ବୁହା ହୋଇ ଆସି ପାରୁଥିଲା; କିନ୍ତୁ ବର୍ତ୍ତମାନ ଛଅ ସାତ ଶହ ବର୍ଷ ପାଣି ପବନ ଖାଇ ବିଶେଷ ଫୁଲିଗଲା କି ଅନ୍ୟ କୌଣସି କାରଣରୁ ଅଧିକ ଭାରି ହୋଇ ଯାଇଥିଲା ! ! ! ଅଗତ୍ୟା ମନୁଷ୍ୟ କଥା ଦୂରେ ଥାଉ ବୈଜ୍ଞାନିକ ଯନ୍ତ୍ର ସାହାଯ୍ୟରେ ମଧ ତାହା ସ୍ଥାନାନ୍ତରିତ ହେବା କଷ୍ଟସାଧ ହୋଇଥିଲା ! ! ! ସୁତରାଂ ବାରୁଦ ପ୍ରଭୃତି ସାହାଯ୍ୟରେ ପଥରମାନ ଖଣ୍ଡବିଖଣ୍ଡ କରାଗଲା ଏବଂ ଅକ୍ଳେଶରେ ସ୍ଥାନାନ୍ତରିତ ହେଲା । ଯାହାହେଉ, କୋଣାର୍କକାର

ଯଦି ଏଡ଼େ ଏଡ଼େ ଶିଳାମାନଙ୍କରେ ମନ୍ଦିର ନିର୍ମାଣ ନ କରି ବର୍ତ୍ତମାନ ଆକାରର ଇଟା ପ୍ରଭୃତି ଦ୍ୱାରା କରିଥାନ୍ତେ, ତାହାହେଲେ ଉଦ୍ଧାର ସମୟରେ ଉଦ୍ଧାରକର୍ତ୍ତାମାନେ ବହୁଶ୍ରମ ଓ ବୁଦ୍ଧି ଚାଳନାରୁ ରକ୍ଷା ପାଇଥାନ୍ତେ ଏବଂ ସେଥିନିମନ୍ତେ କୋଣାର୍କ-ଶିଳ୍ପୀଙ୍କୁ ମଧ୍ୟ ବିଶେଷ ଧନ୍ୟବାଦ ଦେଇଥାନ୍ତେ ! ! !

ଯାହାହେଉ, ଯେ କୌଣସି ପ୍ରକାରରେ ବେଢ଼ା ମଧ୍ୟରୁ ସମସ୍ତ ଶିଳା ଖଣ୍ଡବିଖଣ୍ଡ କରି ବେଢ଼ା ବାହାରେ ପକାଇଦେଲେ । ଦୁଃଖ ଏହି – କୋଣାର୍କ ପଥରଗୁଡ଼ିକ ଅକ୍ଷୁର୍ଣ୍ଣ ଭାବରେ ସେହିଠାରେ ପଡ଼ିଥିଲେ ସନ୍ତାପିତ ହୃଦୟରେ ସାମାନ୍ୟ ହେଲେ ଆଶ୍ୱାସନା ଆସୁଥାନ୍ତା ! ବେଢ଼ା ମଧ୍ୟରେ ଏବଂ ବଡ଼ଦେଉଳର ଉତ୍ତର ପାଖରେ ଗଜସିଂହ ମୂର୍ତ୍ତି କେବଳ ପଡ଼ି ରହିଅଛି । ବଡ଼ଦେଉଳର ଦକ୍ଷିଣ ପାଖରେ ମଧ୍ୟ ଅପେକ୍ଷାକୃତ କ୍ଷୁଦ୍ର ସିଂହ ମୂରିତିଏ ପଡ଼ିଅଛି । ବୋଧହୁଏ ଏହା ବଡ଼ଦେଉଳର ବେକୀରେ ଆମଳକଶିଳାକୁ ମୁଣ୍ଡାଇ ବସିଥିଲା । ଅନ୍ୟଗୁଡ଼ିକ ହୁଏତ ଖଣ୍ଡବିଖଣ୍ଡ ହୋଇଥିଲା । ଏହିଟି ମାତ୍ର ଭଙ୍ଗା ନ ହୋଇ ରଖା ଯାଇଅଛି ।

ଏହିରୂପେ ବେଢ଼ା ଭିତରଟି ପରିଷ୍କାର କରାଗଲା ପରେ ବାହାରୁ ବାଲି ଉଡ଼ି ପୁଣି ସବୁ ପୋତି ପକାଇବାର ଆଶଙ୍କା ହେଲା; ସୁତରାଂ ବେଢ଼ା ଚତୁର୍ଦ୍ଦିଗରେ ଯେଉଁ ଝାମ୍ପୁ, ପୁନ୍ନାଗ ପ୍ରଭୃତି ବୃକ୍ଷ ପୋତା ହେଲା, ତାହାଦ୍ୱାରା ବାଲି ସ୍ରୋତ ବହୁତ ବନ୍ଦ ହୋଇ ଯାଇଅଛି ।

କେତେଗୁଡ଼ିଏ କାର୍ଯ୍ୟର ଅଭାବ ଦେଖି ଶ୍ରୀ ବିଷଦ୍ ସ୍ୱରୂପ ଲେଖିଅଛନ୍ତି – "ବଡ଼ଦେଉଳ ଓ ନାଟମନ୍ଦିରର ଭଙ୍ଗା କାନ୍ଥ ଉପରେ ଚୂନ କାମ ହେବା ଆବଶ୍ୟକ; କାରଣ ତାହା ନ ହେଲେ ପାଣି ପଶି କାନ୍ଥ ଆହୁରି ଫଟାଇ ଭାଙ୍ଗି ଦେଇପାରେ । ମୁଖଶାଳାରେ ପୁଣି କେତେକ ପଥର ଗଢ଼ା ଯାଇ ବାହାରକୁ ବାହାରି ପଡ଼ିଥିବା ପଥରଖଣ୍ଡମାନଙ୍କୁ ଥୟ କରି ରଖିବା ଆବଶ୍ୟକ । ମୁଖଶାଳା ଉପରେ ଗୋଟିଏ ବିଦ୍ୟୁତ୍‌ଚାଳକ ପୋତିବା ଦରକାର; କାରଣ ଗତ ୧୦ ବର୍ଷ ମଧ୍ୟରେ ମୁଖଶାଳା ଉପରେ ଦୁଇ ଥର ବିଦ୍ୟୁତ୍ ପଡ଼ିଥିଲା । କ୍ଷୁଦ୍ର ମନ୍ଦିରଗୁଡ଼ିକର ଚତୁର୍ଦ୍ଦିଗରୁ ବାଲି ପଥର ଆହୁରି କେତେକ ବାହାର କରିଦେଲେ ପୀଠଗୁଡ଼ିକ ପରିଷ୍କାର ଦେଖାପଡ଼ିବ । ଉଦ୍ଧାର ସମୟରେ ଯେଉଁ ମନୋହର ମୂର୍ତ୍ତିଗୁଡ଼ିକ ବାହାରିଅଛି, ସେଗୁଡ଼ିକର ରକ୍ଷଣ ନିମନ୍ତେ ଗୋଟିଏ ସ୍ୱତନ୍ତ୍ର ଗୃହ ଅତ୍ୟାବଶ୍ୟକ । ମାନ୍ୟବର ଲେଫ୍‌ଟେନାଣ୍ଟ ଗଭର୍ଣ୍ଣର ନବଗ୍ରହପାଟକୁ ତାହାର ଆଦ୍ୟ ସ୍ଥାନରେ ରଖିବା ନିମନ୍ତେ ଆଦେଶ ଦେଇଛନ୍ତି । ଏହା କେବଳ ଅର୍ଥ ଅଭାବରୁ ବନ୍ଦ ରହିଅଛି ।

ଉପରୋକ୍ତ ଅଭାବ ମଧ୍ୟରୁ କେତେକ ଏଥି ମଧ୍ୟରେ କାର୍ଯ୍ୟରେ ପରିଣତ ହୋଇଗଲାଣି । ବଡ଼ଦେଉଳ ନାଟମନ୍ଦିର ଏବଂ ରାମଚଣ୍ଡୀ ଦେଉଳର ଭଙ୍ଗା କାନ୍ଥ ଉପରି ଭାଗ ଶକ୍ତ ଚୂନ କାମଦ୍ୱାରା ସୁରକ୍ଷିତ ହୋଇଅଛି; ସୁତରାଂ ବର୍ଷାଦ୍ୱାରା ଉକ୍ତ ଭଗ୍ନ କାନ୍ଥର କୌଣସି ବିଶେଷ କ୍ଷତି ହେବ ନାହିଁ । ମୁଖଶାଳାର ପଥରଗଢ଼ା କାମ ପ୍ରାୟ ପୂର୍ଣ୍ଣ

ହୋଇଅଛି । ଗତବର୍ଷ (୧୯୧୫) ମାର୍ଚ୍ଚ ମାସରେ ମୁଁ କୋଣାର୍କରେ ଥିବା ସମୟରେ ମୁଖଶାଳା ଉପରେ ବିଦ୍ୟୁତ୍‌ଟାଳକଟିଏ ବସା ହେଉଥିଲା ଏବଂ ତାହା ଦେହରୁ ଲୁହାପାତିଆ ଆସି ଉତ୍ତର ପାଖରେ ଥିବା କୂଅ ଭିତରେ ଏବଂ ଦକ୍ଷିଣ ପାଖରେ ଗୋଟିଏ ଗଭୀର ଗର୍ତ୍ତ ମଧ୍ୟରେ ପୋତା ହୋଇଅଛି । ଅନ୍ୟାନ୍ୟ କ୍ଷୁଦ୍ର ମନ୍ଦିର ଓ ପୀଠମାନଙ୍କର ଚତୁର୍ଦ୍ଦିଗରୁ ବାଲି ପଥର ବାହାର କରା ଯାଇଅଛି ଏବଂ କେତେକଗୁଡ଼ିଏ ଉନ୍ମୁକ୍ତ ପୀଠ କେବଳ ବେଢ଼ା ମଧ୍ୟରେ ଦେଖା ଯାଉଅଛି । ମନୋହର ମୂର୍ତ୍ତିଗୁଡ଼ିକ ନିମନ୍ତେ ବେଢ଼ା ମଧ୍ୟରେ ଉତ୍ତର-ପୂର୍ବ କୋଣରେ ଗୋଟିଏ ଗୃହ ନିର୍ମିତ ହୋଇଅଛି ଏବଂ ତହିଁ ମଧ୍ୟରେ ସମସ୍ତ ମୂର୍ତ୍ତି ବର୍ତ୍ତମାନ ସୁରକ୍ଷିତ ହୋଇଅଛି । ଉକ୍ତ ଗୃହର ଚାବି ଜଣେ ବାରିକମିସ୍ତ୍ରୀ ଚପରାସିଠାରେ ଥାଏ । ଏ ସମସ୍ତ ହୋଇଅଛି; କେବଳ ନ ହେବା ମଧ୍ୟରେ ନବଗ୍ରହପାଟ ତାହାର ଆଦ୍ୟ ସ୍ଥାନରେ ରଖାଯାଇ ପାରିଲା ନାହିଁ । ଏକେ ଦ୍ୱିଖଣ୍ଡ ହୋଇଅଛି, ତାହା ପୁଣି ଇତସ୍ତତଃ ହେଉଅଛି । ବର୍ତ୍ତମାନ ଉକ୍ତ ନୂତନ ଗୃହ ମଧ୍ୟରେ ଏହା ଯତ୍ନରେ ରଖା ଯାଇଅଛି ଏବଂ ପ୍ରତିଦିନ ସ୍ଥାନୀୟ ସେବକଦ୍ୱାରା ଗ୍ରହମାନେ ପୂଜା ପାଉଅଛନ୍ତି ।

ଏହା ବ୍ୟତୀତ କୋଣାର୍କର ଅଭାବ ମଧ୍ୟରେ ପୂର୍ବେ ପ୍ରସଙ୍ଗକ୍ରମେ ଯଥା ସ୍ଥାନରେ ଯେପରି କୁହାଯାଇଅଛି, ମୁଖଶାଳାର ଦକ୍ଷିଣ ଓ ଉତ୍ତର ପାଖର ଅଶ୍ୱ ଓ ହସ୍ତୀ ମୂର୍ତ୍ତିଗୁଡ଼ିକ ଉପରେ ଗୋଟିଏ ଚାଳ ନିର୍ମାଣ କରାଇଦେବା ଆବଶ୍ୟକ । ତାହା ନ ହେଲେ ଅଳ୍ପକାଳ ମଧ୍ୟରେ ଉକ୍ତ ମୂର୍ତ୍ତିଗୁଡ଼ିକ ଏକାବେଳକେ ନଷ୍ଟ ହୋଇଯିବାର ସମ୍ଭାବନା । କୋଣାର୍କର କଡ଼ିଗୁଡ଼ିଏ ବର୍ତ୍ତମାନ ମଧ୍ୟ ବେଢ଼ା ମଧ୍ୟରେ ପଡ଼ି ପାଣି ପବନରେ ନଷ୍ଟ ହୋଇ ଯାଉଅଛି । ସେଗୁଡ଼ିକରେ ରଙ୍ଗ ଲଗାଇ ଉକ୍ତ ନୂତନ ଗୃହ ମଧ୍ୟରେ କିମ୍ବା ଗୋଟିଏ ସ୍ୱତନ୍ତ୍ର ଚାଳ ତଳେ ସେଗୁଡ଼ିକୁ ରଖିବା ଆବଶ୍ୟକ । ସେଗୁଡ଼ିକ ବର୍ତ୍ତମାନକୁ ପ୍ରତି ଓଡ଼ିଶାର ପ୍ରାଚୀନ ଲୌହ କାରଖାନା ଓ ଇଞ୍ଜିନିୟରିଂ ବୁଦ୍ଧିର ଆଶ୍ଚର୍ଯ୍ୟଜନକ କାର୍ଯ୍ୟ । ସେଗୁଡ଼ିକର ରକ୍ଷଣାବେକ୍ଷଣ ସର୍ବଥା ବାଞ୍ଛନୀୟ । ଏହା ବ୍ୟତୀତ ବିଶେଷ ଅଭାବ କୋଣାର୍କକୁ ପୁରୀଠାରୁ ଗୋଟିଏ ରାସ୍ତା । ଏହା ଅଭାବରେ ବହୁତ ଦର୍ଶକ କୋଣାର୍କ ଦର୍ଶନ ସୁଖରୁ ବଞ୍ଚିତ ହେଉଅଛନ୍ତି । ରେଲପଥ ବା ପକ୍କା ରାସ୍ତାଟିଏ ଅତ୍ୟନ୍ତ ପ୍ରୟୋଜନ ।

ଯାହାହେଉ, କୋଣାର୍କର ଯେଉଁ ସମସ୍ତ କାର୍ଯ୍ୟ ଶ୍ରୀ ବିଷନ୍ ସ୍ୱରୂପଙ୍କ ପର୍ଯ୍ୟନ୍ତ ହୋଇଥିଲା, ତହିଁରେ କର୍ମଚାରୀମାନଙ୍କର ବେତନ ବ୍ୟତୀତ ୯୬୦୦୦ ଟଙ୍କା ବ୍ୟୟିତ ହୋଇଥିଲା । ତାହା ପରେ ଆହୁରି କେତେକ କାର୍ଯ୍ୟ କରାଯାଇଅଛି । ସୁତରାଂ କୋଣାର୍କ ଉଦ୍ଧାର ନିମନ୍ତେ ମୋଟରେ ଗଭର୍ଣ୍ଣମେଣ୍ଟଙ୍କର ଏକ ଲକ୍ଷରୁ ଅଧିକ ଟଙ୍କା ବ୍ୟୟିତ ହୋଇଅଛି । ଏହି ବିସ୍ତର ଅର୍ଥବ୍ୟୟରେ ଓଡ଼ିଆ ତଥା ଭାରତୀୟ ଶିଳ୍ପର ପରାକାଷ୍ଠା କୋଣାର୍କର ଯତ୍‌ସାମାନ୍ୟ ଉଦ୍ଧାର ନିମନ୍ତେ କେବଳ ଓଡ଼ିଆ ନୁହନ୍ତି, ସମୁଦାୟ ଭାରତବାସୀ ଗଭର୍ଣ୍ଣମେଣ୍ଟଙ୍କ ନିକଟରେ ବହୁପରିମାଣରେ ଋଣୀ । ତାହାଙ୍କର ସୁଦୃଷ୍ଟିବଶତଃ କୋଣାର୍କର

ଅସ୍ତମିତ ଗୌରବ-ରବିଙ୍କର ଶେଷ କିରଣ ଅର୍ଦ୍ଧନିମିଳିତ ଅବସ୍ଥାରେ ହେଲେ ରହି ଯାଇଅଛି ।

କୋଣାର୍କ ପରି ଅସାମାନ୍ୟ ଶିଳ୍ପକୁ ଧ୍ୱଂସମୁଖରୁ ରକ୍ଷା କରିବା ନିମନ୍ତେ ଉକ୍ତ ଅର୍ଥବ୍ୟୟ ଯଥେଷ୍ଟ ଅବଶ୍ୟ ନୁହେଁ । ଯାହାର ନିର୍ମାଣ ନିମନ୍ତେ ପ୍ରାୟ ତ୍ରିଶକୋଟି ଟଙ୍କା ବ୍ୟୟିତ ହୋଇଥିଲା, ତାହାର ଏହି ଘୋର ଶୋଚନୀୟ ଭଗ୍ନାବସ୍ଥାରେ ଏକ ଲକ୍ଷ ଟଙ୍କା ଦ୍ୱାରା ବା ବିଶେଷ କି କାର୍ଯ୍ୟ ହୋଇପାରେ ? ଅବଶ୍ୟ କୋଣାର୍କର ଜୀର୍ଣ୍ଣୋଦ୍ଧାର କରି ତାହାର ସେହି ପୂର୍ବର ଅଭିନବ ସୁନ୍ଦର ବିରାଟ ବପୁବୈଭବକୁ ଜଗତ ସମକ୍ଷରେ ଦେଖାଇବାର ଆଶା କରିବା ଏହି ଭୌତିକ ଯୁଗରେ ଏକାବେଳକେ ବିଡ଼ମ୍ବନା । ଏ ଯୁଗର ଅନେକ ଚିନ୍ତାଶୀଳ ବ୍ୟକ୍ତି ବେଳେ ବେଳେ ଆକ୍ଷେପ କରି ପଚାରିଥାନ୍ତି, ''କେବଳ ଏହି ପଥର ସଂଯୋଗରେ କାହିଁକି ଏତେ ଅଜସ୍ର ଅର୍ଥବ୍ୟୟ ଓ ପରିଶ୍ରମ ?'' କେବଳ ଧାନଧାନ୍ୟ ଯେଉଁ ଯୁଗରେ ଏକମାତ୍ର ଉପସ୍ଥିତ ବସ୍ତୁ, ପ୍ରତ୍ୟକ୍ଷ ବ୍ୟବହାର ଛଡ଼ା ଯେଉଁ ଯୁଗରେ ମାନବ ପ୍ରାଣର ଆଉ କିଛି ଉଚ୍ଚ ପ୍ରୟୋଜନ ନାହିଁ, ସେ ଯୁଗରେ ଏଭଳି ପ୍ରଶ୍ନ ଉଠିବା ବିଚିତ୍ର କ'ଣ ? ଏ ଯୁଗରେ ଅନେକ କୋଠା କରୁଅଛନ୍ତି – ଏକତାଲା ଉପରେ ଦୋତାଲା, ଦୋତାଲା ଉପରେ ତେତାଲା –, ସେ ସବୁ କେବଳ ପ୍ରତ୍ୟକ୍ଷ ବ୍ୟବହାର ପାଇଁ; କିନ୍ତୁ ମାନବ ହୃଦୟ ଅବିନଶ୍ୱରତା ଲୋଡ଼େ; ଜ୍ଞାତସାରରେ ହେଉ ବା ଅଜ୍ଞାତସାରରେ ହେଉ, କୋଠା-ନିର୍ମାଣରେ ମଧ୍ୟ ଅଲକ୍ଷିତ ଭାବରେ ଏହି ପ୍ରବୃତ୍ତି କାର୍ଯ୍ୟ କରେ । ତେବେ ଏହା କେବଳ ବ୍ୟକ୍ତିଗତ ଅବିନଶ୍ୱରତାର ଅଭିବ୍ୟକ୍ତି ମାତ୍ର । ପ୍ରାଚୀନ ପୁରୁଷମାନେ – କେବଳ ଭାରତବର୍ଷରେ ନୁହେଁ, ମିଶର, ବାବିଲୋନ ପ୍ରଭୃତି ଅନ୍ୟାନ୍ୟ ପ୍ରାଚୀନ ସଭ୍ୟ ଦେଶରେ ମଧ୍ୟ ବ୍ୟକ୍ତିଗତ ଅବିନଶ୍ୱରତା ନିମନ୍ତେ ଏତେ ବ୍ୟାକୁଳ ନ ଥିଲେ । ନିଜେ କେହି କୁଟୀରରେ, କେହି ଅବା ବୃକ୍ଷ ମୂଳେ ବାସ କରୁଥିଲେ । ବ୍ୟକ୍ତିଗତ ସମ୍ପଦ, ବ୍ୟକ୍ତିଗତ ଜୀବନ ଅନନ୍ତ ମହାକାଳର ଅବିନଶ୍ୱର ଜାତୀୟ ଶକ୍ତି ତୁଳନାରେ ଅକିଞ୍ଚିତକର ମାତ୍ର । ତେଣୁ ଜାତୀୟଭାବ, ଜାତୀୟ ଆକାଂକ୍ଷା ଉତ୍ତର କାଳକୁ ଯେପରି ମୂର୍ତ୍ତିମନ୍ତ ହୋଇ ବହୁକାଳ ରହିବ, ସେଥି ନିମନ୍ତେ ସେମାନେ ନିରନ୍ତର ତତ୍ପର ଥିଲେ । ବ୍ୟାସ, ବାଲ୍ମୀକିଙ୍କ ବ୍ୟକ୍ତିଗତ ଜୀବନ ଏବେ ଆଉ ଦେଖାଯାଉ ନାହିଁ । ଏମନ୍ତ କି ବିରାଟ ସଂସ୍କୃତ ସାହିତ୍ୟ-କୋଷରେ ତହିଁର ସାମାନ୍ୟ ବର୍ଣ୍ଣନା ପର୍ଯ୍ୟନ୍ତ ନାହିଁ । ରହିବ କିପରି ? ସେମାନଙ୍କର ଚିନ୍ତା ଯେ ଜାତିର ଚିନ୍ତା, ସମସ୍ତ ମାନବ ସମାଜର ଚିନ୍ତା; ବ୍ୟକ୍ତି ସେଠାରେ ବିଲୀନ । ଆଜି ନାନା ବିପର୍ଯ୍ୟୟ ମଧ୍ୟରେ ଭାରତୀୟ ଆର୍ଯ୍ୟ ଜାତିର ଯେ ସତ୍ତା ଦେଖିବାକୁ ମିଳେ, ତାହା କେବଳ ଜାତୀୟ ସାହିତ୍ୟ, ଜାତୀୟ କଳା, ଜାତୀୟ ଶିଳ୍ପ । ଶିଳ୍ପରେ ଶିଳ୍ପୀର ବ୍ୟକ୍ତିତ୍ୱ ଲୋପ ପାଇଅଛି; ତାହାଙ୍କ ସମୟ, ତାହାଙ୍କ ସମାଜର ଅବସ୍ଥା ଓ ଆକାଂକ୍ଷାର ଏହା କେବଳ ଅଭିବ୍ୟକ୍ତି । ଇଞ୍ଜିନିୟର 'ଶିବେଇ ସାନ୍ତରା' ନାହାନ୍ତି କି 'ବାର ଶହ ବଢ଼େଇ' ନାହାନ୍ତି; ପ୍ରତ୍ୟେକଙ୍କର ବଂଶାନ୍ୱୟରେ କେହି ଉତ୍ତରାଧିକାରୀ ଅଛନ୍ତି କି ନାହିଁ

ସନ୍ଦେହ । ସେ ରାଜା ନରସିଂହଦେବ ନାହାନ୍ତି କିମ୍ୱା ଆଉ ଯେ ଶତ ସହସ୍ର ଲୋକେ କୋଣାର୍କ-କର୍ମରେ ମନପ୍ରାଣ ଢ଼ାଳି ଦେଇଥିଲେ, ସେମାନେ କେହି ନାହାନ୍ତି । ଅଛି କେବଳ ଭୀମକାନ୍ତ ବିରାଟ ବପୁ ଭଗ୍ନ କୋଣାର୍କ ଭବନ – ବିଜନ ସୈକତ ପ୍ରାନ୍ତରରେ ଅଦ୍ୟାପି ଓଡ଼ିଆ ଜାତିର ଅବିନଶ୍ୱର କୀର୍ତ୍ତିସ୍ତମ୍ଭ । ବ୍ୟକ୍ତିଗତ ଜୀବନକୁ ମୃତ୍ୟୁ ମୁଖରୁ ରକ୍ଷା କରିବା ନିମନ୍ତେ ଅକାତରରେ ଲକ୍ଷ ଲକ୍ଷ ଟଙ୍କା ବ୍ୟୟ ହେଉଅଛି – ହେବା ଉଚିତ । ଜାତି ବା ସମାଜ ବିଶେଷର ଜୀବନକୁ ଏହିପରି ଶିଳ୍ପ କାରୁକାର୍ଯ୍ୟରେ ବଞ୍ଚାଇ ରଖିବା ନିମନ୍ତେ ଅଜସ୍ର ମୁଦ୍ରା ବ୍ୟୟର ସାର୍ଥକତା ପ୍ରୟୋଜନବାଦୀମାନଙ୍କୁ ଆଉ ବୁଝାଇବାକୁ ହେବନାହିଁ ।

ଶିଳ୍ପ ଜାତୀୟ ପ୍ରାଣର ପ୍ରକାଶ, ଜାତୀୟ ଭାବର ଅଭିବ୍ୟଞ୍ଜକ । ଓଡ଼ିଶାର ମନ୍ଦିରମାନ ବିଶେଷତଃ କୋଣାର୍କ ମନ୍ଦିର ଆଜି ଆମ୍ଭମାନଙ୍କ ଦୁର୍ବଳ ହୃଦୟରେ ପୂର୍ବ ପୁରୁଷମାନଙ୍କର ଉନ୍ନତ ଆଦର୍ଶର କ୍ଷୀଣ ଆଲୋକ ପକାଇ ଉତ୍ତରାଧିକାରିତ୍ୱ ଅଭିମାନରେ ଆତ୍ମ-ଗୌରବ ଜନ୍ମାଏ । ବାସ୍ତବରେ ଆଖି ଫିଟାଇ ଦେଖିଲେ, କାନ ଡେରି ଶୁଣିଲେ, ଏହିସବୁ ଶିଆଳୀ-ଶବଳିତ-ଶିଳାରାଶି ନିର୍ଜୀବ ଜଡ଼ପିଣ୍ଡ ବୋଲି ପ୍ରତୀୟମାନ ହେବନାହିଁ । ସେ ସମସ୍ତ ଭିତରୁ ପୂର୍ବ ପୁରୁଷମାନଙ୍କର ପ୍ରାଣସ୍ପର୍ଶୀ ବାଣୀ ଅଦ୍ୟାପି ଅମର ଧାରାରେ ନିଃସୃତ ହେଉଅଛି – ଯେପରି ସାନ୍ତ୍ୱନା ଦେଉଅଛି, ''ହତାଶ ହୁଅନାହିଁ ।'' ସତେ କେବେ ଉତ୍କଳ ଜାତି ସେ ଅମର ବାଣୀ ଶୁଣିବେ ଏବଂ ଜଗତକୁ ଶୁଣାଇବେ !!!

